# ଶେଷ ପ୍ରଶ୍ନ

ରଚନା : ଶରତ୍ ଚନ୍ଦ୍ର

ଭାଷାନ୍ତର : ଶ୍ରୀ ଯମେଶ୍ୱର ତ୍ରିପାଠୀ



ଓଡ଼ିଶା ବୁକ୍ ଷ୍ଟୋର

"**ଶେଷ ପ୍ରଶ୍ନ**" ରଚନା—**ଶରତ୍ ଚନ୍ଦ୍ର** । ଭାଷାନ୍ତର : **ଯମେଶ୍ୱର ତ୍ରିପାଠୀ** । ତ୍ରିପାଠୀ ଭବନ, ହସ୍ପିଟାଲ ରୋଡ୍, ଆଠଗଡ଼ । ପ୍ରଥମ ସଂସ୍କରଣ **୧୯୮୪**
ପ୍ରକାଶକ : **ଶ୍ରୀ ଗୋବିନ୍ଦ ଚରଣ ପାତ୍ର, ଓଡ଼ିଶା ବୁକ୍ ଷ୍ଟୋର,** ବିନୋଦ ବିହାରୀ କଟକ ୭୫୩୦୦୨ । ମୁଦ୍ରଣ : **ଗୀତାଞ୍ଜଳି ପ୍ରେସ,** ଅଲିଶା ବଜାର-କଟକ ୭୫୩୦୦୨
ମୂଲ୍ୟ : ସାଧାରଣ—**ତରଶ ଟଙ୍କା** । ଶୋଭନ—**ପଞ୍ଚତରଶ ଟଙ୍କା** ।

Sarat Chandra's "**Sesha Prasna**" Translated by **Sri Jameswar Tripathy**. 1st Edition, 1984. Published by **Sri Govinda Charan Patra, Orissa Book Store.** Cuttack 753002. Printed at **Gitanjali Press,**
Price : **Rs. 35·00**

କୈଫିୟତ୍ :

ଶରତ୍ ଚନ୍ଦ୍ରଙ୍କର ଅମଳିନ କୀର୍ତ୍ତି "ଶେଷ ପ୍ରଶ୍ନ"କୁ ଓଡ଼ିଆ ଭାଷାରେ ଭାଷାନ୍ତରିତ କରି ମୋର ପ୍ରିୟ ପାଠକ ପାଠିକାମାନଙ୍କ ଆଗରେ ପରିବେଷଣ କଲାବେଳେ ମୁଁ ତିନି ଜଣଙ୍କୁ ସ୍ମରଣ ନ କରି ରହିପାରୁ ନାହିଁ । ସେମାନଙ୍କ ଭିତରୁ ଜଣେହେଲେ ସୂର୍ଯ୍ୟନାରାୟଣ ଭାଇନା (ଓଡ଼ିଶାର ପ୍ରତିଷ୍ଠିତ ଗାଳ୍ପିକ ଓ ଔପନ୍ୟାସିକ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଆଚାର୍ଯ୍ୟ) ଯିଏକି ମୋତେ ଲାଇବ୍ରେରୀରୁ ମୂଳ ବଙ୍ଗଳା ଉପନ୍ୟାସଟି ଆଣି କେବଳ ଯୋଗାଇ ଦେଇ ନ ଥିଲେ ବରଂ ଶୀଘ୍ର ଅନୁବାଦ କରିବା ପାଇଁ ତାଗିଦ କରିଥିଲେ । ଅନୁବାଦ କ୍ଷେତ୍ରରେ ତାଙ୍କର ଯେଉଁ ଆଶା ଓ ବିଶ୍ୱାସ ମୋ ଉପରେ ରହିଛି ତହିଁରେ ଯଦି ତ୍ରୁଟି କରିଥାଏ ତେବେ ତାଙ୍କଠାରୁ କ୍ଷମା ମାଗି ନେଉଛି ।

ଦ୍ୱିତୀୟ ଜଣକ ହେଉଛନ୍ତି ଓଡ଼ିଶା ବୁକ୍ ଷ୍ଟୋରର ସ୍ୱତ୍ୱାଧିକାରୀ ବଶିଷ୍ଠ ରୁଚିଶୀଳ ପ୍ରକାଶକ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାଣି; ଯିଏକି ଆଜିକାଲି ପୁସ୍ତକ ଶିଳ୍ପ ଏକ ସଙ୍କଟ-ଜନକ ପରିସ୍ଥିତିରେ ଗତି କରୁଥିବାବେଳେ ଦୁଃସାହସିକ ପଦକ୍ଷେପ ନେଇ ଏହାର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଛନ୍ତି, ସେଥିପାଇଁ ତାଙ୍କୁ ମୋର କୃତଜ୍ଞତା ଜଣାଉଛି ।

ତୃତୀୟ ଜଣକ ହେଉଛନ୍ତି ମୋର ଅଧିକାଂଶ ପୁସ୍ତକର ମୁଦ୍ରକ ଗୀତାଞ୍ଜଳି ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ବିଜୟ କୁମାର ଦାଶ; ଯାହାଙ୍କ ଅକୁଣ୍ଠ ସହଯୋଗ ମୋର ଚିରଦିନ ମନେ ରହିବ । ତାଙ୍କୁ ଧନ୍ୟବାଦ ଜଣାଉଛି ।

ପରିଶେଷରେ ଅନୁବାଦ ଏକ ଆୟାସସାଧ୍ୟ କାର୍ଯ୍ୟ ହୋଇଥିବାରୁ ଯଦି ଏଥିରେ କୌଣସି ତ୍ରୁଟି ପରିଲକ୍ଷିତ ହୁଏ, ସେଥିପାଇଁ ଉଦାର ପାଠକ ସମାଜ ମୋତେ କ୍ଷମା କରିବା ପାଇଁ ନିବେଦନ କରୁଛି । । ଇତି ।

ଶେଖ ବଜାର
କଟକ
ତା ୭ । ୪ । ୮୪

[signature]

## ଔପନ୍ୟାସିକ ପରମେଶ୍ୱର ତ୍ରିପାଠୀଙ୍କ କେତୋଟି
## ସାର୍ଥକ ଉପନ୍ୟାସ ଓ ଅନୁବାଦ

### ● ଉପନ୍ୟାସ

ସେକାଳ, ଏକାଳ, ଅନ୍ୟକାଳ
କାହାଣୀ ! ଆହତ ଆତ୍ମାର
ସଞ୍ଜ ସକାଳ
ବସନ୍ତ ବତାସ
ମିଥୁନ ଲଗ୍ନ
ମାଳବିକାର ସ୍ୱପ୍ନ
ଝଡ଼ ଓ ମାଡ଼
ଛତ୍ର ଚକୋଷ୍ଣ ଝୁରେ
ଅନୁରାଧା
ଚକୋଶର ଅଶ୍ରୁ
କଳଙ୍କିନୀ
ଲୁହର ସଂସାର
ରତ୍ନାକରର ଅନ୍ୟନାମ ବାଲ୍ମୀକି

### ● ଅନୁବାଦ

ଶ୍ରୀକାନ୍ତ
ଗୃହଦାହ
ଶରତ୍ ଚନ୍ଦ୍ରିକା
ସ୍ୱଦେଶ
ଶୁଭଦା
ପ୍ରତିପଦା (N.B.T)



ବିଭିନ୍ନ ସମୟରେ ଏବଂ ବିଭିନ୍ନ କାର୍ଯ୍ୟ ଉଦ୍ଦେଶ୍ୟରେ ଅନେକ ଗୁଡ଼ିଏ ବଙ୍ଗାଳୀ ପରିବାର ପଶ୍ଚିମର ପ୍ରଖ୍ୟାତ ଆଗ୍ରା ସହରରେ ବସବାସ କରୁଥିଲେ । କେହି କେହି କେତେ ପୁରୁଷଧରି ବାସିନ୍ଦା ତ କେତେକ ଏବେ ଅଳ୍ପ ଦିନ ହେବ ଘର କରି ରହିଛନ୍ତି । ବସନ୍ତ ଏବଂ ପ୍ଲେଗ ଭଳି ମହାମାରୀର ପ୍ରାଦୁର୍ଭାବକୁ ବାଦ୍ ଦେଲେ ସେମାନଙ୍କର ଜୀବନ ଯାତ୍ରା ନିର୍ବିଘ୍ନ କହିଲେ ଚଳେ । ବାଦଶାହୀ ଅମଳର କିଲ୍ଲା ଏବଂ ଇମାରତ୍ ଦେଖିବା ଏମାନଙ୍କର ଶେଷ ହୋଇ ଯାଇଛି । ଅମୀର, ବାଦଶାହାମାନଙ୍କର ଶ୍ରେଷ୍ଠ, ବଡ଼, ମଝିଲ, ଭଙ୍ଗା ଓ ଅଭଙ୍ଗା, ଯେଉଁଠାରେ ଯେତେ କବର ଅଛି ସେସବୁର ନିଖୁଣ ତାଲିକା ସେମାନଙ୍କର କଣ୍ଠସ୍ଥ ହୋଇ ଯାଇଛି । ଏପରିକି ବିଶ୍ୱବନ୍ଦିତ ତାଜମହଲରେ ମଧ୍ୟ ସେମାନେ କିଛି ନୂତନତ୍ୱର ସନ୍ଧାନ ପାଇ ପାରନ୍ତି ନାହିଁ । ସନ୍ଧ୍ୟାବେଳେ ଉଦାସ ସଜଳ ଚକ୍ଷୁରେ ଜ୍ୟୋତ୍ସ୍ନା ରାତିରେ ଅର୍ଦ୍ଧନିମୀଳିତ ନେତ୍ରରେ ଏବଂ ଅନ୍ଧକାର ରାତ୍ରିରେ ଯମୁନାର ଏପାରିରେ ବସି ସେପାରିର ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ପାଇଁ ଯେତେ ସବୁ ପ୍ରଚଳିତ ପ୍ରବାଦ ଅଛି ତାହା ସବୁ ସେମାନେ ଅନେକ ନିରିଖି ସାରିଛନ୍ତି । କେଉଁ ମହାପୁରୁଷ କେବେ କ'ଣ କହିଥିଲେ, କେଉଁ କବି କି ପ୍ରକାର କବିତା ଲେଖିଥିଲେ, ଆବେଗର ପ୍ରାବଲ୍ୟ ହେତୁ କେଉଁ ରସିକ ବ୍ୟକ୍ତି ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଗଳାରେ ଦଉଡ଼ି ଦେବାକୁ ଯାଉଥିଲେ, ଏସବୁ ତଥ୍ୟ ସେମାନଙ୍କୁ ଭଲ ଭାବରେ ଜଣା । ଇତିବୃତ୍ତ କହିବା ଦିଗରୁ ସାମାନ୍ୟ ତ୍ରୁଟି ସେମାନଙ୍କର ନଥାଏ । କେଉଁ ବେଗମଙ୍କର କେଉଁଠାରେ ଏନ୍ତୁଡ଼ି ଶାଳ ଥିଲା, କେଉଁ ଜାଠ ସର୍ଦ୍ଦାର କେଉଁଠାରେ ଶରାଘାତ ଖାଇଥିଲା, କାନ୍ଥରେ ଲାଗିଥିବା କଳା ଚିହ୍ନ କେତେ ବର୍ଷ ତଳର, କେଉଁ ଦସ୍ୟୁ କେତେ ହୀରା-ମାଣିକ୍ୟ ଲୁଣ୍ଠନ କରିନେଇଥିଲା, ଏବଂ ସେସବୁର ଆନୁମାନିକ ମୂଲ୍ୟ କେତେ ହୋଇ ପାରିବ ପ୍ରଭୃତି ଏଠିକାର ଶ୍ରେଷ୍ଠ ଶ୍ରେଷ୍ଠ ପୁଅ, ଝିଅମାନଙ୍କୁ ମଧ୍ୟ ଅଜଣା ନଥାଏ ।

ଏହି ଜୀବନ ଏବଂ ନିଷ୍ପନ୍ଦତାର ମଝିରେ ହଠାତ୍ ଦିନେ ବଙ୍ଗାଳୀ ସମାଜରେ ଚାଞ୍ଚଲ୍ୟ ଦେଖା ଦେଲା । ପ୍ରତ୍ୟେକ ଦିନ ମୁସାଫିର ଦଳ ଦଳ ହୋଇ ଆସନ୍ତି ଆଉ ଯାଆନ୍ତି । ଆମେରିକାରୁ ଆସିଥିବା କୃଷ୍ଣଭକ୍ତମାନଙ୍କଠାରୁ ଶ୍ରୀ ବୃନ୍ଦାବନ ଧାମରୁ ଫେରନ୍ତା ବୈଷ୍ଣବମାନେ ଦଳ ଦଳ ହୋଇ ମନ୍ଦିରେ ଭିଡ଼ ଜମାନ୍ତି । ସେଥି ପ୍ରତି କାହାର ଆଗ୍ରହ ନଥାଏ । ଦିନ ପରେ ଦିନ ଗଡ଼ିଯାଏ । ଏପରି ସମୟରେ ଜଣେ ପ୍ରୌଢ଼ ଭଦ୍ର ବଙ୍ଗାଳୀ ସାହେବ ତାଙ୍କର ଶିକ୍ଷିତା, ସୁରୂପା ଏବଂ ପୂର୍ଣ୍ଣଯୌବନା କନ୍ୟାଙ୍କ ଧେନ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ସହରର ଗୋଟିଏ ପାଖରେ ବିରାଟ କୋଠାଟିଏ ଭଡ଼ା ନେଇ ରହିଲେ । ସାଙ୍ଗରେ ତାଙ୍କର ବେହେରା, ବାବୁର୍ଚ୍ଚି, ଦରୁଆନ, ଦାସୀ, ଚାକର ଏବଂ ପୂଜାରୀ ପ୍ରଭୃତି ଆସିଲେ । ଗାଡ଼ି,

## ଔପନ୍ୟାସିକ ଯମେଶ୍ୱର ତ୍ରିପାଠୀଙ୍କ କେତୋଟି ସାର୍ଥକ ଉପନ୍ୟାସ ଓ ଅନୁବାଦ

### ● ଉପନ୍ୟାସ

ସେକାଳ, ଏକାଳ, ଅନ୍ୟକାଳ
କାହାଣୀ ! ଆହତ ଆତ୍ମାର
ସଞ୍ଜ ସକାଳ
ବସନ୍ତ ବତାସ
ମିଥୁନ ଲଗ୍ନ
ମାଲବିକାର ସ୍ୱପ୍ନ
ଝଡ଼ ଓ ମାଡ଼
ଛତ୍ର ଚକୋଷ ଝୁରେ
ଅନୁସଧା
ଚକୋଶର ଅଶ୍ରୁ
କଲଙ୍କିଣୀ
ଲୁହର ସଂସାର
ରତ୍ନାକରର ଅନ୍ୟନାମ ବାଲ୍ମୀକି

### ● ଅନୁବାଦ

ଶ୍ରୀକାନ୍ତ
ଗୃହଦାହ
ଶରତ୍ ଚନ୍ଦ୍ରିକା
ମହେଶ
ଶୁଭଦା
ପ୍ରତିପଦା (N.B.T)



ବିଭିନ୍ନ ସମୟରେ ଏବଂ ବିଭିନ୍ନ କାର୍ଯ୍ୟ ଉଦ୍ଦେଶ୍ୟରେ ଅନେକ ଗୁଡ଼ିଏ ବଙ୍ଗାଳୀ ପରିବାର ପଶ୍ଚିମର ପ୍ରଖ୍ୟାତ ଆଗ୍ରା ସହରରେ ବସବାସ କରୁଥିଲେ । କେହି କେହି କେତେ ପୁରୁଷଧରି ବାସିନ୍ଦା ତ କେତେକ ଏବେ ଅଳ୍ପ ଦିନ ହେବ ଘର କରି ରହିଛନ୍ତି । ବସନ୍ତ ଏବଂ ପ୍ଲେଗ ଭଳି ମହାମାରୀର ପ୍ରାଦୁର୍ଭାବକୁ ବାଦ୍ ଦେଲେ ସେମାନଙ୍କର ଜୀବନ ଯାତ୍ରା ନିର୍ବିଘ୍ନ କହିଲେ ଚଳେ । ବାଦଶାହୀ ଅମଳର କିଲ୍ଲା ଏବଂ ଇମାରତ୍ ଦେଖିବା ଏମାନଙ୍କର ଶେଷ ହୋଇ ଯାଇଛି । ଅମୀର, ବାଦଶାହାମାନଙ୍କର ଗ୍ଲେଟ, ବଡ଼, ମହଲ, ଭଙ୍ଗା ଓ ଅଭଙ୍ଗା, ଯେଉଁଠାରେ ଯେତେ କବର ଅଛି ସେସବୁର ନିର୍ଘଣ୍ଟ ତାଲିକା ସେମାନଙ୍କର କଣ୍ଠସ୍ଥ ହୋଇ ଯାଇଛି । ଏପରିକି ବିଶ୍ୱବନ୍ଦିତ ତାଜମହଲରେ ମଧ୍ୟ ସେମାନେ କିଛି ନୂତନତ୍ୱର ସନ୍ଧାନ ପାଇ ପାରନ୍ତି ନାହିଁ । ସନ୍ଧ୍ୟାବେଳେ ଉଦାସ ସଜଳ ଚକ୍ଷୁରେ ଜ୍ୟୋତ୍ସ୍ନା ରାତିରେ ଅର୍ଦ୍ଧନିମୀଳିତ ନେତ୍ରରେ ଏବଂ ଅନ୍ଧକାର ରାତ୍ରିରେ ଯମୁନାର ଏପାରିରେ ବସି ସେପାରିର ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ପାଇଁ ଯେତେ ସବୁ ପ୍ରଚଳିତ ପ୍ରବାଦ ଅଛି ତାହା ସବୁ ସେମାନେ ଅଙ୍କେ ନିଭାଇ ସାରିଛନ୍ତି । କେଉଁ ମହାପୁରୁଷ କେବେ କ'ଣ କହିଥିଲେ, କେଉଁ କବି କି ପ୍ରକାର କବିତା ଲେଖିଥିଲେ, ଆବେଗର ପ୍ରାବଲ୍ୟ ହେତୁ କେଉଁ ରସିକ ବ୍ୟକ୍ତି ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଗଳାରେ ଦଉଡ଼ି ଦେବାକୁ ଯାଇଥିଲେ, ଏସବୁ ତଥ୍ୟ ସେମାନଙ୍କୁ ଭଲ ଭାବରେ ଜଣା । ଇତିବୃତ୍ତ କହିବା ଦିଗରୁ ସାମାନ୍ୟ ତ୍ରୁଟି ସେମାନଙ୍କର ନ ଥାଏ । କେଉଁ ବେଗମଙ୍କର କେଉଁଠାରେ ଏକୁଡ଼ି ଶାଳ ଥିଲା, କେଉଁ ଜାଠ ସର୍ଦ୍ଦାର କେଉଁଠାରେ ଲାତଗ୍ରାଧ ଖାଇଥିଲା, କାନ୍ଥରେ ଲାଗିଥିବା କଳା ଚିହ୍ନ କେତେ ବର୍ଷ ତଳର, କେଉଁ ଦସ୍ୟୁ କେତେ ହୀରା-ମାଣିକ୍ୟ ଲୁଣ୍ଠନ କରିନେଇଥିଲା, ଏବଂ ସେସବୁର ଆନୁମାନିକ ମୂଲ୍ୟ କେତେ ହୋଇ ପାରିବ ପ୍ରଭୃତି ଏଠିକାର ଶ୍ରେଷ୍ଠ ଶ୍ରେଷ୍ଠ ପୁଅ, ଝିଅମାନଙ୍କୁ ମଧ୍ୟ ଅଜଣା ନଥାଏ ।

ଏହି ଜ୍ଞାନ ଏବଂ ନିଶ୍ଚିନ୍ତତାର ମଝିରେ ହଠାତ୍ ଦିନେ ବଙ୍ଗାଳୀ ସମାଜରେ ଶୃଙ୍ଖଳା ଦେଖା ଦେଲା । ପ୍ରତ୍ୟେକ ଦିନ ମୁସାଫିର ଦଳ ଦଳ ହୋଇ ଆସନ୍ତି ଓ ଯାଆନ୍ତି । ଆମେରିକାରୁ ଆସୁଥିବା [illegible]ମାନଙ୍କଠାରୁ ଶ୍ରୀ ବୃନ୍ଦାବନ ଧାମରୁ ଫେରନ୍ତା ବୈଷ୍ଣବମାନେ ଦଳ ଦଳ ହୋଇ ମଝିରେ ଭିଡ଼ ଜମାନ୍ତି । ସେଥି ପ୍ରତି କାହାର ଆଗ୍ରହ ନଥାଏ । ଦିନ ପରେ ଦିନ ଗଡ଼ିଯାଏ । ଏପରି ସମୟରେ ଜଣେ ପ୍ରୌଢ଼ ଭଦ୍ର ବଙ୍ଗାଳୀ ସାହେବ ତାଙ୍କର ଶିକ୍ଷିତା, ସୁରୂପା ଏବଂ ପୂର୍ଣ୍ଣଯୌବନା କନ୍ୟାଙ୍କୁ ଘେନି ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ସହରର ଗୋଟିଏ ପାଖରେ ବିରାଟ କୋଠାଟିଏ ଭଡ଼ା ନେଇ ରହିଲେ । ସାଙ୍ଗରେ ତାଙ୍କର ବେହେରା, ବାବୁର୍ଚ୍ଚି, ଦରୁଆନ, ଦାସୀ, ଚାକର ଏବଂ ପୂଜାରୀ ପ୍ରଭୃତି ଆସିଲେ । ଗାଡ଼ି,

ଘୋଡ଼ା, ମଟର, ସହିସ, ଡ୍ରାଇଭର, କୋଚମ୍ୟାନ ପ୍ରଭୃତି ଏତେ ବଡ଼ କୋଠାର ଫାଙ୍କା ଘରଗୁଡ଼ିକର କଣେ କଣେ ଯେପରି ଯାଦୁ ବିଦ୍ୟା ଫଳରେ ଭର୍ତ୍ତି ହୋଇ ଗଲା ପରି ଜଣାଗଲେ । ଭଦ୍ରବ୍ୟକ୍ତିଙ୍କ ନାମ ଆଶୁତୋଷ ଗୁପ୍ତ । ଝିଅଟିର ନାମ ମନୋରମା । ଅତି ସହଜରେ ଜଣାପଡ଼ିଗଲା ଯେ ସେମାନେ ବଡ଼ ଲୋକ । କିନ୍ତୁ ଉପରେ ଯେଉଁ ଗୃଙ୍ଖଳା କଥା ଉଲ୍ଲେଖ କରାଗଲା ତାହା ସେମାନଙ୍କର ଧନ ଏବଂ ବଡ଼ଲୋକୀ ପାଇଁ, କିମ୍ବା ମନୋରମାର ରୂପ ଓ ଉଚ୍ଚଶିକ୍ଷାପାଇଁ ଯେତେଟା ନୁହେଁ ବରଂ ଅଧିକ ଆଶୁବାବୁଙ୍କର ଭଦ୍ର ଆଚରଣ ପାଇଁ । ସେ ଝିଅକୁ ସଙ୍ଗରେ ଧରି ଖୋଜି ଖୋଜି ଗ୍ରାମର ସମସ୍ତ ବ୍ୟକ୍ତିଙ୍କୁ ସାକ୍ଷାତ୍ କଲେ । କହିଲେ—ସେ ହେଉଛନ୍ତି ଅସୁସ୍ଥ ବ୍ୟକ୍ତି । ସେମାନଙ୍କର ଅତିଥି । ସୁତରାଂ ଯଦି ସେମାନେ ଦୟାକରି ତାଙ୍କୁ ସେମାନଙ୍କ ଦଳକୁ ଟାଣି ନ ନେବେ ତେବେ ଏହି ପ୍ରବାସରେ ସେ ନିର୍ବାସନ ଦଣ୍ଡ ପାଇଲା ଭଳି ମନେ କରିବେ । ମନୋରମା ଯାଇ ଘର ଭିତରେ ପଶି ଝିଅମାନଙ୍କ ସହିତ ଆଳାପ ପରିଚୟ କରି ଆସିଲା । ସେ ମଧ୍ୟ ଅସୁସ୍ଥ ପିତାଙ୍କ ତରଫରୁ ଅନୁନୟ ବିନୟ ହୋଇ ପ୍ରାର୍ଥନା କରି କହିଲା ଯେ—ସେମାନେ ଯେପରି ସେମାନଙ୍କୁ ପର ବୋଲି ମନେ ନ କରନ୍ତି । ଏହିପରି ଆହୁରି କେତେ କେତେ ରୁଚିକର ମିଠା ମିଠା କଥା ସେ ଦୁହେଁ କହି ବୁଲିଲେ ।

ସମସ୍ତେ ଶୁଣି ଖୁସି ହେଲେ । ତାହା ପରଠାରୁ ଆଶୁବାବୁଙ୍କ ମଟରଗାଡ଼ି ଯେକୌଣସି ମୁହୂର୍ତ୍ତରେ ଯାହା ତାହା ଘରକୁ ଯିବା ଆସିବା କରି ପୁଅ ଓ ଝିଅମାନଙ୍କୁ ଆଶୁବାବୁଙ୍କ ଘରକୁ ନବା ଆଣିବା କରିବାକୁ ଲାଗିଲା । ସେମାନଙ୍କୁ ଆଣି ପହଞ୍ଚାଇ ଦେବା ପରେ ଆରମ୍ଭ ହୁଏ ଆଳାପ ଆଲୋଚନା, ଖାଇବା ପିଇବା, ଗୀତ ବାଜଣା, ଦର୍ଶନୀୟ ବସ୍ତୁ ଗୁଡ଼ିକ ପୁନଃ ପୁନଃ ଦର୍ଶନ । ଏହା ଫଳରେ ଆତ୍ମୀୟତା ଏପରି ଜମି ଉଠିଲା ଯେ ସେମାନେ ଯେ ବିଦେଶୀ କିମ୍ବା ବଡ଼ ଲୋକ ଏକଥା ଯେପରି ଅନ୍ୟେ ଅନ୍ୟେ ସମସ୍ତେ ଭୁଲିଯିବାକୁ ସପ୍ତାହଟିଏ ପୂରା ଲାଗିଲା ନାହିଁ । କିନ୍ତୁ ଗୋଟିଏ କଥା କେହି ସଙ୍କୋଚ କିମ୍ବା ପଚ୍ଛରବାଟା ବାହୁଲ୍ୟ ହେତୁ ପଚାରି ପାରନ୍ତି ନାହିଁ । ସେଇଟା ହେଲା ସେମାନେ ହିନ୍ଦୁ ଅବା ବ୍ରାହ୍ମ ସମାଜ ଅନ୍ତର୍ଗତ । ବିଦେଶୀମାନଙ୍କ ନିକଟରେ ଅବଶ୍ୟ ଏ ପ୍ରଶ୍ନର ପ୍ରୟୋଜନ ନାହିଁ । ତେବେ ଆଚାର, ବ୍ୟବହାରରୁ ଯେତେଟା ବୁଝା ପଡ଼େ ସେଥିରୁ ସମସ୍ତେ ଉପଲବ୍ଧି କରନ୍ତି ଯେ ସେମାନେ ଯେଉଁ ସମାଜର ଅନ୍ତର୍ଭୁକ୍ତ ହୁଅନ୍ତୁ ନା କାହିଁକି ଅଧିକାଂଶ ଉଚ୍ଚଶିକ୍ଷିତ ଭଦ୍ର ବଙ୍ଗାଳୀଙ୍କ ଭଳି ସେମାନଙ୍କର ଖାଇବା, ପିଇବାରେ ବାଛ ବିଚାର ରଖନ୍ତି ନାହିଁ । ଘର ଭିତରେ ମୁସଲମାନ ବାବର୍ଚ୍ଚି ଥିବା ଜାଣି ନ ଥିଲେ ମଧ୍ୟ ଏକଥା ସମସ୍ତେ ଜାଣିଥିଲେ ଯେ ଏତେ ବୟସ ପର୍ଯ୍ୟନ୍ତ ଯିଏ ନିଜ ଝିଅକୁ ଅବିବାହିତା ରଖି, କଲେଜରେ ଉଚ୍ଚଶିକ୍ଷା ଦେଇ ପାରିଛନ୍ତି ସେ ମୂଳତଃ ଯେ କୌଣସି ସମାଜର ଅନ୍ତର୍ଗତ ହୁଅନ୍ତୁ ନା କାହିଁକି ସଂକୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ ।

ଅବିନାଶ ମୁଖାର୍ଜୀ କଲେଜର ପ୍ରଫେସର । ବହୁଦିନ ହେବ ତାଙ୍କର ସ୍ତ୍ରୀବିୟୋଗ ଘଟିଛି । ସେ ଆଉ ବିବାହ କରିନାହାନ୍ତି । ଘରେ ଦଶ ବର୍ଷର ପୁଅଟିଏ । କଲେଜରେ ପାଠପଢ଼ାଇ ସାରିଲା ପରେ ବନ୍ଧୁବାନ୍ଧବ ଧରି ମଉଜ କରି ବୁଲନ୍ତି । ଅବସ୍ଥା ସ୍ୱଚ୍ଛଳ । ନିଶ୍ଚିନ୍ତ ଆଉ ନିରୁଦ୍‌ବେଗ ଜୀବନ । ଦୁଇବର୍ଷ ତଳେ ବାପା ଶାଳିଟିଏ ମେଲେରିଆରେ ଆକ୍ରାନ୍ତ ହୋଇ ବାୟୁ ପରିବର୍ତ୍ତନ ପାଇଁ ଭଉଣୀଙ୍କ ପାଖକୁ ଆସିଥିଲା । ଜ୍ୱର ଗୁଡ଼ିଲା । କିନ୍ତୁ ଭଉଣୀ ଗୁଡ଼ିଲେ ନାହିଁ । ବର୍ତ୍ତମାନ ଘରେ ସେ ଜଣେ ମାଲିକାଣୀ । ପିଲାଟିକୁ ମଣିଷ କରିବା ଘର ସଂସାର ଦାୟିତ୍ୱ ସମ୍ଭାଳିବା ଦେଖି ବନ୍ଧୁମାନେ ସେ ଦୁହିଁଙ୍କ ସମ୍ପର୍କ ନେଇ ପରିହାସ କରି ଆଲୋଚନା କରନ୍ତି । ସେକଥା ଶୁଣି ଅବିନାଶ ହସିଦିଅନ୍ତି । କହନ୍ତି —ଭାଇ, ମିଛଟାରେ ଲଜ୍ଜା ଦିଅ ନାହିଁ । ମୋ କପାଳ ! ଚେଷ୍ଟାରେ ମୋର ତ୍ରୁଟି ନାହିଁ । ବର୍ତ୍ତମାନ ଭାବୁଛି ଧନ ଅପବ୍ୟୟ ହେବୁ ତ ନାସ୍ତିକ ହାତରେ ଜୀବନ ଗଲାପରି—ସେହା ମଧ୍ୟ ମୋ ପକ୍ଷରେ ଉତ୍ତମ ପନ୍ଥା ।

ଅବିନାଶ ବାବୁ ସ୍ତ୍ରୀଙ୍କୁ ବିଶେଷ ଭଲ ପାଉଥିଲେ । ତେଣୁ ସ୍ତ୍ରୀର ବିଭିନ୍ନ ଭଙ୍ଗୀରେ ଫଟୋରେ ଘର କାନ୍ଥ ସାରା ଭରପୂର । ଶୋଇବା ଘର କାନ୍ଥରେ ତାଙ୍କର ଗୋଟିଏ ବଡ଼ ଫଟୋ ଟଙ୍ଗା ହୋଇଛି । ଅଏଲପେଣ୍ଟିଂ । ମୂଲ୍ୟବାନ ଫ୍ରେମ୍‌ରେ ବନ୍ଧା ହୋଇଛି । ଅବିନାଶ ବାବୁ ପ୍ରତ୍ୟେକ ବୁଧବାର ସକାଳେ ତହିଁରେ ମାଳଟିଏ ଝୁଲାଇ ଦିଅନ୍ତି । ସେହିଦିନ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହୋଇଥିଲା ।

ଅବିନାଶ ବାବୁ ସଦା ବେଳେ ହସ ଖୁସିର ମଣିଷଟିଏ । ତାସ୍ ପଶା ଖେଳିବାରେ ତାଙ୍କର ଅତ୍ୟଧିକ ଆସକ୍ତି । ସେଥିପାଇଁ ଛୁଟିଦିନ ମାନଙ୍କରେ ତାଙ୍କ ଘରେ ସାଙ୍ଗ ଜନ ସମାଗମ ହୋଇଥାଏ । ଆଜି କ'ଣ ଗୋଟାଏ ପର୍ବ ଉପଲକ୍ଷେ କଲେଜ ବନ୍ଦ ଥିଲା । ଖାଇ ସାରିବା ପରେ ପ୍ରଫେସର ମହଲ ଆସି ପହଞ୍ଚି ଯାଇଛନ୍ତି । ଦୁଇ ତିନିଜଣ ତଳେ ବିଛା ଯାଇଥିବା ବିଛଣା ଉପରେ ପଶା ମାଲି ଖେଳିବାରେ ଲାଗିଯାନ୍ତି ତ ଆଉ ଜଣେ ଦୁଇଜଣ ମୁହଁ ମାଡ଼ି ତାହା ନିରୀକ୍ଷଣ କରିବାରେ ଲାଗିଥାନ୍ତି । ବାକୀ ଅନ୍ୟମାନେ ସେମାନଙ୍କର ବିଦ୍ୟା ଓ ବୁଦ୍ଧି ତୁଳନାରେ ଚୌଧୁରୀ ଓ ମୁନସଫ ମାନଙ୍କୁ ସରକାର ଦେଉଥିବା ବେତନ ବିଷୟରେ ଆଲୋଚନା କରି ସରକାରଙ୍କୁ ସମାଲୋଚନା କରିବାରେ ଲାଗିପଡ଼ିଥାନ୍ତି । ଏହି ସମୟରେ ବାହାରେ ମଟର ଗାଡ଼ିଟିଏ ଅଟକିବାର ଶବ୍ଦ ଶୁଭିଗଲା । ପରକ୍ଷଣରେ ଅଶ୍ୱିନୀ ବାବୁ କନ୍ୟାଙ୍କୁ ଧରି ପ୍ରବେଶ କରିବା କ୍ଷଣି ସମସ୍ତେ ସମ୍ମାନର ସହିତ ତାଙ୍କୁ ଅଭ୍ୟର୍ଥନା ଜଣାଇଲେ । ଖେଳଟା ବନ୍ଦ ରହିଗଲା । ଅବିନାଶ ବାବୁ ବିନୟର ସହିତ ହାତ ଯୋଡ଼ି କହିଲେ—ମୋର ପରମ ସୌଭାଗ୍ୟ ଆପଣଙ୍କ ପଦଧୂଳି ମୋ ଘରେ ପଡ଼ିଲା । କିନ୍ତୁ ହଠାତ୍ ଏପରି ଅସମୟରେ ଆସିଗଲେ ଯେ ? କହି ସେ ମନୋରମ ଆଡ଼କୁ ଖଣ୍ଡିଏ ଚୌକି ଆଗେଇ ଦେଲେ ।

ଅଶ୍ୱିନୀବାବୁ ନିକଟରେ ପଡ଼ିଥିବା ଆରାମ ଚୌକିଟା ଉପରେ ଆପଣାର ସୁବିପୁଳ ତନୁକୁ ମେଲାଇ ଦେଇ ଅକାରଣରେ ବଡ଼ ପାଟିରେ ହସି ଉଠି କହିଲେ ଆଶୁ ବୈଦ୍ୟର ପୁଣି ଅସମସ୍ଥ ? ଏତେ ବଡ଼ ଦୁର୍ନାମ ମୋ ଶ୍ରେଷ୍ଠ ମାଆ ମଧ୍ୟ ମୋତେ ଦେଇପାରେ ନାହିଁ ଅବିନାଶ ବାବୁ ?

ମନୋରମା ହସି ହସି ମୁହଁକୁ ତଳକୁ କରି କହିଲା—କ'ଣ ଯେ ବାପା ଆପଣ କୁହନ୍ତି ?

ଅଶ୍ୱିନୀବାବୁ କହିଲେ—ତେବେ ଥାଉ, ଶ୍ରେଷ୍ଠ ମାଆର କଥା । କନ୍ୟାର ଆପତ୍ତି । କିନ୍ତୁ ଏହାଠାରୁ ଗୋଟାଏ ଭଲ ଉଦାହରଣ ମୋ ମାଆବୁଢ଼ୀ ବାପର ଦେବା ପାଇଁ ମଧ୍ୟ ସାଧ୍ୟ ନାହିଁ । ଏତିକି କହି ଆପଣା ରସିକତାର ପ୍ରମାଣ ଦେବାକୁ ଯାଇ ଘର ଫଟାଇ ହସି ଉଠିଲେ । ହସ ବନ୍ଦ ହେବା ପରେ କହିଲେ—କିନ୍ତୁ କ'ଣ କହିବ ଆଜ୍ଞା ! ବାତ ହେଉ ପଛେ କହିଲେ ଚଳିବ । ନଚେତ୍ ଆପଣ ମୋର ସେଉଁ ପାଦଧୂଳିର ଏତେ ବଡ଼ ଗୌରବ ବଢ଼ାଇ ବସିଲେ, ତାହାକୁ ଓଲାଇବା ପାଇଁ ଆପଣଙ୍କୁ ଗୋଟାଏ ଚୌକିର ରଖିବାକୁ ପଡ଼ନ୍ତା ଅବିନାଶବାବୁ । ଆଜି କିନ୍ତୁ ଆଉ ବସିବାର ଶକ୍ତି ନାହିଁ—ବର୍ତ୍ତମାନ ଉଠିବାକୁ ହେବ ।

ହଠାତ୍ ଏପରି ପ୍ରସ୍ଥାନର ପ୍ରସ୍ତାବ ଦେଖି ସମସ୍ତେ ତାଙ୍କ ମୁହଁକୁ ଚାହିଁ ରହିଲେ । ଅଶ୍ୱିନୀବାବୁ କହିଲେ—ମୋର ଗୋଟାଏ ନିବେଦନ ଅଛି । ମନ୍ତ୍ରୁଙ୍କ ପଇବା ଆଶାରେ ମୋ ମାଆକୁ ମଧ୍ୟ ସଙ୍ଗରେ ଟାଣି ଆଣିଛି । କାଲି ତ ଛୁଟି ଅଛି । ସନ୍ଧ୍ୟାରେ ମୋ ବସାରେ ସାମାନ୍ୟ ଗାନବାଜଣାର ବନ୍ଦୋବସ୍ତ କରିଛି । ସପରିବାର ଯିବାକୁ ପଡ଼ିବ । ତା ପରେ ସମନ' ମୁହଁ ମିଠାର ଆୟୋଜନ······

ଝିଅକୁ କହିଲେ—ମଣି, ଘର ଭିତରକୁ ଯାଇ ଟିକିଏ ଅନୁମତିଟା ଆଦାୟ କରି ଆଣିଲୁ ମାଆ । ତେଣେ କଲେ ଚଳିବ ନାହିଁ । ଆଉ ଗୋଟାଏ କଥା, ମାଇଁ ୟଙ୍ଗ୍ ଫ୍ରେଣ୍ଡସ ଧୀ ମାନଙ୍କ ପାଇଁ ନ ହେଲେ ମଧ୍ୟ ଆମ ସୁହୃତମାନଙ୍କ ପାଇଁ ଦୁଇରକମର ଖାଇବାର ବ୍ୟବସ୍ଥା···ଅର୍ଥାତ୍ ଯହିଁ ପ୍ରେକଷ୍ଟସ ନ ଥାଏ ତ···ବୁଝିପାରିଲେ ତ ଆଜ୍ଞା ?

ସମସ୍ତେ ବୁଝି ପାରିଲେ । ଏକସ୍ୱରରେ ସମସ୍ତେ କହିଉଠିଲେ ସେମାନଙ୍କର [illegible] ନାହିଁ ।

ଅଶ୍ୱିନୀବାବୁ ଖୁସି ହୋଇ କହିଲେ—ନ ରହିବାର କଥା ତ । ଝିଅକୁ ଉଦ୍ଦେଶ୍ୟ କରି କହିଲେ—ଖାଇବା ସମ୍ପର୍କରେ ଘର ଭିତରୁ ମାଆ ଲକ୍ଷ୍ମୀଙ୍କର ମଧ୍ୟ ମତାମତ ବୁଝି ଆସିବାପାଇଁ ଯେପରି ଭୁଲ ନଯାଉ । ପ୍ରତ୍ୟେକଙ୍କ ଘରକୁ ଯାଇ ସମସ୍ତଙ୍କର ଅଭିରୁଚି ବୁଝି ଘରକୁ ଫେରୁ ଫେରୁ ବୋଧହୁଏ ଆମକୁ ସନ୍ଧ୍ୟା ହୋଇଯିବ । ଟିକିଏ ଶୀଘ୍ର କାମଟା ଶେଷ କରି ଆସ ତ ମାଆ···

ମନୋରମା ଭିତରକୁ ଯିବା ପାଇଁ ଉଠିଥିଲା ବେଳେ ଅବିନାଶବାବୁ କହିଲେ—ମୋର ଘରଟା ଅନେକ ଦିନ ହେବ ଶୂନ୍ୟ । ଶାଳୀଟିଏ ଅଛି । କିନ୍ତୁ ସେ ବାଇବା । ଗୀତ ଶୁଣିବା ପାଇଁ ତାର ପ୍ରବଳ ଆଗ୍ରହ । ତେଣୁ ଯିବା ସୁନିଶ୍ଚିତ । କିନ୍ତୁ ଖାଇବା···

ଆଶୁବାବୁ ସଙ୍ଗେ ସଙ୍ଗେ କହି ଉଠିଲେ—ତହିଁର ମଧ୍ୟ ଅଭାବ ହେବ ନାହିଁ ଅବିନାଶବାବୁ । ମୋ ମାଆ ମଣି ରହିଛି ଯେ···ମାଛ ମାଂସ ଏପରିକି ପିଆଜ ରସୁଣ ପର୍ଯ୍ୟନ୍ତ ସେ ମଧ୍ୟ ସ୍ପର୍ଶ କରେ ନାହିଁ ।

ଅବିନାଶ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ—ସେ କ'ଣ ମାଛ ମାଂସ ଆଦୌ ଖାଆନ୍ତି ନାହିଁ ?

ଆଶୁବାବୁ କହିଲେ—ଖାଏ ସବୁ । କିନ୍ତୁ ଆମ ବାବାଜୀର ଇଚ୍ଛା ବିରୁଦ୍ଧରେ । ସେ ହେଲା ଆମର ଏକ ପ୍ରକାର ସନ୍ନ୍ୟାସୀ ଧରଣର ଲୋକ···

ଆଖି ପଲକ ଭିତରେ ମନୋରମାର ମୁହଁ ରଙ୍ଗ ହୋଇ ଉଠିଲା । ସେ ପିତାଙ୍କର ଅସମାପ୍ତ ବାକ୍ୟ ଭିତରେ ବାଧାସୃଷ୍ଟି କରି କହି ଉଠିଲା—ତୁମେ ଏ ସବୁ କ'ଣ କହି ଚାଲିଛ ବାପା !···

ଆଶୁବାବୁ ଟିକିଏ ଅତମତ ହୋଇଗଲେ । ତଥାପି କିନ୍ତୁ କନ୍ୟାର ସ୍ୱାଭାବିକ କଣ୍ଠ ସ୍ୱରର ମୃଦୁତା, ତାଙ୍କ ଭିତରର ଉଗ୍ରତାକୁ ଆବୃତ କରି ରଖି ପାରିଲା ନାହିଁ ।

ଏହା ପରେ ଆଉ କଥାବାର୍ତ୍ତା ଜମିଲା ନାହିଁ । ଆଉ ଦୁଇ ଚାରି ମିନିଟ୍ ଯାହା ସେମାନେ ବସି ରହିଲେ । ଆଶୁ ବାବୁ କଥା କହିଲେ ମଧ୍ୟ ମନୋରମା ଉପରି ବିମନା ହୋଇ ବସି ରହିଲା । ଉଭୟେ ଚାଲିଗଲା ପରେ କିଛି ସମୟ ପାଇଁ ଯେପରି ସମସ୍ତଙ୍କ ମନରେ ବିପନ୍ନତାର ଛାପ ରହିଗଲା ।

ବନ୍ଧୁମାନଙ୍କ ଭିତରୁ କେହି କାହାକୁ ସ୍ପଷ୍ଟ କରି କିଛି କହିଲେ ନାହିଁ । କିନ୍ତୁ ସମସ୍ତେ ଭାବିବାକୁ ଲାଗିଲେ ହଠାତ୍ ଏଇ ବାବାଜୀ ଜଣକ କେଉଁଠୁ ଆସିଲେ ? ଆଶୁ ବାବୁଙ୍କର ତ ପୁଅ ନାହିଁ । ମନୋରମା ଏକମାତ୍ର ସନ୍ତାନ ବୋଲି ସମସ୍ତେ ଜାଣନ୍ତି । ବର୍ତ୍ତମାନ ସୁଦ୍ଧା ସେ କୁମାରୀ । ଯଦିଓ କଥାଟା ସରଳ ଭାବରେ ପ୍ରଶ୍ନ କରି କେହି ବୁଝି ପାରିଲେ ନାହିଁ ସତ, ତଥାପି ଏ ସମ୍ବନ୍ଧରେ ସନ୍ଦେହର ପ୍ରଶ୍ନ କାହା ମନରେ ଉଦୟ ହୋଇ ନାହିଁ । ତେବେ ?

ଏହି ସନ୍ନ୍ୟାସୀ ଧରଣର ବାବାଜୀ ଜିଏ ହୁଅନ୍ତୁ ନା କାହିଁକି ଯେଉଁଠି ରହନ୍ତୁ ନା କାହିଁକି, ସେ କିନ୍ତୁ ସହଜ ଧରଣର ବ୍ୟକ୍ତି ନୁହନ୍ତି । କାରଣ ତାଙ୍କର ନିଷେଧାଜ୍ଞା ନୁହେଁ କେବଳ ଅନିଚ୍ଛା ଉପରେ ଏତେ ବଡ଼ ଗୋଟାଏ ବିଳାସୀ ଓ ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତିଙ୍କର ଏକମାତ୍ର ଶିକ୍ଷିତା କନ୍ୟାର ମାଛ ମାଂସ, ପିଆଜ ରସୁଣର ଭୋଜନ ଏକବାରେ ବନ୍ଦ ହୋଇ ଯାଇ ପାରିଛି ।

ଏଥିରେ ଲଜ୍ଜ୍ୟା ପାଇବାର କମ୍ବା ଗୋପନକରିବାର କ'ଣ ଅଛି ଅଛୁ ? ତଥାପି ପିତା ସଙ୍କୋଚରେ ଜଡସଡ଼ ହୋଇଗଲେ, କନ୍ୟା ଆରକ୍ତ ମୁଖରେ ସ୍ତବ୍ଧ ହୋଇ ରହିଲା । ଘଟଣାଟା ଯେପରି ସମସ୍ତଙ୍କ ମନରେ ଅବାଞ୍ଛିତ ଏବଂ ଅପ୍ରୀତିକର ରହସ୍ୟ ଭଳି ଖେଳିବାକୁ ଲଗିଲା । ଆଗନ୍ତୁକ ପରିବାର ସହିତ ମିଳାମିଶାର ଯେଉଁ ସହଜ ଓ ସ୍ୱଚ୍ଛନ୍ଦ ଧାରା ପ୍ରଥମରୁ ପ୍ରବାହିତ ହେବାକୁ ଆରମ୍ଭ କରିଥିଲା, ତହିଁରେ ଅକସ୍ମାତ ଯେପରି ଗୋଟାଏ ବାଧା ଆସି ଉପୁଜିଲା ।

ମନେହୋଇଥିଲା ଆଶୁବାବୁ ବୋଧହୁଏ ସହରର କୌଣସି ବ୍ୟକ୍ତିଙ୍କୁ ବାଦ ଦେଇ ନଥିବେ । କିନ୍ତୁ ଦେଖାଗଲା ବଙ୍ଗାଳୀମାନଙ୍କ ଭିତରେ ଯେଉଁମାନେ ବିଶିଷ୍ଟ ସେହିମାନେ ହିଁ ନିମନ୍ତ୍ରିତ ହୋଇଛନ୍ତି । ପ୍ରଫେସର ଦଳ ଏକାଠି ହୋଇ ପହଞ୍ଚିଲେ । ତାହା ପୂର୍ବରୁ ସ୍ତ୍ରୀ ଲୋକମାନଙ୍କୁ ମଟର ପଠାଇ ଘରୁ ଅଣା ହୋଇ ସାରିଥିଲା ।

ଗୋଟାଏ ବଡ଼ ଘର ମଝିରେ ମୂଲ୍ୟବାନ କାର୍ପେଟ ବିଛା ଯାଇ ସ୍ଥାନ କରାଯାଇ ଥାଏ । ତାହା ଉପରେ ବସି ଜଣେ ଦୁଇଜଣ ଦେଶୀ ଓସ୍ତାଦ ଯନ୍ତ୍ର ସଜାଡ଼ିବାରେ ବ୍ୟସ୍ତ । ଅନେକ ଗୁଡ଼ିଏ ପୁଅ ଝିଅ ସେମାନଙ୍କୁ ଘେରି ବସିଥାନ୍ତି । ଗୃହ ସ୍ୱାମୀ ଅନ୍ୟତ୍ର କେଉଁଠି ଥିଲେ । ଖବର ପାଇ ଧଇଁସଇଁ ହୋଇ ଆସି ହାଜର ହେଲେ । ଦୁଇ ହାତକୁ ନାଟକୀୟ ଭଙ୍ଗୀରେ ଉପରକୁ ଟେକି କହିଲେ ସ୍ୱାଗତ ଭଦ୍ର ମଣ୍ଡଳୀ ! ମୋଷ୍ଟ ଓ୍ୱେଲକମ୍ ।

ଓସ୍ତାଦଜୀମାନଙ୍କୁ ଇଙ୍ଗିତ କରି ଆସ୍ତେ ଆସ୍ତେ ସେ କହିଲେ—ଭୟ କରିବେ ନାହିଁ, କେବଳ ସେମାନଙ୍କର କେଁ କେଁ ଶବ୍ଦ ଶୁଣାଇବା ପାଇଁ ଆପଣମାନଙ୍କୁ ଡାକି ଆଣି ନାହିଁ । ଶୁଣାଇବ, ଶୁଣାଇବ, ଏପରି ଗୀତ ଶୁଣାଇବ ଯେପରି ଆଜି ମୋତେ ଆପଣମାନେ ଆଶୀର୍ବାଦ କରି ସାରିଲା ପରେ ଯାଇ ନିଜ ନିଜ ଘରକୁ ଫେରିପାରିବେ ।

ଏକଥା ଶୁଣି ସମସ୍ତେ ଖୁସି ହେଲେ । ସଦ୍ୟ ପ୍ରସନ୍ନ ଅବିନାଶ ବାବୁ ହସି ହସି କହିଲେ—କ'ଣ କହୁଛନ୍ତି ଆଶୁବାବୁ ? ଏ ଦୁର୍ଭାଗା ଦେଶର ଯେଉଁ ସମସ୍ତଙ୍କୁ ଚିହ୍ନିଛି, ସେମାନଙ୍କ ବ୍ୟତୀତ ହଠାତ୍ ଏଭଳି ରତ୍ନ ଆପଣ ପାଇଲେ କେଉଁଠୁ ?

: ଆବିଷ୍କାର କରିଛି ମହାଶୟ । ଆବିଷ୍କାର କରିଛି । ଆପଣମାନେ ଯେ ଆଦୌ ଚିହ୍ନନ୍ତି ନାହିଁ ତାହା ନୁହେଁ ହୁଏତ ବର୍ତ୍ତମାନ ଭୁଲି ଯାଇଥିବେ । ଶୁଣିଲେ ଦେଖିବେ । କହି ସମସ୍ତଙ୍କୁ ଏକ ପ୍ରକାର ଠେଲି ଠେଲି ଆଣି ଆସରର ବୈଠକ ଘରେ ପ୍ରବେଶ କରାଇ ଦେଲେ ।

ଲୋକଟି ଦେଖିବାକୁ ଈଷତ୍ ଶ୍ୟାମ ବର୍ଣ୍ଣ କିନ୍ତୁ ରୂପର ଆଉ ଅନ୍ତ ନାହିଁ । ଯେପରି ଦୀର୍ଘ ସରଳ ଦେହ, ସେହିପରି ସମସ୍ତ ଅବୟବର ଲକ୍ଷଣ ସୁନ୍ଦର ଗଢଣ । ନାକ, ଆଖି, ଭ୍ରୂ, କପାଳ, ଏପରିକି ଅଧରର ବଙ୍କା ରେଖାଟି ପର୍ଯ୍ୟନ୍ତ । ଗୋଟିଏ ମଣିଷ ଦେହରେ ଏତେ ଗୁଡ଼ିଏ ସୌନ୍ଦର୍ଯ୍ୟ ପୁଞ୍ଜୀଭୂତ ହେଲେ କି ପ୍ରକାର ବିସ୍ମୟକର ବସ୍ତୁ ହୁଏ ତାହା ଏହି ମନୁଷ୍ୟଟିକୁ ନ ଦେଖିଲେ କଳ୍ପନା କରିହୁଏ ପାରେ ନାହିଁ । ଶୁଣିଲେ ହଠାତ୍ ଚମକ ଲାଗେ । ବୟସ ବୋଧହୁଏ ବତିଶ ପାଖାପାଖି ହେବ । କିନ୍ତୁ ପାଖରୁ ଯାହି ଦେଖିଲେ ଆହୁରି କମ୍ ଲାଗେ । ଭଦ୍ରବ୍ୟକ୍ତି ଜଣକ ସୋଫାରେ ବସି ମନୋରମା ସହିତ କଥାବାର୍ତ୍ତା କରୁଥିଲେ, ହଠାତ୍ ମଣ୍ଡିତ ହୋଇ ସଙ୍ଗୀ ଅଳ୍ପ ହିକିଏ ହସି କହିଲେ—ଆସନ୍ତୁ ।

ମନୋରମା ଠିଆ ହୋଇ ସଙ୍ଗ ଆଗନ୍ତୁକ ଅତିଥିମାନଙ୍କୁ ନମସ୍କାର କଲା । କିନ୍ତୁ ସମସ୍ତେ ଏତେ ବିଚଳିତ ହୋଇ ପଡ଼ିଲେ ଯେ ପ୍ରତିନମସ୍କାର ଜଣାଇବା ପାଇଁ କାହାର ଖିଆଲ ରହିଲା ନାହିଁ ।

ଅବିନାଶ ବାବୁ ବୟସରେ ବଡ଼ । କଲେଜ ଦିଗରୁ ପଦ ଗୌରବରେ ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠ । ସେ ପ୍ରଥମେ କଥା କହିଲେ—ଆଗ୍ରାରୁ କେବେ ଫେରିଲେ ଶିବନାଥ ବାବୁ ? କାହିଁ ଆମେ ମାନେ ତ କେହି ଖବର ପାଇ ପାରିଲୁ ନାହିଁ ?

ଶିବନାଥ କହିଲେ—ପାଇ ନାହାନ୍ତି ତାହା ହେଲେ ? ଆଶ୍ଚର୍ଯ୍ୟ କଥା ! ତାପରେ ହସ ହସ ମୁହଁରେ କହିଲେ—ମୋ ବାଟ ବୁଝି ଆପଣମାନେ ଏତେ ଉଦ୍‌ବିଗ୍ନ ଥିଲେ ବୋଲି ବିଶ୍ୱାସ କରି ପାରୁ ନାହିଁ, ଅବିନାଶ ବାବୁ ?

ଉତ୍ତର ଶୁଣି ସହିତ ଅବିନାଶବାବୁ ହସିବାକୁ ଚେଷ୍ଟା କରିଥିଲେ କିନ୍ତୁ ତାଙ୍କ ସହକର୍ମୀ ବନ୍ଧୁମାନଙ୍କର ମୁହଁ ସ୍ୱଗରେ ନାଲି ହୋଇ ଉଠିଥିଲା । କାରଣ ଯାହା ହେଉ ନା କାହିଁକି ଏମାନେ ଯେ ଆଗରୁ ଏହି ପ୍ରିୟଦର୍ଶନ ବ୍ୟକ୍ତି ପ୍ରତି ପ୍ରସନ୍ନ ନଥିଲେ ତାହା ଆଗସରୁ ଜଣା ପଡ଼ୁଥିଲେ ମଧ୍ୟ ଏହି ବକ୍ରୋକ୍ତିର ଅନ୍ତରାଳରେ ଏବଂ ଅନ୍ୟ ସମସ୍ତଙ୍କ କଠିନ ମୁଖ ଛବିର ବ୍ୟଞ୍ଜନା ହେତୁ ଏହି ବିରୁଦ୍ଧତା ଏପରି କଷ୍ଟ, ରୂଢ଼ ଏବଂ ପରିଷ୍କାର ହୋଇ ଉଠିଲା ଯେ କେବଳ ମନୋରମା କମ୍ବା ତା ପିତା ନୁହଁନ୍ତି ସଦାନନ୍ଦ ପ୍ରକୃତିର ବ୍ୟକ୍ତି ଅବିନାଶ ବାବୁଙ୍କ ପର୍ଯ୍ୟନ୍ତ ଅପ୍ରତିଭ ହୋଇ ପଡ଼ିଲେ ।

ଘଟଣାଟା କିନ୍ତୁ ଅଧିକ ଅଗ୍ରଗତି ନକରି ଏଇଠାରେ ବନ୍ଦ ହୋଇଗଲା ।

ପାଖ ଘରୁ ଓସ୍ତାଦଜୀଙ୍କର କଣ୍ଠସ୍ୱର ଶୁଣାଗଲା । ପରକ୍ଷଣରେ ଘରର ବୁମାଯ୍ୟା ଆସି କହିଲା ଯେ ସମସ୍ତେ ପ୍ରସ୍ତୁତ । କେବଳ ଆପଣମାନଙ୍କ ଅନୁମତି ବିନା ଗାନ ଆରମ୍ଭ ହୋଇ ପାରୁ ନାହିଁ ।

ପେଷାଦାରୀ ଓସ୍ତାଦୀ ସଙ୍ଗୀତ ସଚରାଚର ଯାହା ହୋଇଥାଏ ଏ କ୍ଷେତ୍ରରେ ମଧ୍ୟ ସେହିପରି ହେଲା । କିନ୍ତୁ କିଛି ସମୟ ପରେ କ୍ଷୁଦ୍ର ପରିସରର ଏହି ସଙ୍ଗୀତ ଆସରରେ, ଅଳ୍ପ କେତେ ଜଣ ଶ୍ରୋତାଙ୍କ ମଝିରେ ସତକୁ ସତ ଶିବନାଥର ଗାନ ଅପୂର୍ବ ଶୁଣାଗଲା । କେବଳ ତାର ଅତୁଳନୀୟ, ଅନବଦ୍ୟ କଣ୍ଠସ୍ୱର ନୁହେଁ, ଏହି ବିଦ୍ୟାରେ ସେ ଯେ ସୁଶିକ୍ଷିତ ଏବଂ ଅସାଧାରଣ ପାରଦର୍ଶୀ ଲାଭ କରି ପାରିଛି କହିବା ବାହୁଲ୍ୟ ମାତ୍ର ହେବ । ତା ଗାନ କରିବାର ଅନାଡ଼ମ୍ବର ସଂଯତ ଭଙ୍ଗୀ, ସ୍ୱରର ସ୍ୱଚ୍ଛନ୍ଦ ସରଳ ଗତି, ମୁହଁରେ ଅଦୃଷ୍ଟପୂର୍ବ ଭାବର ଛାୟା, ଚକ୍ଷୁର ଅଦ୍ଭୁତ ଉଦାସ ଦୃଷ୍ଟି, ସମସ୍ତ ଏକ ସଙ୍ଗରେ କେନ୍ଦ୍ରୀଭୂତ ହୋଇ, ସେହି ସର୍ବାଙ୍ଗୀନ ତାନ-ଲୟ-ପରିଶୁଦ୍ଧ ସଙ୍ଗୀତ ଯେତେବେଳେ ଶେଷହେଲା, ସେତେବେଳେ ମନେ ହେଲା ଶ୍ୱେତଭୁଜା ଯେପରି ତାଙ୍କର ଦୁଇ ହାତରୁ ଆଶୀର୍ବାଦ ଏହି ସାଧକ ମଥାରେ ଅଜାଡ଼ି ଦେବାରେ ଲାଗିଛନ୍ତି ।

କିଛି କ୍ଷଣ ପାଇଁ ସମସ୍ତେ ନୀରବ ଏବଂ ସ୍ତବ୍ଧ ହୋଇ ରହିଯିବା ପରେ କେବଳ ବୃଦ୍ଧ ଅମୀର ଖାଁ ଧୀରେ ଧୀରେ କହିଲେ—ଐସା କଭି ନହିଁ ଶୁନା ।

ମନୋରମା ପିଲାଟି ଦିନରୁ ଗାନ ବାଜଣା ଚର୍ଚ୍ଚା କରି ଆସିଛି । ସଙ୍ଗୀତ କ୍ଷେତ୍ରରେ ସେ ମଧ୍ୟ ଅପଟୁ ନୁହେଁ । ତା ସାମାନ୍ୟ ଜୀବନ କାଳ ଭିତରେ ସେ ଅନେକ କିଛି ଶୁଣିଛି । କିନ୍ତୁ ସଙ୍ଗୀତ ମୂର୍ଚ୍ଛନାରେ ଯେ ଗୁଣ ଭିତରଟା ଏପରି ଉଲ୍ଲସିତ ହୋଇ ଉଠେ ତାହା ସେ ଉପଲବ୍ଧି କରିପାରି ନଥିଲା । ତା ଦୁଇ ଚକ୍ଷୁରେ ଅଶ୍ରୁ ଭରି ଉଠିଲା ଏବଂ ସେହି ଅଶ୍ରୁକୁ ଲୁଚାଇବା ପାଇଁ ସେ ନୀରବରେ ମୁହଁ ବୁଲାଇ ଉଠି ଚାଲିଗଲା ।

ଅବିନାଶ ବାବୁ କହିଲେ—ଶିବନାଥ ସହଜରେ ଗାଇବାକୁ ଇଚ୍ଛା କରେ ନାହିଁ । ତାର ସଙ୍ଗୀତ ମୁଁ ଆଗରୁ ଶୁଣିଛି । କିନ୍ତୁ ଏହି କେତେ ବର୍ଷ ଭିତରେ ସେ ଯେ ଅସାଧାରଣ ଭାବରେ ଉନ୍ନତି କରି ପାରିଛି !

ହରେନ କହିଲେ—ହଁ ।

ଅକ୍ଷୟ ଇତିହାସର ଅଧ୍ୟାପକ । ବଡ଼ ସଚ୍ଚା ଲୋକ ବୋଲି ବନ୍ଧୁ ମହଲରେ ଖ୍ୟାତ ଅଛି । ଗାନ ବାଜଣା ଭଲ ଲାଗିବାଟା ତାଙ୍କ ମତରେ ଚରିତ୍ରର ଦୁର୍ବଳତା । ନିଷ୍ଠାଳଙ୍କ, ସାଧୁ ବ୍ୟକ୍ତି ସେ । ସେଥିପାଇଁ କେବଳ ନିଜର ନୁହେଁ ପରର ଚାରିତ୍ରିକ ପବିତ୍ରତା ପ୍ରତି ତାଙ୍କର ସଜାଗ ତୀକ୍ଷ୍ଣ ଦୃଷ୍ଟି । ଶିବରାମର ଅପ୍ରତ୍ୟାଶିତ ପ୍ରତ୍ୟାବର୍ତ୍ତନ ଫଳରେ ସହରର ଆବହାଓ୍ୱା ପୁଣି ଯେ କଳୁଷିତ ହୋଇ ଉଠିବ ଏହି ଆଶଙ୍କାରେ ସେ ବିକ୍ଷୁବ୍ଧ ହୋଇ ଉଠିଛନ୍ତି । ବିଶେଷତଃ ଘରମାନଙ୍କରୁ ସ୍ତ୍ରୀ ଲୋକମାନେ ଆସିଛନ୍ତି । ପର୍ଦ୍ଦା ବାହାରକୁ ଆସିବା ଫଳରେ ଏବଂ ଗୀତ ଶୁଣିବା ଓ ଚେହେରା ଦେଖିବା ଦ୍ୱାରା ସେମାନଙ୍କର ଆକର୍ଷଣ ବଢ଼ିଯାଇପାରେ ଏଥିପାଇଁ ତାଙ୍କ ମନ ଅତିଶୟ ଖରାପ ହୋଇ ଉଠିଲା । କହିଲେ—ଗୀତ ଶୁଣିଥିଲି ମଧୁବାବୁଙ୍କର । ଏ ସଙ୍ଗୀତ ଆପଣଙ୍କର କାନକୁ ଭଲ ଶୁଣାଯାଉଛି ସତ କିନ୍ତୁ ଏଥିରେ ପ୍ରାଣ ନାହିଁ ।

ସମସ୍ତେ ନୀରବ ରହିଲେ । କାରଣ ଅଜଣା, ଅଚହ୍ନା ମଧୁବାବୁଠାରୁ ସଙ୍ଗୀତ କେହି ଶୁଣି ନ ଥିଲେ ଏବଂ ଦ୍ୱିତୀୟତଃ ସଙ୍ଗୀତରେ ପ୍ରାଣ ନଥିବାର ପୂର୍ବନିର୍ଦ୍ଦିଷ୍ଟ ଧାରଣା ଅକ୍ଷସ୍ତ ବ୍ୟତୀତ କ ହାର ନଥିଲା । ଗୁଣମୁଗ୍ଧ ଆଶୁବାବୁ ଉତ୍ତେଜିତ ହୋଇ ତର୍କ କରିବାକୁ ପ୍ରସ୍ତୁତ ଥିଲେ କିନ୍ତୁ ଅବିନାଶବାବୁ ଆଖିର ଇସାରାରେ ତାଙ୍କୁ ନିବୃତ୍ତ ରହିବାକୁ ଇଙ୍ଗିତ ଦେଲେ ।

ସଙ୍ଗୀତ ସମ୍ପର୍କରେ ଆଲୋଚନା ଚାଲିଲା । କେବେ କଏ କେଉଁଠାରେ କାହାଠାରୁ ଶୁଣିଥିଲେ ସେ ସବୁର ବାଖ୍ୟା କରିବାକୁ ଓ ବିବରଣୀ ଦେବାକୁ ଲାଗିଲେ । ଆଳାପ ଆଲୋଚନା ଭିତରେ ରାତି ବଢିବାକୁ ଲାଗିଲା । ଭିତରୁ ଖବର ଆସିଲା ସ୍ତ୍ରୀ ଲୋକମାନଙ୍କର ଖାଇବା ସରିଲାଣି ଏବଂ ସେମାନଙ୍କୁ ଯେଝା ଘରକୁ ପଠାଇ ଦିଆ ସରିଲାଣି । ବୃଦ୍ଧ ସଦର ଆଲ୍ଲା ବାବୁ ରାତି ବହୁତ ହେବାରୁ ବିଦାୟ ନେବାକୁ ଚାହାଁଲେ ଏବଂ ଅଜୀର୍ଣ୍ଣ ରୋଗ ଗ୍ରସ୍ତ ମୁନସଫ ବାବୁ ଗ୍ଲାସେ ପାଣି ଏବଂ ପାନ ଦୁଇଖଣ୍ଡ ଧରି ତାଙ୍କ ସାଥୀ ହେଲେ । କେବଳ ରହିଗଲେ ପ୍ରଫେସର ଦଳ । କ୍ରମଶଃ ସେମାନଙ୍କୁ ମଧ ଖାଇବା ପାଇଁ ଡାକରା ଆସିଲା । ଉପର ମହଲାର ଗୋଟାଏ ଖୋଲା ବାରଣ୍ଡାରେ ଆସନ ପକା ହୋଇ ଯାଗା କରାଯାଇ ଥାଏ । ଆଶୁବାବୁ ପ୍ରଫେସର ମାନଙ୍କ ସହିତ ନିଜେ ମଧ ଖାଇବା ପାଇଁ ବସି ପଡ଼ିଲେ । ମନୋରମା ସ୍ତ୍ରୀ ଲୋକମାନଙ୍କୁ ବିଦାୟ ଦେଇ ସାରି ତତ୍ତ୍ୱାବଧାନ କରିବା ପାଇଁ ଆସି ହାଜର ହୋଇଗଲା ।

ଶିବନାଥର କ୍ଷୁଧା ଯେତେଟା ଥାଉ, ଆହାର ପାଇଁ ଇଚ୍ଛା ନଥିଲା । ସେ ନ ଖାଇ କରି ବସାକୁ ଫେରିବା ପାଇଁ ଉଦ୍ୟତ ହେଉଥିଲା, କିନ୍ତୁ ମନୋରମା ତାଙ୍କୁ କୌଣସି ମତେ ଛାଡ଼ି ଦେଲା ନାହିଁ । ବାଧ୍ୟ କରି ସମସ୍ତଙ୍କ ସଙ୍ଗରେ ଧରି ବସାଇ ଦେଲା । ଆୟୋଜନ ବଡ଼ ଲୋକଙ୍କ ଭଳି ହୋଇଥିଲା । ଷ୍ଟେସନରୁ ଠାରୁ ଆସିବା ବାଟରେ ଟ୍ରେନରେ କପରି ଭାବରେ ଶିବନାଥ ସହିତ ଆଶୁବାବୁଙ୍କର ପରିଚୟ ଘଟିଥିଲା ଏବଂ ମାତ୍ର ଦୁଇଦିନ ଦିନ ଆଳାପ ପରିଚୟ ଭିତରେ ସେ ପରିଚୟ କପରି ଘନିଷ୍ଠ ଆତ୍ମୀୟତାରେ ପରିଣତ ହୋଇଛି, ଏହି ବିଷୟ ସବିସ୍ତାରରେ ବର୍ଣ୍ଣନା କରି ସେ ନିଜର କୃତଜ୍ଞ ପ୍ରମାଣ କରିବାକୁ ଯାଇ କହିଲେ ଆଉ ସବୁଠାରୁ ବାହାଦୁରୀ ହେଉଛି ମୋ କାନର । ତାଙ୍କ ଗଳାର ସାମାନ୍ୟ ଅସ୍ପଷ୍ଟ ଗୁଞ୍ଜନ ଧ୍ୱନିରୁ ମୁଁ ନିଶ୍ଚୟ କରି ବୁଝି ପାରୁଥିଲି ଯେ ସେ ହେଉଛନ୍ତି ଗୁଣୀ ଏବଂ ଅସାଧାରଣ ବ୍ୟକ୍ତି । ଏତିକି କହି କନ୍ୟାକୁ ସାକ୍ଷ୍ୟ ଦେବା ପାଇଁ ଆହ୍ୱାନ କରି କହିଲେ— କ'ଣ ମାଆ, କହିଲ ତୋତେ ଶିବନାଥ ବାବୁ ବିରାଟ ଲୋକ ବୋଲି ? କହିଲ ମଣି, ତାଙ୍କ ସହିତ ଆଳାପ ପରିଚୟଟା ରହିବା ଗୋଟାଏ ଭାଗ୍ୟର କଥା ? କନ୍ୟା ଆନନ୍ଦରେ ମୁଖକୁ ଉଦୀପ୍ତ କରି କହିଲା—ହଁ ବାବା, ତୁମେ କହିଥିଲ । ତୁମେ ଗାଡ଼ିରୁ ଓହ୍ଲାଇ ମୋତେ କହିଥିଲ ଯେ······

: କିନ୍ତୁ ଦେଖିଲୁ ଆଶୁବାବୁ···

ବକ୍ତା ହେଉଛନ୍ତି ଅକ୍ଷୟ । ସମସ୍ତେ ଚକିତ ହୋଇ ଉଠିଲେ । ଅବିନାଶ ବ୍ୟସ୍ତ ହୋଇ ବାଧା ଦେବାର ଚେଷ୍ଟା କରି କହିଲେ—ଆହା, ଥାଉନ, ସେ ସବୁ ଆଲୋଚନା ଆଜି ସାଙ୍ଗ—

ଅକ୍ଷୟ ଅଭିଭୂତ ଚକ୍ଷୁ ଲଜ୍ୟା ଏଡ଼ାଇବା ପାଇଁ କେତେଥର ମୁଣ୍ଡ ହଲାଇଲେ । କହିଲେ—ନାହିଁ, ଅବିନାଶବାବୁ ଲୁଚିଦେଲେ ଚଳିବ ନାହିଁ । ଶିବନାଥ ବାବୁର ସବୁ ଘଟଣା ପ୍ରକାଶ କରିଦେବାଟାକୁ ମୁଁ ମୋର କର୍ତ୍ତବ୍ୟ ବୋଲି ମନେ କରୁଛି । ମେ···

: ଆହା-ହା-କ'ଣ କରୁଛ ଅକ୍ଷୟ ? କର୍ତ୍ତବ୍ୟଜ୍ଞାନ ଆମମାନଙ୍କର ଅଛି ସତ । ତାହା ଅନ୍ୟ ଘରେ ପ୍ରକାଶ କଲେ ଚଳିବ । ଏହା କହି ଅବିନାଶବାବୁ ଅକ୍ଷୟଙ୍କୁ ଠେଲି ଦେଇ ବନ୍ଦ କରାଇବାକୁ ଚେଷ୍ଟା କଲେ । କିନ୍ତୁ ସକ୍ଷମ ହୋଇ ପାରିଲେ ନାହିଁ । ଧକ୍କାରେ ଅକ୍ଷୟର ଦେହ ଟଳିଲା । କିନ୍ତୁ କର୍ତ୍ତବ୍ୟନିଷ୍ଠା ହଲିଲା ନାହିଁ । କହିଲା—ଆପଣମାନେ ଜାଣନ୍ତି ମୋର ବୃଥା ସଙ୍କୋଚ ନାହିଁ । କୁମାରୀଙ୍କୁ ମୁଁ ପ୍ରଶ୍ରୟ ଦେଇ ପାରେ ନାହିଁ ।

ଅସହିଷ୍ଣୁ ହୋଇ ହରେନ୍ଦ୍ର କହି ଉଠିଲେ ତାହା କ'ଣ ଆମେମାନେ ଦେବାକୁ ଚାହୁଁ କି ? କିନ୍ତୁ ସେଥିପାଇଁ କ'ଣ ସ୍ଥାନ—କାଳ—ପାତ୍ରର ବିଚାର ନାହିଁ ?

ଅକ୍ଷୟ କହିଲେ—ନା, ସେ ଯଦି ଏ ସହରକୁ ଆଉ ଥରେ ଆସି ନ ଥାନ୍ତେ, ଯଦି ଭଦ୍ର ପରିବାର ସହିତ ଘନିଷ୍ଠ ହେବାପାଇଁ ଚେଷ୍ଟା ନ କରିଥାନ୍ତେ, ବିଶେଷତଃ କୁମାରୀ ମନୋରମା ଯଦି ସଂଶ୍ଳିଷ୍ଟ ନ ରହିଥାନ୍ତେ······

ଉଦ୍‌ବେଗରେ ଆଶୁବାବୁ ବ୍ୟାକୁଳ ହୋଇ ଉଠିଲେ ଏବଂ ଏକ ଅଜଣା ଆଶଙ୍କାରେ ମନୋରମା ମୁହଁ ଫିକା ପଡ଼ିଗଲା ।

ହରେନ୍ଦ୍ର କହିଲେ—It is too much.

ଅକ୍ଷୟ ଜୋରରେ ପାଟିକରି ପ୍ରତିବାଦ କରି କହିଲେ—no it is not.

ଅବିନାଶବାବୁ କହି ଉଠିଲେ—ଆହା-ହା-ତୁମେମାନେ କ'ଣ କରୁଛ ?

ଅକ୍ଷୟ କୌଣସି କଥାକୁ କାନକୁ ନେଲେ ନାହିଁ । କହିଲେ—ଆଗ୍ରାରେ ସେ ଏକଦା ପ୍ରଫେସର ଥିଲେ । ତାଙ୍କର ପ୍ରଥମରୁ ଆଶୁବାବୁଙ୍କୁ କହିଦେବାର ଉଚିତ୍ ଥିଲା କିପରି ସେ ଆପଣାର ସୁକେଶୀ ହରାଇ ବସିଲେ ।

ହରେନ୍ଦ୍ର କହିଲେ—ସେ ନିଜ ଇଚ୍ଛାରେ ଛାଡ଼ି ଦେଲେ । ପଥର ବ୍ୟବସାୟ କରିବାପାଇଁ ।

ଅକ୍ଷୟ ପ୍ରତିବାଦ କରି କହିଲେ—ନା, ମିଛକଥା ।

ଶିବନାଥ ନୀରବରେ ଖାଇବାରେ ଲାଗିଥିଲେ—ଯେପରି ଏହି ବାକ୍‌ବିତଣ୍ଡା ସହିତ ତାଙ୍କର କୌଣସି ସମ୍ପର୍କ ନାହିଁ । ବର୍ତ୍ତମାନ ମୁହଁ ଟେକି ଗୁହିଁଲେ ଏବଂ ଅତ୍ୟନ୍ତ ସରଳ ଭାବରେ କହିଲେ—ମିଛ କଥା ତ ! ପ୍ରଫେସର ନିଜ ଇଚ୍ଛାରେ ନ ଗୁଡ଼ିଲେ ପରିର ଅର୍ଥାତ୍ ଆପଣମାନଙ୍କ ଇଚ୍ଛା ଅନୁସାରେ ଗୁଡ଼ିବାକୁ ହୋଇଥାନ୍ତା । ଆଜି ତାହାହିଁ ତ ହେଲା ।

ଆଶୁବାବୁ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ—କାହିଁକି ?

ଶିବନାଥ କହିଲେ—ମଦ ଖାଇବା ପାଇଁ······

ଅକ୍ଷୟ ଏଥିର ପ୍ରତିବାଦ କଲେ—ନା, ମଦ ଖାଇବା ଅପରାଧ ପାଇଁ ନୁହେଁ, ମାତାଲ ହେବା ଅପରାଧରୁ······

ଶିବନାଥ କହିଲେ—ଯିଏ ମଦ ଖାଏ, ସେ କେବେ ନା କେବେ ମାତାଲ ହେଉଥିବା ସ୍ୱାଭାବିକ । ଯିଏ ହୁଏନା ବୋଲି କହେ ସେ ମିଛକଥା କହେ । ନଚେତ୍ ସେ ମଦ ବଦଳରେ ପାଣି ପିଉଥିବ । ଏହା କହି ହସିବାକୁ ଲାଗିଲେ ।

କ୍ରୁଦ୍ଧ ଅକ୍ଷୟ କଠୋର ଭାବରେ କହିଲେ—ନିଜଙ୍କ ଭଳି ଆପଣ ହୁଏତ ହସି ପାରନ୍ତି କିନ୍ତୁ ଏପରି ଅପରାଧକୁ ଆମେମାନେ କ୍ଷମା କରିପାରିବୁ ନାହିଁ ।

ଶିବନାଥ କହିଲେ—ନ ପାରନ୍ତି ବୋଲି ଅପବାଦ ତ ମୁଁ ଦେଇ ନାହିଁ । ମୋତେ ସ୍ୱେଚ୍ଛାରେ ଚାକିରି ଗୁଡ଼ିବା ପାଇଁ ଆପଣ ଯେ ଯଥେଷ୍ଟ ପରିଶ୍ରମ କରିଥିଲେ ଏହି ସତ୍ୟକୁ ମୁଁ କିନ୍ତୁ ସ୍ୱୀକାର କରେ ।

ଅକ୍ଷୟ କହିଲେ—ଆଶା କରେ ଆଉ ଗୋଟାଏ ସତ୍ୟକୁ ଆପଣ ବୋଧହୁଏ ବର୍ତ୍ତମାନ ସ୍ୱୀକାର କରିବେ । ଆପଣ ହୁଏତ ଜାଣନ୍ତି ନାହିଁ ଯେ ଆପଣଙ୍କର ଅନେକ ଖବର ମୁଁ ଜାଣେ ।

ଶିବନାଥ ମୁଣ୍ଡ ହଲାଇ କହିଲି—ନା, ଜାଣେ ନାହିଁ । ତେବେ ଏକଥା ଜାଣେ ଯେ ଅପର ସମ୍ବନ୍ଧରେ ଜାଣିବା ପାଇଁ ଆପଣଙ୍କର କୌତୂହଳ ଯେପରି ଅପରିସୀମ, ଖବର ସଂଗ୍ରହ କରିବାର ଅଧ୍ୟବସାୟ ମଧ୍ୟ ସେହିପରି ବିପୁଳ । କ'ଣ ସ୍ୱୀକାର କରିବାକୁ ହେବ ଆଦେଶ କରନ୍ତୁ ।

ଅକ୍ଷୟ କହିଲେ—ଆପଣଙ୍କର ସ୍ତ୍ରୀ ଅଛନ୍ତି । ତାଙ୍କୁ ତ୍ୟାଗକରି ଆପଣ ପୁଣି ବିବାହ କରିଛନ୍ତି । ଏକଥା ସତ କି ନୁହେଁ ?

ଆଶୁବାବୁ ହଠାତ୍ ରାଗି ଉଠି କହିଲେ—ଆପଣ ଏ ସବୁ କ'ଣ କହୁଛନ୍ତି ଅକ୍ଷୟ ବାବୁ ? ଏହା କ'ଣ କେବେ ହୁଏ ନା ହୋଇପାରେ ?

ଶିବନାଥ ତାଙ୍କେ ବାଧା ଦେଇ କହିଲେ—କିନ୍ତୁ ସେଇଆ ହିଁ ହୋଇଛି ଆଶୁବାବୁ । ତାଙ୍କୁ ତ୍ୟାଗକରି ମୁଁ ପୁଣି ବିବାହ କରିଛି ।

: କ'ଣ କହୁଛନ୍ତି ! କ'ଣ ଘଟିଥିଲା ?

ଶିବନାଥ କହିଲେ—ବିଶେଷ କିଛି ନୁହେଁ । ସ୍ତ୍ରୀ ଚିର ରୁଗ୍ଣା । ବିଷୟ ଉଦ୍ଧରଣ-ହେବାକୁ ଚାଲିଲା । ସ୍ତ୍ରୀ ଲୋକମାନଙ୍କ ପକ୍ଷରେ ଏଇ ବିଷୟଟି ଯଥେଷ୍ଟ । ସେଥିରେ କ୍ରମାଗତ ରୋଗ ଭୋଗି ଭୋଗି ଦାନ୍ତପନ୍ତି, ବାଳ ପାଚିଗଲା, ସତେ ଯେପରି ସେ ବୁଢ଼ୀ ପାଲଟି ଗଲେ । ଏଥିପାଇଁ ତାଙ୍କୁ ତ୍ୟାଗକରି ମୋତେ ପୁଣି ଆଉ ଜଣକୁ ବିବାହ କରିବାକୁ ପଡ଼ିଲା ।

ଆଶୁବାବୁ ବିହ୍ୱଳ ଚକ୍ଷୁରେ ତାଙ୍କ ମୁହଁ ଆଡ଼କୁ ଚାହିଁ କହିଲେ—ଏଁ ! କେବଳ ଏଇଥିପାଇଁ ? ତାଙ୍କର ଆଉ କିଛି ଅପରାଧ ନାହିଁ ?

ଶିବନାଥ କହିଲେ—ନା, ମିଛରେ ଆଉ କିଛି ଅପବାଦ ଦେଇ ଲାଭ କ'ଣ ଆଶୁବାବୁ ?

ଏହି ନିର୍ମଳ ସ୍ପଷ୍ଟବାଦିତାରେ ଅବିନାଶ ବାବୁ ଯେପରି କ୍ଷିପ୍ତ ହୋଇ ଉଠିଲେ । କହିଲେ—ଲାଭ କ'ଣ ଆଶୁବାବୁ ? ପାଷାଣ୍ଡ ! ତୁମର ଲାଭ, ଲୋକସାନ ଚୁଲିକୁ ଯାଉ । ଥରକ ପାଇଁ ମିଛରେ କୁହ ଯେ ସେ ଗୁରୁତର ଅପରାଧ କରିଥିଲା, ତେଣୁ ତାକୁ ତ୍ୟାଗ କରିଛ । ଥରେ ମିଛ କହିଲେ ତୁମର ପାପ ଆଉ ଅଧିକ ବଢ଼ିଯିବ ନାହିଁ ।

ଶିବନାଥ ରାଗ କଲେ ନାହିଁ, କେବଳ କହିଲେ ମୁଁ କିନ୍ତୁ ଏଭଳି ଅଯଥା କଥା କହିପାରେ ନାହିଁ ।

ହରେନ୍ଦ୍ର ସହସା ଜଳି ଉଠି କହିଲେ—ବିବେକ ବୋଲି ଆପଣଙ୍କର କ'ଣ କିଛି ନାହିଁ ଶିବନାଥ ବାବୁ ?

ଶିବନାଥ ଏଥିରେ ମଧ୍ୟ ରାଗିଲେ ନାହିଁ । ଶାନ୍ତ ସ୍ୱରରେ କହିଲେ ବିବେକ ଅର୍ଥହୀନ । ଗୋଟାଏ ମିଥ୍ୟା ବିବେକର ଶିକୁଳିକୁ ପାଦରେ ଗୁଡ଼ାଇ ମୁଁ ନିଜକୁ ପଙ୍ଗୁ କରିବାର ପକ୍ଷପାତୀ ନୁହେଁ । ଚିରଦିନ ଦୁଃଖ ଭୋଗିବାଟା ଜୀବନ ଧାରଣର ଉଦ୍ଦେଶ୍ୟ ନୁହେଁ ।

ଆଶୁବାବୁ ଗଭୀର ବ୍ୟଥାରେ ଆହତ ହୋଇ କହିଲେ—କିନ୍ତୁ ଆପଣଙ୍କ ସ୍ତ୍ରୀଙ୍କ ଦୁଃଖ କଥା ଥରକ ପାଇଁ ଭାବି ଦେଖନ୍ତୁ । ସେ ରୁଗ୍ଣା ହୋଇ ପଡ଼ିବାଟା ପରିତାପର ବିଷୟ ହୋଇପାରେ ତାହା ବୋଲି ଅପୁଷ୍ଟତା ତ ଅପରାଧ ନୁହେଁ ଶିବନାଥ ବାବୁ ? ବିନା ଦୋଷରେ……

: ବିନା ଦୋଷରେ ସାରାଜୀବନ ମୁଁ ଅବା କାହିଁକି ଦୁଃଖ ସହିବାକୁ ଯିବି ? ଜଣକର ଦୁଃଖ ଅନ୍ୟ ମୁଣ୍ଡରେ ଚାପି ଦେଲେ ଯେ ପୁରସ୍କାର କରାଯାଏ ସେହିଭଳି ବିଶ୍ୱାସ ମୋର ନାହିଁ ।

ଆଶୁବାବୁ ଆଉ ତର୍କ କଲେ ନାହିଁ, କେବଳ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି ନିସ୍ତବ୍ଧ ହୋଇ ରହିଲେ ।

ହରେନ୍ଦ୍ର ପଚାରିଲେ— ଏ ବିବାହ ହେଲା କେଉଁଠାରେ ?

: ଗାଁରେ ।

: ସଧବାମାନେ ଆଉ ଲୋକେ ଆଉ ଝିଅ ଦେଲେ ! ବୋଧହୁଏ ସେ ଝିଅର ମାଆ-ବାପ ନାହାନ୍ତି ।

ଶିବନାଥ କହିଲେ—ନା, ଆମ ଗ୍ରାମର ବିଧବା ଝିଅ ।

: ଗ୍ରାମର ଝିଅ ! ଚମତ୍କାର ! ଜାତି କ'ଣ ?

: ଠିକ୍ କରି ଜାଣେ ନାହିଁ । ତନ୍ତୀ ଫନ୍ତୀ କ'ଣ ହୋଇପାରେ ।

ଅକ୍ଷୟ ବହୁତ ସମୟ ପର୍ଯ୍ୟନ୍ତ କଥା କହି ନ ଥିଲେ—ବର୍ତ୍ତମାନ ପ୍ରଶ୍ନ କଲେ—ବୋଧହୁଏ ସେ ନିରକ୍ଷର ।

ଶିବନାଥ କହିଲେ—ଅକ୍ଷର ପରିଚୟ ଲୋଭରେ ତ ଆଉ ବିବାହ କରିନାହିଁ । କରିଛି ରୂପ ପାଇଁ । ସେହି ବସ୍ତୁଟିର ଅଭାବ ବୋଧହୁଏ ତାଠାରେ ନାହିଁ ।

ଏହି ଉକ୍ତି ପରେ ମନୋରମା ଆହୁରି ଥରେ ଉଠିବା ପାଇଁ ଚେଷ୍ଟା କଲା । ଏଥର ମଧ୍ୟ ତା ପାଦ ଦୁଇଟା ପଥର ଭଳି ଅଚଳ ହୋଇ ଉଠିଲା । କୌତୂହଳ ଏବଂ ଉତ୍ତେଜନା ହେତୁ କେହି ତା ଆଡ଼କୁ ଦୃଷ୍ଟି ଫେରାଇ ପାରି ନ ଥିଲେ । ଚାହିଁଥିଲେ ହୁଏତ ଭୟ ପାଇ ପାରିଥାନ୍ତେ ।

ହରେନ୍ଦ୍ର କହିଲେ—ଏଇଟା ବୋଧହୁଏ ସିଭିଲ ବିବାହ ହିଁ ହୋଇଥିବ ?

ଶିବନାଥ ମୁଣ୍ଡ ହଲାଇ ଉତ୍ତର ଦେଲେ—ନା, ବିବାହ ହେଲା ଶୈବ ମତେ ।

ଅବିନାଶବାବୁ କହିଲେ—ଅର୍ଥାତ୍ ଫାଙ୍କି ଦେବାର ରାସ୍ତାଟିକୁ ଯେପରି ଦଶ ବାଟରୁ ଖୋଲା ରଖି ପାରିଛ, କ'ଣ କହୁଛ ଶିବନାଥ ?

ଶିବନାଥ ହସି ଦେଇ କହିଲା—ଏହା ଆପଣ କ୍ରୋଧ ହେତୁ କହୁଛନ୍ତି । ନଚେତ୍ ବାପା ମୋର ଠିଆହୋଇ ଯେଉଁ ବିବାହ କରିଦେଲେ ସେଥିରେ ଯଦିଓ ଫାଙ୍କ ନ ଥିଲା କିନ୍ତୁ ଫାଙ୍କି ଥିଲା ଯଥେଷ୍ଟ । ତାହାକୁ ଖୋଜି ବାହାର କରିବା ପାଇଁ ଆଖି ଥିବା ଆବଶ୍ୟକ ।

ଅବିନାଶବାବୁ ଉତ୍ତର ଦେଇ ପାରିଲେ ନାହିଁ । ତାଙ୍କ ମୁହଁ କାଳି ପଡ଼ିଗଲା ।

ଆଶୁବାବୁ ନୀରବରେ ମୁହଁ ତଳକୁ କରି ବସି ରହି କେବଳ ଭାବିବାକୁ ଲାଗିଲେ—ଏ କ'ଣ ହେଲା ! ଏ କ'ଣ ହେଲା !

ବୁଢ଼ା ତନ ମିନଟ ପାଇଁ କାହା ମୁ ଣ୍ଡରେ କଥା ନାହିଁ । ନସ୍ୟନନ୍ଦ ଓ କଲନ୍ଦର ଅବସ୍ଥାଙ୍କ ପବନରେ ଘର ଭରଯାଇଛି । ତାହାରୁ ଗୋଟାଏ ଦମକା ପବନ ନ ପାଇଲେ ନ ଚଳେ । ଠିକ୍ ଏହିପରି ମନୋଭାବ ଧରି ଅବନାଶ ବାବୁ ହଠାତ୍ କହି ଉଠିଲେ—ଥାଉ, ଥାଉ, ସେ ସବୁ କଥାବାର୍ତ୍ତା । ଶିବନାଥ ତୁମେ ତାହାହେଲେ ସେହି ପଥର ବ୍ୟବସାୟ କରୁଛ କି ?

ଶିବନାଥ କହିଲା—ହଁ ।

: ତୁମ ବନ୍ଧୁର ନାବାଳକ ପୁଅ ଝିଅମାନଙ୍କର ବ୍ୟବସ୍ଥା କ'ଣ ତୁମକୁ କରିବାକୁ ହେଲା ? ସେମାନଙ୍କର ମାଆ ଅଛନ୍ତି ନା ? ଅବସ୍ଥା କିପରି ? ସେପରି ଭଲ ବୋଧହୁଏ ନୁହେଁ ?

: ନା ଖୁବ୍ ଖରାପ ।

: ଆହା ! ହଠାତ୍ ମରିଗଲେ ! ଆମେ ଭାବିଥିଲୁ ଟଙ୍କା କଉଡ଼ି କିଛି ରଖି ଯାଇଥିବେ । ତୁମର ସେ ଏକାନ୍ତ ବନ୍ଧୁ ଥିଲେ । ଯାହାକୁ କୁହନ୍ତି ଅକୃତ୍ରିମ ବନ୍ଧୁତ୍ୱ—ତାହାହିଁ ତୁମ ଦୁହିଁଙ୍କର ଥିଲା ।

ଶିବନାଥ ମୁ ଣ୍ଡ ହଲାଇ କହିଲା—ହଁ ଆମେ ଦୁହେଁ ଏକ ସଙ୍ଗରେ ପାଠ-ଶାଳାରେ ପଢ଼ୁଥିଲୁ ।

: ସେଥିପାଇଁ ସେତେବେଳେ ତୁମେ ଦୁହେଁ ମିଶି ଏତେ କରି ପାରିଥିଲ । କିନ୍ତୁ ଯେ ଯାହା ହେଉ, ଶିବନାଥ, ବର୍ତ୍ତମାନ ଏକାକୀ ଯେତେବେଳେ ତୁମକୁ ସମସ୍ତ ବିଷୟ ଦେଖିବାକୁ ପଡ଼ୁଛି ତେଣୁ ତହିଁରୁ ଗୋଟାଏ ଅଂଶ କାହିଁକି ଦାବୀ କରିଲ ନାହିଁ ? ଦରମା ଭଳି···· ·

ଶିବନାଥ କଥାଟାକୁ ଶେଷ କରିବାକୁ ନ ଦେଇ କହିଲେ—କାହାର ଅଂଶ ? ବ୍ୟବସାୟ ତ ସମ୍ପୂର୍ଣ୍ଣ ଭାବରେ ମୋର ।

ପ୍ରଫେସର ଦଳ ଯେପରି ଆକାଶରୁ ଖସି ପଡ଼ିଲେ । ଅକ୍ଷୟ କହିଲେ—ପଥର ବ୍ୟବସାୟଟା ହଠାତ୍ ଆପଣଙ୍କର କିପରି ହୋଇଗଲା ଶିବନାଥ ବାବୁ ?

ଶିବନାଥ ଗମ୍ଭୀର ହୋଇ କହିଲେ—ସେ ବ୍ୟବସାୟ ପ୍ରଥମରୁ ମୋର ହିଁ ଥିଲା ।

ଅକ୍ଷୟ କହିଲେ—ଆଦୌ ନୁହେଁ । ଆମେମାନେ ସମସ୍ତେ ଜାଣୁ ତାହା ଯୋଗେନ ବାବୁଙ୍କର······

: ଜାଣିଥିଲେ ଯଦି, କଚେରୀକୁ ଯାଇ କାହିଁକି ସାକ୍ଷ୍ୟ ଦେଇ ଆସିଲେ ନାହିଁ ? କୌଣସି କାଗଜପତ୍ର ଥିଲା ? ଶୁଣିଥିଲେ ?

ଅବନାଶବାବୁ ଚକିତ ହୋଇ କହିଲେ—ନା କିଛି ଶୁଣି ନାହୁଁ ! ଏ ସବୁ ଘଟଣା କ'ଣ କୋର୍ଟ-କଚେରୀ ପର୍ଯ୍ୟନ୍ତ ଯାଇଥିଲା କି ?

ଶିବନାଥ କହିଲେ —ହଁ, ଯୋଗେନର ସମ୍ପର୍କୀ ମକଦ୍ଦମା କରିଥିଲେ । ଡିଗ୍ରୀ କିନ୍ତୁ ମୁଁ ପାଇଲି ।

ଅବିନାଶ ଦୀର୍ଘ ନିଃଶ୍ୱାସ ଗ୍ରହଣ କହିଲେ, ବେଶ୍ ହୋଇଛି । ତାହାହେଲେ ଶେଷ ପର୍ଯ୍ୟନ୍ତ ବିଧବାଟାକୁ କଷ୍ଟ ଦେବାକୁ ପଡ଼ିଲା ନାହିଁ ।

ଶିବନାଥ କହିଲେ --ନା । ଝାଲମ୍, ଚପ୍‌ଟା ଖାସା ରାନ୍ଧିଛନ୍ତି—ଆଉ ଦୁଇଖଣ୍ଡ ଆଣନ୍ତ ।

ଆଶୁବାବୁ ଅଭିଭୂତ ଭଳି ବସିଥିଲେ । ଚମକିପଡ଼ି ମୁହଁ ଟେକି କହିଲେ - କାହିଁ! ଆପଣ ତ କିଛି ଖାଉ ନାହାଁନ୍ତି ?

ଆହାର ପ୍ରବୃତ୍ତି ରୁଚି ଏବଂ କ୍ଷୁଧା ସମସ୍ତଙ୍କର ଅନ୍ତର୍ହିତ ହୋଇ ଯାଇଥିଲା । ମନୋରମା ଚୁପ୍‌ଚାପ୍ ଉଠିଯାଉଥିଲା । ଶିବନାଥ ଡାକି କହିଲେ—ଏ କି କଥା ! ଆମର ଖାଇବା ଶେଷ ନ ହେବା ପୂର୍ବରୁ ଉଠି ଚାଲିଯାଉଛନ୍ତି ଯେ ?

ମନୋରମା ଏକଥାର ଉତ୍ତର ଦେଲା ନାହିଁ କିମ୍ବା ଫେରି ଚାହିଁଲା ନାହିଁ । ଘୃଣାରେ ଯେପରି ତା ଶରୀର କଣ୍ଟକିତ ହୋଇ ଉଠୁଥିଲା ।

ଉପରୋକ୍ତ ଘଟଣା ପରେ ସପ୍ତାହଟିଏ ବିତିଯାଇଛି । ଘନେ, ଦୁଇଦିନ ଅସମୟରେ ମେଘ ବର୍ଷା ହେବାକୁ ଆରମ୍ଭ କରିଥିଲା । ଆଜି ମଧ୍ୟ ସକାଳରୁ ମଝିରେ ମଝିରେ ବର୍ଷା ହୋଇ ମଧ୍ୟାହ୍ନ ସମୟରେ କିଛି ସମୟ ପାଇଁ ବନ୍ଦ ଥିଲା । କିନ୍ତୁ ମେଘ ଆକାଶରୁ ପୁରାପୁରି ସଫା ହୋଇ ନାହିଁ । ଯେ କୌଣସି ସମୟରେ ପୁଣି ଆରମ୍ଭ ହୋଇପାରେ । ଏଇଭଳି ଯେତେବେଳେ ଆକାଶର ଅବସ୍ଥା, ମନୋରମା ବୁଲିଯିବା ପାଇଁ ତା ବାପାଙ୍କ ଘରେ ପ୍ରବେଶ କଲା । ଆଶୁବାବୁ ଦେହରେ ଗୋଟାଏ ମୋଟା ଚଦର ଘୋଡ଼େଇ ହୋଇ ଆରାମ ଚୌକିରେ ବସିଥିଲେ । ହାତରେ ଧରିଥିଲେ ଖଣ୍ଡିଏ ବହି । ଝିଅ ବିସ୍ମିତ ହୋଇ ପ୍ରଶ୍ନ କଲା — କ'ଣ ବାବା, ତୁମେ ଏ ପର୍ଯ୍ୟନ୍ତ ବୁଲିଯିବା ପାଇଁ ପ୍ରସ୍ତୁତ ହୋଇ ନାହଁ ଯେ ! ଆଜିପରା ଆମେ ଏତବାଙ୍ଗ ଖାଁଙ୍କ କବର ଦେଖିଯିବା ?

: ଯିବାର କଥା ତ ଥିଲା ମାଆ, କିନ୍ତୁ ଆଜି ମୋର ସେହି ଅଣ୍ଟା ବାତଟା······

: ତାହାହେଲେ କାରଟା ଫେରାଇ ନେବାପାଇଁ କହିଦେଉଛି । କାଲି ପଛକେ ଯିବା, କ'ଣ କହୁଛ ବାପା ?

: ନା, ନା, ଭୁଲ ନ ଗଲେ ତୋର ପୁଣି ମୁଣ୍ଡ ବନ୍ଧା ଆରମ୍ଭ ହୋଇଯିବ । ଭୁ ନ ହେଲେ ଟିକଏ ବୁଲିଆ ମାଆ, ମୁଁ ସେହି ସମସ୍ତ ଭିତରେ ଏଇ ମାସିକ ପତ୍ରିକାଟାରେ ଆଖି ବୁଲାଇ ନିଏ । ଗଳ୍ପଟା ଲେଖିଛି ଭଲ ତ......

: ଆଚ୍ଛା, ଯାଉଛି । କିନ୍ତୁ ଫେରିବାକୁ ମୋର ଡେରି ଆଦୌ ହେବ ନାହିଁ । ଆସିଲେ ତୁମଠାରୁ ଗପଟା ଶୁଣିବି । ଏହା କହି ସେ ଏକାକିନୀ ବାହାରିଗଲା ।

ଘଣ୍ଟାକ ଭିତରେ ମନୋରମା ଫେରିଆସି ବାପାଙ୍କୁ ପ୍ରଶ୍ନକଲା—ବାବା, ଗପ 'କିପରି ଲାଗିଲା ? ଶେଷ ହେଲା ତ ? କ'ଣ ଲେଖିଛନ୍ତି ?

ଏତିକି କଥା କିନ୍ତୁ ଉଚ୍ଚାରଣ କରି ସେ ଦେଖି ଚମକି ପଡ଼ିଲା ଯେ ତା ବାପା ଏକାକୀ ନାହାଁନ୍ତି, ଆଗରେ ତାଙ୍କର ଶିବନାଥ ବସିଛନ୍ତି ।

ଶିବନାଥ ଉଠି ଠିଆ ହୋଇ ନମସ୍କାର କରି କହିଲେ- କେତେବେଳେଟି ବୁଲି ଆସିଲେ ?

ମନୋରମା ଉତ୍ତର ଦେଲା ନାହିଁ । ମଥାଟାକୁ ସାମାନ୍ୟ ନୁଆଁଇ ଦେଇ ତାଙ୍କ ଆଡ଼କୁ ପଛକରି ବାପାଙ୍କୁ କହିଲା—ପଢ଼ା ଶେଷ ହୋଇଗଲା ବାବା ? କିପରି ଲାଗିଲା ?

ଆଶୁବାବୁ କେବଳ କହିଲେ—ନା ।

: ତାହାହେଲେ ମୁଁ ନେଇଯାଉଛି ପଢ଼ିବି । ଏଇକ୍ଷଣି ଆଣି ଫେରାଇ ଦେବି । କହି ମନୋରମା ହାତରେ ପତ୍ରିକାଟା ଧରି ଚାଲିଗଲା । କିନ୍ତୁ ନିଜର ଶୋଇବା ଘରକୁ ଆସି ସେ ନୀରବରେ ବସି ରହିଲା । ତା ଲୁଗା ବଦଳାଇବା, ମୁହଁ ହାତ ଧୋଇବା ପଡ଼ିରହିଲା । ପତ୍ରିକାଟା ଖୋଲି ଥରକ ପାଇଁ ମଧ୍ୟ ଗଳ୍ପଟାକୁ ପଢ଼ିଲା ନାହିଁ ।

ଏପରି ଭାବରେ ବସିରହି ସେ ଯେ କ'ଣ ଭାବିବାକୁ ଲାଗିଲା ତାହାର ଠିକଣା ନାହିଁ । ଏଇ ସମୟରେ ଆଗରେ ଚାଲିଯାଉଥିବା ଚାକରକୁ ଉଦ୍ଦେଶ୍ୟ କରି ପଚାରିଲା— ଆରେ, ବାପାଙ୍କ ଘରୁ ସେ ଲୋକଟି ଚାଲି ଗଲେଣି କିରେ ?

ଚାକର କହିଲା—ହଁ ।

: କେତେବେଳେ ଗଲେ ?

: ବର୍ଷା ହେବା ଆଗରୁ ।

ମନୋରମା ଝରକାର ପର୍ଦ୍ଦା ଘୁଞ୍ଚାଇ ଦେଇ ଦେଖିଲା-- କଥା ଠିକ୍ । ପୁଣି ବର୍ଷା ଆରମ୍ଭ ହୋଇଛି । କିନ୍ତୁ ବେଶୀ ନୁହେଁ । ଉପରକୁ ଚାହିଁ ଦେଖିଲା, ପଶ୍ଚିମଦିଗରୁ ମେଘ ଗାଢ଼ତର ହୋଇ ଘୋଟି ଆସୁଛି । ଶୀଘ୍ର ମୂଷଳଧାରରେ ବର୍ଷା ହେବାର ସୂଚନା ମିଳୁଛି । ପତ୍ରିକାଟା ହାତରେ ଧରି ବାପାଙ୍କ ଘରେ ପ୍ରବେଶ କରି ଦେଖିଲା ଚୁପ ହୋଇ ବସି ରହିଛନ୍ତି । ପତ୍ରିକାଟାକୁ ଆରାମ ଚୌକିର ହାତ ଉପରେ ଧୀରେ ଧୀରେ ରଖିଦେଇ

କହିଲା—ବାବା, ତୁମେ ଜାଣ ଏସବୁ ମୁଁ ଆଦୌ ଭଲ ପାଏନାହିଁ । ଏହା କହି ସେ ପାଖ ଚୌକିରେ ବସିପଡ଼ିଲା ।

ଆଶୁବାବୁ ମୁହଁ ଟେକି ପଚାରିଲେ—କ'ଣ ସବୁ ମାଆ ?

ମନୋରମା କହିଲା—ତୁମେ ଠିକ୍ ବୁଝିପାରୁଛ ମୁଁ କ'ଣ କହୁଛି । ଗୁଣୀର ଆଦର ତ ମୁଁ କମ୍ କରେ ନାହିଁ, ଏହାବୋଲି ଶିବନାଥବାବୁଙ୍କ ଭଳି ଜଣେ ଦୁଷ୍ଚରିତ୍ର ମାତାଲକୁ କିପରି ଭାବରେ ତୁମେ ପ୍ରଶ୍ରୟ ଦେଇପାରୁଛ ?

ଆଶୁବାବୁ ଲଜ୍ୟା ଓ ସଙ୍କୋଚରେ ଯେପରି ଫିକା ପଡ଼ିଗଲେ । ଘରର ଗୋଟାଏ କଣରେ ଗୁଡ଼ାଏ ପୁସ୍ତକ ସ୍ତୁପୀକୃତ ହୋଇ ଗଦା ହୋଇଥିଲା । ମନୋରମା ସମସ୍ତ ଅଗ୍ନିବରୁ ସେଗୁଡ଼ାକୁ ସଜାଇ ରଖି ପାରିନାହିଁ । ସେହି ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି କେବଳ ସେ କହିଲେ—ଏଇ ଯେ ସେ···

ମନୋରମା ଭୟରେ ମୁହଁ ଫେରାଇ ଦେଖିଲା ଶିବନାଥ ଟେବୁଲ ନିକଟରେ ଠିଆ ହୋଇ ଖଣ୍ଡିଏ ବହି ଖୋଜି ବୁଲୁଛି । ଚାକର ତାକୁ ଭୁଲ ସମ୍ବାଦ ଦେଇଥିଲା । ମନୋରମା ସତେ ଯେପରି ଲଜରେ ଭୂଇଁରେ ମିଶିଗଲା । ଶିବନାଥଙ୍କ ନିକଟକୁ ଆସି ସେ ମୁହଁ ଟେକି ଚାହିଁ ପାରିଲା ନାହିଁ ।

ଶିବନାଥ କହିଲେ—ବହିଟା ଖୋଜି ପାଇ ପାରିଲି ନାହିଁ ଆଶୁବାବୁ । ବର୍ତ୍ତମାନ ତାହା ହେଲେ ଯାଉଛି···

ଆଶୁବାବୁ କିଛି ଅଧିକ କହି ନ ପାରି କହିଲେ—ବାହାରେ ବର୍ଷା ହେଉଛି ଯେ··

ଶିବନାଥ କହିଲେ—ହଁ । ସେମିତ ବେଶୀ କିଛି ନୁହେଁ । ଏହା କହି ସେ ଯିବା ପାଇଁ ଉଦ୍ୟତ ହେଉ ହେଉ ହଠାତ୍ ଅଟକି ଯାଇ ଠିଆ ହୋଇ ମନୋରମାକୁ ଲକ୍ଷ୍ୟ କରି କହିଲେ—ମୁଁ ଦୈବାତ ଯାହା ଶୁଣି ପାରିଛି ସେଇଟା ମୋର ସୌଭାଗ୍ୟକୁ ହେଉ କମ୍ବା ଦୁର୍ଭାଗ୍ୟକୁ ହେଉ ସେଥିପାଇଁ ଆପଣ କିନ୍ତୁ ଲଜ୍ଜିତ ହେବେ ନାହିଁ । ଏକଥା ମୋତେ ପ୍ରାୟ ଶୁଣିବାକୁ ହୋଇଥାଏ କିନ୍ତୁ ମୁଁ । ନିଶ୍ଚିତ ଭାବରେ ଜାଣେ ଯେ କଥା ଗୁଡ଼ାକ ମୋ ସମ୍ବନ୍ଧରେ କୁହାଯାଇଥିଲେ ମଧ୍ଯ ମୋତେ କୁହାଯାଇ ନାହିଁ । ଏତେ ଦୂର ନିଷ୍ଠୁର ଆପଣ ନୁହଁନ୍ତି ।

କିଛି ସମୟ ଅଟକି ଯାଇ ସେ ପୁଣି କହିଲେ—କିନ୍ତୁ ମୋର ଅନ୍ୟ କାରଣ ଅଛି । ସେଦିନ ଅକ୍ଷୟବାବୁ ପ୍ରଭୃତି ଅଧ୍ୟାପକମାନେ ମୋ ବିରୁଦ୍ଧରେ ଇଙ୍ଗିତ କଲେ ଯେ ମୁଁ ଯେପରି କିଛି ଗୋଟାଏ ମତଲବ୍ ରଖି ଏ ଘର ସହିତ ଘନିଷ୍ଠ ହେବାପାଇଁ ଚେଷ୍ଟା କରୁଛି । ପ୍ରତ୍ୟେକ ମନୁଷ୍ୟର ନ୍ୟାୟ-ଅନ୍ୟାୟର ଧାରଣା ଏକ ନୁହେଁ, ଏହା ଯେପରି ଗୋଟିଏ କଥା; ସେହିପରି ବାହାରୁ କୌଣସି ଗୋଟାଏ ଘଟଣା ଯାହା ଆଖିରେ ପଡ଼ିଗଲା ଦେଖି ଦେଇ ଲୋକଟି ଯେ ମନ୍ଦଭଲ ବୋଲି ଧାରଣା କରିବାଟା ଆଉ ଗୋଟାଏ କଥା ।

କିନ୍ତୁ ସେ ଯାହା ହେଉ, ଆପଣଙ୍କ ସହିତ ମିଳାମିଶା କରିବାରେ କୌଣସି ଗୂଢ଼ ଅଭିସନ୍ଧି ମୋର ସେଦିନ ନ ଥିଲି କିମ୍ବା ଆଜି ମଧ୍ୟ ନାହିଁ । ହଠାତ୍ ଆଶୁବାବୁଙ୍କୁ ଉଦ୍ଦେଶ୍ୟ କରି କହିଲେ—ମୋ ଗୀତ ଶୁଣିବାକୁ ଆପଣ ଭଲ ପାନ୍ତି, ବସା ତ ମୋର ବେଶୀ ଦୂର ନୁହେଁ; ଯଦି କୌଣସି ଦିନ ଇଚ୍ଛା ହୁଏ ତେବେ ମୋ ଘରେ ପଦ ଧୂଳି ପଡ଼ିଲେ ମୁଁ ଖୁସି ହେବି । ଏତିକି କହି ଶିବନାଥ ପୁନର୍ବାର ନମସ୍କାର କରି ବାହାରି ଗୁଲିଗଲେ । ପିତା କିମ୍ବା କନ୍ୟା କେହି ଜଣେ ହେଲେ ତା କଥାର ଉତ୍ତର ଦେଇ ପାରିଲେ ନାହିଁ । ବାହାରେ ବର୍ଷା ସେତେବେଳକୁ ହେଉଥିଲା । ଏତିକି କଥା ସେମାନେ କହି ପାରିଲେ ନାହିଁ ଯେ—ଶିବନାଥ ବାବୁ, ବର୍ଷା ହେଉଛି । ଟିକିଏ ଅପେକ୍ଷା କରି ଯାନ୍ତୁ ।

ଗୁକର ଗ୍ରହା କରିବାର ସରଞ୍ଜାମ ଧରି ପହଞ୍ଚିଲା । ମନୋରମା ପ୍ରଶ୍ନ କଲା—ତୁମ ପାଇଁ କଣ ଗ୍ରହା ଏଇଠାରେ ଠିଆରି କରିଦେବି ବାପା ?

: ନା, ମୋ ପାଇଁ ନୁହେଁ । ଶିବନାଥ ଟିକିଏ ଗ୍ରହା ଖାଇବେ ବୋଲି କହିଥିଲେ ।

ମନୋରମା ଗୁକରକୁ ସରଞ୍ଜାମ ଫେରାଇ ନେବା ପାଇଁ ଇଙ୍ଗିତ ଦେଲା । ମନର ଚୁଞ୍ଚଳା ହେତୁ ଆଶୁବାବୁ ଅଣ୍ଟାରେ କଷ୍ଟ ଅନୁଭବ କରୁଥିଲେ ମଧ୍ୟ ଚୌକିରୁ ଉଠି ପଡ଼ି ଘର ଭିତରେ ପଦ ଗୁରଣ କରିବାକୁ ଲାଗିଲେ । ହଠାତ୍ ଝରକା ପାଖରେ ଅଟକି ଯାଇ କିଛି ସମୟ ଧରି ନିରୀକ୍ଷଣ କରି କହି ଉଠିଲେ—ସେହି ଗଛ ତଳେ ଶିବନାଥ ଠିଆ ହୋଇଛି ନା ? ଯାଇ ପାରି ନାହିଁ । ତିନ୍ତୁଛି ।

ପୁଣି ପରକ୍ଷଣରେ କହି ଉଠିଲେ—ସଙ୍ଗରେ କିଏ ଜଣେ ସ୍ତ୍ରୀ ଲୋକ ତ ଠିଆ ହୋଇଛି । ବଙ୍ଗାଳୀ ଘର ସ୍ତ୍ରୀ ଭଳି ଲୁଗା ପିନ୍ଧିଛି । ସେ ବସ୍ତ୍ରୀ ବୋଧହୁଏ ଭିଜୁଛି । ଏହା କହି ସେ ଗୁକରକୁ ଡାକ ପକାଇ କହିଲେ—ଯଦୁ ଦେଖି ଆସିଲୁ, ଗେଟ୍ ପାଖ ଗଛ ତଳେ ଠିଆ ହୋଇ କିଏ ସବୁ ତିନ୍ତୁଛନ୍ତି । ଯେଉଁ ବାବୁ ଜଣକ ଏଇମାତ୍ର ଏଠାରୁ ଗଲେ ସେ କି ଅନ୍ୟ କିଏ ? କିନ୍ତୁ ରହ···ରହ···

କହୁ କହୁ ଆଶୁବାବୁ ମଝିରେ ଅଟକି ଗଲେ । ଅକସ୍ମାତ ତାଙ୍କ ମନରେ ସନ୍ଦେହ ହେଲା—ଝିଅଟି ଶିବନାଥର ସ୍ତ୍ରୀ ନୁହେଁ ତ ?

ମନୋରମା କହିଲା—ରହିବ କାହିଁକି ? ସେ ଯାଇ ଶିବନାଥ ବାବୁଙ୍କୁ ଡାକି ଆଣୁନା । ଏହା କହି ସେ ଉଠିପଡ଼ି ଖୋଲା ଝରକା ନିକଟରେ ବାପାଙ୍କ ପାଖରେ ଠିଆ ହୋଇ କହିଲା—ସେ ଗ୍ରହା ଖାଇବାର ଜାଣିଥିଲେ ମୁଁ କୌଣସି ମତେ ତାଙ୍କୁ ଯିବାକୁ ଦେଇ ନ ଥାନ୍ତି ।

ଝିଅ କଥାର ଉତ୍ତରରେ ଆଶୁବାବୁ ଧୀରେ ଧୀରେ କହିଲେ—ତାହା ସତ ମଣି । ମୋର କିନ୍ତୁ ଭୟ ହେଉଛି ସେ ଝିଅଟି ତାଙ୍କର ସେଇ ସ୍ତ୍ରୀ । ସାହସ କରି ଏ ଘରକୁ

ତାଙ୍କୁ ଆଣି ପାରି ନ ଥିଲେ । ଏବେ ସମସ୍ତ ଧରି ବାହାରେ କେଉଁଠାରେ ଅପେକ୍ଷା କରି ରହିଥିଲି ।

କଥା ଶୁଣି ମନୋରମାର ମନେ ହେଲା—ଏ ହେଉଛନ୍ତି—ସେ ହିଁ । ଥରକ ପାଇଁ ତା ମନରେ ଦ୍ୱିଧା ଉପୁଜିଲା—ଏ ଘରକୁ ତାଙ୍କୁ ସିଧା ଡାକି ଆଣି ହେବ କି ନାହିଁ ? କିନ୍ତୁ ପିତାଙ୍କର ମୁହଁକୁ ଚାହିଁ ଦେଇ ସେହି ସଙ୍କୋଚକୁ ସେ ତ୍ୟାଗ କଲା । ଚାକରକୁ ଡାକି କହିଲା—ଯଦୁ, ଯେ ଦୁହିଁଙ୍କୁ ତୁମେ ଯାଇ ଡାକି ଆଣ । ଶିବନାଥ ବାବୁ ଯଦି ପଚାରନ୍ତି—କିଏ ଡାକୁଛନ୍ତି, ତାଙ୍କୁ ମୋ ନାମ କହିଦେବୁ ।

ଚାକର ଚାଲିଗଲା । ଆଶୁବାବୁ ଉତ୍କଣ୍ଠାରେ ଚାହିଁ ରହିଲେ । କହିଲେ—କାମଟା ବୋଧହୁଏ ଠିକ୍ ହେଲା ନାହିଁ ।

: କାହିଁକି ? ବାବା ?

ଆଶୁବାବୁ କହିଲେ—ଶିବନାଥ ଯାହାହେଉ, ଉଚ୍ଚଶିକ୍ଷିତ ଭଦ୍ରଲୋକ—ତା କଥା ଅଲଗା । କିନ୍ତୁ ସେଇ ସ୍ତ୍ରୀ ଧରି କ'ଣ ଏହି ସ୍ତ୍ରୀଅଟି ସଙ୍ଗେ ପରିଚୟ କରିଯାଇ ପାରେ ? ଜାତରେ ଉଚ୍ଚ ନୀଚକୁ ଅବଶ୍ୟ ମୁଁ ମାନେ ନାହିଁ । ତଥାପି କିନ୍ତୁ ବଭେଦଟା ତ କିଛୁ ରହିଛି । ଚାକର, ଚାକରାଣୀଙ୍କ ସଙ୍ଗେ ତ ଆଉ ବନ୍ଧୁତ୍ୱ କରିଯାଏ ନାହିଁ ମାଆ ?

: ବନ୍ଧୁତ୍ୱ କରିବାର ତ ପ୍ରୟୋଜନ ନାହିଁ ବାବା, ବିପଦ ମୁଖରେ ଥିବା ପଥର ପଥିକକୁ ଘଣ୍ଟା କେତେଟା ପାଇଁ ତ ଆଶ୍ରୟ ଦିଆଯାଇପାରେ । ମୁଁ କେବଳ ସେତିକି ମାତ୍ର କରିବି ।

ଆଶୁବାବୁଙ୍କ ମନରୁ କିନ୍ତୁ ସନ୍ଦେହ ଅପସରି ଗଲା ନାହିଁ । କେତେ ଥର ମୁଣ୍ଡ ହଲାଇ ଆସ୍ତେ ଆସ୍ତେ କହିଲେ—ଠିକ୍ କିନ୍ତୁ ସେଇଆ ନୁହେଁ । ସ୍ତ୍ରୀଅଟି ଆସି ପହଞ୍ଚି ଗଲେ ତା ସହିତ ତୁ କିଭଳି ବ୍ୟବହାର କରିବୁ ମୁଁ କେବଳ ସେତିକି ଯାହା ଭାବି ପାରୁନାହିଁ ।

: ମୋ ଉପରେ କ'ଣ ତୁମର ବିଶ୍ୱାସ ନାହିଁ ବାବା ?

ଆଶୁବାବୁ ସାମାନ୍ୟ ଲଜ୍ଜିତ ହସଟିଏ ହସିଲେ । କହିଲେ—ସେ ବିଶ୍ୱାସ ଅଛି । ତଥାପି କିନ୍ତୁ ଘଟଣାକୁ ଠିକ୍ ଧରି ପାରୁନାହିଁ । କେବଳ ସମ-ଧରଣର ଲୋକ ସହିତ ବ୍ୟବହାର କରି ଜାଣିଛୁ । ଦାସୀ ଚାକର ପ୍ରତି ତୋ ବ୍ୟବହାର ମଧ୍ୟ ନିର୍ଦ୍ଦୋଷ । କିନ୍ତୁ ଏ ହେଲା କ'ଣ ଜାଣୁ ମାଆ, ଶିବନାଥ ମଣିଷଟିକୁ ମୁଁ ସ୍ନେହ କରେ । ମୁଁ ତା ଗୁଣର ଅନୁରାଗୀ । ଦୈବ ବିଡ଼ମ୍ବନା ହେତୁ ସେ ଆଜି ବହୁତ ଲାଞ୍ଛନା ସହ୍ୟ କରିଗଲା । ଆମ ଘରକୁ ଡାକିଆଣି ତାଙ୍କୁ କଷ୍ଟ ଦେବା ପାଇଁ ମୁଁ ଚାହେଁ ନାହିଁ ।

ମନୋରମା ବୁଝି ପାରିଲା—ଏହା ହେଉଛି ତା ପ୍ରତି ଅଭିଯୋଗ । କହିଲା—ଅଚ୍ଛା ତାହା ହିଁ ହେବ ।

ଆଶୁବାବୁ ହସି ପକାଇ କହିଲେ—ହବାଟା କ'ଣ ଏତେ ସହଜ ମାଆ ? କାରଣ, କଣ ଯେ ହେବା ଉଚିତ ସେ ଧାରଣା ମୋତେ ସ୍ପଷ୍ଟ ଜଣା ନାହିଁ; କିନ୍ତୁ ଏଇ କଥାଟା ମନକୁ ଆସୁଛି ଯେପରି ଶିବନାଥ ଆମ ଘରେ ମନରେ କଷ୍ଟ ନ ପାଏ ।

ମନୋରମା କ'ଣ କହିବାକୁ ଯାଉଥିଲା, ହଠାତ୍ ଚକିତ ହୋଇ କହି ଉଠିଲା—ଏହି ଯେ ସେମାନେ ଆସୁଛନ୍ତି···

ଆଶୁବାବୁ ବ୍ୟସ୍ତ ହୋଇ ବାହାରକୁ ଚାଲି ଆସିଲେ । କହିଲେ—କ'ଣ ଶିବନାଥ ବାବୁ ଭଲ କରି ଭିଜିଗଲେ···

ଶିବନାଥ କହିଲେ—ହଁ, ବର୍ଷାଟା ହଠାତ୍ ବଢ଼ିଗଲା । କିନ୍ତୁ ମୋ ଅପେକ୍ଷା ସେ ବେଶୀ ଓଦା ହୋଇଯାଇଛନ୍ତି । ଏହା କହି ସଙ୍ଗରେ ଥିବା ଝିଅଟିକୁ ଦେଖାଇ ଦେଲେ । ଝିଅଟି କିନ୍ତୁ କିଏ ତାହା ସ୍ପଷ୍ଟ କରି କହିଲେ ନାହିଁ । ଏମାନେ ମଧ୍ୟ ପରସ୍ପର କରି ସେ କଥା ପଚାରି ପାରିଲେ ନାହିଁ ।

ପ୍ରକୃତରେ ଝିଅଟି ଦେହରେ କୌଣସି ଅଂଶ ଶୁଖିଲା ନ ଥିଲା । ଲୁଗା, ବ୍ଲାଉଜ ସମ୍ପୂର୍ଣ୍ଣ ଓଦା । ମୁଣ୍ଡରେ ଥିବା ଗହଳିଆ କଳା ଚିକ୍କଣ କେଶରୁ ପାଣି ଝରି ଆସି ଗଣ୍ଡଦେଶ ଦେଇ ପଡ଼ିବାକୁ ଲାଗିଥାଏ । ବାପ ଝିଅ ଦୁହେଁ ଏହି ଅପରିଚିତା ରମଣୀଟିକୁ ଦେଖି ବିସ୍ମୟରେ ହତବାକ୍ ହୋଇପଡ଼ିଲେ । ଆଶୁବାବୁ ନିଜେ କବି ନୁହନ୍ତି । କିନ୍ତୁ ତାଙ୍କର ପ୍ରଥମେ ମନେହେଲା, ଏହି ନାରୀ ରୂପକୁ ପୂର୍ବକାଳର କବିମାନେ ବୋଧହୁଏ ଶିଶିର ଧୁଆ ପଦ୍ମ ସହିତ ତୁଳନା କରିଯାଇଛନ୍ତି ଏବଂ ଜଗତରେ ଏତେ ବଡ଼ ସତ୍ୟ ତୁଳନା ବୋଧହୁଏ ଏହାଠାରୁ କିଛି ନାହିଁ । ସେଦିନ ଅକ୍ଷୟର ନାନାବିଧ ପ୍ରଶ୍ନରେ ଉତ୍ତ୍ୟକ୍ତ ହୋଇ ଶିବନାଥ ଯେଉଁ ସବୁ ଉତ୍ତର ଦେଇଥିଲେ, ସେ ଲେଖା ପଢ଼ା ଜାଣିଥିବା ପାଇଁ ବିବାହ କରି ନାହାନ୍ତି, କରିଛନ୍ତି ରୂପ ପାଇଁ, କଥାଟା ଯେ କେତେ ପରିମାଣରେ ସତ୍ୟ ବର୍ତ୍ତମାନ ତାହା ସେ ଉପଲବ୍ଧି କରିପାରିଲେ । ଏଥର ମୁଗ୍ଧ ହୋଇ ଆଶୁବାବୁ ଶିବନାଥର ସେହି କଥାଟାକୁ ବାରମ୍ବାର ସ୍ମରଣ କରିବାକୁ ଲାଗିଲେ । ତାଙ୍କର ମନେହେଲା, ବାସ୍ତବିକ, ଜୀବନ ଯାତ୍ରାର ପ୍ରଣାଳୀ ଏ ଦୁହିଁଙ୍କର ଭଦ୍ର ଓ ନୀତିସମ୍ମତ ନ ହେଉ, ପତିପତ୍ନୀର ସମ୍ପର୍କ ନ ଥାଉ, କିନ୍ତୁ ଏଇ ନଶ୍ୱର ଜଗତରେ ସେହିପରି ନଶ୍ୱର ଦୁଇଟି ନର-ନାରୀର ଦେହକୁ ଆଶ୍ରୟ କରି ସ୍ରଷ୍ଟାଙ୍କର କି ଅବିନଶ୍ୱର ସତ୍ୟ ପ୍ରକୃତରେ ଫୁଟି ନ ଉଠିଛି ! ଆହୁରି ପରମାଶ୍ଚର୍ଯ୍ୟ ଏହି ଯେ ଯେଉଁ ଦେଶରେ ରୂପ ବାଛିବା ପାଇଁ କୌଣସି ବିଶିଷ୍ଟ ପନ୍ଥା ନାହିଁ, ଯେଉଁ ଦେଶରେ ନିଜ ଆଖିକୁ ବନ୍ଦ କରି ଅପରର ଆଖି ଉପରେ ନିର୍ଭର କରିବାକୁ ହୋଇଥାଏ, ସେହି ଭଳି ଅନ୍ଧକାର ଭିତରେ ପରସ୍ପରର ସନ୍ଧାନ ଏ ଦୁହେଁ ପାଇଲେ କିପରି ? କିନ୍ତୁ ଏହି ମୋହାଚ୍ଛନ୍ନ ଅବସ୍ଥା କଟିଯିବା ପାଇଁ ତାଙ୍କୁ ମୁହୂର୍ତ୍ତକରୁ ଅଧିକ ସମୟ ଲାଗିଲା ନାହିଁ । ବ୍ୟସ୍ତ ହୋଇ ସେ କହିଲେ, ଶିବନାଥବାବୁ, ଓଦା ଲୁଗା ଆଉ କୁରୁତା ଦୁଇଟା ବଦଳାଇ ପକାନ୍ତୁ । ଯଦୁ, ମୋ ବାଥ୍‌ରୁମକୁ ବାବୁଙ୍କୁ ନେଇଯା—

ଗୃହକର ସଙ୍ଗେ ଶିବନାଥ ଚାଲିଗଲେ । ବିପଦରେ ପଡ଼ିଲା ଏଥର ମନୋରମା । ନିଅତି ମାତ୍ର ତାର ସମବୟସ୍କା ଏବଂ ଓଦା ଲୁଗା ପରିବର୍ତ୍ତନ କରିବା ତାହାର ନିତାନ୍ତ ପ୍ରୟୋଜନ । କିନ୍ତୁ ଶିବନାଥ ମୁହଁରୁ ସେଦିନ ଆଭିଜାତ୍ୟ ବିଷୟରେ ଯାହା ଶୁଣିବାକୁ ପାଇଛି ସେଥିରେ ସେ କ'ଣ ବୋଲି ନିଅତିକୁ ସମ୍ବୋଧନ କରିବ ସ୍ଥିର କରି ପାରିଲା ନାହିଁ । ରୂପ ତାର ଯେତେ ଦର୍ପ ହେଉ, ଶିକ୍ଷା ସଂସ୍କାରହୀନ ନୀଚ ଜାତିର ଏହି ଦାସୀ କନ୍ୟାଟିକୁ 'ଆସ' ବୋଲି ବାପାଙ୍କ ଆଗରେ ଡାକିବାକୁ ତାକୁ କିମିତି ଲାଗିଲା, "ଆସନ୍ତୁ" କହି ସମ୍ମାନରେ ନିଜ ଘରକୁ ଡାକି ନେବା ପାଇଁ ମଧ୍ୟ ମନରେ ଘୃଣା ଆସିଲା । ହଠାତ୍ ଏହି ସମସ୍ୟାର ସମାଧାନ ନିଅତି ନିଜେ କରିଦେଲା । ମନୋରମା ଆଡ଼େ ଚାହିଁ କହିଲା—ମୋର ମଧ୍ୟ ସବୁ ଲୁଗାପଟା ଭିଜି ଯାଇଛି ! ମୋତେ ମଧ୍ୟ ଖଣ୍ଡିଏ ଲୁଗା ଦେବାକୁ ପଡ଼ିବ ।

: ଦେଉଛି, କହି ମନୋରମା ତାକୁ ଭିତରକୁ ନେଇଗଲା । ଗୃହକର୍ତ୍ତ୍ରୀଙ୍କୁ ଡାକି କହିଦେଲା, ତାକୁ ଗାଧୋଇବା ଘରକୁ ନେଇଯାଇ ସମସ୍ତ ଆବଶ୍ୟକ ଜିନିଷ ଦେଇଦେବ ।

ନିଅତି ମନୋରମାର ଆପାଦମସ୍ତକ ବାରମ୍ବାର ନିରୀକ୍ଷଣ କରି କହିଲା, ମୋତେ ଖଣ୍ଡିଏ ଧୋବାଘରୁ ଆସିଥିବା ସଫା ଶାଢ଼ୀ ଦେବାକୁ କହିଦିଅନ୍ତୁ ।

ମନୋରମା କହିଲା—ହଁ, ତାହାହିଁ ଦେବ ।

ନିଅତି ଗୃହକର୍ତ୍ତ୍ରୀଙ୍କୁ ପ୍ରଶ୍ନ କଲା—ସେ ଘରେ ସାବୁନ ଅଛି ତ ?

: ଅଛି । ଗୃହକର୍ତ୍ତ୍ରୀଟି କହିଲା ।

: ମୁଁ ଅନ୍ୟ କାହାର ବ୍ୟବହୃତ ସାବୁନ ବ୍ୟବହାର କରେ ନାହିଁ ।

ଏହି ଅପରିଚିତା ମହିଳାଟିର ବକ୍ତବ୍ୟ ଶୁଣି ଗୃହକର୍ତ୍ତ୍ରୀଟି ପ୍ରଥମେ ବିସ୍ମିତ ହୋଇ ପଡ଼ିଲା । ପରେ କହିଲା ସେଠାରେ ଗୋଟାଏ ବାକ୍ସ ନୂଆ ସାବୁନ ଅଛି । ଆପଣ ଖୁସି ହେଲେ ସେଇଟା ଦେଇଦେବି ଗାଧୋଇବା ଘର । ତାଙ୍କ ସାବୁନ ବ୍ୟବହାର କଲେ କ୍ଷତି କ'ଣ ?

ନିଅତି ଓଠକୁ କୁଞ୍ଚିତ କରି କହିଲା—ନା, ତାହା ମୁଁ ଲଗାଇ ପାରିବି ନାହିଁ । ମୋତେ ଭାରି ଘୃଣା ଲାଗେ । ତା ଛଡ଼ା ଆଉ ଯାହାର ତାହାର ସାବୁନ ଦେହରେ ଲଗାଇଲେ ରୋଗ ହୁଏ ।

ମନୋରମା ମୁହଁ କ୍ରୋଧରେ ଆରକ୍ତ ହୋଇ ଉଠିଲା; କିନ୍ତୁ ତାହା କ୍ଷଣକ ପାଇଁ । ପରକ୍ଷଣରେ ନିର୍ମଳ ହସର ଲାସ୍ୟରେ ତା ଆଖି ଦୁଇଟା ଜଳି ଉଠିଲା । ତା ମନରୁ ଯେପରି ଗୋଟାଏ ମେଘ ଅପସରି ଗଲା । ହସିଦେଇ ପ୍ରଶ୍ନ କଲା—ଏକଥା ତୁମେ ଶିଖିଲ କାହାଠାରୁ ?

: ଶିଖିବି କାହାଠାରୁ ? ମୁଁ ନିଜେ ତ ସବୁ ଜାଣେ ।

ସତେ ? ତାହାହେଲେ ଆମର ଏଇ ବୃକରଣୀକୁ ଆଉ କେତେଗୁଡ଼ିଏ ଭଲକଥା ଶିଖାଇ ଦିଅନ୍ତ । ଏଇଟା ଏକବାରେ ନିହାତ ମୂର୍ଖ । କହୁ କହୁ ମନୋରମା ହସି ପକାଇଲା ।

ବୃକରଣୀଟି ମଧ୍ୟ ହସିଦେଲା । କହିଲା—ଗୁର୍ଲ୍, ସାବୁନ ଫାବୁନ ଲଗାଇ ଆଗ ସଜେଇ ହୋଇପଡ଼ । ତା'ପରେ ତୁମ ପାଖରେ ବସି ଅନେକ ଭଲ ଭଲ କଥା ଶିଖିନେବ । ଦେଉ, ଏ କାଏ କି ?

ମନୋରମା ହସ ଚାପି ଅନ୍ୟ ଦିଗକୁ ମୁହଁ ଫେରାଇ ନ ନେଇଥିଲେ ହୁଏତ ସେ ଏହି ଅପରିଚିତା, ଅଶିକ୍ଷିତ ଝିଅଟି ମୁହଁରେ କୌତୂହଳ ଓ ପ୍ରଚ୍ଛନ୍ନ ଉପହାସର ଆଭାସ ଲକ୍ଷ୍ୟ କରି ପାରିଥାନ୍ତା ।

ମନୋରମା କେବଳ ଆଶୁବାବୁଙ୍କର କନ୍ୟା ନୁହେଁ । ସେ ତାଙ୍କର ସଙ୍ଗୀ, ସାକ୍ଷୀ, ମନ୍ତ୍ରୀ ଏବଂ ଏକାଧାରରେ ବନ୍ଧୁ ମଧ୍ୟ ଥିଲା । ସେଥିପାଇଁ ପିତାଙ୍କର ମର୍ଯ୍ୟାଦା ରକ୍ଷାପାଇଁ ସେ ସଙ୍କୋଚର ସହିତ, ଦୂରତ୍ୱ ରକ୍ଷାକରି ଆସିଛି । ଅଧିକାଂଶ ସ୍ଥଳରେ ଏହା ମଧ୍ୟ ରକ୍ଷା କରି ହୁଏ ନାହିଁ । ମଝିରେ ମଝିରେ ଏପରି ଆଲୋଚନା ମଧ୍ୟ ଉଭୟଙ୍କ ଭିତରେ ହୁଏ ଯାହାକି ଅନେକ ପିତାଙ୍କ କାନକୁ ଅସଙ୍ଗତ ଶୁଭିବ । ଝିଅକୁ ଆଶୁବାବୁ ଯେ କେତେ ଭଲ ପାଆନ୍ତି ତାର ସୀମା ନ ଥିଲା । ସ୍ତ୍ରୀଙ୍କ ବିୟୋଗ ପରେ ସେ ଆଉ ବିବାହର ପ୍ରସ୍ତାବକୁ ମନରେ ସ୍ଥାନ ଦେଇପାରି ନଥିଲେ ହୁଏତ ତାହାର ଗୋଟିଏ କାରଣ ଏଇ ଝିଅଟି । ଅଥଚ ବନ୍ଧୁ ମହଲରେ କଥା ଉଠିଲେ ନିଜର ସାଢ଼େ ତିନିମହଣ ଓଜନର ଦେହ ଏବଂ ସେହି ଦେହ ବାତ ରୋଗ ପର୍ଯ୍ୟନ୍ତ ପ୍ରାପ୍ତିର ଦୋହାଇ ଦେଇ ଦୁଃଖର ସହିତ କହନ୍ତି—କାହିଁକି ଆଉ ଗୋଟାଏ ଝିଅର ସର୍ବନାଶ କରିବାକୁ ଯିବି ? ଯେଉଁ ଦୁଃଖ ମଥାରେ ତୋଳି ନେଇ ମଣିର ମାଆ ସ୍ୱର୍ଗକୁ ଯାଇଛନ୍ତି ସେ ହିଁ କେବଳ ଜାଣନ୍ତି, ଆଶୁପାଇଁ ତାହା ହିଁ ଯଥେଷ୍ଟ ।

ମନୋରମା ଏକଥା ଶୁଣିଲେ ଖିପଣ ଆପତ୍ତି କରି କହି ଉଠେ—ବାବା, ତୁମର ଏକଥା ମୋତେ ଭଲ ଲାଗେ ନାହିଁ । ଆଜିକାଲି ତାଜମହଲ ଦେଖି ଲୋକଙ୍କ ମନରେ କେତେନା କେତେ ପ୍ରଶ୍ନ ଉଠେ । ମୋର କେବଳ ମନେପଡ଼େ ତୁମରି ଓ ମାଆ କଥା । ମୋ ମାଆ କ'ଣ ସ୍ୱର୍ଗକୁ ଦୁଃଖ ସହ୍ୟକରି ଯାଇଛନ୍ତି ?

ଆଶୁବାବୁ କହିଲେ—ତୁ ତ ସେତେବେଳକୁ ମାତ୍ର ଦଶ-ବାରବର୍ଷର ଝିଅ । ତେଣୁ ସବୁ ଜାଣିଛୁ । କାହା ଗଳାରେ କେଉଁ ଲୋକର ମାଳା ଗଳାଇବାର ଗଳ୍ପ ଅଛି, ତାହା

କେବଳ ମୁଁ ଜାଣେ ମଣି, କେବଳ ମୁଁ ଜାଣେ । କହୁ କହୁ ତାଙ୍କ ଦୁଇ ଆଖି ଛଳ ଛଳ ହୋଇ ଉଠେ ।

ଆଗ୍ରାକୁ ଆସି ସେ ଅଃସକୋଚରେ ସମସ୍ତଙ୍କ ସହିତ ମିଶିଛନ୍ତି । କିନ୍ତୁ ତାଙ୍କର ଅବନାଶବାବୁଙ୍କ ସହିତ ସର୍ବାପେକ୍ଷା ଅଧିକ ହୃଦ୍ୟତା ହୋଇଥିଲା । ଅବନାଶବାବୁ ହେଉଛନ୍ତି ସଜ୍ଜନ ଓ ସହିଷ୍ଣୁ ପ୍ରକୃତର ମନୁଷ୍ୟ । ତାଙ୍କ ଚରିତ୍ର ଭିତରେ ଏପରି ଏକ ସ୍ୱାଭାବିକ ଶାନ୍ତ ଓ ପ୍ରସନ୍ନତା ଥିଲା ଯେ ସେ ସହଜରେ ସମସ୍ତଙ୍କର ଶ୍ରଦ୍ଧା ଆକର୍ଷଣ କରିପାରନ୍ତି । କିନ୍ତୁ ଆଶୁବାବୁ ମୁଗ୍ଧ ହୋଇଥିଲେ ଅନ୍ୟ ଗୋଟିଏ କାରଣରୁ । ତାଙ୍କଭଳି ସେ ଦ୍ୱିତୀୟ ଥରପାଇଁ ବିବାହ କରି ନ ଥିଲେ ଏବଂ ପତ୍ନୀପ୍ରେମର ନିଦର୍ଶନ ସ୍ୱରୂପ ପ୍ରତ୍ୟେକ ଘରର କାନ୍ଥସାରା ମୃତା ପତ୍ନୀଙ୍କର ଫଟୋମାନ ଟାଙ୍ଗିଥିଲେ । ଆଶୁବାବୁ ତାହାଙ୍କୁ କହନ୍ତି ଅବନାଶ ବାବୁ, ଲୋକମାନେ ଆମକୁ ପ୍ରଶଂସା କରନ୍ତି, କହନ୍ତି ଆମମାନଙ୍କର କି ଅସମ୍ଭବ ଧରଣର ଆତ୍ମସଂଯମ—ଯେପରି ସତେ କିଛି ଗୋଟାଏ ବିରାଟ କଠିନ କାର୍ଯ୍ୟ ଆମେମାନେ କରି ବସିଛେ । ଅଥଚ ମୁଁ ଭାବେ ଏ ପ୍ରଶ୍ନ ଉଠୁଛି ଅବା କିପରି ? ଯେଉଁମାନେ ଦ୍ୱିତୀୟ ଥର ବିବାହ କରନ୍ତି, ସେମାନେ ପାରନ୍ତି ବୋଲି କରନ୍ତି । ସେମାନଙ୍କୁ ଦୋଷ ଦେବା କଥା ନୁହେଁ କିମ୍ବା ଶ୍ରେଷ୍ଠ ମନେ କରିବାର କଥା ନୁହେଁ । ଭାବେ ମୁଁ ପାରିଲି ନାହିଁ । ଜାଣେ, ମଣି ମାଆ ସ୍ଥାନରେ ଆଉ ଜଣକୁ ସ୍ତ୍ରୀ ରୂପେ ଗ୍ରହଣ କରିବା ମୋ ପକ୍ଷରେ କେବଳ କଠିନ ନୁହେଁ—ଅସମ୍ଭବ ମଧ୍ୟ । ଏ ଖବର କ'ଣ ସେମାନେ ଜାଣନ୍ତି ? ବୋଧହୁଏ ଜାଣନ୍ତି ନାହିଁ । ଏସ୍ତା ନା ଅବନାଶ ବାବୁ ? ନିଜ ମନଟିକୁ ପରୀକ୍ଷା କରି ଦେଖନ୍ତୁ ଠିକ୍ କଥାଟି ମୁଁ କହୁଛି କି ନାହିଁ ?

ଅବନାଶ ବାବୁ ହସନ୍ତି । କହନ୍ତି ମୁଁ କିନ୍ତୁ ଯୋଗାଡ଼ କରି ପାରୁନି ଆଶୁବାବୁ । ମାଷ୍ଟରୀ କାମ କରି ଖାଏ, ସମୟ ପାଏ ନାହିଁ, ତାପରେ ବୟସ ମଧ୍ୟ ହୋଇ ଯାଇଛି । ଝିଅ ଅବା ମୋତେ ଦେବ କିଏ ?

ଆଶୁବାବୁ ଖୁସି ହୋଇ କହନ୍ତି—ଠିକ୍ ସେଇଆ ଅବନାଶ ବାବୁ; ଠିକ୍ ସେଇଆ । ମୁଁ ମଧ୍ୟ ସମସ୍ତଙ୍କୁ କହି ବୁଲୁଛି ଦେହର ଓଜନ ସାଢ଼େ ତିନି ମହଣ, ବାତ ହେତୁ ପଙ୍ଗୁ । କେତେବେଳେ ଗ୍ଲୁଲୁ ଗ୍ଲୁଲୁ ହାର୍ଟ ଫେଲ କରିପାରେ ତାର ଠିକଣା ନାହିଁ । ଏଥିରେ ଝିଅ ଦେବ କିଏ ? କିନ୍ତୁ ଝିଅ ଦେବା ପାଇଁ ଲୋକର ଅଭାବ ନାହିଁ । କେବଳ ନେବା ଲୋକଟା ଯାହା ନାହିଁ କରି ମରୁଛି । ହାଃ-ହାଃ-ହାଃ-ହାଃ, ମରୁଛି ଅବନାଶ, ମରୁଛି ଆଶୁ ବୈଦ୍ୟ । ହାଃ-ହାଃ-ହାଃ-ହାଃ । ଏହା କହି ଉଚ୍ଚ ସ୍ୱରରେ ହସି ଉଠି ଘରର ଦୁଆର, ଝରକା, କଡ଼ି ପର୍ଯ୍ୟନ୍ତ କମ୍ପାଇ ପକାନ୍ତି ।

ପ୍ରତିଦିନ ଉପର ଓଳି ଭ୍ରମଣରେ ବାହାରି ଆଶୁବାବୁ ଅବନାଶ ବାବୁଙ୍କ ଘର ଆଗରେ ଓହ୍ଲାଇ ପଡ଼ନ୍ତି ଏବଂ କହନ୍ତି ମଣି, ସନ୍ଧ୍ୟାବେଳେ ଆଉ ଦେହରେ ଥଣ୍ଡା ହାଓ୍ୱାଟା ଲଗାଇବି ନାହିଁ । ରୁ ବରିଷ୍ଠ ଫେରିବା ବାଟରେ ମୋତେ ଏଠାରୁ ଉଠାଇ ନେବୁ ।

ମନୋରମା ହସି ଦେଇ କହେ—ଅଣ୍ଣା କାହିଁ ବାବା ? ହାଓ୍ବାଟା ଯେ ଆଜି ବେଶ୍ ଗରମ ଜଣା ପଡ଼ୁଛି ।

ତାହା ମଧ୍ୟ ଭଲ ନୁହେଁ ମାଆ । ବୁଢ଼ାମାନଙ୍କର ସ୍ୱାସ୍ଥ୍ୟ ପକ୍ଷରେ ଗରମ ହାଓ୍ବାଟା କ୍ଷତିକର । ତୁ ଟିକିଏ ବୁଲିଆ । ସେଇ ସମୟ ଭିତରେ ଆମେ ଦୁଇ ବୁଢା ବସି ଦୁ'ପଦ କଥା ହୋଇଯିବୁ ।

ମନୋରମା ହସି ଦେଇ କହେ—ଦୁ' ପଦ ଯାଗାରେ ତୁମେ ଦୁହେଁ ବସି ଶହେ ପଦ କଥା ହୁଅ, ତହିଁରେ ମୋର ଆପତ୍ତି ନାହିଁ । କିନ୍ତୁ ତୁମମାନଙ୍କ ଭିତରୁ କେହି ବର୍ତ୍ତମାନ ସୁଦ୍ଧା ବୁଢ଼ା ହୋଇ ନାହଁ ଏକଥା ମନେ କରାଇ ଦେଇ ଯାଉଛି । କହି ସେ ଚାଲିଯାଏ ।

ବାତ ଯୋଗୁଁ ଯେଉଁ ଦିନ ଆଶୁ ବାବୁ ନ ଆସି ପାରନ୍ତି ସେଦିନ ଅବିନାଶଙ୍କୁ ଯିବାକୁ ପଡ଼େ । ଗାଡ଼ି ପଠାଇ, ଲୋକ ପଠାଇ, ଚିଠି ପାଇଁ ନିମନ୍ତ୍ରଣ ଜଣାଇ, ଯେଉଁ ପ୍ରକାରରେ ହେଉ ଆଶୁ ବୈଦ୍ୟଙ୍କର ନିମନ୍ତ୍ରଣକୁ ଏଡ଼ାଇବାର ଯୁ ତାଙ୍କର ନ ଥାଏ । ଉଭୟେ ଏକାଠି ହେଲେ ଅନ୍ୟାନ୍ୟ ଆଲୋଚନା ଭିତରେ ଶିବନାଥର କଥା ମଧ୍ୟ ପଡ଼େ । ସେଇ ଯେ ତାକୁ ସେଦିନ ଘରକୁ ନିମନ୍ତ୍ରଣ କରି ଆଣିବା ପରେ ସମସ୍ତେ ମିଳି ତାକୁ ଅପମାନ କରି ବିଦା କରିଦେଲେ । ସେହି ଆଘାତଟା ଏ ପର୍ଯ୍ୟନ୍ତ ଆଶୁବାବୁଙ୍କ ମନରୁ ପୁଛି ନଥାଏ । ଶିବନାଥ ପଣ୍ଡିତ । ଶିବନାଥ ଗୁଣୀ । ତାହାର ସବାଙ୍ଗେ ଯୌବନ ଭରପୂର । ସ୍ୱାସ୍ଥ୍ୟ ଓ ରୂପରେ ସେ ପରିପୂର୍ଣ୍ଣ । ଏ ସବୁ କ'ଣ ତା ପାଇଁ କିଛି ନୁହେଁ ? ତେବେ କାହିଁକି ଭଗବାନ ତାକୁ ଦୁଇ ହାତ ଖୋଲି କରି ଏତେ ସମ୍ପଦ ଦେଇଛନ୍ତି ? ତାହା କ'ଣ ତାକୁ ମନୁଷ୍ୟ ସମାଜରୁ ଦୂରରେ ରଖିବା ପାଇଁ ? ମାତାଲ ହୋଇଛି ? କ'ଣ ହୋଇଗଲା ? ମଦ ଖାଇ ଆଜି କାଲି କେତେ ଲୋକ ତ ମାତାଲ ହେଉଛନ୍ତି । ଯୌବନରେ ସେ ଅପରାଧ କରି ବସିଛି ବୋଲି କ'ଣ ସେ ତାକୁ ତ୍ୟାଗ କରିଛୁ ? ମନୁଷ୍ୟର ତ୍ରୁଟି, ମନୁଷ୍ୟର ଅପରାଧକୁ ଗ୍ରହଣ କରିବା ଅପେକ୍ଷା ମାର୍ଜ୍ଜନା କରିବା ଦିଗକୁ ହୃଦୟର ଅତ୍ୟଧିକ ପ୍ରବଣତା ଅଛି ବୋଲି ସେ ନିଜ ସହିତ ଏବଂ ଅବିନାଶଙ୍କ ସହିତ ଏହା ନେଇ ପ୍ରାୟ ଯୁକ୍ତି କରିଥାନ୍ତି । ପ୍ରକାଶ୍ୟରେ ତାକୁ ଆଉ ଘରକୁ ନିମନ୍ତ୍ରଣ କରିବା ପାଇଁ ସାହାସ କରି ପାରନ୍ତି ନାହିଁ ସତ, କିନ୍ତୁ ତାଙ୍କ ମନ ଶିବନାଥର ସଙ୍ଗ ନିରନ୍ତର କାମନା କରେ । କେବଳ ଗୋଟାଏ ପ୍ରଶ୍ନର ସେ କୌଣସି ଉତ୍ତର ଦେଇ ପାରନ୍ତି ନାହିଁ, ଅବିନାଶ ଯେତେବେଳେ ପ୍ରଶ୍ନ କରନ୍ତି ଯେ ପୀଡ଼ିତ ସ୍ତ୍ରୀକୁ ପରିତ୍ୟାଗ କରି ଅନ୍ୟ ସ୍ତ୍ରୀକୁ ଗ୍ରହଣ କରିବାଟା ତା ପକ୍ଷରେ ଉଚିତ ହୋଇଛି କି ?

ଆଶୁବାବୁ ଲଜ୍ଜିତ ହୋଇ କହନ୍ତି—ସେହି କଥା ତ ମୁଁ ଭାବେ, ଶିବନାଥ ଭଳି ଲୋକ ଏ କାର୍ଯ୍ୟ କପରି କରିପାରିଲେ ? କିନ୍ତୁ କ'ଣ ଜାଣନ୍ତି ଅବିନାଶ ବାବୁ, ହୁଏତ ଭିତରେ କିଛି ଗୋଟାଏ ରହସ୍ୟ ରହିଛି—ହୁଏତ...ସମସ୍ତେ କ'ଣ ସବୁ କଥା ସମସ୍ତଙ୍କ ଆଗରେ କହି ପାରନ୍ତି ? ନ କହିବା ମଧ୍ୟ ଉଚିତ ।

ଅବିନାଶ ବାବୁ କହନ୍ତି—ତାଙ୍କ ସ୍ତ୍ରୀ ଯେ ନିର୍ଦୋଷ, ଏକଥା ତ ସେ ନିଜ ମୁହଁରେ ସ୍ୱୀକାର କରିଛନ୍ତି ।

ଆଶୁବାବୁ ପରାସ୍ତ ହୋଇ ମୁଣ୍ଡ ହଲାଇ କହନ୍ତି—ତା ଅବଶ୍ୟ ସେ କହିଛନ୍ତି ।

: ଆଉ ଏଇ ଯେ ମୃତ ବନ୍ଧୁର ବିଧବା ପତ୍ନୀକୁ ସମସ୍ତ ସମ୍ପତ୍ତିରୁ ଫାଙ୍କି ଦେଇ, ବ୍ୟବସାୟଟାକୁ ନିଜର ବୋଲି ଦଖଲ କରି ନେବାଟା କ'ଣ ହୋଇ ପାରେ ?

ଆଶୁ ଲଜ୍ଜାରେ ମରିଯାନ୍ତି । ଭାବନ୍ତି ଯେପରି ସେ ଆପେ ଏଭଳି ଦୁଷ୍କର୍ମ କରି ପକାଇଛନ୍ତି । ତାପରେ ଅପରାଧୀ ପରି ଧୀରେ ଧୀରେ କହନ୍ତି—କିନ୍ତୁ କ'ଣ ଜାଣନ୍ତି ଅବିନାଶ ବାବୁ, ହୁଏତ କିଛି ଗୋଟାଏ ରହସ୍ୟ···ଆଚ୍ଛା, ଅଦାଲତ ଅବା ତାଙ୍କୁ ଡିକ୍ରୀ ଦେଲା କିପରି ? ସେମାନେ କ'ଣ ବିଚାର କରି ଦେଖି ନାହାନ୍ତି ?

: ଇଂରେଜୀ ଅଦାଲତ କଥା ଛାଡ଼ନ୍ତୁ । ଆପଣ ନିଜେ ତ ଜଣେ ଜମିଦାର । ଏଠାରେ ସବଳ ବିରୁଦ୍ଧରେ ଦୁର୍ବଳ କେବେ କି ଜୟୀ ହୋଇଛି ବୋଲି ମୋତେ କହି ପାରିବେ କି ?

: ନା, ନା, ସେ କଥା ଠିକ୍ ନୁହେଁ । ସେ କଥା ଠିକ୍ ନୁହେଁ । ତେବେ ଆପଣଙ୍କ କଥା ଯେ ମିଛ ସେକଥା ମଧ୍ୟ ନାହିଁ କରି ପାରୁନି, କିନ୍ତୁ କ'ଣ ଜାଣନ୍ତି···

ମନୋରମା ହଠାତ୍ ଆସି ପହଞ୍ଚିଲେ ହସିଦେଇ କହେ -ଜାଣନ୍ତି ସମସ୍ତେ । ବାବା, ତୁମେ ନିଜେ ବି ମନେ ମନେ ଜାଣ ଅବିନାଶ ବାବୁ ମିଛରେ ତର୍କ କରୁ ନାହାନ୍ତି ।

ଏହାପରେ ଆଶୁବାବୁଙ୍କ ମୁହଁରୁ ଆଉ କଥା ବାହାରୁ ନଥିଲା ।

ଶିବନାଥ ବିରୁଦ୍ଧରେ ସମସ୍ତଙ୍କ ଅପେକ୍ଷା ମନୋରମାର ବିମୁଖତା ଥିଲା ଅଧିକ ! ମୁହଁରେ ସେ ବିଶେଷ କିଛି କହେ ନାହିଁ । ତଥାପି ପିତା ସବାପେକ୍ଷା କନ୍ୟାକୁ ଅଧିକ ଭୟ କରୁଥିଲେ ।

ସେଦିନ ସନ୍ଧ୍ୟାବେଳେ ଶିବନାଥ ଓ ତା ସ୍ତ୍ରୀ ପାଖିରେ ଉଭୟ ଏ ଘରେ ଆତିଥ୍ୟ ନେବାପାଇଁ ବାଧ୍ୟ ହୋଇଥିଲେ । ଏହାର ଦୁଇଦିନ ପୂର୍ବରୁ ଆଶୁବାବୁ ବାତରୋଗର ପ୍ରକୋପ ହେତୁ ସମ୍ପୂର୍ଣ୍ଣ ଶଯ୍ୟାଶାୟୀ ହୋଇ ପଡ଼ିଥିଲେ । ନିଜେ ହଲଚଲ ହୋଇ ପାରନ୍ତି ନାହିଁ । ଅବିନାଶ ବାବୁ ମଧ୍ୟ କାର୍ଯ୍ୟବ୍ୟସ୍ତ ରହି ଆସି ପାରି ନାହାଁନ୍ତି । ସେ କିନ୍ତୁ ଆଜି ଆସିବା କ୍ଷଣି ଆଶୁବାବୁ ବାତର ଯନ୍ତ୍ରଣା ଯାତନାକୁ ଭୁଲିଯାଇ ଆରାମ ଚୌକିରେ ସିଧା ହୋଇ ବସି କହିଲେ—ଶୁଣିଲେଣି ଅବିନାଶ ବାବୁ, ଆଜି ଶିବନାଥର ସ୍ତ୍ରୀ ସଙ୍ଗେ ମୋର ଆଳାପ ପରିଚୟ ହୋଇଗଲା । ଝିଅଟି ଯେପରି ଲକ୍ଷ୍ମୀ ପ୍ରତିମା । ଏପରି ରୂପବତୀ କେବେ ଆଖି ଆଗରୁ ଦେଖି ନ ଥିଲି । ମନେ ହେଲା ଏ ଦୁଇଜଣଙ୍କୁ ଯେପରି ଭଗବାନ କୌଣସି ଉଦ୍ଦେଶ୍ୟ ରଖି ଏକତ୍ର କରାଇଛନ୍ତି ।

: କ'ଣ କହୁଛନ୍ତି ! !

: ହଁ, ପ୍ରକୃତରେ ତାହା ହିଁ । ଦୁଇଜଣଙ୍କୁ ପାଖାପାଖି ଦେଖିଲେ ଆଖି ଫେରାଇ ନେଇ ହୁଏ ନାହିଁ ।

ଅବିନାଶ ବାବୁ ହସି ହସି କହିଲେ—ହୁଏତ ତାହା ହୋଇପାରେ । କିନ୍ତୁ ଆପଣ ଯେତେବେଳେ କାହାକୁ ପ୍ରଶଂସା କରିବସନ୍ତି ସେତେବେଳେ ତାର ଶେଷ ନଥାଏ···

ଆଶୁବାବୁ ମୁହୂର୍ତ୍ତକ ପାଇଁ ତାଙ୍କ ମୁହଁକୁ ଚାହିଁରହି କହିଲେ—ଅବଶ୍ୟ ସେ ଦୋଷ ମୋର ଅଛି । ସୀମା ଟପିବାକୁ ଚାହିଁଲେ ଟପିପାରନ୍ତି କିନ୍ତୁ ଏ କ୍ଷେତ୍ରରେ ସେପରି ଶକ୍ତି ମୋର ନାହିଁ ।

ଅବିନାଶ ବାବୁ ଯେ ସମ୍ପୂର୍ଣ୍ଣ ବିଶ୍ୱାସ କରିଗଲେ ତାହା ନୁହେଁ । କିନ୍ତୁ ପୂର୍ବର ପରିହାସ ଭଙ୍ଗୀ ତାଙ୍କର ରହିଲା ନାହିଁ । କହିଲେ ସେଦିନ ଶିବନାଥ ତାହା ହେଲେ ଅକାରଣରେ ଗର୍ବ କରିନାହିଁ ? ପରିଚୟ ହେଲା କିପରି ?

: ନିହାତ ଦୈବୀ ଘଟଣା । ଶିବନାଥଙ୍କର ଆବଶ୍ୟକତା ଥିଲା ମୋ ନିକଟରେ । ସ୍ତ୍ରୀ ସଙ୍ଗରେ ଥିଲେ କିନ୍ତୁ ମୋ ଘରକୁ ଆଣିବା ପାଇଁ ସାହସ କରି ନ ଥିଲେ । ବାହାରେ ଗୋଟାଏ ଗଛତଳେ ଠିଆ କରାଇ ରଖିଥିଲେ । କିନ୍ତୁ ଭାଗ୍ୟ ବଙ୍କା ହେଲେ ମନୁଷ୍ୟର କୌଶଳ ଖଟେ ନାହିଁ । ଅସମ୍ଭବ ବସ୍ତୁ ମଧ୍ୟ ସମ୍ଭବ ହୋଇପାରେ । ହେଲା ମଧ୍ୟ ସେଇଆ । ଏହା ପରେ ସେଦିନର ଝଡ଼ ବର୍ଷାର କାହାଣୀ ସବିସ୍ତାରରେ ବର୍ଣ୍ଣନା କରି ସେ କହିଲେ, ଆମ ମଣି କିନ୍ତୁ ଖୁସି ହୋଇ ପାରି ନାହିଁ । ସେ ତାର ସମବୟସୀ, ହୁଏତ କିଛୁ ବଡ଼ ବି ହୋଇପାରେ । କିନ୍ତୁ ମଣି କହେ, ଶିବନାଥ ବାବୁ ସେଦିନ ସତ କଥା କହିଥିଲେ । ସ୍ତ୍ରୀଅଟି ପ୍ରକୃତରେ କେଉଁ ଅଶିକ୍ଷିତା ରୋଷେଇଆଣୀର ଝିଅ । ଅନ୍ତତଃ ସେ ଯେ ଆମ ଭଦ୍ର ସମାଜର ନୁହେଁ, ଏଥିରେ କୌଣସି ସନ୍ଦେହ ନାହିଁ ।

ଅବିନାଶ ବାବୁ କୌତୂହଳୀ ହୋଇ ପ୍ରଶ୍ନ କଲେ—କିପରି ବୁଝିପାରିଲେ ?

: ଝିଅଟି କୁଆଡ଼େ ଓଦା ଶାଢ଼ୀ ବଦଳରେ ଗୋଟିଏ ସଫାଶାଢ଼ୀ ମାଗିଥିଲା ଏବଂ କହିଥିଲା; ସେ କାହାର ବ୍ୟବହୃତ ସାବୁନ ମଧ୍ୟ ବ୍ୟବହାର କରେ ନାହିଁ । ତାର ସେଥିପାଇଁ ଘୃଣା ଆସେ ।

ଅବିନାଶ ବାବୁ ବୁଝିପାରିଲେ ନାହିଁ ଏହା ଭିତରେ ଭଦ୍ର ସମାଜର ବହିର୍ଭୂତ ହେଲାଭଳି ପ୍ରାର୍ଥନା କଣ ଅଛି ?

ଆଶୁବାବୁ ମଧ୍ୟ ଠିକ୍ ତାହାହିଁ କହିଲେ । ସେ କହିଲେ ଏହା ମଧ୍ୟରେ ଅସଙ୍ଗତ କଣ ଅଛି ମୁଁ ଆଜି ସୁଦ୍ଧା ଖୋଜି ପାଇ ପାରି ନାହିଁ । କିନ୍ତୁ ମଣି କହେ, କଥା ଭିତରେ ନୁହେଁ ବାବା, ସେହି କହିବାର ଭଙ୍ଗୀ ଭିତରେ ଯେ କ'ଣ ଥିଲା ତାହା କାନରେ ନ ଶୁଣିଲେ ବୁଝାଯାଇ ପାରିବ ନାହିଁ । ଆମ ରୋଷେଇଆଣୀଟିର ମଧ୍ୟ ବୁଝିବାକୁ ବାକି ନ ଥିଲା

ଯେ, ଝିଅଟି ସେମାନଙ୍କ ଶ୍ରେଣୀସ୍ଥା ଏବଂ ମୁକବଙ୍କର କୌଣସି ସମ୍ପର୍କୀୟା ନୁହେଁ । କହାଣ ତଳରୁ ହଠାତ୍ ଉନକୁ ଟେକ ଧରିଲେ ଯାହା ହୋଇଥାଏ ତା ଅବସ୍ଥା ହୋଇଛୁ ଠିକ ସେଇଆ ।

ଅବିନାଶ ବାବୁ ମୁହୂର୍ତ୍ତକ ପାଇଁ ନୀରବ ରହି କହିଲେ—ଦୁଃଖର କଥା । କିନ୍ତୁ ଆପଣଙ୍କ ସହିତ ପରିଚୟ ହେଲା କିପରି ? ଆପଣଙ୍କ ସହିତ କ'ଣ କଥାବାର୍ତ୍ତା କଲା ?

: ହଁ । ଓଦା ଲୁଗା ପାଲଟି ସିଧା ଆସି ମୋ ପାଖରେ ବସିପଡ଼ିଲା । କୁଣ୍ଠାର ସହିତ ନ ପଚାରି ସିଧା ପ୍ରଶ୍ନ କଲା, ମୋ ସ୍ୱାସ୍ଥ୍ୟ କିପରି ଅଛି ? କ'ଣ ଖାଉଛି ? କ'ଣ ସବୁ ଚିକିତ୍ସା ଚାଲିଛି ? ଯାଗାଟା ଭଲ ଲାଗୁଛି କି ନାହିଁ ? ବରଞ୍ଚ ଶିବନାଥ ବାବୁ ଟିକିଏ ଆଡ଼େଇ ହୋଇ ରହିଲେ । କିନ୍ତୁ ତାହାଠାରେ ସଙ୍କୋଚର ଚିହ୍ନମାତ୍ର ଦେଖି ପାରିଲି ନାହିଁ । ନା କଥାବାର୍ତ୍ତାରେ, ନା ଆଚରଣରେ ।

ଅବିନାଶ ବାବୁ ପ୍ରଶ୍ନ କଲେ—ମନୋରମା ସେତେବେଳ ପର୍ଯ୍ୟନ୍ତ ବୁଝି ପାରି ନ ଥିଲେ ?

: ନା । ତାର ଯେ କିଭଳି ଘୃଣା ହୋଇ ଯାଇଥାଏ ତାହା କହି ହେବ ନାହିଁ । ସେମାନେ ଚାଲିଗଲା ପରେ ମୁଁ କହିଲି ମଣି ସେମାନଙ୍କୁ ବିଦାୟ ଦେବା ପାଇଁ ଗଲୁ ନାହିଁ ?

ମଣି କହିଲା - ଆଉ ଯାହା କହି ନାବା ପାରିବ, କିନ୍ତୁ ପରର ଦାସୀ ଚାକରଙ୍କୁ ବସନ୍ତୁ କହି ଅଭ୍ୟର୍ଥନା ଜଣାଇ ପାରିବ ନାହିଁ । ଆସନ୍ତୁ କହି ବିଦାୟ ମଧ୍ୟ ଦେଇ ପାରିବ ନାହିଁ । ନିଜ ଘରେ ମଧ୍ୟ ହେଲେ ହୋଇ ପାରିବ ନାହିଁ । ଏହା ପରେ ଆଉ କ'ଣ କହିବାର ଥାଏ ?

କହିବାର କ'ଣ ଥିଲା, ଅବିନାଶ ବାବୁ ନିଜେ ମଧ୍ୟ ଭାବି ପାରିଲେ ନାହିଁ । କେବଳ ମୃଦୁ କଣ୍ଠରେ କହିଲେ—କହିବା କଠିନ ମଧ୍ୟ ଆଶୁବାବୁ । କିନ୍ତୁ ମୋର କିପରି ମନେହୁଏ ମନୋରମା ଠିକ୍ କଥା କହିଛନ୍ତି । ଏସବୁ ସ୍ତ୍ରୀ ଲୋକମାନଙ୍କ ସହିତ ଆମ ଝିଅ ବୋହୂଙ୍କର ଆଳାପ-ପରିଚୟ ନ ରହିବା ଉଚିତ ।

ଆଶୁବାବୁ ନୀରବ ରହିଲେ ।

ଅବିନାଶ କହିବାକୁ ଲାଗିଲେ—ଶିବନାଥର ସଙ୍କୋଚର କାରଣ ବୋଧହୁଏ ସେଇ ଝିଅଟି । ସେ ତ ସବୁ ଜାଣେ । ତାର ଭୟ ଥିଲା କାଳେ କୌଣସି କଦର୍ଯ୍ୟ ବାକ୍ୟ ତା ସ୍ତ୍ରୀ ମୁହଁରୁ ବାହାରି ପଡ଼ିବ ।

ଆଶୁବାବୁ ହସିଲେ । କହିଲେ, ହୁଏତ ହୋଇ ପାରେ ।

ଅବିନାଶ କହିଲେ—ହଁ, ନିଶ୍ଚୟ ତାହା ହିଁ ।

ଆଶୁବାବୁ ପ୍ରତିବାଦ କଲେ ନାହିଁ । କେବଳ କହିଲେ—ଝିଅଟି କିନ୍ତୁ ଲକ୍ଷ୍ମୀ ପ୍ରତିମା । ଏହା କହି ଗ୍ଲେଟ ଷ୍ଟୋଭଟିଏ ଗୁଞ୍ଜି ଆରାମ ଚୌକି ଉପରେ ଶୋଇ ପଡ଼ିଲେ ।

କେତେକ ସମୟ ନୀରବ ରହିବା ପରେ ଅବିନାଶ ବାବୁ ପ୍ରଶ୍ନ କଲେ ମୋ କଥାରେ ଆପଣ କ'ଣ ଦୁଃଖିତ ହେଲେ କି ?

ଆଶୁବାବୁ ଉଠି ବସିଲେ ନାହିଁ । ସେହିପରି ଅର୍ଦ୍ଧଶାୟିତ ଭାବେ ଭାବେ ଧୀରେ ଧୀରେ କହିଲେ—ଦୁଃଖିତ ନୁହେଁ ଅବିନାଶ ବାବୁ । କିନ୍ତୁ ଜଣଙ୍କ କଷ୍ଟ ଭଳି ମନେ ହେଉଛି । ସେଥିପାଇଁ ତ ଆପଣଙ୍କ ସଙ୍ଗେ ଦେଖା କରିବା ପାଇଁ ଛଟପଟ ହେଉଥିଲି । କେବଳ ରୂପ ନୁହେଁ, କି ମିଠା କଥା ଟିଅଟିର !

ଅବିନାଶ ବାବୁ ହସି ହସି କହିଲେ—କିନ୍ତୁ ମୁଁ ତ ତାର ରୂପ ଦେଖି ନାହିଁ । କଥା ମଧ୍ୟ ଶୁଣି ନାହିଁ, ଆଶୁବାବୁ !

: ସେ ସୁଯୋଗ କେବେ ଯଦି ଆସେନା ତାକୁ ହାତ ଛଡ଼ା କରିବାର ଅବସ୍ଥାର କଥା ଆପେ ବୁଝି ପାରିବେ । ଆଉ କେହି ବୁଝି ପାରୁ କି ନ ପାରୁ କିନ୍ତୁ ଆପଣ ନିଶ୍ଚୟ ବୁଝି ପାରିବେ, ଏ ଆତ୍ମବିଶ୍ୱାସ ମୋର ଅଛି । ଯିବା ସମୟରେ ଟିଅଟି ମୋତେ କହିଲା—ଆପଣ ମୋ ସ୍ୱାମୀର ଗୀତ ଶୁଣିବାକୁ ଭଲ ପାଆନ୍ତି, କାହିଁକି ତାଙ୍କୁ ମଝିରେ ମଝିରେ ଡକାଇ ନାହାନ୍ତି ? ମୁଁ ଯିଏ, କିଏ ତୁଏନା କାହିଁକି ସେ କଥା ନ ଭାବିଲେ ତ ଚଳିବ । ମୁଁ ତ ଆପଣମାନଙ୍କ ଭିତରେ ଆସି ବସିବା ପାଇଁ ଦାବୀ କରୁନାହିଁ ।

ଅବିନାଶ କିନ୍ତୁ ଏଥର ଆଶ୍ଚର୍ଯ୍ୟ ହୋଇ ଉଠିଲେ । କହିଲେ—ଏହା ତ ଖୁବ୍ ଅଶିକ୍ଷିତ ଲୋକର କଥା ନୁହେଁ । ଶୁଣିଲେ ମନେହୁଏ ତା ନିଜ ସମ୍ପର୍କରେ ଯେଉଁ ପ୍ରକାର ବ୍ୟବସ୍ଥା ଆମେମାନେ ସାଧାରଣତଃ କରିଥାଉ, ସେଥିପାଇଁ ନିଜ ସ୍ୱାମୀକୁ ସେ ଭଦ୍ର ସମାଜରେ ଚଳାଇବା ପାଇଁ ଚାହେଁ ।

: ପ୍ରକୃତରେ ତା କଥା ଶୁଣି ମନେହେଲା ସମ୍ଭବତଃ ସେ ସବୁ ଜାଣେ । ଆମେ-ମାନେ ସେ ସେଦିନ ଅପମାନିତ କରି ତାର ସ୍ୱାମୀକୁ ବିଦାୟ କରି ଦେଇଥିଲେ ଏହି ଘଟଣା ଶିବନାଥ ତା ଆଗରେ ଗୋପନ କରିନାହିଁ । ଗୋପନ ରଖି ଚଳିବାର ଲୋକ ଶିବନାଥ ବୋଧହୁଏ ନୁହେଁ ।

ଅବିନାଶ ସ୍ୱୀକାର କରି କହିଲେ—ସ୍ୱଭାବତଃ ସେ ତାହାହିଁ ଅଟେ । କିନ୍ତୁ ସେ ଗୋଟାଏ ଜିନିଷ ନିଶ୍ଚୟ ଗୋପନ କରିଛି । ସେ ଟିଅଟି ଯିଏ ହେଉ; ସେ କିନ୍ତୁ ପ୍ରକୃତରେ ତାକୁ ବିବାହ କରିନାହିଁ ।

: ଶିବନାଥ କହେ ଟିଅଟି ତା ସ୍ତ୍ରୀ । ଟିଅଟି ମଧ୍ୟ ତାକୁ ସ୍ୱାମୀ ବୋଲି ପରିଚୟ ଦେଲା ।

: ପରିଚୟ ଦେଉ । ତଥାପି ଏ କଥା ସତ ନୁହେଁ । ଏହା ଭିତରେ ଯେଉଁ ଗଭୀର ରହସ୍ୟ ରହିଛି, ଅକ୍ଷୟ ବାବୁ ତାହାର ସନ୍ଧାନ ନେଇ ଦିନେ ନା ଦିନେ ଉଦ୍‌ଘାଟନ କରିବେ ।

: ସେଥିରେ ମୋର ସନ୍ଦେହ ନାହିଁ । କାରଣ ଅକ୍ଷୟ ବାବୁ ଶକ୍ତିମାନ ପୁରୁଷ । କିନ୍ତୁ ଏ ଦୁହିଁଙ୍କର ପରସ୍ପର ଭିତରେ ସତ୍ୟ ନାହିଁ, ସତ୍ୟ ଯାହା ଅଛି ତାହା ଗୋପନ ଅଛି, ଏ କଥା ଆପଣଙ୍କ ଭଳି ଲୋକଠାରୁ ମୁଁ ପ୍ରତ୍ୟାଶା କରୁନାହିଁ ।

ଅବିନାଶ ଲଜ୍ଜିତ ହୋଇ କହିଲେ, କିନ୍ତୁ ସମାଜ ତ ଅଛି । ତାହାର କଲ୍ୟାଣ ପାଇଁ···

କିନ୍ତୁ ବକ୍ତବ୍ୟ ତାଙ୍କର ଶେଷ ହୋଇ ପାରିଲା ନାହିଁ । ପାଖ ଦରଜା ଠେଲି ମନୋରମା ପ୍ରବେଶ କରି କହିଲା—ବାବା, ମୁଁ ବୁଲିବାକୁ ଯାଉଛି । ତୁମେ ବୋଧହୁଏ ଯାଇ ପାରିବ ନାହିଁ ।

: ନା ମାଆ, ତୁ ଯା···

ଅବିନାଶ ବାବୁ ଉଠି ଠିଆ ହେଲେ । କହିଲେ ମୋର ମଧ୍ୟ ଟିକିଏ କାମ ଅଛି । ବଜାର ନିକଟରେ ଟିକିଏ ଓହ୍ଲାଇ ଦେଇ ପାରିବେ ନାହିଁ ମନୋରମା ଦେବୀ ?

: ନିଶ୍ଚୟ ପାରିବି, ଆସନ୍ତୁ ।

ଯିବା ସମୟରେ ଅବିନାଶ ବାବୁ କହିଗଲେ ଯେ ହଠାତ୍ ଜରୁରୀ କାମରେ ତାଙ୍କୁ କାଲି ଦିଲ୍ଲୀ ଯିବାକୁ ପଡ଼ୁଛି ଏବଂ ବୋଧହୁଏ ସପ୍ତାହକ ପୂର୍ବରୁ ସେ ଫେରି ପାରୁ ନାହାନ୍ତି ।

ଦଶଦିନ ପରେ ଅବିନାଶ ବାବୁ ଦିଲ୍ଲୀରୁ ଫେରି ଆସିଲେ । ତାଙ୍କର ଦଶ ବର୍ଷ ବୟସ୍କ ପୁଅ ଆସି ଖଣ୍ଡିଏ ଚିଠି ଆଣି ତାଙ୍କୁ ଦେଲା । ମାତ୍ର ଗୋଟିଏ ଧାଡ଼ି ଲେଖା—ଉପର ଓଳି ନିଶ୍ଚୟ ଆସିବେ ଆଶୁ ବୈଦ୍ୟ ।

ବିଧବା ମାଉସୀ ଦ୍ୱାରର ପରଦା ଘୁଞ୍ଚାଇ ଫୁଟିଲା ଗୋଲାପ ଭଳି ମୁହଁଟିକୁ ବାହାର କରି କହିଲା—ଆଶୁ ବୈଦ୍ୟ କ'ଣ ଏପ୍ରାରେ ବୁଦ୍ଧି ବସିଥିଲା କି ? ଅଧୁନା ଅପୂର୍ଣ୍ଣ, ଜରୁରୀ ଖବର ପଠାଇଛି—ଯିବାକୁ ହେବ ।

ଅବିନାଶ ବାବୁ କହିଲେ—ବୋଧହୁଏ କୌଣସି ବିଶେଷ ପ୍ରୟୋଜନ ଅଛି ।

: ପ୍ରୟୋଜନ ନା ଚୁଲି ପାଉଁଶ । ସେ କ'ଣ ମୁଖାର୍ଜି ମହାଶୟଙ୍କୁ ଗିଳି ଖାଇ ପକାଇବ ନା କ'ଣ ?

ଅବିନାଶ ବାବୁ ତାଙ୍କର ଜ୍ୟେଷ୍ଠ ଶାଳୀଟିକୁ ଆଦର କରି କେତେବେଳେ ଜ୍ୟେଷ୍ଠ କନ୍ୟା ଘରଣୀ, କେବେ କେବେ ତା ନାଆଁ ଧରି ନଳିମା ବୋଲି ଡାକନ୍ତି । ହସିଦେଇ

କହିଲେ—ଶ୍ରେଷ୍ଠ ଘରଣୀ, ଅମୃତ ଫଳ ଗଛତଳେ ପଡ଼ିରହିଥିଲେ ବାହାର ଲୋକଙ୍କର ଆଖିରେ ପଡ଼ିଲେ କ'ଣ ଲୋଭ ହୁଏ ନାହିଁ ?

ମାଳିନୀ ହସିଲା । କହିଲା—ତାହାହେଲେ ସେଇଟା ମହାକାଳ ଫଳ । ଅମୃତ ଫଳ ନୁହେଁ । ସେମାନଙ୍କର ସେଇଟା ବୁଝିବା ଉଚିତ୍ ।

: ସତ, କିନ୍ତୁ ସେମାନେ ବିଶ୍ୱାସ କରିବେ ନାହିଁ । ଲୋଭ ଆହୁରି ବଢ଼ିଯିବ । ହାତ ବଢ଼ାଇବାକୁ ପଛାଇବେ ନାହିଁ ।

: ତହିଁରେ କିନ୍ତୁ ଲାଭ ହେବ ନାହିଁ ମୁଖାର୍ଜୀ ମହାଶୟ । ଦ୍ୱାରବନ୍ଧ ବାହାରେ ଏଣିକି ଶକ୍ତ କିଳଣି ଲଗାଇବି । ଏହାକହି ସେ ହସକୁ ଗୁପି ପର୍ଦ୍ଦା ଆଢ଼େଇ ଅନ୍ତର୍ହିତ ହୋଇଗଲା ।

ଅବିନାଶ ବାବୁ ଯେତେବେଳେ ଆଶୁବାବୁଙ୍କ ଘରେ ପହଞ୍ଚିଲେ, ସେତେବେଳକୁ ବେଳଥାଏ । ଗୃହସ୍ୱାମୀ ତାଙ୍କୁ ଅତ୍ୟନ୍ତ ସମାଦର କରି ପ୍ରଶ୍ରେଷ୍ଟି ନେଇସାରି କୃତ୍ରିମ କ୍ରୋଧ ପ୍ରକାଶ କରି କହିଲେ—ଆପଣ ଅଧାର୍ମିକ । ବିଦେଶ ଯାଗାରେ ବନ୍ଧୁକୁ ଛାଡ଼ି ଏକାବେଳେ ଦଶଦିନ ଅନୁପସ୍ଥିତ । ଇତିମଧ୍ୟରେ ଏହି ଅଧୀନର ଦଶ ଦଶା ଆସି ଉପସ୍ଥିତ ।

ଅବିନାଶ ଚମକି ଉଠି କହିଲେ—ଏକବାରେ ଦଶ ଦଶଟା ଦଶା । ପ୍ରଥମଟା ଆଗ କହନ୍ତୁ ?

: କହୁଛି, ପ୍ରଥମ ଦଶାରେ ଗୋଡ଼ ଦୁଇଟା ତାଜା ହୋଇ ଉଠିଛନ୍ତି ତାହା ନୁହେଁ । ଅତି ଦ୍ରୁତ ପଦରେ ତଳୁ ଉପରକୁ ଓ ଉପରୁ ତଳକୁ ଗମନାଗମନ କରିବା ଆରମ୍ଭ କରିଛି ।

: ଏହା ତ ଅତ୍ୟନ୍ତ ଭୟଙ୍କର କଥା ! ଦ୍ୱିତୀୟଟା ବର୍ଣ୍ଣନା କରନ୍ତୁ ।

: ଦ୍ୱିତୀୟଟା ଏହି ଯେ ଆଜି କ'ଣ ଗୋଟାଏ ପର୍ବ ଉପଲକ୍ଷରେ ହିନ୍ଦୁସ୍ତ୍ରୀମାନେ ନାସ୍ତିକୂଳ ଯମୁନା ପୂଜନରେ ସମବେତ ହୋଇଛନ୍ତି । ହରେନ୍ଦ୍ର, ଅକ୍ଷୟ ପ୍ରଭୃତି ପଣ୍ଡିତ ସମାଜ ନିର୍ଲିପ୍ତ ଓ ନିର୍ବିକାର ଚିତ୍ତରେ ସେଠାକୁ ଏକମାତ୍ର ଅଭିଯାନ କରିଛନ୍ତି ।

: ଭଲକଥା । ତୃତୀୟ ଦଶାଟା ବର୍ଣ୍ଣନା କରନ୍ତୁ ।

: ଦର୍ଶନେଚ୍ଛୁ ଆଶୁବୈଦ୍ୟ ଅତି ଉତ୍କଣ୍ଠିତ ହୃଦୟରେ ଅବିନାଶ ବାବୁଙ୍କ ପାଇଁ ଅପେକ୍ଷା କରି ରହିଁଛନ୍ତି । ପ୍ରାର୍ଥନା ଯେପରି ସେ ଅସ୍ୱୀକାର ନ କରନ୍ତି ।

ଅବିନାଶ ହସି ହସି କହିଲେ—ସେ ପ୍ରାର୍ଥନା ମଞ୍ଜୁର କରିଛନ୍ତି । ଏଥର ଚତୁର୍ଥ ଦଶାର ବିବରଣ ଦିଅନ୍ତୁ ।

ଆଶୁ ବାବୁ କହିଲେ—ଏଇଟି କିନ୍ତୁ ଗୁରୁତର । ବାବାଜୀ ବିଲାତରୁ ଆସି ଭାରତରେ ପଦାର୍ପଣ କରି ପ୍ରଥମେ କାଶୀ ଏବଂ ପରେ ଏଇ ଆଗ୍ରାରେ ଆସି ଗତ ପନ୍ଦରଦିନଠାରୁ

ଉପସ୍ଥିତ ହୋଇଛୁ । ସମ୍ପ୍ରତି ମନ୍ଦିରଗାତ୍ରର କଳ ବିଗିଡ଼ି ଯାଇଛୁ । ବାବାଜୀ ନିଜେ ତାକୁ ମରାମତି କରିବାରେ ଲାଗି ପଡ଼ିଛୁ । ମରାମତି ସମାପ୍ତ ପ୍ରାୟ ଏବଂ ସେ ଆସିଲା ବୋଲି ଜାଣ । ଅଭିଳାଷ, ପ୍ରଥମ ଜ୍ୟୋତ୍ସ୍ନାରେ ସମସ୍ତଙ୍କୁ ଏକ ସଙ୍ଗରେ ତାଜମହଲକୁ ନିରୀକ୍ଷଣ କରିବାକୁ ପଡ଼ିବ ।

ଅବିନାଶ ବାବୁଙ୍କର ହସ ହସ ମୁହଁ ଗମ୍ଭୀର ହୋଇଗଲା । ପଚାରିଲେ—ଏଇ ବାବାଜୀଟି କିଏ ଆଶୁ ବାବୁ ? ଏହାର କଥା ଦିନେ କହୁ କହୁ ହଠାତ୍ ବନ୍ଦ କରି ଦେଇଥିଲେ ନା ?

ଆଶୁ ବାବୁ କହିଲେ—ହଁ । କିନ୍ତୁ ଆଜି ଆଉ ଆପଣଙ୍କୁ କହିବା ପାଇଁ ବାଧା ନାହିଁ । ଅଜିତ କୁମାର ଆମର ସାଥୀ ହୋଇଁ, ମଣିର ବର । ଏ ଦୁହିଁଙ୍କର ଭଲ ପାଇବାଟା ପୃଥିବୀର ଗୋଟାଏ ଅପୂର୍ବ ବସ୍ତୁ । ପିଲାଟି ରତ୍ନଟିଏ ।

ଅବିନାଶ ବାବୁ ସ୍ଥିର ହୋଇ ଶୁଣିବାକୁ ଲାଗିଲେ । ଆଶୁବାବୁ ପୁଣି କହିବାକୁ ଲାଗିଲେ, ମୁଁ ବ୍ରାହ୍ମ ନୁହେଁ—ହିନ୍ଦୁ । ମୋର ସମସ୍ତ କର୍ମ ହିନ୍ଦୁ ମତରେ ହୋଇଥାଏ । ଯଥା ସମୟରେ ଅର୍ଥାତ୍ ଗୃହବର୍ଷ ପୂର୍ବେ ଏ ଦୁହିଁଙ୍କର ବିବାହ ହୋଇଯିବାର କଥା ଥିଲା । ହେଉଥାନ୍ତା ମଧ୍ୟ । କିନ୍ତୁ ହେଲା ନାହିଁ । ସେ ଦୁହିଁଙ୍କର ଯେପରି ପରିଚୟ ହୋଇଥିଲା ତାହା ମଧ୍ୟ ଏକ ବିଚିତ୍ର ବ୍ୟାପାର । କିଛିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ସେ ସବୁ କଥା ବର୍ତ୍ତମାନ ଥାଉ ।

ଅବିନାଶ ବାବୁ ସେହିପରି ସ୍ତବ୍ଧ ହୋଇ ଶୁଣିବାକୁ ଲାଗିଲେ । ଆଶୁବାବୁ କହିଲେ —ମଣି ଦେହ ହଳଦୀ ରଙ୍ଗ ହୋଇଗଲା । ରାତି ଗାଡ଼ିରେ କାଶୀରୁ ସାନବାପା ଆସି ପହଞ୍ଚିଲେ । ବାବାଙ୍କ ମୃତ୍ୟୁପରେ ସେ ହେଉଛନ୍ତି ଘରର କର୍ତ୍ତା । ପିଲାଦିନୁ ନାହାନ୍ତି । ଖୁଡ଼ୀକୁ ନେଇ ବହୁଦିନ ଧରି ସେ କାଶୀ ବାସୀ । ଜ୍ୟୋତିଷମାନଙ୍କ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ । ଆସି କହିଲେ ଏ ବିବାହ ବର୍ତ୍ତମାନ ହୋଇ ପାରିବ ନାହିଁ । ସେ ନିଜେ ଏବଂ ଅନ୍ୟାନ୍ୟ ପଣ୍ଡିତମାନଙ୍କ ଦ୍ୱାରା ନିର୍ଭୁଲ ଗଣନା କରି ଜାଣି ପାରିଛନ୍ତି ଯେ ବର୍ତ୍ତମାନ ବିବାହ ହେଲେ ତିନିବର୍ଷ ତିନିମାସ ଭିତରେ ମଣି ନିଶ୍ଚୟ ବିଧବା ହେବ ।

ଗୋଟାଏ ହୁଲସ୍ଥୂଳ ପଡ଼ିଗଲା । ସମସ୍ତ ଆୟୋଜନ ପଣ୍ଡ ହେବାକୁ ବସିଲା । କିନ୍ତୁ ସାନବାବାଙ୍କୁ ମୁଁ ଚିହ୍ନେ । ବୁଝିପାରିଲି ଏଥିରେ ଆଉ ଏପାଖ ସେପାଖ ହେବାର ନାହିଁ । ଅଜିତ ନିଜେ ମଧ୍ୟ ଗୋଟିଏ ବିରାଟ ବଡ଼ଲୋକର ପୁଅ । ତାର ବିଧବା ଖୁଡ଼ୀଟିଏ ବ୍ୟତୀତ ସଂସାରରେ କେହି ନ ଥିଲେ । ସେ ଭୀଷଣ ବିଗିଡ଼ିଗଲେ । ଅଜିତ ଦୁଃଖ ଆଉ ଅଭିମାନରେ ଇଂଞ୍ଜିନିୟରିଙ୍ଗ ପଢ଼ିବା ପାଇଁ ବିଲାତ ଚାଲିଗଲା । ସମସ୍ତେ ଜାଣିଲେ ଏ ବିବାହ ସବୁଦିନ ପାଇଁ ଭାଙ୍ଗିଗଲା ।

ଅବିନାଶ ବାବୁ ଦୀର୍ଘ ନିଃଶ୍ୱାସ ଛାଡ଼ି ପଚାରିଲେ—ତାପରେ ?

: ସମସ୍ତେ ହତାଶ ହୋଇପଡ଼ିଲୁ । କେବଳ ହେଲା ନାହିଁ ନିଜେ ମଣି । ମୋତେ ଆସି କହିଲା—ବାବା, ଏପରି କ'ଣ ଗୋଟାଏ ଗୁରୁତର କାଣ୍ଡ ଘଟିଛି ଯାହା ପାଇଁ ତୁମେ ଆହାର ନିଦ୍ରା ତ୍ୟାଗ କରି ବସିଲ ? ଉନିଶ ବର୍ଷ କ'ଣ ଏମିତି ଗୁଡ଼ାଏ ବେଶୀ ସମୟ ?

ତାଙ୍କୁ ଯେ କେତେ କଷ୍ଟ ହୋଇଛି ସେ କଥା ମୁଁ ଜାଣେ । କହିଲି—ମା'ଆ ତୋ କଥା ଯେପରି ସାର୍ଥକ ହୁଏ । କିନ୍ତୁ ଏସବୁ ବ୍ୟାପାରରେ ଉନିଶବର୍ଷ କ'ଣ ଗୋଟିଏ ଦିନର ମାତ୍ରାତ୍ମକ ।

ମଣି ହସିଦେଇ କହିଲା—ତୁମର ଭୟ କରିବାର କିଛି ନାହିଁ ବାବା, ମୁଁ ତାଙ୍କୁ ଭଲକରି ଚିହ୍ନିଛି ।

ଅଜିତ ଚରିତ୍ରନ ଟିକିଏ ସାତ୍ତ୍ୱିକ ପ୍ରକୃତିର ମନୁଷ୍ୟ । ଭଗବାନଙ୍କ ଉପରେ ତାର ଅଟଳ ବିଶ୍ୱାସ । ଯିବା ସମୟରେ ମଣିପାଖକୁ ଖଣ୍ଡିଏ ଶ୍ଳେଟ ଚିଠି ଲେଖି ଦେଇଗଲା । ଏହି ଉଣିବର୍ଷ ଭିତରେ ସେ ଆଉ କୌଣସି ଦ୍ୱିତୀୟ ପତ୍ର ଲେଖି ନାହିଁ । ନ ଲେଖୁ, କିନ୍ତୁ ମନେ ମନେ ମଣି ସବୁ ଜାଣିପାରେ ଏବଂ ସେହିଦିନଠାରୁ ସେ ବ୍ରହ୍ମଚାରିଣୀ ଜୀବନ ଗ୍ରହଣ କଲା ଯେ ଦିନକ ପାଇଁ ଡହିରୁ ଭ୍ରଷ୍ଟ ହୋଇ ନାହିଁ । ଅଥଚ ତାକୁ ବାହାରୁ ଦେଖିଲେ କାହାର କିଛି ବୁଝିବାର ଶକ୍ତି ନାହିଁ ।

ଅବିନାଶ ବାବୁ ଶ୍ରଦ୍ଧାରେ ବିଗଳିତ ହୋଇ କହିଲେ—ପ୍ରକୃତରେ ବୁଝିପାରିବାର ନୁ ନାହିଁ । କିନ୍ତୁ ମୁଁ ଆଶୀର୍ବାଦ କରୁଛି, ଭଗବାନ ଯେପରି ସେମାନଙ୍କ ଜୀବନକୁ ସୁଖମୟ କରନ୍ତୁ ।

ଆଶୁବାବୁ କନ୍ୟା ତରଫରୁ ମଥାନତ କଲେ । କହିଲେ—ବ୍ରାହ୍ମଣଙ୍କର ଆଶୀର୍ବାଦ କଦାପି ନିଷ୍ଫଳ ହେବ ନାହିଁ । ଅଜିତ ଆସି ପ୍ରଥମେ ସାନବାପାଙ୍କ ପାଖକୁ ଯାଇଥିଲା । ସେ ଅନୁମତି ଦେଇଛନ୍ତି, ନଚେତ୍ ସେ ଏଠାକୁ ବୋଧହୁଏ ଆସି ନ ଥାନ୍ତା ।

ଏହାପରେ ଉଭୟେ କିଛି ସମୟ ପାଇଁ ନୀରବ ରହିବା ପରେ ଆଶୁବାବୁ କହିବାକୁ ଆରମ୍ଭ କଲେ—ବିଲାତ ଚାଲିଗଲା ପରେ ଦୁଇବର୍ଷ ପର୍ଯ୍ୟନ୍ତ ତାର କୌଣସି ସମ୍ବାଦ ନ ପାଇ ମୁଁ ଭିତରେ ଭିତରେ ପାତ୍ରର ଯେ ସନ୍ଧାନ ନ କରିଛି ତାହା ନୁହେଁ । କିନ୍ତୁ ମଣି ଜାଣିପାରି ମୋତେ ନିଷେଧ କରି କହିଲା—ବାବା, ତୁମେ ଏପରି ଚେଷ୍ଟା କରନାହିଁ । ମୋତେ ପ୍ରକାଶ୍ୟରେ ତୁମେ ଜସ୍ବାନ ସିନା କରନାହିଁ କିନ୍ତୁ ମନେ ମନେ ତ କରି ଯାଉଛ । ମୁଁ କହିଲି—ଏମିତି କ୍ଷେତ୍ରରେ ତ ହୁଏ ମା'ଆ । କିନ୍ତୁ ଝିଅର ଦୁଇ ଆଖିରେ ଯେପରି ଲୁହ ଭରି ଉଠିଲା । କହିଲା—ହୁଏ ନାହିଁ ବାବା । କେବଳ କଥାବାର୍ତ୍ତା ହୁଏ । ଆଉ ତା'ଠାରୁ ବେଶୀ ନୁହେଁ ବାବା । ମୋ ଅଦୃଷ୍ଟରେ ଭଗବାନ ଯାହା ଲେଖିଛନ୍ତି ମୁଁ ତାହା ଯେପରି ସହ୍ୟ କରିବା ପାଇଁ ସମର୍ଥ ହୋଇପାରେ । ମୋତେ ଅନ୍ୟ କୌଣସି ଆଦେଶ ତୁମେ ଦିଅ ନାହିଁ । ଦୁଇଜଣଙ୍କ ଆଖିରୁ ଲୁହ ବହିବାକୁ ଲାଗିଲା । ଲୁହପୋଛି କହିଲି— ଅପରାଧ କରିଛି ମା'ଆ, ଅବୁଝା ବୁଢ଼ା ପୁଅଟାକୁ ତୁ କ୍ଷମା କର ।

ହଠାତ୍ ପୂର୍ବ ସ୍ମୃତିର ଆବେଗରେ ତାଙ୍କ କଣ୍ଠ ରୁଦ୍ଧ ହୋଇ ଆସିଲା । ଅବିନାଶ ବାବୁ ଅନେକ ସମୟ ପର୍ଯ୍ୟନ୍ତ କଥା କହିପାରିଲେ ନାହିଁ । ତାପରେ ଧୀରେ ଧୀରେ କହିଲେ—ଆଶୁବାବୁ କେତେ ଯେ ଭୁଲ ଆମେମାନେ ସଂସାରରେ ନ କରୁ ଏବଂ କେତେ ନା କେତେ ଅନ୍ୟାୟ ଧାରଣା ମନରେ ପୋଷଣ ନ କରୁ !

ଆଶୁବାବୁ ଠିକ୍ ବୁଝିପାରିଲେ ନାହିଁ, ପଚାରିଲେ—କାହା ବିଷୟରେ ?

: ଏଇ ଆମେମାନେ ଅନେକ ଯେପରି ମନେକରୁ ଯେ ଝିଅମାନେ ଉଚ୍ଚଶିକ୍ଷିତା ହୋଇ ମେମସାହେବ ପାଲଟି ଯାଉଛନ୍ତି, ହିନ୍ଦୁର ପ୍ରାଚୀନ ସଂସ୍କାର ସେମାନଙ୍କ ହୃଦୟରେ ଆଉ ସ୍ଥାନ ପାଉ ନାହିଁ; କିନ୍ତୁ ଏହା ଆମମାନଙ୍କର କେତେ ବଡ଼ ଭ୍ରମ କହିଲେ ?

ଆଶୁବାବୁ ମୁଣ୍ଡ ହଲାଇ କହିଲେ—ଭ୍ରମ ଅନେକ ସ୍ଥଳରେ ହୁଏ ସତ । କିନ୍ତୁ ଜାଣନ୍ତି ଅବିନାଶ ବାବୁ, ଶିକ୍ଷିତ ହେଉ କି ଅଶିକ୍ଷିତ ହେଉ ଅସଲ କଥା ହେଉଛି ପାଇବା । ପାଇବା, ନ ପାଇବା ଉପରେ ସବୁ ନିର୍ଭର କରେ । ନ ହେଲେ ଜଣକର ଅପରାଧ ଅନ୍ୟ କାନ୍ଧରେ ଚାପି ଦେଲେ ଯେତେକ ଗଣ୍ଡଗୋଳ ଉପୁଜି ଥାଏ । ଆରେ ଏଇ ଯେ ଅଜିତ ? ମଣି କାହିଁ ?

ତିରିଶ ବର୍ଷ ବୟସର ଜଣେ ସୁଶ୍ରୀ ବଳିଷ୍ଠ ଯୁବକ ପ୍ରବେଶ କଲା । ତା ଜାମା ପେଣ୍ଟରେ କଳା ଦାଗ । କହିଲା – ମଣି ମୋତେ ଏତେ ସମୟ ଧରି ସାହାଯ୍ୟ କରୁଥିଲା । ତା ଶାଢ଼ୀରେ ମଧ୍ୟ କଳା ଲାଗିଛି । ସେଥିପାଇଁ ବଦଳାଇବାକୁ ଯାଇଛି । ମଟରଟା ଠିକ୍ ହୋଇ ଯାଇଛି । ଡ୍ରାଇଭରକୁ ଆଗକୁ ଆଣିବା ପାଇଁ କହି ଦେଇଛି ।

ଆଶୁବାବୁ କହିଲେ –ଅଜିତ ! ଏ ହେଉଛନ୍ତି ମୋର ପରମ ବନ୍ଧୁ ଶ୍ରୀଯୁକ୍ତ ଅବିନାଶ ମୁଖୋପାଧ୍ୟାୟ । ଏଠା କଲେଜର ଅଧ୍ୟାପକ । ଜାତିରେ ବ୍ରାହ୍ମଣ । ତାଙ୍କୁ ନମସ୍କାର କର ।

ଆଗନ୍ତୁକ ଯୁବକ ଅବିନାଶ ବାବୁଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇଲା । ଉଠି କରି ଠିଆ ହୋଇ ଆଶୁବାବୁଙ୍କୁ ଉଦ୍ଦେଶ୍ୟ କରି କହିଲା—ମଣିର ଆସିବା ପାଇଁ ପାଞ୍ଚ, ସାତ ମିନିଟ ମଧ୍ୟ ସମୟ ଲାଗିବ ନାହିଁ । କିନ୍ତୁ ଆପଣ ଟିକିଏ ଶୀଘ୍ର ପ୍ରସ୍ତୁତ ହୋଇ ପଡ଼ନ୍ତୁ । ବିଳମ୍ବ ହେଲେ ସବୁ ଦେଖିବା ପାଇଁ ସମୟ ପାଇ ପାରିବା ନାହିଁ । ଲୋକେ କହନ୍ତି ତାଜମହଲକୁ ଯେତେଥର ଦେଖିଲେ ମଧ୍ୟ କୁଆଡ଼େ ମନରେ ତୃପ୍ତି ଆସେ ନାହିଁ ।

ଆଶୁବାବୁ କହିଲେ—ତୃପ୍ତି ଆସିବାର ଜିନିଷ ସେ ନୁହେଁ । କିନ୍ତୁ ମୁଁ ତ ପ୍ରସ୍ତୁତ ହୋଇ ରହିଛି । ବରଞ୍ଚ ତୁମର ସାହା ଡେରି । କାରଣ ତୁମେ ଏ ପର୍ଯ୍ୟନ୍ତ ଲୁଗା ବଦଳାଇ ପାରିନାହିଁ ।

ଯୁବକ ଜଣକ ନିଜର ପୋଷାକ ପ୍ରତି ଦୃଷ୍ଟି ପକାଇ କହିଲା—ମୋର ବଦଳାଇବା ଦରକାର ନାହିଁ । ଏଥିରେ ଚଳିଯିବ ।

: ଏଇ କଳା ଦାଗ ଲାଗିଥିବା ପୋଷାକରେ !

ଯୁବକ ଜଣକେ ହସି ଦେଇ କହିଲା—ହଁ, ହୋଇଥାଉ । ଏହାତ ଆମର ପେଷା । ପୋଷାକରେ କାଳି ଲାଗିବାଟା ଆମର ଗୌରବ ।

କଥା ଶୁଣି ଆଶୁବାବୁ ମନେ ମନେ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ଅବିନାଶ ବାବୁ ମଧ୍ୟ ଯୁବକର ବିନମ୍ର ସରଳତାରେ ମୁଗ୍‌ଧ ହେଲେ ।

ମଣି ଆସି ଉପସ୍ଥିତ ହେଲା । ହଠାତ୍ ତା ଆଡ଼କୁ ଚାହିଁ ଦେଇ ଅବିନାଶ ବାବୁ ଯେପରି ଚମକି ପଡ଼ିଲେ । କିଛି ଦିନ ହେବ ତାକୁ ଦେଖି ନଥିଲେ । ଏହା ଭିତରେ ଏପରି ଆନନ୍ଦର ଘଟଣା ଘଟି ଯାଇଛି; ବିଶେଷତଃ ତା ପିତାଙ୍କ ଠାରୁ ବର୍ତ୍ତମାନ ଯେଉଁ ସବୁ କଥା ଶୁଣିଥିଲେ, ତହିଁରୁ ମନେ କରିଥିଲେ ମନୋରମା ମୁହଁରେ ଏପରି ଗୋଟାଏ କିଛି ଭାବ ଦେଖି ପାରିବେ ଯାହା କି ଅନିର୍ବଚନୀୟ ଏବଂ ଜୀବନରେ କେବେ ଦେଖିବାକୁ ପାଇ ନଥିବେ । କିନ୍ତୁ ସେପରି କିଛି ଦେଖିବାକୁ ପାଇଲେ ନାହିଁ । ନିହାତ ସାଧା ସିଧା ପୋଷାକ । ଗୋପନ ଆନନ୍ଦର ପ୍ରଚ୍ଛନ୍ନ ଆଡ଼ମ୍ବର କେଉଁଠାରେ ଆତ୍ମ ପ୍ରକାଶ କରିନାହିଁ । କିମ୍ବା ସୁଗଭୀର ପ୍ରସନ୍ନତାର ଶାନ୍ତ ଦୀପ୍ତି ମୁହଁର କେଉଁଠାରେ ବିକଶିତ ହୋଇ ଉଠିନାହିଁ, ବରଞ୍ଚ କିପରି ଗୋଟାଏ କ୍ଳାନ୍ତିର ଛାୟା ଆଖି ଦୁଇଟିକୁ ମଳୀନ କରି ଦେଖାଇଛି । ଅବିନାଶ ବାବୁଙ୍କର ମନେ ହେଲା ପିତୃ ସ୍ନେହ ବଶବର୍ତ୍ତୀ ହୋଇ ସେ ବୋଧହୁଏ ନିଜର କନ୍ୟାକୁ ଭୁଲ ବୁଝିଛନ୍ତି । ନଚେତ୍ ଦିନେ ଯାହା ସତ୍ୟ ଥିଲା, ଆଜି ତାହା ମିଥ୍ୟା ହୋଇ ଯାଇଛି ।

ଅଳ୍ପ ସମୟ ପରେ, ପ୍ରକାଣ୍ଡ ଗୋଟାଏ ମଟର ଗାଡ଼ିରେ ସମସ୍ତେ ବାହାରି ପଡ଼ିଲେ । ନଦୀର ଘାଟେ ଘାଟେ ସେତେବେଳକୁ ପୁଣ୍ୟ ଲୁବ୍‌ଧ ଏବଂ ରୂପ ଲୁବ୍‌ଧ ସ୍ତ୍ରୀ ପୁରୁଷଙ୍କର ଭିଡ଼ ଜମି ଆସିଥାଏ । ସୁନ୍ଦର, ସୁଦୀର୍ଘ ପଥର ସିଡ଼ି ଉପରେ ସେମାନଙ୍କର ସାଜ-ସଜ୍ଜା ଓ ବିଚିତ୍ର ପରିଧେୟ ଅଳଙ୍କାରମାନ ରବି କିରଣରେ ଅପରୂପ ହୋଇ ଉଠିଥାଏ । ତାହାକୁ ଦେଖୁ ଦେଖୁ ସେମାନେ ବିଶ୍ୱ ବିଖ୍ୟାତ ତାଜମହଲର ସିଂହଦ୍ୱାର ସମ୍ମୁଖରେ ଯେତେବେଳେ ଆସି ଉପସ୍ଥିତ ହେଲେ ସେତେବେଳେ ହେମନ୍ତର ନାତିଦୀର୍ଘ ଦିବା ଭାଗ ଅବସାନ ହେବାକୁ ଯାଉଥାଏ ।

ଯମୁନା କୂଳରେ ଯାହା କିଛି ଦର୍ଶନୀୟ ସେ ସବୁ ଦେଖି ସାରିବା ପରେ ଅକ୍ଷୟର ଦଳବଳ ଇତ ପୂର୍ବରୁ ଆସି ପହଞ୍ଚି ଯାଇଥିଲେ । ସେମାନେ ତାଜକୁ ଅନେକବାର ଦେଖିଛନ୍ତି । ଦେଖି ଦେଖି ସେମାନଙ୍କର ଅରୁଚି ଧରି ଗଲାଣି । ସେଥିପାଇଁ ଉପରକୁ ନଉଠି ତଳେ ବଗିଚାର ଗୋଟିଏ ଅଂଶରେ ସମସ୍ତେ ବସିଥିଲେ । ବାତ-ବ୍ୟାଧି-ପୀଡ଼ିତ ଆଶୁବାବୁ ଅତି ଗୁରୁଭାର ଦେହକୁ ଘାସ ଉପରେ ଥୋଇ ଦେଇ କ୍ଳାନ୍ତିର ଗୋଟିଏ ନିଶ୍ୱାସ ଛାଡ଼ି କହିଲେ—ଆଃ ! ମଣିଷ ବଞ୍ଚିଗଲା । ଏଥର, ଏଣିକି ଯାହାର ଯେତେ ଇଚ୍ଛା ସେତିକି

ମମତାଜ ବେଗମ୍‌ଙ୍କର କବର ଦେଖି ଆନନ୍ଦ ଲାଭ କରନ୍ତୁ ବାବା, ଆଶୁ ବୈଦ୍ୟ ଏଇଠାରେ ରହି ବେଗମ ସାହେବାଙ୍କୁ କୁର୍ନିସ ଜଣାଉଛି । ଏହାଠାରୁ ଅଧିକ ତାଙ୍କୁ ଆଉ ଦେଇ ପାରିବ ନାହିଁ ।

ମନୋରମା ବ୍ୟଥିତ କଣ୍ଠରେ କହିଲା—ତାହା ହୋଇ ପାରିବ ନାହିଁ ବାବା, ତୁମକୁ ଏକାକୀ ଛାଡ଼ି ଆମେ କେହି ଯାଇ ପାରିବୁ ନାହିଁ ।

ଆଶୁ ବାବୁ ହସି ଦେଇ କହିଲେ—ଭୟ ନାହିଁ ମାଆ, ତୋ ବୁଢା ବାପାକୁ କେହି ଚୋରି କରି ନେଇଯିବ ନାହିଁ ।

ଅବିନାଶ ବାବୁ କହିଲେ—ନା, ସେପରି ଆଶଙ୍କା ନାହିଁ । ଖଣ୍ଡମତ ଲୁହାର କପିକଲ ଓ ଚେନ ଇତ୍ୟାଦି ସଂଗ୍ରହ ନ କରି ପାରିଲେ ଆପଣଙ୍କୁ ସେ ନେବ ଅବା କିପରି ?

ମନୋରମା କହିଲା—ମୋ ବାପାଙ୍କୁ ଆପଣ ଖୁଣିବେ ନାହିଁ । ଆପଣମାନଙ୍କ ଦୃଷ୍ଟି ପଡ଼ି ପଡ଼ି ମୋ ବାପା ଏ ସହରକୁ ଆସିବା ପରେ ଖୁବ୍ ରୋଗା ହୋଇ ଗଲେଣି ।

ଅବିନାଶ ବାବୁ କହିଲେ—ତାହା ଯଦି ହୋଇଥାଏ ତେବେ ମୋର ଅନ୍ୟାୟ ହୋଇଛି; ଏକଥା ମାନିବାକୁ ପଡ଼ିବ । ନଚେତ୍ ଦର୍ଶନୀୟ ବସ୍ତୁ ହିସାବରେ ତାଙ୍କର ମର୍ଯ୍ୟାଦା ତାଜମହଲ ଠାରୁ କମ୍ ହୁଅନ୍ତା ନାହିଁ ।

ସମସ୍ତେ ହସି ଉଠିଲେ । ମନୋରମା କହିଲା—ତାହା ହେବ ନାହିଁ ବାବା, ତୁମକୁ ଆମ ସଙ୍ଗରେ ଯିବାକୁ ପଡ଼ିବ । ତୁମ ଆଖିରେ ନ ଦେଖି ପାରିଲେ ଏହି ତାଜମହଲର ସୌନ୍ଦର୍ଯ୍ୟ ଅଧେ ଲୁଚି ରହିଯିବ । ଯିଏ ଯେତେ ଖବର ଦେଉ, କିନ୍ତୁ ତୁମ ଠାରୁ ଅସଲ ତଥ୍ୟ ଆଉ କେହି ବେଶୀ ଜାଣନ୍ତି ନାହିଁ ।

ଏହାର ଅର୍ଥ ଯେ କ'ଣ ଅବିନାଶ ବାବୁଙ୍କ ବ୍ୟତୀତ ଅନ୍ୟ କେହି ଜାଣନ୍ତି ନାହିଁ । ସେ ମଧ୍ୟ ଏହିପରି ଅନୁରୋଧ କରିବା ପାଇଁ ଉଦ୍ୟତ ହୁଅନ୍ତି ଥିଲେ । ହଠାତ୍ ସମସ୍ତଙ୍କର ଆଖି ଏକ ଅପ୍ରତ୍ୟାଶିତ ବସ୍ତୁ ଉପରେ ପଡ଼ିଲା । ତାଜମହଲର ପୂର୍ବ ଦଗରୁ ବୁଲି ବୁଲି ଅକସ୍ମାତ ଶିବନାଥ ଓ ତାଙ୍କ ସ୍ତ୍ରୀ ସେହିଠାରେ ଆସି ପହଞ୍ଚିଲେ । ଶିବନାଥ ଏମାନଙ୍କୁ ନ ଦେଖି ପାରିଥିବାର ଛଳନା କରି ଅନ୍ୟ ଦଗକୁ ମୁହଁ ବୁଲାଇ ନେବା ପାଇଁ ଉପକ୍ରମ କରୁଥିବା ବେଳେ ତା ସ୍ତ୍ରୀ ତାଙ୍କ ଦୃଷ୍ଟି ସେମାନଙ୍କ ପ୍ରତି ଆକର୍ଷଣ କରି ଖୁସି ହୋଇ କହି ଉଠିଲା—ଦେଖ, ଆଶୁବାବୁ ଓ ତାଙ୍କ ଝିଅ ମଧ୍ୟ ଆସିଛନ୍ତି ।

ଆଶୁବାବୁ ବଡ଼ ପାଟିରେ ଡାକ ପକାଇ କହିଲେ—ଆପଣ କେତେବେଳେ ଆସି ଥିଲେ ଶିବନାଥ ବାବୁ ? ଏ ଆଡ଼େ ଆସନ୍ତୁ ।

ଶିବନାଥ ସସ୍ତ୍ରୀକ ପାଖରେ ଆସି ଠିଆ ହେଲା । ଆଶୁବାବୁ ଅବନୀଶ ବାବୁଙ୍କୁ ପରିଚୟ ଦେଇ କହିଲେ—ଏ, ହେଉଛନ୍ତି ଶିବନାଥଙ୍କର ସ୍ତ୍ରୀ । ଆଚ୍ଛା ଆପଣଙ୍କ ନାମଟି କ'ଣ ଜାଣିପାରିଲି ନାହିଁ ତ ?

ଝିଅଟି କହିଲା—ମୋ ନାମ କମଳ । କିନ୍ତୁ ମୋତେ 'ଆପଣ' ବୋଲି କହିବେ ନାହିଁ ।

ଆଶୁବାବୁ କହିଲେ – କହିବାତ ଉଚିତ୍ ନୁହେଁ । କମଳ, ଏ ହେଉଛନ୍ତି ମୋର ବନ୍ଧୁ । ତୁମ ସ୍ୱାମୀଙ୍କର ମଧ୍ୟ ପରିଚିତ, ବସ ।

କମଳ ଅଜିତ୍‌କୁ ଇଙ୍ଗିତ କରି କହିଲା—ତାଙ୍କର ପରିଚୟ କିଛି ଦେଲେ ନାହିଁ ଯେ ?

: ଆସ୍ତେ ଆସ୍ତେ ଦେବି । ସେ ମୋର ହେଉଛନ୍ତି ପରମ ଆତ୍ମୀୟ । ନାମ ଅଜିତ କୁମାର ରାୟ । ଅନେକ ଦିନ ହେବ ବିଲାତରୁ ଦେଶକୁ ଫେରି ଆମମାନଙ୍କୁ ଦେଖିବା ପାଇଁ ଆସିଛନ୍ତି । କମଳ, ତୁମେ କ'ଣ ପ୍ରଥମ ଥର ପାଇଁ ତାଜମହଲ ଦେଖିଲ ?

ଝିଅଟି ମୁଣ୍ଡ ଟୁଙ୍ଗାଇ ହଁ ବୋଲି ଜଣାଇଲା ।

ଆଶୁବାବୁ କହିଲେ—ତାହାହେଲେ ତୁମେ ଭାଗ୍ୟବତୀ । ଅଜିତ କିନ୍ତୁ ତୁମଠାରୁ ଭାଗ୍ୟବାନ । କାହିଁକି ନା, ପୃଥିବୀର ଏହି ପରମ ବିସ୍ମୟଟିକୁ ଆଦୌ ଦେଖି ପାରି ନ ଥିଲି । ଏଥର ଦେଖିବ । ଆଲୁଅ କମି ଆସୁଛି । ଆଉ ବିଳମ୍ବ କଲେ ଭଲ ହେବ ନାହିଁ, ଅଜିତ ।

ମନୋରମା କହିଲା—ଡେରି ତ କେବଳ ଆପଣଙ୍କ ପାଇଁ ହେଉଛି, ଉଠନ୍ତୁ ।

: ଉଠିବା ତ ସହଜ କଥା ନୁହେଁ, ସେଥିପାଇଁ ଯେ ଆୟୋଜନ କରିବାକୁ ପଡ଼ିବ ।

: ତାହାହେଲେ ସେପରି ଆୟୋଜନ କରନ୍ତୁ ବାବା ।

: କରୁଛି । ଆଚ୍ଛା କମଳ, ତାଜ ଦେଖି ତୋର କ'ଣ ମନେହେଲା ?

: ବିସ୍ମୟକର ବସ୍ତୁ ବୋଲି ମନେ ହେଲା । କମଳ କହିଲା ।

ମନୋରମାର ଯେପରି ଏହା ସହିତ ପରିଚୟ ଅଛି ଏହା ତାର ଆଚରଣରୁ ପ୍ରକାଶ ପାଇଲା ନାହିଁ । ସେ ତା ବାପାଙ୍କୁ ତାଗିଦ୍ କରି କହିଲା—ସନ୍ଧ୍ୟା ହୋଇ ଆସୁଛି । ଏଥର ଉଠ ବାବା ।

: ଉଠୁଛି ମାଆ । ଏହା କହି ଆଶୁବାବୁ ଉଠିବା ପାଇଁ କୌଣସି ଉଦ୍ୟମ ନ କରି ବସି ରହିଲେ । କମଳ ସାମାନ୍ୟ ଟିକିଏ ହସିଲା । ମନୋରମା ଆଡ଼କୁ ଚାହିଁ କହିଲା—ତାଙ୍କ ଦେହ ଭଲ ନାହିଁ । ଚଢ଼ିବା, ଓହ୍ଲାଇବା ମଧ୍ୟ ସହଜ କଥା ନୁହେଁ । ତା' ଅପେକ୍ଷା ବରଂ ଆମେମାନେ ବସି ଏଠାରେ କଥା ହେଉଛୁ, ଆପଣମାନେ ଯାଇ ଦେଖି ଆସନ୍ତୁ ।

ମନୋରମା ତା ବାପାଙ୍କ ଏପରି ପ୍ରସ୍ତାବରେ କୌଣସି ଉତ୍ତର ଦେଲା ନାହିଁ । କେବଳ ଜିଦ୍ ଧରି ତା ବାପାଙ୍କୁ ପୁଣି କହିଲା—ନା, ବାବା ସେକଥା ହେବ ନାହିଁ । ତୁମେ ଏଥର ଉଠ ।

କିନ୍ତୁ ଦେଖାଗଲା ଉଠିବା ପାଇଁ କାହାର ଚେଷ୍ଟା ନାହିଁ । ଯେଉଁ ଜୀବନ୍ତ ସୌନ୍ଦର୍ଯ୍ୟ ଏହି ଅପରିଚିତା ରମଣୀର ସର୍ବାଙ୍ଗରେ ଅକସ୍ମାତ୍ ମୂର୍ତ୍ତିମନ୍ତ ହୋଇ ଉଠିଛି, ତା ଆଗରେ ଅତୃରଞ୍ଜିତ ମର୍ମରର ସୌନ୍ଦର୍ଯ୍ୟ ଯେପରି ମୁହୂର୍ତ୍ତକ ଭିତରେ ଝାପ୍‌ସା ହୋଇ ଉଠିଲା ।

ଅବିନାଶ ବାବୁଙ୍କର ଚମକ ଭାଙ୍ଗିଲା । କହିଲେ ସେ ନ ଗଲେ ହେବ ନାହିଁ । ମନୋରମାଙ୍କର ବିଶ୍ୱାସ ତାଙ୍କ ବାପାଙ୍କ ଆଖି ଦ୍ୱାରା ତାଜମହଲ ସେ ଦେଖି ନ ପାରିଲେ ତାଜମହଲର ଅର୍ଦ୍ଧେକ ସୌନ୍ଦର୍ଯ୍ୟ ସେ ଉପଲବ୍‌ଧି କରି ପାରିବ ନାହିଁ ।

କମଳ ତା ସରଳ ଆଖି ଦୁଇଟି ତୋଳି ପ୍ରଶ୍ନ କଲା—କାହିଁକି ? ଆଶୁବାବୁ କ'ଣ ଏ ବିଷୟରେ ଜଣେ ବିଶେଷଜ୍ଞ ଲୋକ ? ବୋଧହୁଏ ସମସ୍ତ ତତ୍ତ୍ୱ ଜାଣିଛନ୍ତି ?

ମନୋରମା ମନେ ମନେ ବିସ୍ମିତ ହୋଇ ଉଠିଲା । କଥାଗୁଡ଼ାକ ଠିକ୍ ଅଶିକ୍ଷିତା ଦାସୀ କନ୍ୟା ଭଳି ତାକୁ ମନେ ହେଲା ନାହିଁ ।

ଆଶୁବାବୁ ପୁଲକିତ ହୋଇ କହିଲେ—କିଛି ଜାଣେ ନାହିଁ । ବିଶେଷଜ୍ଞ ତ, ଆଦୌ ନୁହେଁ, ଏପରିକି ସୌନ୍ଦର୍ଯ୍ୟ ତତ୍ତ୍ୱର ସାମାନ୍ୟ କଥାଟିକକୁ ମଧ୍ୟ ଜାଣେ ନାହିଁ । ସେଇଥିରୁ ମୁଁ କେବେ ତାଜମହଲକୁ ଦେଖିପାରି ନାହିଁ କମଳ । ମୁଁ ଦେଖେ ସମ୍ରାଟ ସାହାଜାନଙ୍କୁ । ମୁଁ ଦେଖିପାରେ ତାଙ୍କରି ଅପରିସୀମ ବ୍ୟଥା ଯେପରି ପଥରର ଅଙ୍ଗେ ଅଙ୍ଗେ ଫୁଟି ଉଠିଛି । ମୁଁ ଦେଖେ ତାଙ୍କର ଏକନିଷ୍ଠ ପତ୍ନୀପ୍ରେମ; ଯାହା ଏହି ମର୍ମ୍ମର ଗାତ୍ରରେ କବିତା ସୃଷ୍ଟି କରି ଚିରଦିନ ପାଇଁ ତାଙ୍କୁ ବିଶ୍ୱରେ ଅମର କରି ପାରିଛି ।

କମଳ ଅତ୍ୟନ୍ତ ସହଜ କଣ୍ଠରେ ତାଙ୍କ ମୁହଁକୁ ଚାହିଁ କହିଲା—ମୁଁ ଶୁଣିଛି ତାଙ୍କର ତ ଅନେକଗୁଡ଼ିଏ ବେଗମ ଥିଲେ । ସମ୍ରାଟ ମମତାଜଙ୍କୁ ଯେପରି ଭଲ ପାଆନ୍ତି ସେପରି ଆଉ ଦଶଜଣଙ୍କୁ ମଧ୍ୟ ଭଲ ପାଉଥିବେ । ହୁଏତ ତାଙ୍କ ପ୍ରତି କିଛି ବେଶୀ ହୋଇପାରେ, କିନ୍ତୁ ତାହାକୁ ଏକନିଷ୍ଠ ପ୍ରେମ କୁହାଯାଇ ପାରିବ ନାହିଁ ଆଶୁବାବୁ ।

ଏହି ଅପ୍ରଚଳିତ ସାଙ୍ଘାତିକ ମନ୍ତବ୍ୟ ହେତୁ ସମସ୍ତେ ଚମକି ଉଠିଲେ । ଆଶୁବାବୁ ଇମ୍ଭା ଅନ୍ୟ କେହି ହଠାତ୍ ଏହାର ଉତ୍ତର ଖୋଜି ପାଇ ପାରିଲେ ନାହିଁ ।

କମଳ କହିଲା ସମ୍ରାଟ ଭାବୁକ ଥିଲେ । କବି ଥିଲେ । ସେଥିପାଇଁ ତାଙ୍କର ଶକ୍ତି, ସମ୍ପଦ ଏବଂ ଧୈର୍ଯ୍ୟ ବିନିଯୋଗରେ ଏତେ ବଡ଼ ସୌନ୍ଦର୍ଯ୍ୟର ବସ୍ତୁଟି ପ୍ରତିଷ୍ଠିତ କରି ଯାଇଛନ୍ତି । ମମତାଜ ଏକ ଆକସ୍ମିକ ଉପଲକ୍ଷ । ନଚେତ୍ ଏପରି ସୁନ୍ଦର ସୌଧ ସେ କଦାପି ଏପରି ସାମାନ୍ୟ ଘଟଣା ନେଇ ରଚନା କରିଯାଇ ନ ଥାନ୍ତେ । ଧର୍ମ ଉପଲକ୍ଷ

ହୋଇଥିଲେ କ୍ଷତି ନ ଥିଲା, ସହସ୍ର ଲକ୍ଷ ମନୁଷ୍ୟ ବଧ କରିବା ଦିଗ୍‌ବିଜୟୀର ସ୍ମୃତି ଉପଲକ୍ଷ ହେଲେ ଏପରି ଚଳିଯାଇଥାନ୍ତା । ଏହା ଏକନିଷ୍ଠ ପ୍ରେମର ଦାନ ନୁହେଁ, ବାଦଶାହଙ୍କ ନିଜର ଆନନ୍ଦ ହେତୁ ଏକ ଅକ୍ଷୟ ଅବଦାନ । ତଥାପି ଏହା ଆମ ନିକଟରେ ଯଥେଷ୍ଟ ବୋଲି କହିଲେ ଚଳିବ ।

ଆଶୁବାବୁ ଯେପରି ମନରେ ଆଘାତ ପାଇଲେ । ବାରମ୍ବାର ମୁଣ୍ଡ ହଲାଇ କହିଲେ—ଯଥେଷ୍ଟ ନୁହେଁ କମଲ, କୌଣସି ପ୍ରକାରରେ ଯଥେଷ୍ଟ ନୁହେଁ । ତୁମ କଥା ଯଦି ସତ ହୁଏ, ସମ୍ରାଟଙ୍କର ଏକନିଷ୍ଠ ଭଲ ପାଇବା ଯଦି ନ ଥାନ୍ତା ତାହାହେଲେ ଏହି ବିରାଟ ସ୍ମୃତି ସୌଧର କୌଣସି ଅର୍ଥ ହିଁ ନ ଥାନ୍ତା । ସେ ଯେତେ ସୌନ୍ଦର୍ଯ୍ୟ ସୃଷ୍ଟି କରନ୍ତୁ ନା କାହିଁକି ତନ୍ତୁ ମଣିଷ ହୃଦୟରେ ସେହି ଶ୍ରଦ୍ଧା ଆଦୌ ରହିପାରି ନ ଥାନ୍ତା ।

କମଲ କହିଲା—ଯଦି ରହିପାରି ନ ଥାନ୍ତା ତେବେ ତାହାକୁ ମୂଢ଼ତା କୁହାଯିବ । ନିଷ୍ଠାର ମୂଲ୍ୟ ଯେ ନାହିଁ ସେ କଥାତ ମୁଁ ମନା କରୁନାହିଁ । କିନ୍ତୁ ଯେଉଁ ମୂଲ୍ୟ ଯୁଗ ଯୁଗ ଧରି ଲୋକମାନେ ତାଙ୍କୁ ଦେଇ ଆସିଛନ୍ତି ତାହା ତାଙ୍କର ପ୍ରାପ୍ୟ ନୁହେଁ । ଦିନେ ମନୁଷ୍ୟ ଯାହାକୁ ଭଲ ପାଇଥାଏ କୌଣସି କାରଣ ହେତୁ ସେହି ଭଲ ପାଇବାରେ ଯେ ପରିବର୍ତ୍ତନ ଆସି ନ ପାରେ, ମନର ଏହି ଅଚଳ, ଅଟଳ ଜଡ଼ଧର୍ମ ସୁସ୍ଥ ନୁହେଁ କିମ୍ବା ସୁନ୍ଦର ମଧ୍ୟ ନୁହେଁ ।

ଏକଥା ଶୁଣିବା ପରେ ମନୋରମାର ବିସ୍ମୟର ସୀମା ରହିଲା ନାହିଁ । ତାକୁ ମୂର୍ଖ, ଦାସୀକନ୍ୟା କହି ଅବହେଳା କରିବା କଠିନ ହୋଇପାରେ । କିନ୍ତୁ ଏତେଗୁଡ଼ିଏ ପୁରୁଷଙ୍କ ଆଗରେ ତା'ପରି ଗୋଟିଏ ନାରୀ ମୁହଁରୁ ଏପରି ଲଜ୍ଜାହୀନ ଉକ୍ତି ତାକୁ ଆଘାତ ଦେଲା । ଏତେ ସମସ୍ତ ପର୍ଯ୍ୟନ୍ତ ସେ ନୀରବ ଥିଲା । ଆଉ ସେ ଆପଣାକୁ ସଂଯତ କରି ରଖି ପାରିଲା ନାହିଁ । ଅନୁଚ୍ଚ ଅଥଚ ରୁକ୍ଷ କଣ୍ଠରେ କହିଲା - ଏହି ମନୋବୃତ୍ତି ଆଉ କାହାର ନ ହେଉ ଆପଣଙ୍କ ପାଖରେ ଯେ ସ୍ୱାଭାବିକ ତାହା ମୁଁ ମାନୁଛି, କିନ୍ତୁ ଅପର ପକ୍ଷରେ ଏହା ସୁନ୍ଦର ନୁହେଁ କିମ୍ବା ଶୋଭନୀୟ ନୁହେଁ ।

ଆଶୁବାବୁ ମନେ ମନେ ଦୁଃଖିତ ହୋଇ କହିଲେ—ଛିଃ, ମାଆ !

କମଲ ଆଦୌ ରାଗିଲା ନାହିଁ ବରଂ ଟିକେ ହସିଦେଲା । କହିଲା, ଅନେକ ଦିନର ଦୃଢ଼ ସଂସ୍କାର ମୂଳରେ ଆଘାତ କଲେ ମଣିଷ ସହଜରେ ସହ୍ୟ କରି ପାରେ ନାହିଁ । ଆପଣ ସତ୍ୟ ହିଁ କହିଛନ୍ତି । ମୋ ନିକଟରେ ଏପରି ଭାବନା ସ୍ୱାଭାବିକ । ମୋ ଦେହ, ମନ, ଯୌବନରେ ପରିପୂର୍ଣ୍ଣ । ମୋ ମନର ମଧ୍ୟ ପ୍ରାଣ ଅଛି । ଯେଉଁ ଦିନ ଜାଣିବ ପ୍ରୟୋଜନ ହେତୁ ଏ ସତ୍ୟର ପରିବର୍ତ୍ତନ ହେବାର ଶକ୍ତି ନାହିଁ, ସେଦିନ ବୁଝି ପାରିବ ମୋ ବିସ୍ମର ଭୁଲ । ଏହା କହି ମୁହଁ ତୋଳି ଦେଖିଲା ଅଜିତର ଦୁଇ ଆଖିରୁ ଯେପରି ଅଗ୍ନି ବର୍ଷା ହେବାରେ ଲଗିଛି । କେଜାଣି ସେ ଦୃଷ୍ଟି ମନୋରମା ଆଖିରେ ଧରା ପଡ଼ିଲା କି ନାହିଁ,

କିନ୍ତୁ ସେ କଥା ମଝିରେ ହଠାତ୍ କହି ଉଠିଲା—ବାବା, ଆଉ ବେଳ ନାହିଁ । ମୁଁ ଯେତିକ ପାରିବି ଅଜିତ ବାବୁଙ୍କୁ ସେତିକ ସମସ୍ତ ଭିତରେ ଟିକିଏ ବୁଲାଇ ଆଣୁଛି ।

ଆଶୁବାବୁ ଖୁସି ହୋଇ କହିଲେ—ହଉ ଯାଅ ମାଆ । ଆମେମାନେ ଏଠାରେ ବସିଛୁ, କିନ୍ତୁ ଟିକିଏ ଶୀଘ୍ର ଫେରି ଆସିବୁ ମାଆ, ନ ହେଲେ କାଲି ବେଳ ଥାଉ ଥାଉ ଆଉ ଥରେ ଆସିବା ।

ଅଜିତ୍ ଏବଂ ମନୋରମା ତାଜ ଦେଖି ଯେତେବେଳେ ଫେରି ଆସିଲେ ସେତେ-ବେଳକୁ ସୂର୍ଯ୍ୟ ଅସ୍ତ ହୋଇ ଯାଇଛନ୍ତି ସତ କିନ୍ତୁ ଆଲୋକ ସମ୍ପୂର୍ଣ୍ଣ ବୁଝି ଯାଇ ନ ଥାଏ । ସମସ୍ତେ ବେଶ ଆସନ ଜମାଇ ବସି ଯାଇଥାନ୍ତି । ଯୁକ୍ତ କୋଳାହଳ ସ୍ୱରରେ ଗୁଲୁ ରହି-ଥାଏ ତାଜମହଲ ବିଷୟରେ । ଘରକୁ ଫେରିବା ସମ୍ପର୍କରେ ଏପରିକି ମନୋରମା ଓ ଅଜିତ ଦୁହିଁଙ୍କ କଥା ସେମାନେ ଭୁଲି ଯାଇଥିଲେ । ଅକ୍ଷୟ ନୀରବରେ ଫୁଲି ଉଠିଥାଏ । ଦେଖିଲେ ସନ୍ଦେହ ହୁଏ, ଏହା ପୂର୍ବରୁ ସେ ବୋଧହୁଏ ବହୁତ ପାଟି କରିଛି । ବର୍ତ୍ତମାନ ବିଶ୍ରାମ ନେଉଛି । ଆଶୁବାବୁ ଅର୍ଦ୍ଧଶାୟିତ ଅବସ୍ଥାରେ ମନ ଦେଇ ସେମାନଙ୍କର କଥା ଶୁଣି ଲାଗିଥାନ୍ତି । ଅବିନାଶ ବାବୁ ଟିକିଏ ଆଗକୁ ଝୁଙ୍କିପଡ଼ି ତୀକ୍ଷ୍ଣ ଦୃଷ୍ଟିରେ କମଳକୁ ଚାହିଁ ରହିଥାନ୍ତି । ଯୁକ୍ତି ପଡ଼ିଲା ବର୍ତ୍ତମାନ ଜବାବ ଓ ସୁଆଲ ଏହି ଦୁଇ ଜଣଙ୍କ ଭିତରେ ସୀମାବଦ୍ଧ । ସମସ୍ତେ ଆଗନ୍ତୁକମାନଙ୍କ ପ୍ରତି ମୁହଁ ତୋଳି ଚାହିଁ ରହିଛନ୍ତି । କେହି ଦେହଟାକୁ ସାମାନ୍ୟ ବଙ୍କାଇଲେ ତ କେତେକ ସେତିକ ମଧ୍ୟ କରିବା ପାଇଁ ସମୟ ପାଉଲେ ନାହିଁ । କମଳ ଓ ଶିବନାଥ, ଏମାନେ ମଧ୍ୟ ମୁହଁ ଟେକି ଚାହିଁଲେ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ଜଣକର ଦୃଷ୍ଟି ଯେପରି ଅଗ୍ନି ଶିଖା ଭଳି ଜଳୁଥାଏ । ଅନ୍ୟଜଣକର ଦୃଷ୍ଟି ସେହି ଭଳି କ୍ଳାନ୍ତ ଓ ମଳିନ ଦିଶୁଥାଏ । ସେ ଯେପରି କିଛୁ ଦେଖି ନାହିଁ କିମ୍ବା ଶୁଣିନାହିଁ । ଏହି ଦଳ ଭିତରେ ରହି ଶିବନାଥ ଯେପରି କାହିଁ କେତେଦୂରକୁ ଚାଲି ଯାଇଛି ।

ଆଶୁବାବୁ କେବଳ କହିଲେ ବସ । କିନ୍ତୁ ସେମାନେ କେଉଁଠାରେ ବସିଲେ, କିମ୍ବା ନ ବସିଲେ, ତାହା ଦେଖିବା ପାଇଁ ସେ ସମୟ ପାଇଲେ ନାହିଁ ।

ଅବିନାଶ ବାବୁ ବୋଧହୁଏ ଅକ୍ଷୟର ଯୁକ୍ତିମାଳାର ଛିଣ୍ଡା ସୂତାକୁ ହାତରେ ଧରି ପକାଇ ଥିଲେ । କହିଲେ ସମ୍ରାଟ ସାହାଜାହାନଙ୍କ ପ୍ରସଙ୍ଗ ବର୍ତ୍ତମାନ ଥାଉ । ତାଙ୍କ ସମ୍ବନ୍ଧରେ ଆଲୋଚନା କରିବାର କାରଣ ଅଛି ମୁଁ ସ୍ୱୀକାର କରୁଛି । ତଥାପି ପ୍ରଶ୍ନଟା ଜଟିଳ । ଯେଉଁଠାରେ ପ୍ରଶ୍ନ ଏହି ମାର୍ବଲ ପଥ ପରିଷ୍କାର, ଜଳ ଭଳି ତରଳ, ସୂର୍ଯ୍ୟର ଆଲୋକ

ଘର ସ୍ୱଚ୍ଛ ଠିକ୍ ଏଇ ଯେପରି ଆମ ଏଇ ବାବୁଙ୍କ ଜୀବନ ଘର । କେଉଁ ଦିଗରୁ ତାଙ୍କର କିଛି ଅଭାବ ନାହିଁ । ସେ ମଧ୍ୟ ସବୁ ବିଷୟ ଜାଣନ୍ତି । ଏକଥା ସେ ସୁଦ୍ଧା ଭାବି ପାରିଲେ ନାହିଁ ଯେ ତାଙ୍କ ମୃତା ସ୍ତ୍ରୀଙ୍କ ଆସନରେ ଆଉ କିପରି କାହାକୁ ବସାଯାଇ ପାରିବ ! ଏହା ତାଙ୍କ କଳ୍ପନାର ଅତୀତ ଥିଲା । ଭୁବନ ଦେଖି ନର-ନାରୀଙ୍କ ପ୍ରେମ ସମ୍ପର୍କରେ ଏହା କେତେ ବଡ଼ ଆଦର୍ଶ ! କେତେ ଉଚ୍ଚରେ ଏହାର ସ୍ଥାନ !

କମଳ କ'ଣ କିଛି କହିବାକୁ ଯାଉଥିଲା । କିନ୍ତୁ ପଛରୁ ଗୋଟାଏ ମୃଦୁ ସ୍ପର୍ଶ ଅନୁଭବ କରି ଫେରି ଚାହିଁଲା । ଶିବନାଥ କହିଲେ—ବର୍ତ୍ତମାନ ଏ ଆଲୋଚନା ଥାଉ ।

କମଳ ପ୍ରଶ୍ନ କଲା—କାହିଁକି ?

ଶିବନାଥ ଉତ୍ତର ଦେବାକୁ ଯାଇ ଏତିକି କହିଲା—ଏମିତି କହୁଥିଲି । ଏହା କହି ନୀରବ ହୋଇଗଲା । ତା କଥାରେ କେହି ବିଶେଷ ମନ ଦେଲେ ନାହିଁ । ସେହି ଉଦାସ ଅନ୍ୟମନସ୍କ ଆଖି ଅନ୍ତରାଳରେ କି କଥା ଯେ ଲୁଚି ହୋଇ ରହିଗଲା, କେହି ଜାଣି ପାରିଲେ ନାହିଁ । ଜାଣିବା ପାଇଁ ଚେଷ୍ଟା ମଧ୍ୟ କଲେ ନାହିଁ ।

: ଓହୋ—ଏଇମିତି ! ତୁମେ ବୋଧହୁଏ ଘରକୁ ଫେରିଯିବା ପାଇଁ ତରତର । କିନ୍ତୁ ଘରଟିକୁ ତ ସଙ୍ଗରେ ଧରିଛ—ଏହା କହି କମଳ ହସି ପକାଇଲା ।

ଆଶୁବାବୁ ଲଜ୍ଜିତ ହେଲେ । ହରେନ୍ଦ୍ର-ଅକ୍ଷୟ ମୁହଁ ଚିପି ହସିଲେ । ମନୋରମା ଅନ୍ୟ ଦିଗକୁ ମୁହଁ ଫେରାଇ ନେଲା । କିନ୍ତୁ ଯାହାକୁ ଲକ୍ଷ୍ୟ କରି କୁହାଗଲା ସେହି ଶିବନାଥ ମୁହଁର ସାମାନ୍ୟ ରେଖାରେ ମଧ୍ୟ ପରିବର୍ତ୍ତନ ଦେଖାଗଲା ନାହିଁ । ସେ ଯେପରି ପଥରରେ ଗଢ଼ା । ଯେପରି କିଛି ଦେଖିପାରେ ନାହିଁ କିମ୍ବା ଶୁଣିପାରେ ନାହିଁ ।

ଅବିନାଶ ବାବୁ ବିଳମ୍ବ ସହ୍ୟ କରି ପାରୁ ନ ଥିଲେ । ତେଣୁ କହିଲେ ମୋ କଥାର ଉତ୍ତର ଦିଅ ।

କମଳ କହିଲା—କ'ଣ କରିବି; ସ୍ୱାମୀଙ୍କର ଯେ ବାରଣ । ତାଙ୍କର ଅବାଧ୍ୟ ହେବାଟା ଉଚିତ ହେବ କି ? ଏହା କହି ସେ ହସିବାକୁ ଲାଗିଲା । ଅବିନାଶ ବାବୁ ହସି ନ ପାରି କହିଲେ—ଏ କ୍ଷେତ୍ରରେ ଅପରାଧ ହୁଏ ନାହିଁ । ଆମେ ଏତେ ଗୁଡ଼ିଏ ଲୋକ ମିଶି ତୁମକୁ ଅନୁରୋଧ କରୁଛୁ, ତୁମେ କୁହ ।

କମଳ କହିଲା—ଆଶୁବାବୁଙ୍କୁ ଆଜିକୁ ମିଶାଇ ଦୁଇଟି ଥର ଦେଖି ପାରିଛି । କିନ୍ତୁ ଏହା ମଧ୍ୟରେ ମୁଁ ତାଙ୍କୁ ମନେ ମନେ ଭଲ ପାଇ ବସିଛି । ଏହା କହି ଶିବନାଥଙ୍କୁ ଦେଖାଇ କହିଲା—ବର୍ତ୍ତମାନ ମୁଁ ବୁଝି ପାରିଛି ସେ କାହିଁକି ମୋତେ କହିବା ପାଇଁ ନିଷେଧ କରିଥିଲେ ।

ଆଶୁବାବୁ ତା କଥାରେ ବାଧା ଦେଇ କହିଲେ, ମୋ ପାଇଁ ତୁମର କୁଣ୍ଠା ବୋଧ କରିବାର କୌଣସି କାରଣ ନାହିଁ । ବୁଢ଼ା ଆଶୁ ବୈଦ୍ୟ ନିକଟ ନିର୍ବାଦ ମଣିଷ କମଳ, ତାକୁ

ମାତ୍ର ଦୁଇଟି ଜୀବନରେ ଅନେକ ଭାବରେ ଚର୍ଚ୍ଚା ପାଉଛ । ଆଉ ଦୁଇ ଥର ମିଶିବା ପରେ ଉପଲବ୍ଧି କରି ପାରିବ ତାକୁ ଭସ୍ମ କରିବା ଭଲ ଭୁଲ ବୋଧହୁଏ ଅଛ ସଂସାରରେ କିଛୁ ନାହିଁ । ତୁମେ ସ୍ୱଚ୍ଛନ୍ଦରେ କହି ପାର, ଏ ସବୁ କଥା । ଶୁଣିଲେ ପ୍ରକୃତରେ ମୁଁ ଆନନ୍ଦିତ ହେବ ।

କମଳ କହିଲା—ଠିକ୍ ଏହି କାରଣରୁ ତ ସେ ବାରଣ କରିଥିଲେ, ଏବଂ ଏଥିପାଇଁ ଅବିନାଶ ବାବୁଙ୍କ କଥାର ଉତ୍ତର ଦେବା ପାଇଁ ବର୍ତ୍ତମାନ ଇଚ୍ଛା ହେଉ ନାହିଁ ଯେ— ନର-ନାରୀଙ୍କ ପ୍ରେମ ସମ୍ପର୍କରେ ଏହାକୁ ମୁଁ ବଡ଼ ବୋଲି ମନେ କରି ପାରୁନି ଏବଂ ଆଦର୍ଶ ବୋଲି ମାନି ନେଇ ପାରୁ ନାହିଁ ।

ଅକ୍ଷୟ ଏତେବେଳକୁ କହିଲା—ଖୁବ୍ ସମ୍ଭବତଃ ଆପଣ ମାନନ୍ତି ନାହିଁ କିନ୍ତୁ କ'ଣ ମାନନ୍ତି ଟିକିଏ ଶୁଣିପାରିବି କି ? ତା ପ୍ରଶ୍ନ ପଚାରିବା ଭଙ୍ଗୀରେ ଶ୍ଳେଷ ଭରି ରହିଥିଲା ।

କମଳ ତା ଆଡ଼କୁ ଚାହିଁଲା । କିନ୍ତୁ ତା ପ୍ରଶ୍ନର ଯେ ଉତ୍ତର ଦେଲା ତାହା ନୁହେଁ, କହିଲା—ଧନେ ଆଶୁବାବୁ ସ୍ତ୍ରୀକୁ ଭଲ ପାଉଥିଲେ । ସେ କିନ୍ତୁ ଆଉ ବଞ୍ଚି ନାହାଁନ୍ତି । ତାଙ୍କୁ ଦେବାପାଇଁ କିଛି ନାହିଁ କିମ୍ବା ତାଙ୍କଠାରୁ ପାଇବାପାଇଁ କିଛି ନାହିଁ । ତାଙ୍କୁ ଖୁସୀ କରିଯାଇ ପାରିବ ନାହିଁ କିମ୍ବା ଦୁଃଖ ଦେଇ ହେବ ନାହିଁ । ସେ ନାହାଁନ୍ତି । ଭଲପାଇବାର ପାତ୍ର ନିଶ୍ଚିହ୍ନ ହୋଇ ଯାଇଛନ୍ତି । କେବଳ ବଞ୍ଚି ରହିଛି ତାଙ୍କର ଭଲପାଇବାର କେତୋଟି ମଧୁର ଘଟଣାବଳୀର ସ୍ମୃତି । ମଣିଷ ନାହିଁ କିନ୍ତୁ ଅଛି ତାର ସ୍ମୃତି । ତାକୁ ଅହରହ ମନ ଭିତରେ ସାଇତି ରଖି, ବର୍ତ୍ତମାନ ଅପେକ୍ଷା ଅତୀତଟାକୁ ସତ୍ୟ ମନେକରି ଜୀବନ-ଯାପନ କରିବା ମଧ୍ୟରେ ଯେ କି ବିରାଟ ଆଦର୍ଶ ରହିଛି ମୁଁ ତ କାହିଁ ଭାବି ପାରୁ ନାହିଁ ?

କମଳ ମୁହଁର ଏହି କଥାରେ ଆଶୁବାବୁ ପୁଣି ଆଘାତ ପାଇଲେ । କହିଲେ କମଳ, ଆମ ଦେଶର ବିଧବାମାନଙ୍କ ହାତରେ ଏଇ ଜିନିଷଟି କିନ୍ତୁ ଚରମ ସମ୍ବଳ ହୋଇ ରହିଥାଏ । ସ୍ୱାମୀ ଚାଲିଯାଏ କିନ୍ତୁ ତା'ର ସ୍ମୃତି ନେଇ ତ ସେମାନଙ୍କର ବୈଧବ୍ୟ ଜୀବନର ପବିତ୍ରତା ଅବ୍ୟାହତ ରହେ । କ'ଣ ତୁମେ ଏହାକୁ ମଧ୍ୟ ମାନ ନାହିଁ ?

କମଳ କହିଲା—ନା । ଗୋଟାଏ ଜିନିଷକୁ ବଡ଼ କରିଦେଲେ ସଂସାରରେ କୌଣସି ଜିନିଷ ବଡ଼ ହୋଇପାରେ ନାହିଁ । ବରଞ୍ଚ ଏକଥା କହନ୍ତୁ ଏହିପରି ଭାବରେ ବୈଧବ୍ୟ ଜୀବନ କଟାଇବାଟା ଏ ଦେଶର ବିଧି । କହନ୍ତୁ ତ ଗୋଟାଏ ମିଥ୍ୟାକୁ ସତ୍ୟର ଗୌରବ ଦେଇ ଲୋକମାନେ ଆପଣାକୁ ଠକାଇ ଆସିଛନ୍ତି । ଏକଥା ମୁଁ ଅସ୍ୱୀକାର କରିପାରିବି ନାହିଁ ।

ଅବିନାଶ ବାବୁ କହିଲେ—ମନୁଷ୍ୟ ଯଦି ଆପଣାକୁ ଠକାଇ ଆସିଥାଏ, ତେବେ ଏବେ ବିଧବାର ବ୍ରହ୍ମଚର୍ଯ୍ୟ ବୋଧ କଥା ଆଉ ଉଠାଇବ ନାହିଁ କିନ୍ତୁ ତାର ମୃତ୍ୟୁ ପର୍ଯ୍ୟନ୍ତ ସଜତ ଜୀବନଯାପନକୁ କ'ଣ ପବିତ୍ରତାର ମର୍ଯ୍ୟାଦା ଦେବା ନାହିଁ ?

କମଳ ହସିଲା । କହିଲା—ଅବିନାଶ ବାବୁ, ଏହା ମଧ୍ୟ ଆଉ ଗୋଟାଏ ଶବ୍ଦର ମୋହ । ସଂଯମ ଶବ୍ଦଟା ବହୁଦିନ ଧରି ମର୍ଯ୍ୟାଦା ପାଇ ପାଇ ଏପରି ଫୁଲି ଉଠିଛି ଯେ, ତା' ପାଇଁ ଆଉ ସ୍ଥାନ, କାଳ, ପାତ୍ର ଏବଂ କାରଣ ଅକାରଣର ପ୍ରୟୋଜନ ନାହିଁ କହିବା ସଙ୍ଗେ ସଙ୍ଗେ ମନୁଷ୍ୟ ମନ ସମ୍ଭ୍ରମରେ ନଇଁଆସେ । କିନ୍ତୁ ଅବସ୍ଥାବିଶେଷରେ ଏହା ଯେ ଗୋଟାଏ ଫାଙ୍କା ଆଡ଼ମ୍ବରଠାରୁ ଅଧିକା ନୁହେଁ, ଏପରି କଥାଟା ଉଚ୍ଚାରଣ କରିବା ପାଇଁ ସାଧାରଣ ଲୋକର ଯଦି ବା ଭୟ ହୋଇଥାଏ କିନ୍ତୁ ସେ ଭୟ ମୋର ନାହିଁ । ମୁଁ ସେ ଦଳର ସଭ୍ୟା ନୁହେଁ । ଅନେକ ଦିନ ଧରି ଯାହା ବୁଲି ହୋଇ ଆସିଛି ତାହାକୁ ମାନି ନେବା ପାଇଁ ମୁଁ ପ୍ରସ୍ତୁତ ନୁହେଁ । ସ୍ୱାମୀର ସ୍ମୃତିକୁ ବୁକୁରେ ଧରି ବିଧବା ଭଳି ଦିନ କାଟିବାର ସ୍ୱତଃ ସିଦ୍ଧି ପବିତ୍ରତାର ଧାରଣାକୁ ମୋତେ ପବିତ୍ର ବୋଲି ପ୍ରମାଣ କରି ଦେଖାଇ ନ ଦେଲା ପର୍ଯ୍ୟନ୍ତ ମୁଁ ସ୍ୱୀକାର କରିପାରିବ ନାହିଁ ।

ଅବିନାଶ ବାବୁ ଉତ୍ତର ଖୋଜି ନ ପାଇ କ୍ଷଣକାଳ ପାଇଁ ବିମୂଢ଼ ଭଳି ରହି ରହି କହିଲେ—ତୁମେ କହୁଛ କ'ଣ ?

ଅକ୍ଷୟ କହିଲା—ଦୁଇରେ ଦୁଇ ମିଶିଲେ ଚାରି ହୁଏ, ଏହା ବୋଧହୁଏ ଆପଣଙ୍କୁ ପ୍ରମାଣ କରି ଦେଖାଇ ନ ଦେଲେ ଆପଣ ବିଶ୍ୱାସ କରିବେ ନାହିଁ ?

କମଳ ଉତ୍ତର ଦେଲା ନାହିଁ । ରାଗ କଲା ନାହିଁ । କେବଳ ହସିଲା ।

ଅନ୍ୟ ଜଣେ ବ୍ୟକ୍ତି ରାଗ କଲେ ନାହିଁ । ସେ ହେଉଛନ୍ତି—ଆଶୁବାବୁ । ଅଥଚ କମଳ କଥାରେ ସବୁଠାରୁ ବେଶୀ ସେ ହିଁ ଆହତ ହୋଇଥିଲେ ।

ଅକ୍ଷୟ ପୁଣି କହିଲା—ଆପଣଙ୍କର ଏସବୁ କଦର୍ଯ୍ୟ ଧାରଣା ଆମ ଭଦ୍ର ସମାଜରେ ନାହିଁ । ସେଠାରେ ଏହା ସମ୍ପୂର୍ଣ୍ଣ ଅଚଳ ।

କମଳ ସେହିଭଳି ହସ ହସ ମୁହଁରେ ଉତ୍ତର ଦେଲା, ଭଦ୍ର ସମାଜରେ ଅଚଳ ହୋଇ ରହିଛି; ଏକଥା ତ ମୁଁ ଜାଣେ ।

ଏହାପରେ କିଛି ସମୟ ପାଇଁ ସମସ୍ତେ ନୀରବ ହୋଇ ରହିଲେ । ଆଶୁବାବୁ ଧୀରେ ଧୀରେ କହିଲେ—ଆଉ ଗୋଟିଏ କଥା ତୁମକୁ ପ୍ରଶ୍ନ କରିବି କମଳ । ପବିତ୍ରତା, ଅପବିତ୍ରତା କଥା କହୁ ନାହିଁ । କିନ୍ତୁ ସ୍ୱଭାବତଃ ଯିଏ ଅନ୍ୟ କିଛି କରିପାରେନା, ଧରନ୍ତୁ ଏଇ ଯେପରି ମୁଁ । ମଣିର ସ୍ୱର୍ଗୀୟା ଜନନୀ ନିକଟରେ ଆଉ କାହାକୁ ବସାଇବାପାଇଁ ମୁଁ କଳ୍ପନା କରି ମଧ୍ୟ କରିପାରୁ ନାହିଁ ।

କମଳ କହିଲା—ଆପଣ ଯେ ବୁଢ଼ା ହୋଇ ଯାଇଛନ୍ତି ଆଶୁବାବୁ !

ଆଶୁବାବୁ କହିଲେ—ଆଜି ବୁଢ଼ା ହୋଇ ଯାଇଛି ମାନୁଛି, କିନ୍ତୁ ଯେଉଁଦିନ ତ ଆଉ ବୁଢ଼ା ନ ଥିଲି । କିନ୍ତୁ ସେତେବେଳେ ତ ଏକଥା ସ୍ୱୀକାର ନାହିଁ ।

କମଳ କହିଲା—ସେଦିନ ମଧ୍ୟ ଏପରି ବୁଢ଼ା ଥିଲେ । ଦେହରେ ନୁହେଁ, ମନରେ । ଜଣେ ଜଣେ ଥାନ୍ତି ଯେଉଁମାନେ ବୁଢ଼ା ମନ ନେଇ ଜନ୍ମ ଗ୍ରହଣ କରିଥାନ୍ତି । ସେହି ବୁଢ଼ା ମନର ଶାସନ ତଳେ ସେମାନଙ୍କ ଶୀର୍ଣ୍ଣ, ବିକୃତ, ଯୌବନ ଚିରଦିନ ମଥା ଉଚ୍ଚ କରି ରହିଥାଏ । ବୁଢ଼ାମନ ଖୁସି ହୋଇ କହେ, ଆହା ! ଏଇତ ଭଲ ! ଜଞ୍ଜାଳ ନାହିଁ ଓ ଝଞ୍ଜଟ ନାହିଁ । ଏହାହିଁ ତ ଶାନ୍ତି । ଏହାତ ମନୁଷ୍ୟ ଜୀବନର ଚରମ ତତ୍ତ୍ୱ କଥା । ଏହିପରି କେତେ ବାହାବା ଏବଂ ଭଲ ଭଲ ବିଶେଷଣ ଦେଇ ଚାଲନ୍ତି । ଦୁଇ କାନ ମେଲି କରି ଆପଣାର ପ୍ରଶଂସା ବାଦ୍ୟ ବାଜୁଥିବାର ଶୁଣନ୍ତି କିନ୍ତୁ ଏହା ଯେ ସେମାନଙ୍କ ଜୀବନର ଏକ ଜୟ ବାଦ୍ୟ ନୁହେଁ, ଆନନ୍ଦ ଲୋକର ବିସର୍ଜନ ବାଜଣା ଏକଥା ସେମାନେ ଜାଣିପାରନ୍ତି ନାହିଁ ।

ସମସ୍ତେ ମନେ ମନେ ଇଚ୍ଛା କଲେ ଏହାର ଗୋଟାଏ କିଛି ଭଲ ରକମର ଉତ୍ତର ଦେବା ଆବଶ୍ୟକ । ଝିଅପିଲାଟିଏ ମୁହଁରେ ଉଦ୍ଦାମ ଯୌବନର ଏହି ନିର୍ଲଜ ସ୍ତବଗାନ ସମସ୍ତଙ୍କ କାନକୁ କଷ୍ଟ ଦେବାକୁ ଲାଗିଲା । କିନ୍ତୁ ଉତ୍ତର ଦେବାଭଳି କଥା କେହି ଖୋଜି ପାଇଲେ ନାହିଁ ।

ସେତେବେଳେ ଆଶୁବାବୁ ମୃଦୁ କଣ୍ଠରେ ପ୍ରଶ୍ନ କଲେ, କମଳ; ବୁଢ଼ା ମନ ବୋଲି ତୁମେ କାହାକୁ କହୁଛ ? ଆଚ୍ଛା ନିଜ ସହିତ ମିଳାଇ ଦେଖିଲ ଏହା ସତ କି ନାହିଁ ?

କମଳ କହିଲା—ମନର ବାର୍ଦ୍ଧକ୍ୟ ମୁଁ ତ ତାହାକୁ କହିଥାଏ ଆଶୁବାବୁ, ଯେଉଁ ମନ ଆଗକୁ ଚାହିଁପାରେ ନାହିଁ । ଯାହାର ଜରାଗ୍ରସ୍ତ ମନ ଭବିଷ୍ୟତର ସମସ୍ତ ଆଶାକୁ ଜଳାଞ୍ଜଳି ଦେଇ କେବଳ ଅତୀତ ଭିତରେ ବଞ୍ଚି ରହିବାକୁ ଇଚ୍ଛା କରେ । ଆଉ ଯେପରି ତାର କିଛି କରିବାର; କିମ୍ବା କିଛି ପାଇବାର ଦାବୀ ନାହିଁ । ବର୍ତ୍ତମାନ ତା ନିକଟରେ ଲୁପ୍ତ, ଅନାବଶ୍ୟକ, ଅନାଗତ ଏବଂ ଅର୍ଥହୀନ । ଅତୀତ ହିଁ ତାର ଆନନ୍ଦ; ତାର ବେଦନା—ଆଉ ତାର ସର୍ବସ୍ୱ । ତାକୁ ବଳି ଖଞ୍ଜି ସେ ଜୀବନର ବାକି କେତୋଟା ଦିନକୁ କଟାଇ ଦେଇ ବଞ୍ଚିବା ପାଇଁ ଚାହେଁ । ଆପଣଙ୍କ ସଙ୍ଗେ ଏସବୁ କଥାକୁ ମିଳାଇ ଟିକିଏ ଦେଖି ନିଅନ୍ତୁ ନା ।

ଆଶୁବାବୁ ହସିଲେ । କହିଲେ—ସମୟ ପାଇଲେ ନିଶ୍ଚୟ ମିଳାଇ ଦେଖିବି ।

ଅଜିତ କୁମାର ଏତେ ସମୟ ଧରି ଏତେ କଥା ଭିତରେ କଥା ପଦେ କହି ନଥିଲା । କେବଳ ଅପଲକ ନେତ୍ରରେ କମଳ ମୁହଁକୁ ଚାହିଁ ରହିଥିଲା । ହଠାତ୍ ତାର କ'ଣ ଯେ ହେଲା, ସେ ଆପଣାକୁ ଆଉ ସମ୍ଭାଳି ପାରିଲା ନାହିଁ । କହି ଉଠିଲା, ମୋର ଗୋଟାଏ ପ୍ରଶ୍ନ—ଦେଖନ୍ତୁ ମିସେସ୍...

କମଲ ସିଧା ତାଙ୍କ ଆଡ଼େ ଗୃହିଁ କହିଲା—ମିସେସ କାହିଁକ ଆଜ୍ଞା ? ମୋତେ ଆପଣ କମଲ ବୋଲି ଡାକନ୍ତୁ ନା ।

ଅଜିତ ଲାଜରେ ରଙ୍ଗ ପଡ଼ିଗଲା । କହିଲା—ନା-ନା-ସେ କପରି କଥା···

କମଲ କହିଲା—ଆଦୌ କପରି କଥା ନୁହେଁ । ବାପ-ମାଆ ମୋ ନାଆଁ ରଖିଥିଲେ ମୋତେ ଡାକିବା ପାଇଁ ତ ? ସେଥିରେ ତ ମୁଁ ରାଗ କରି ନାହିଁ । ହଠାତ୍ ମନୋରମା ଆଡ଼କୁ ଗୃହିଁ କହିଲା—ଆପଣଙ୍କ ନାମ ମନୋରମା । ମୁଁ ଯଦି ସେହି ନାମରେ ଡାକେ ଆପଣ ରାଗ କରିବେ କି ?

ମନୋରମା ମୁଣ୍ଡ ହଲାଇ କହିଲା—ହଁ, କରିବି ।

ଏଭଳି ଉତ୍ତର କେହି ପ୍ରତ୍ୟାଶା କରି ନଥିଲେ । ଅଶୁବାବୁ ଲାଜରେ ମଳିନ ପଡ଼ିଗଲେ ।

କେବଳ ଲଜ୍ଜିତା ହେଲା ନାହିଁ କମଲ ନିଜେ । କହିଲା—ନାମ ତ ଆଉ କିଛି ନୁହେଁ—କେବଳ ଗୋଟାଏ ଶବ୍ଦ । ଯାହା ଦ୍ୱାରା ବୁଝା ପଡ଼େ ବହୁଜନ ଭିତରେ ଜଣେ ଆଉ ଜଣକୁ ଆହ୍ୱାନ କରୁଛି । ତେବେ କେତେକ ଲୋକଙ୍କ ପ୍ରକୃତିକୁ ଏହା କଷ୍ଟ ଦେଇଥାଏ । ଏକଥା ମଧ୍ୟ ସତ୍ୟ । ସେମାନେ ଏହି ଶବ୍ଦଟାକୁ ନାନା ରୂପେ ଅଲଙ୍କୃତ କରିବା ପାଇଁ ଚାହାନ୍ତି । ଦେଖନ୍ତୁ ନାହାନ୍ତି ରାଜାମାନେ କପରି ସେମାନଙ୍କ ନାମ ଆଗରେ କେତେ ଗୁଡ଼ିଏ 'ଶ୍ରୀ' ଯୋଡ଼ି ମାଗିଲା ପରେ ଅପରକୁ ଉଚ୍ଚାରଣ କରିବାକୁ ସୁବିଧା ଦେଇଥାନ୍ତି । ନଚେତ୍ ସେମାନଙ୍କର ମର୍ଯ୍ୟାଦା ନଷ୍ଟ ହୁଏ । ଏହା କହି ସେ ହଠାତ୍ ହସି ଉଠି ଶିବନାଥକୁ ଦେଖାଇ କରି କହିଲା—ଏଇ ଧରନ୍ତୁ ଯେପରି ସେ··· । ଯେତେବେଳେ ମୋତେ କମଲ ବୋଲି ଡାକି ନ ପାରି ଡାକନ୍ତି ଶିବାନୀ··· । ଅଜିତ୍ ବାବୁ ଆପଣ ବରଞ୍ଚ ମୋତେ ମିସେସ ଶିବନାଥ ନଡାକି 'ଶିବାନୀ' ବୋଲି ସମ୍ବୋଧନ କରନ୍ତୁ । ଡାକଟା ଶ୍ରେଷ୍ଠ ଏବଂ ସମସ୍ତେ ତୃପ୍ତି ପାରିବେ । ଅନ୍ତତଃ ମୁଁ ତ ତୃପ୍ତି ପାରିବି ।

କିନ୍ତୁ କ'ଣ ଯେ ହେଲା, ଏପରି ସୁସ୍ପଷ୍ଟ ଆଦେଶ ପାଇ ମଧ୍ୟ ଅଜିତ କଥା କହି ପାରିଲା ନାହିଁ ।

ସେତେବେଳକୁ ଦିନ ଶେଷ ହୋଇ ଦାଣ୍ଡାଛନ୍ତି ଆକାଶରେ ମଳୀନ ଜ୍ୟୋତ୍ସ୍ନା ଦେଖା ଦେଇଥାଏ । ସେହି ଆଡ଼କୁ ନିଜ ବାପାଙ୍କର ଦୃଷ୍ଟି ଆକର୍ଷଣ କରି ମନୋରମା କହିଲା, ବାବା, ଶୀତ ପଡ଼ିବା ଆରମ୍ଭ ହେଲାଣି । ଆଉ ଏଣିକି ବସି ରହିବା ଠିକ୍ ନୁହେଁ । ଗୃଲ ଏଥର ଯିବା···

ଆଶୁବାବୁ କହିଲେ—ଏଇ ଉଠିଲି ମା ।

ଅବିନାଶ ବାବୁ କହିଲେ—ଶିବାନୀ ନାମଟି ଭଲ । ଶିବନାଥ ଗୁଣୀ ଲୋକ । ସେଥିପାଇଁ ନାମଟି ମଧ୍ୟ ଦେଇଛନ୍ତି ଶ୍ରୁତି ମଧୁର । ନିଜ ନାମ ସଙ୍ଗେ ଚମତ୍କାର ମିଳାଇ ପାରିଛନ୍ତି ।

ଆଶୁବାବୁ ଉତ୍‌ଫୁଲ ହୋଇ କହି ଉଠିଲେ—ଶିବନାଥ ନୁହେଁ ହେ ଅବନାଶ ବାବୁ, ଉପରେ ଥିବା ସେ । ଏହା କହି ସେ ଆକାଶ ଆଡ଼କୁ ଚାହିଁ କହିଲେ ଏହି ବୁଢ଼ା ଘଣ୍ଟସୂଚକାଗୁଡ଼ିକ ଯେପରି ଏ ଦୁହିଁଙ୍କୁ ଏକତ୍ର କରିବା ପାଇଁ ଆହାର ନିଦ୍ରା ତ୍ୟାଗ କରି ସାରିଥିଲେ । ବସି ରହନ୍ତୁ ।

ହଠାତ ଅକ୍ଷୟ ସିଧା ହୋଇ ଦୁଇ ତିନି ଥର ମୁଣ୍ଡ ହଲାଇ ଗ୍ଲେଟ ଆଖି ଦୁଇଟିକୁ ବିସ୍ଫାରିତ କରି କହିଲା, ଆଚ୍ଛା ମୁଁ ଆପଣଙ୍କୁ ଗୋଟାଏ ପ୍ରଶ୍ନ ପଚାରି ପାରେ କି ?

କମଲ ପଚାରିଲା—କି ପ୍ରଶ୍ନ ?

ଅକ୍ଷୟ କହିଲା—ଆପଣଙ୍କର ଲଜ୍ଜିତ ହେବାର କିଛି ନାହିଁ ଜାଣି ପାରି ମୁଁ ପଚାରୁଛି,—ଶିବାନୀ ନାମଟି ତ ଖୁବ୍ ଭଲ । କିନ୍ତୁ ଶିବନାଥଙ୍କ ସହିତ କ'ଣ ଆପଣଙ୍କର ପ୍ରକୃତରେ ବିବାହ ହୋଇଥିଲା ?

ଆଶୁବାବୁଙ୍କ ମୁହଁ କଳା ପଡ଼ିଗଲା । ସେ କହିଲେ—ଏ କ'ଣ କହୁଛନ୍ତି ଅକ୍ଷୟ ବାବୁ !

ଅବନାଶ ବାବୁ କହିଲେ—ତୁମେ କ'ଣ ପାଗିଗଲ ?

ହରେନ୍ଦ୍ର କହିଲା—ବ୍ରୁଟ୍ । ପଶୁ ।

ଅକ୍ଷୟ କହିଲା—ଆପଣମାନେ ଯାହା କହନ୍ତୁ । ମୋ ଠାରେ କିନ୍ତୁ ଚକ୍ଷୁଲଜ୍ଜା ନାହିଁ ।

ହରେନ୍ଦ୍ର କହିଲା—ଆମର ତ ଅନ୍ତତଃ ଅଛି ।

କମଲ କିନ୍ତୁ ହସିବାକୁ ଲାଗିଲା । ଯେପରି କେତେ ନାଟକୀୟ କଥା ଏହା ଭିତରେ ଗୋପନ ରହିଛି । କହିଲା—ଏଥିରେ ରାଗ କରିବାର କ'ଣ ଅଛି ହରେନ୍ଦ୍ର ବାବୁ ? ମୁଁ କହୁଛି ଅକ୍ଷୟ ବାବୁ, ଏକବାରେ ଯେ କିଛି ହୋଇ ନାହିଁ ତା ନୁହେଁ । ବିବାହ ଭଳି କ'ଣ ଗୋଟାଏ କିଛି ହୋଇଥିଲା । ଯେଉଁମାନେ କିନ୍ତୁ ଦେଖିବାକୁ ଆସିଥିଲେ ସେମାନେ ହସି-ଥିଲେ । କହିଥିଲେ ଏ ବାହାଘରଟା ବାହାଘର ନୁହେଁ—କପଟ ଛଳନା । ତାଙ୍କୁ ପଚାରିବାରୁ ସେ କହିଲେ—ବିବାହଟା ହେଲା ଶୈବ ମତରେ । ମୁଁ କହିଲି—ହେଁ, ତାହା ହିଁ ଭଲ । ଶିବଙ୍କ ସହିତ ଯଦି ଶୈବ ମତରେ ବିବାହ ହେଲା; ତେବେ ସେଥିପାଇଁ ଚିନ୍ତା କରିବାର କ'ଣ ଅଛି ?

ଅବନାଶ ଶୁଣି ଦୁଃଖିତ ହୋଇ କହିଲେ—କିନ୍ତୁ ଶୈବ ମତର ବିବାହ ତ ଆଜିକାଲି ଆମ ସମାଜରେ ଗୃହୀତ ହୋଇନାହିଁ । ଯଦି କୋଣସି ଦିନ ସେ ଏହି ବିବାହକୁ ଅସ୍ୱୀକାର କରିବା ପାଇଁ ଚାହାନ୍ତି ତେବେ ତାହାକୁ ପ୍ରମାଣ କରିବା ପାଇଁ ତୁମ ପାଖରେ ତ କିଛି ନାହିଁ କମଲ ?

କମଲା ଶିବନାଥ ଆଡ଼କୁ ଚାହିଁ ପଚାରିଲା ତୁମେ ଏପରି କ'ଣ କେବେ କରି-ପାରିବ ?

ଶିବନାଥ କୌଣସି ଉତ୍ତର ଦେଲେ ନାହିଁ । ସେହିପରି ଗମ୍ଭୀର ମୁହଁରେ ବସି ରହିଲେ । ସେତେବେଳେ କମଳ ମିଛରେ କପାଳରେ କର ମାରି କହିଲା—ହେ କପାଳ ! ସେ ଯିବେ 'ହୋଇନାହିଁ' ବୋଲି କହିବାକୁ ଆଉ ମୁଁ ଯିବି 'ହୋଇଛି' ବୋଲି ପର ନିକଟକୁ ବିଚାର ଖୋଜିବା ପାଇଁ । ତା ଆଗରୁ ମୋ ଗଳାରେ ଦେବା ପାଇଁ କ'ଣ ଖଣ୍ଡିଏ ଦଉଡ଼ି ଜୁଟିବ ନାହିଁ ?

ଅବିନାଶବାବୁ କହିଲେ—ଜୁଟିଯାଇ ପାରେ । କିନ୍ତୁ ଆତ୍ମହତ୍ୟା ତ ମହାପାପ ।

କମଳ କହିଲା—ପାପ ନା ଚୂଲି ପାଉଁଶ । କିନ୍ତୁ ତାହା ହେବ ନାହିଁ । ମୁଁ ଆତ୍ମହତ୍ୟା କରିବାକୁ ଯିବି; ଏକଥା ବିଧାତା ପୁରୁଷ ମୋ ପାଇଁ କଳ୍ପନା ସୁଦ୍ଧା କରି ନଥିବେ ।

ଆଶୁବାବୁ କହିଲେ—ଏଇ ଯେ ମଣିଷ ଭଳି କଥାଟିଏ କହିଲୁ ।

କମଳ ତାଙ୍କ ଆଡ଼କୁ ଚାହିଁ ନାଲିଶ କଲା ଭଙ୍ଗୀରେ କହିଲା—ଦେଖନ୍ତୁ ତ ଅବିନାଶ ବାବୁଙ୍କର ଅନ୍ୟାୟ ! ଶିବନାଥଙ୍କୁ ଦେଖାଇ କହିଲା—ସେ ଯିବେ ମୋତେ ଅସ୍ୱୀକାର କରିବା ପାଇଁ ଆଉ ମୁଁ ଯାଇ ତାଙ୍କ ଗଳାରେ ଓହଳି କହିବି ମୋତେ ସ୍ୱୀକାର କର ? ସତ୍ୟ ଯେଉଁଠାରେ ବିଲୁପ୍ତ ହେବ, ଏବଂ ଯିଏ ବିବାହକୁ ସ୍ୱୀକାର କରିବ ନାହିଁ, ତାକୁ ମୁଁ ଯିବି ଦଉଡ଼ିରେ ବାନ୍ଧି ରଖିବାକୁ ? ମୁଁ ? ମୁଁ ଯିବି ଏ କାମ କରିବା ପାଇଁ ? କହୁ କହୁ ତା ଆଖି ଦୁଇଟା ଯେପରି ଜଳି ଉଠିଲା ।

ଆଶୁବାବୁ ଆସ୍ତେ ଆସ୍ତେ କହିଲେ—ଶିବାନୀ, ସଂସାରରେ ଯେ ସତ୍ୟ ବଡ଼ । ଏକଥା ଆମେ ସମସ୍ତେ ସ୍ୱୀକାର କରୁ । କିନ୍ତୁ ଏହା ବୋଲି ବିବାହ ପ୍ରଭୃତି ଅନୁଷ୍ଠାନ ମିଥ୍ୟା ନୁହେଁ ।

କମଳ କହିଲା—ମୁଁ ତ ମିଥ୍ୟା ବୋଲି କହୁ ନାହିଁ । ଏଇ ଯେପରି ପ୍ରାଣ ସତ୍ୟ, ଦେହ ମଧ୍ୟ ସତ୍ୟ, କିନ୍ତୁ ଯେତେବେଳେ ଦେହରୁ ପ୍ରାଣ ଚାଲିଯାଏ ?

ମନୋରମା ତା ବାପାଙ୍କ ହାତ ଧରି ଟାଣି କହିଲା—ବାବା ବର୍ତ୍ତମାନ ଯଥେଷ୍ଟ ଶୀତ ହେଲାଣି; ନ ଉଠିଲେ ଯେ ନହୁଏ ।

: ହେଉ, ଉଠିଲି ମାଆ ।

ଶିବନାଥ ହଠାତ୍ ଉଠିପଡ଼ି ଠିଆ ହୋଇ କହିଲା—ଶିବାନୀ; ଆଉ ଡେରି କରନା—ଚାଲ ।

କମଳ ତତ୍‌କ୍ଷଣାତ୍ ଉଠି ଠିଆ ହୋଇ ପଡ଼ିଲା । ସମସ୍ତଙ୍କୁ ନମସ୍କାର କରି କହିଲା—ଆପଣମାନଙ୍କ ସଙ୍ଗେ ପରିଚୟ ହେଲା ସତେ ଯେପରି ଯୁକ୍ତି କରିବା ପାଇଁ । କିଛି ମନେ କରିବେ ନାହିଁ ।

ଶିବନାଥ ଏତେ ସମସ୍ତ ପରେ ଯେପରି ହସିଲେ । କହିଲେ—କେବଳ ଖାଲି ଯୁକ୍ତି କଲ ଶିବାନୀ, କିନ୍ତୁ କିଛି ତ ଶିଖି ପାରିଲ ନାହିଁ ?

କମଳ ବିସ୍ମିତ କଣ୍ଠରେ କହିଲା—ନା ! କିନ୍ତୁ ତର୍କ ଭିତରେ କିଛି କେଉଁଠି ଶିଖିବାର ଥିଲା ପରି କାହିଁ ମୋର ମନେ ହେଲା ନାହିଁ ତ !

ଶିବନାଥ କହିଲେ—ମନେ ନ ହେବାର କଥା । ଆଲୋଚନା କରି ବାହାରେ ମନକୁ ରଖିଲେ ଶିଖିବାର କିଛି ନଥାଏ । ଯଦି ପାର ଆଶୁବାବୁଙ୍କ ଭଳି ଜଗଷତ୍ର ବୁଢ଼ା ମନଷ୍ଟାକୁ ସାମାନ୍ୟ ଶ୍ରଦ୍ଧା କରି ଶିଖ । ତାହାଠାରୁ ଅଧିକା କିଛି ଆଉ ଶିଖିବାର ନାହିଁ ।

କମଳ ବିସ୍ମିତ ହୋଇ କହିଲା—ତୁମେ ଆଜି ଏ ସବୁ କ'ଣ କହୁଛ ?

ଶିବନାଥ ଉତ୍ତର ଦେଲା ନାହିଁ । ପୁଣି ସମସ୍ତଙ୍କୁ ନମସ୍କାର ଜଣାଇ କହିଲା--ଚାଲ ।

ଆଶୁବାବୁ ଦୀର୍ଘନିଃଶ୍ୱାସ ଛାଡ଼ି କେବଳ କହିଲେ—ଆଶ୍ଚର୍ଯ୍ୟ !

ପ୍ରକୃତରେ ଆଶ୍ଚର୍ଯ୍ୟ କଥା ! ଏହା ବ୍ୟତୀତ ମନର କଥା ବ୍ୟକ୍ତ କରିବା ପାଇଁ ଆଉ ଅବା କ'ଣ ଶବ୍ଦ ଥିଲା ? ପ୍ରକୃତରେ, ସେମାନେ ଚାଲିଗଲା ପରେ ଯେପରି ଏକ ଅତ୍ୟାଶ୍ଚର୍ଯ୍ୟ ନାଟକର ମଧ୍ୟ ଅଙ୍କରେ ଯବନିକା ଟାଣି ଦେଇଗଲେ । ପର୍ଦ୍ଦାର ବାହାରେ ନ ଜାଣେ କେତେ ନା କେତେ ବିସ୍ମୟକର ବ୍ୟାପାର ଅଗୋଚରରେ ରହିଗଲା । ସମସ୍ତଙ୍କ ମନରେ ସେଇ ଗୋଟାଏ କଥା ଗୁଡ଼େଇ ଗୁଡ଼େଇ ହେବାକୁ ଲାଗିଲା ଏବଂ ସମସ୍ତଙ୍କର ମନେହେଲା ଯେପରି ଏଥିପାଇଁ ହିଁ ସେମାନେ ଏଠାକୁ ଆସିଥିଲେ । ଆକାଶରେ ଚନ୍ଦ୍ର ଉଠିଥାଏ । ହେମନ୍ତ ଋତୁର ଶିଶିରସିକ୍ତ ମନ୍ଦ ଜ୍ୟୋତ୍ସ୍ନାରେ ଅଦୂରରେ ତାଜର ଶ୍ୱେତ ମର୍ମର ମସ୍ତାପୁଷ୍ପ ଭଳି ଉଦ୍ଭାସିତ ହୋଇ ଉଠିଥାଏ । କିନ୍ତୁ ସେଥିପ୍ରତି କାହାର ଦୃଷ୍ଟି ନ ଥାଏ ।

ମନୋରମା କହିଲା—ଏଥର ନ ଉଠିଲେ ବାବା, ପ୍ରକୃତରେ ତୁମ ଦେହ ଅସୁସ୍ଥ ହେବ ।

ଅବିନାଶ ବାବୁ କହିଲେ—କାକର ପଡ଼ିଲାଣି, ଉଠନ୍ତୁ ।

ସମସ୍ତେ ଉଠି ଠିଆ ହେଲେ । ଫାଟକ ବାହାରେ ଆଶୁବାବୁଙ୍କର ପ୍ରକାଣ୍ଡ ମୋଟର କାର ଠିଆ ହୋଇଥାଏ । କିନ୍ତୁ ଅକ୍ଷୟ ଏବଂ ହରେନ୍ଦ୍ରଙ୍କ ଟାଙ୍ଗାବାଲାର ସନ୍ଧାନ ମିଳିଲା ନାହିଁ । ବୋଧହୁଏ ଇତି ମଧ୍ୟରେ ଅଧିକ ଭଡ଼ାରେ ସବାରି ପାଇବାରୁ ଚାଲିଯାଇଛି । ଅତଏବ କୌଣସିମତେ ଠେସା ଠେସି ହୋଇ ଅଗତ୍ୟା ସମସ୍ତଙ୍କୁ ମଟରରେ ପଶିବାକୁ ପଡ଼ିଲା ।

କିଛି ସମୟ ପର୍ଯ୍ୟନ୍ତ ସମସ୍ତଙ୍କୁ ଚୁପ ହୋଇ ରହିବାକୁ ପଡ଼ିଲା । ତା'ପରେ ପ୍ରଥମେ ଅବିନାଶ ବାବୁ କଥା କହିଲେ । ସେ କହିଲେ—ଶିବନାଥ ମିଛକଥା କହୁଛି । କମଳ କଦାପି ଗୋଟାଏ ଦାସୀକନ୍ୟା ହୋଇ ନ ପାରେ । ଅସମ୍ଭବ ! ଏହା କହି ସେ ମନୋରମା ମୁହଁକୁ ଚାହିଁଲେ ।

ମନୋରମା ମନରେ ମଧ୍ୟ ଠିକ୍ ଏହି ପ୍ରଶ୍ନହିଁ ଦେଖା ଦେଇଥିଲା । କିନ୍ତୁ ସେ ନୀରବ ହୋଇ ରହିଲା । ଅକ୍ଷୟ କିନ୍ତୁ କହିଲା—ମିଛ କଥା କହିବାର କାରଣ କ'ଣ ହୋଇପାରେ ? ନିଜ ସ୍ତ୍ରୀ ସମ୍ବନ୍ଧରେ ଏହା କଦାପି ତ ଗୌରବର କଥା ହୋଇ ନ ପାରେ, ଅବିନାଶବାବୁ ।

ଅବିନାଶ ବାବୁ କହିଲେ—ସେଇ କଥା ତ ଭାବୁଛି ।

ଅକ୍ଷୟ କହିଲା—ଆପଣମାନେ ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି କିନ୍ତୁ ମୁଁ ହୋଇ ନାହିଁ । ଏସବୁ ହେଉଛି ଶିବନାଥର ପ୍ରତିଧ୍ୱନି । ତା କଥା ମଧ୍ୟରେ bravado ଅଛି ପ୍ରଚୁର କିନ୍ତୁ ବିଷୟ କିଛି ନାହିଁ । ଅସଲ ନକଲ ସବୁ ବୁଝିପାରେ । ଏତେ ସହଜରେ ଆମକୁ ଠକି ଦେଇ ହେବ ନାହିଁ ଏକଥା ତାକୁ ଭଲଭାବରେ ଜଣା ।

ହରେନ୍ଦ୍ର କହି ଉଠିଲା—ଆମମାନଙ୍କୁ ଠକିବା ! ବାପ୍‌ରେ ! ଏକବାରେ Monopolyରେ ହସ୍ତକ୍ଷେପ ?

ଅକ୍ଷୟ ତା ପ୍ରତି ଗୋଟାଏ କ୍ରୁର କଟାକ୍ଷ ନିକ୍ଷେପ କରି କହିଲା—ମୁଁ ଜୋରଦେଇ କହିପାରିବି ତା ପାଖରେ ଭଦ୍ର ଘରର cultureକୁ ସୁଦ୍ଧ କଟିଏ ନାହିଁ । ଝିଅପିଲାଙ୍କ ମୁହଁରୁ ଏପରି କଥା ବାହାରିବା କେବଳ Immoral ନୁହେଁ—ଅଶ୍ଳୀଳ ।

ଅବିନାଶ ବାବୁ ପ୍ରତିବାଦ କରି କହିଲେ - ସେ କହିଥିବା ସବୁ କଥା ଝିଅମାନଙ୍କ ତୁଣ୍ଡରେ ଶୋଭନୀୟ ନ ହୋଇପାରେ କିନ୍ତୁ ସେସବୁକୁ ଅଶ୍ଳୀଳ ଆଦୌ କୁହାଯାଇ ପାରିବ ନାହିଁ, ଅକ୍ଷୟ ।

ଅକ୍ଷୟ ଆହୁରି କଠିନ ଗଳାରେ କହିଲା—ସେ ଦୁହେଁ ମାନି ଏକ ଅବିନାଶ ବାବୁ । ଦେଖିଲେ ନାହିଁ, ବିବାହଟା ସେମାନଙ୍କ ପାଖରେ କିପରି ପିଲା ଖେଳ ଭଳି ? ଯେତେବେଳେ ସମସ୍ତେ ଆମେ କହିଲେ ଯେ ଏଇଟା ବିବାହ ନୁହେଁ, ଠକାମି । ସେ କେବଳ ହସିଦେଇ କହିଲେ—ସତରେ ନା କ'ଣ ! Absolute indifference ଆପଣମାନେ କ'ଣ ଲକ୍ଷ୍ୟ କରିପାରି ନାହାନ୍ତି ? ଏହା କ'ଣ କଦାପି ଭଦ୍ର ଘରର କନ୍ୟା ପକ୍ଷରେ ଶୋଭାପାଏ ନା ସମ୍ଭବପର ହୋଇପାରେ ?

ଅକ୍ଷୟ କଥାଟା ସତ । ତେଣୁ ସମସ୍ତେ ନୀରବ ରହିଲେ । ଆଶୁବାବୁ ଏତେ ସମୟ ପର୍ଯ୍ୟନ୍ତ କିଛି କହି ନ ଥିଲେ । ହଠାତ୍ ଏହି ଅବସ୍ଥା'ରେ ତାଙ୍କର ଧ୍ୟାନ ଭାଙ୍ଗିଲା । ଧୀରେ ଧୀରେ କହିଲେ—ବିବାହଟା ନୁହେଁ, ବୋଧହୁଏ ସେହି form ଉପରେ କମଳର ସେପରି

ଆପ୍ତା ନାହିଁ । ବିବାହ ଯାହା ହେଉନା କାହିଁକି କିଛି ଗୋଟାଏ ଅନୁଷ୍ଠିତ ହୋଇଗଲେ ତାର ଆପତ୍ତି ନାହିଁ । ସ୍ୱାମୀଙ୍କୁ ପଗୃରିଲି—ବିବାହଟା ତାହାହେଲେ ଆମର ଠକାମି ? ସ୍ୱାମୀ ତାର କହିଲେ; ବିବାହଟା ହେଲା ଆମର ଶୈବ ମତରେ । କମଳ ସେତିକି ଶୁଣି ଖୁସି ହୋଇ କହିଲା—ଶିବଙ୍କ ସଙ୍ଗରେ ଯଦି ବିବାହ ହୋଇଥାଏ ତେବେ ଶୈବ ମତରେ ତ ହେବାଟା ଉତ୍ତମ କଥା । ସେତିକି କଥା ମୋତେ ଯେ କେତେ ମିଠା ଲାଗିଲା ଅବିନାଶ ବାବୁ !

ଭିତରେ ଭିତରେ ଅବିନାଶ ବାବୁଙ୍କ ମନଟି ଥିଲା ଠିକ୍ ଏଇ ସୁରରେ ବନ୍ଧା । କହିଲେ—ଆଉ ଶିବନାଥ ମୁହଁକୁ ଗୃହିଁ ହସ ହସ ମୁହଁରେ କମଳ କପରି ପ୍ରଶ୍ନକଲା—ହଇଗୋ, ତୁମେ କ'ଣ ସେଇପରି କରିବ ନା କ'ଣ ? ମୋତେ କ'ଣ ପ୍ରକୃତରେ ଠକି ଦେବ ? କେତେ ନା କେତେ କଥା ତ ତା'ପରେ କଥା ହୋଇଗଲେ ଆଶୁବାବୁ, କିନ୍ତୁ ସେହି କଥାର ପ୍ରତିଧ୍ୱନି ଯେପରି ମୋ କାନରେ ବାଜିଯାଉଛି ।

ପ୍ରତ୍ୟୁତ୍ତରରେ ଆଶୁବାବୁ ମୁଣ୍ଡ ହଲାଇ ଟିକିଏ ହସି ଦେଲେ ।

ଅବିନାଶ ବାବୁ କହିଲେ--ଆଉ ଏଇ ଶିବାନୀ ନାମଟି ? ସେଇଟି କ'ଣ କମ୍ ମଧୁର ଆଶୁବାବୁ ?

ଅକ୍ଷୟ ଆଉ ଯେପରି ସହ୍ୟ କରି ପାରିଲା ନାହିଁ । କହିଲା—ଆପଣମାନେ ମୋତେ ଅବାକ୍ କରି ପକାଇଲେଣି । ସେମାନଙ୍କର ଯାହାକିଛି ସବୁ କ'ଣ ମିଠା ଆଉ ମଧୁର ? ଏପରିକି ଶିବନାଥ ତା ନାମ ସହିତ ଗୋଟାଏ "ନୀ" ଯୋଗ କରିଥିବାରୁ ତାହିଁରୁ ମଧ ମହୁ ଝରିପଡ଼ିଲା ।

ହରେନ୍ଦ୍ର କହିଲା—କେବଳ "ନୀ" ଯୋଗ କରିଥିଲେ ଆଦୌ ହୋଇ ନ ଥାନ୍ତା ଅକ୍ଷୟ ବାବୁ । ଆପଣଙ୍କ ସ୍ତ୍ରୀଙ୍କୁ ଯଦି 'ଅକ୍ଷୟ ନୀ' ଡକାଯାଏ ତେବେ ତହିଁରୁ କ'ଣ ମଧୁ ଝରି ପାରିବ ?

ତା କଥା ଶୁଣି ସମସ୍ତେ ହସି ଉଠିଲେ । ଏପରିକି ମନୋରମା ଗୃହା ଆଡ଼କୁ ମୁହଁ ବୁଲାଇ ନେଇ ହସକୁ ଲୁଚାଇଲା ।

ଅକ୍ଷୟ ରାଗରେ ଉତ୍କ୍ଷିପ୍ତ ହୋଇ ଗର୍ଜନ କରି କହି ଉଠିଲା—ହରେନ୍ ବାବୁ ! Do not go too far । କୌଣସି ଭଦ୍ର ମହିଳାଙ୍କ ସହିତ ସେମାନଙ୍କୁ ଧରି ଥଟ୍ଟା ମଜ୍ଜା କରିବାଟାକୁ ମୁଁ ଅପମାନକର ବୋଲି ମନେକରେ । ଆପଣଙ୍କୁ ପରିଷ୍କାର ଜଣାଇ ଦେଲି ।

ହରେନ୍ଦ୍ର ଚୁପ ହୋଇ ରହିଲା । ଯୁକ୍ତି କରିବା ତାର ସ୍ୱଭାବ ନୁହେଁ । ହଠାତ୍ ମଝିରେ ଏପରି ଗୋଟାଏ କିଛି କହି ପକାଇ ସେ ନୀରବ ହୋଇ ରହିଯାଏ ଯେ ସହସ୍ରବାର ତାକୁ କେଷ୍ଟା କେଷ୍ଟି କଲେ ସୁଦ୍ଧା ତା ପାଟିରୁ କଥା ପଦଟିଏ ବାହାରି ପାରେ ନାହିଁ । ତାହାହିଁ ମଧ୍ୟ ହେଲା । ଅକ୍ଷୟ ନାକି ପଥଟା ହରେନ୍ଦ୍ରକୁ ଧରି ରାଗି ବୃଷିଲା ।

*

ଯେ ଯେ ଭଦ୍ର ମହିଳାଙ୍କୁ ଭଦ୍ରତାହୀନ କଦର୍ଯ୍ୟ ପରିହାସ କରି ବସିଛୁ ଏବଂ ଶିବନାଥର ଶେଷ ମତେ ବିବାହ କରି ସ୍ତ୍ରୀର କଥାରେ ଏବଂ ବ୍ୟବହାରରେ ଯେ ଆଭିଜାତ୍ୟର ସ୍ପର୍ଶ ନାହିଁ ଏବଂ ଶିକ୍ଷା ଓ ସଂସ୍କାରରେ ଜଘନ୍ୟହୀନତା ଫୁଟି ଉଠୁଛି, ତାହାକୁ ଦୃଢ଼ତାର ସହିତ ପ୍ରତିପାଦିତ କରୁ କରୁ ଗାଡ଼ି ଆସି ଆଶୁବାବୁଙ୍କ ସଦର-ଦରଜା ନିକଟରେ ଅଟକିଲା । ଅବିନାଶ ଓ ଅନ୍ୟମାନେ ସମସ୍ତେ ଓହ୍ଲାଇ ପଡ଼ିଲେ । ହରେନ୍ଦ୍ର ଓ ଅକ୍ଷୟଙ୍କୁ ଗାଡ଼ି ଛାଡ଼ି ଦେଇ ଆସିବା ପାଇଁ ଚାଲିଗଲା ।

ଆଶୁବାବୁ ଉଦ୍‌ବିଗ୍ନ ହୋଇ କହି ଉଠିଲେ—ଗାଡ଼ି ଭିତରେ ସେମାନେ ଯେପରି ପରସ୍ପର ଭିତରେ ମାଡ଼ ଗୋଳ ନ ହୁଅନ୍ତି ।

ଅବିନାଶ ବାବୁ କହିଲେ– ନାହିଁ, ସେପରି ଭୟ କରିବାର କିଛି ନାହିଁ । ଏହା ସେମାନଙ୍କର ନିତ ଦିନର ଘଟଣା । ସେଥିରେ କିନ୍ତୁ ସେମାନଙ୍କର ବନ୍ଧୁତ୍ୱ କ୍ଷୁଣ୍ଣ ହୁଏ ନାହିଁ ।

ଘର ଭିତରେ ଚାହା ପିଇ ପିଇ ଆଶୁବାବୁ ଧୀରେ ଧୀରେ କହିଲେ—ଅକ୍ଷୟ ବାବୁଙ୍କ ପ୍ରକୃତିଟା ବଡ଼ ରୁକ୍ଷ । ଏହା ଠାରୁ ଅଧିକ କଠିନ କଥା ବୋଧହୁଏ ତାଙ୍କ ତୁଣ୍ଡରୁ ବାହାରେ ନାହିଁ । ହଠାତ୍ ଝିଅ ଆଡ଼କୁ ଚାହିଁ କହିଲେ—ଆଚ୍ଛା ମଣି । କମଳ ସମ୍ପର୍କରେ ତୋ ପୂର୍ବ ଧାରଣା କ'ଣ ଆଜି ବଦଳି ଯାଇ ନାହିଁ ?

: କେଉଁ ଧାରଣା ବାବା ?

: ଏଇ ଯିମିତି···ଏଇ ଯିମିତି···

: କିନ୍ତୁ ମୋ ଧାରଣାରେ ତୁମର ଅବା ଦରକାର କ'ଣ ?

ଆଶୁବାବୁ ବିରକ୍ତ ହେଲେ ନାହିଁ । ସେ ଜାଣନ୍ତି ସେହି ଝିଅଟି ବିରୁଦ୍ଧରେ ମନୋରମାର ମନ ଅତ୍ୟନ୍ତ ବିମୁଖ । ତାହା ପ୍ରତି ଧାରଣା ତା ମନରେ ଆଘାତ ଆଣେ । ତେଣୁ ସେ ସମ୍ପର୍କରେ ଆଲୋଚନା କରିବାକୁ ଯିବା ଯେପରି ଅପ୍ରୀତିକର, ସେହିପରି ନିଷ୍ଫଳ ।

ହଠାତ୍ ଅବିନାଶବାବୁ କହି ଉଠିଲେ—ଗୋଟାଏ ବିଷୟ ଆଲୋଚନା ବେଳେ ବୋଧହୁଏ ତୁମେମାନେ କାନ ଦେଇ ପାରିନାହଁ । ତାହା ହେଉଛି ଶିବନାଥର ଶେଷ କଥା ପଦକ । କମଳର ସବୁକଥା ଯଦି ଅପରର ପ୍ରତିଧ୍ୱନୀ ହୋଇଥାନ୍ତା ତେବେ ଶିବ-ନାଥର କହିବା ପ୍ରୟୋଜନ ହୁଅନ୍ତା ନାହିଁ ଯେ ଯେପରି ଆପଣଙ୍କୁ ଶ୍ରଦ୍ଧା କରିବାକୁ ଶିଖେ । ଏତିକ କହିସାରି ସେ ମଧ୍ୟ ଗମ୍ଭୀର ଶ୍ରଦ୍ଧାର ସହିତ ଆଶୁବାବୁଙ୍କ ମୁହଁକୁ ଚାହିଁ କହିଲା—ପ୍ରକୃତରେ କହିବାକୁ ଗଲେ ଆପଣଙ୍କ ଭଳି ପୂଜନୀୟ ବ୍ୟକ୍ତି ଅବା ସଂସାରରେ କେତେଜଣ ଅଛନ୍ତି ? ଏତେ ସାମାନ୍ୟ ପରିଚୟ ଭିତରେ ଯେ ଶିବନାଥ ଏତେବଡ଼

ସତ୍ୟକୁ ହୃଦୟଙ୍ଗମ କରିପାରିଛ, କେବଳ ଏଇଥି ପାଇଁ ମୁଁ ତାର ଅନେକ ଅପରାଧକୁ କ୍ଷମା କରିପାରେ ଆଶୁବାବୁ ।

ଏହାଶୁଣି ଆଶୁବାବୁ ବ୍ୟସ୍ତ ହୋଇ ଉଠିଲେ । ତାଙ୍କ ବିପୁଳ କଳେବର ଯେପରି ଲଜ୍ୟାରେ ସଙ୍କୁଚିତ ହୋଇ ଉଠିଲା । କୃତଜ୍ଞତା ପୂର୍ଣ୍ଣ ଦୁଇ ଆଖିରେ ମନୋରମା ବକ୍ତାଙ୍କୁ ଗୃହି କହିଲା—ଏଇଠାରେ ଅବିନାଶବାବୁ; ପ୍ରକୃତରେ ସ୍ତ୍ରୀଙ୍କ ଠାରୁ ତାଙ୍କର ପ୍ରଭେଦ ଜଣାପଡ଼େ । ମୁଁ ଜାଣେ, ସେଦିନ ସାବୁନ ଓ ଲୁଗା ମାଗିବା ଛଳରେ ସେହି ନିଅଟି ମୋତେ କେବଳ ଉପହାସ କରି ଗୃଲି ଯାଇଥିଲା । ତାର ସେଦିନର ଅଭିନୟ ମୁଁ ବୁଝି ପାରି ନ ଥିଲି । କିନ୍ତୁ ସବୁ ବିଦ୍ରୂପ, ସବୁ ଉପହାସ ବ୍ୟର୍ଥ ହୋଇଯିବ ଯଦି ପ୍ରକୃତରେ ସେ ଆଜି ବାବାଙ୍କୁ ସମସ୍ତଙ୍କଠାରୁ ବଡ଼ ବୋଲି ମନେ କରି ଯାଇଥିବ ।

ଆଶୁବାବୁ ବ୍ୟାକୁଳ ହୋଇ କହି ଉଠିଲେ—କଣ ଯେ ତୁ ସବୁ କହି ଗୃଲିଛୁ ମାଆ ?

ଅବିନାଶବାବୁ କହିଲେ—ଏହା ଭିତରେ ଅତିଶୟୋକ୍ତି ଆଦୌ ନାହିଁ ଆଶୁବାବୁ । ଯିବା ସମୟରେ ଶିବନାଥ ତା ସ୍ତ୍ରୀକୁ ଏହି କଥାଟି ହିଁ କହିବା ପାଇଁ ଚେଷ୍ଟା କରିଥିଲା । ଆଜି କଥା ମୁଁ କହୁନ—କିନ୍ତୁ ତାର ଏହି ଗୋଟିଏ କଥାରେ ମୋର ମନେ ହେଲା ସେମାନଙ୍କ ପରସ୍ପର ଭିତରେ ଏହିଠାରେ ହିଁ ମତଭେଦ ରହିଛି ।

ଆଶୁବାବୁ କହିଲେ—ସେପରି ଯଦି ହୋଇଥାଏ, ତେବେ ତାହା ଶିବନାଥର ଦୋଷ, କିନ୍ତୁ କମଲର ନୁହେଁ ।

ମନୋରମା ହଠାତ୍ କହି ଉଠିଲା—ତୁମେ ତାକୁ କି ଦୃଷ୍ଟିରେ ଦେଖ ସେ କଥା ତୁମକୁ ଜଣା ବାବା, କିନ୍ତୁ ତୁମ ଭଳି ମନୁଷ୍ୟକୁ ଯିଏ ଶ୍ରଦ୍ଧା କରି ଶିଖି ନାହିଁ ତାକୁ କ'ଣ କେବେବେଳେ କ୍ଷମା କରାଯାଇ ପାରେ ?

ଆଶୁବାବୁ ଝିଅ ମୁହଁକୁ ଗୃହିଁ କହିଲେ—କାହିଁକି ମାଆ ? ମୋତେ ଭଲ ପାଇ ନ ଥିବାର ଭାବ ତାର କୌଣସି ଆଚରଣରେ ତ ପ୍ରକାଶ ପାଇ ନାହିଁ ।

: ଭଲ ପାଇବାଟା ପ୍ରକୃତରେ କିନ୍ତୁ ପ୍ରକାଶ ପାଇ ପାରି ନାହିଁ ।

ଆଶୁବାବୁ କହିଲେ—ପାଇବାର କଥା ତ ନୁହେଁ । ପାଇଥିଲେ ବରଂ ତାହା ମିଥ୍ୟାଚରଣ ହୋଇଥାନ୍ତା । ମୋ ଭିତରେ ଯେଉଁ ବସ୍ତୁଟାକୁ ତୁମେମାନେ ଶକ୍ତିର ପ୍ରାଚୁର୍ଯ୍ୟ ବୋଲି ମନେକରି ଆଶ୍ଚର୍ଯ୍ୟ ହୋଇଉଠ, ତା ନିକଟରେ ତାହା ହେଉଛି ନିଚ୍ଛକ ଶକ୍ତିର ଅଭାବ । ଦୁର୍ବଳ ମନୁଷ୍ୟକୁ ସ୍ନେହ ଦ୍ୱାରା ଭଲ ପାଇ ହୁଏ, ଏକଥା ହିଁ ସେ ମୋତେ କହିଛି । ଯେହେତୁ ମୋର ତା ନିକଟରେ ମୂଲ୍ୟ ନାହିଁ, ଜବରଦସ୍ତି ତାହା ଦେବାକୁ ଯାଇ ସେ ମୋତେ ଅସମ୍ମାନ କରିନାହିଁ କିମ୍ବା ନିଜକୁ ଅପମାନିତ ମଧ୍ୟ କରି ନାହିଁ । ଏହା ହିଁ ନ ଠିକ୍ । ଏଥିରେ କଷ୍ଟ ଅନୁଭବ କରିବାର କିଛି ନାହିଁ ମଣି ।

ଏତେ ସମୟ ପର୍ଯ୍ୟନ୍ତ ଅଜିତ୍ ଅନ୍ୟମନସ୍କ ଥିଲା । ଏକଥା ଶୁଣି ସେ ଫେଣ୍ଡ ଧ୍ୱନିଲା । ସେ କିଛି ଜାଣେ ନାହିଁ ଏବଂ ଜାଣିବା ପାଇଁ ତାର ଅବକାଶ ନ ଥିଲା । ସମସ୍ତ ଘଟଣା ତା ନିକଟରେ ଧାପ୍ସା । ବର୍ତ୍ତମାନ ଆଶୁବାବୁ ଯାହା କହିଗଲେ ସେଥିରେ କିଛି ପରିଷ୍କାର ଧାରଣା ହେଉ ନାହିଁ । ତଥାପି ତା ମନ ଭିତରେ ସେପରି କିଏ ଜାଗି ଉଠିଲା ।

ମନୋରମା ନୀରବ ହୋଇ ରହିଲା । କିନ୍ତୁ ଅବିନାଶବାବୁ ଉତ୍ତେଜିତ ହୋଇ ପ୍ରଶ୍ନ କଲେ—ତାହା ହେଲେ ସ୍ୱାର୍ଥ ତ୍ୟାଗର କିଛି ମୂଲ୍ୟ ନାହିଁ ?

ଆଶୁବାବୁ ହସିଲେ । କହିଲେ—ପ୍ରଶ୍ନଟା କିନ୍ତୁ ଠିକ୍ ଅଧ୍ୟାପକଙ୍କ ଭଳି ହେଲା ନାହିଁ । ଯାହା ହେଉ ନା, ତା ନିକଟରେ ନାହିଁ ।

: ତାହାହେଲେ ଆତ୍ମସଂଯମର ଦାମ୍ ନାହିଁ ?

: ତା ନିକଟରେ ନାହିଁ । ସଂଯମ ଯେଉଁଠାରେ ଅର୍ଥହୀନ, ତାହା ସେଠାରେ କେବଳ ନିଷ୍ଫଳ ଆତ୍ମପୀଡ଼ନ । ଆଉ ତାହାକୁ ନେଇ ନିଜକୁ ବଡ଼ ମନେ କରିବା କେବଳ ଆପଣାକୁ ଠକିବା ନୁହେଁ, ପୃଥିବୀକୁ ମଧ୍ୟ ଠକିବା । ତା ମୁହଁରୁ ଶୁଣିବା ପରେ ମନେ ହେଲା, କମଳ ଏଇ କଥାଟା ହିଁ କେବଳ କହିବା ପାଇଁ ଆସିଛି । ଏତିକି କହି ସେ କିଛିକ୍ଷଣ ପାଇଁ ମୌନ ରହିବା ପରେ କହିଲେ—କେଜାଣି ସେ କେଉଁଠାରୁ ଏପରି ଧାରଣା ପାଇଲା । କିନ୍ତୁ ହଠାତ୍ ଶୁଣିଲେ ଭାରି ଆଶ୍ଚର୍ଯ୍ୟ ଲାଗେ ।

ମନୋରମା କହି ଉଠିଲା—ଆଶ୍ଚର୍ଯ୍ୟ ଲାଗେ ? ସର୍ବାଙ୍ଗ ଜଳି ଉଠେ ନାହିଁ ? ବାବା, ତୁମେ କ'ଣ କେବେ କାହାକୁ କିଛି ଜୋର ଦେଇ କହି ପାରିବ ନାହିଁ ଆଉ ଯିଏ ଯାହା କହିଯିବେ ତହିଁରେ ହଁ ଭରୁଥିବ ?

: ହଁ ତ କରୁନ ମାଆ । କିନ୍ତୁ ମନରେ ବିଦ୍ୱେଷ ଧରି ବିଚାର କରିବାକୁ ଗଲେ କେବଳ ଗୋଟିଏ ପକ୍ଷ ଠକିଯାଏ ନା ବରଂ ଅନ୍ୟ ପକ୍ଷ ମଧ୍ୟ ଠକିଯାଏ । ଯେଉଁ ସବୁ କଥା ଆମେମାନେ ତା ମୁହଁରେ ଶୁଣିଦେବା ପାଇଁ ଆଶା କରିଥିଲେ, ଠିକ୍ ସେହି କଥା ହିଁ କମଳ କହିନାହିଁ । ସେ ଯାହା କହିଲା ତାହାର ସାର କଥା ଏହି ଯେ, ବହୁଦିନ ତଳର ସଂସାରର ଯେଉଁ ତତ୍ତ୍ୱକୁ ଆମେମାନେ ସତ୍ୟ ବୋଲି ଗ୍ରହଣ କରି ନେଇ ପାରିଛେ ତାହା କେବଳ ଗୋଟାଏ ଦିଗ । ତାହାର ଅପର ଦିଗ ମଧ୍ୟ ଅଛି । କେବଳ ଆଖି ବୁଜି ମୁଣ୍ଡ ହଲାଇଲେ କିପରି ହେବ ମଣି ?

ମନୋରମା କହିଲା—ବାବା, ଭାରତବର୍ଷରେ ଏତେକାଳ ଧରି କଣ ସେହି ଦିଗଟା ଦେଖାଇବା ପାଇଁ ଲୋକ ନ ଥିଲେ ?

ଆଶୁବାବୁ ସାମାନ୍ୟ ହସି କହିଲେ, ଏହା ଅତ୍ୟନ୍ତ ରାଗର କଥା ମାଆ, ନ ହେଲେ ଏହା ତୁ ଭଲ କରି ଜାଣୁ ଯେ, କେବଳ ଆମ ଦେଶରେ ନୁହେଁ, କୌଣସି ଦେଶରେ

କ'ଣ ମଣିଷ ପୂର୍ବବର୍ଣ୍ଣଶ୍ୱରମାନଙ୍କ ପ୍ରଶ୍ନର ଉତ୍ତର ଦେଇ ପାରନ୍ତି ? ତାହାହେଲେ ସୃଷ୍ଟି ପ୍ରକୃତ ବ୍ୟାହତ ହେବ । ତାହାର ଗତିଶୀଳ ଗୁଣର କୌଣସି ଅର୍ଥ ମଧ୍ୟ ରହିବ ନାହିଁ ।

ହଠାତ୍ ତାଙ୍କ ଆଖିରେ ପଡ଼ିଲା ଅଜିତ୍ ଏକ ଲକ୍ଷ୍ୟରେ ଚାହିଁ ରହିଛି । କହିଲେ—ତୁମେ ବୋଧହୁଏ କିଛି ବୁଝି ପାରୁ ନାହଁ—ନୁହେଁ ?

ଅଜିତ୍ ମୁଣ୍ଡ ହଲାଇଲା । ଆଶୁବାବୁ ଘଟଣାଟା ଆମୂଳଚୂଳ ବର୍ଣ୍ଣନା କରି କହିଲେ—ଅକ୍ଷୟ ଯେ ଏ ପବିତ୍ର ହୋମ କୁଣ୍ଡରେ ନିଆଁ ଲଗାଇ ଦେଲା, ଲୋକେ ଚାହିଁ ଦେଖିବେ କ'ଣ, ଧୂଆଁର ଜ୍ୱାଳାରେ ଆଖି ମିଟାଇ ପାରିଲେ ନାହିଁ । ଅଥଚ ମଜା ହେଲା ଏଇଆ ଯେ, ଆମର ନାଲିଶ ହେଲା ଶିବନାଥ ବିରୁଦ୍ଧରେ । ଆଉ ଦଣ୍ଡ ପାଇଲା କମଳ । ଶିବନାଥ ଥିଲେ ଏଠାରେ ଜଣେ ଅଧ୍ୟାପକ । ମଦ୍ୟପାନ ହେତୁ ତାଙ୍କର ଚାକିରି ଚାଲିଗଲା । ରୁଗ୍ଣା ସ୍ତ୍ରୀକୁ ତ୍ୟାଗ କରି ଘରକୁ କମଳକୁ ଆଣିଲେ । କହିଲେ—ବିବାହ ହୋଇଛି ଶୈବ ମତରେ । ଅକ୍ଷୟ ବାବୁ ଭିତରେ ଭିତରେ ଖବର ସଂଗ୍ରହ କରି ଜଣାଇ ଦେଲେ ତାହା ସବୁ ମିଛ କଥା । ପ୍ରଶ୍ନ କରାଗଲା ଝିଅଟି କ'ଣ ଭଦ୍ର ଘରର ? ଶିବନାଥ କହିଲେ ସେ ତାଙ୍କ ଘର ଚାକରାଣୀର ଝିଅ । ପ୍ରଶ୍ନ ହେଲା—ଝିଅଟି କ'ଣ ଶିକ୍ଷିତା ? ଶିବନାଥ କହିଲେ—ଶିକ୍ଷା ପାଇଁ ବିବାହ କରି ନାହିଁ କରିଛି ରୂପ ପାଇଁ । ଏଥିରେ କମଳର ଅପରାଧ ମୁଁ କେଉଁଠାରେ ଖୋଜି ପାଇ ନାହିଁ ଅଥଚ ତାକୁ ଆମମାନଙ୍କଠାରୁ ଦୂର କରି ଦିଆଗଲା । ଆମ ମାନଙ୍କର ଘୃଣାର ପାତ୍ରୀ ହୋଇ ଉଠିଲା ସମସ୍ତଙ୍କ ଠାରୁ ସେ ବେଶୀ । ଆଉ ଏହା ହିଁ ହେଲା ଆମ ସମାଜର ସୁବିଚାର !

ମନୋରମା କହିଲା—ତାକୁ କ'ଣ ତୁମେ ସମାଜ ଭିତରକୁ ଡାକି ଆଣିବାକୁ ଚାହଁ ବାବା ?

ମୁଁ ଏକା ଇଚ୍ଛା କଲେ କ'ଣ ହୋଇପାରିବ ମାଆ ? ସମାଜରେ ଅକ୍ଷୟ ବାବୁ ତ ଅଛନ୍ତି । ତାଙ୍କ ଭଳି ଲୋକମାନଙ୍କ ସଂଖ୍ୟା ଅଧିକ ଏବଂ ସେମାନେ ମଧ୍ୟ ଶକ୍ତିଶାଳୀ ଗୋଷ୍ଠୀ ।

: ତୁମେ ଏକାକୀ ହୋଇଥିଲେ ବୋଧହୁଏ ଡାକି ଆଣିଥାନ୍ତ ?

ଆଶୁବାବୁ ଏହି ପ୍ରଶ୍ନର ସ୍ପଷ୍ଟ ଉତ୍ତର ନ ଦେଇ କହିଲେ—ଡାକିବାକୁ ଗଲେ କ'ଣ ସମସ୍ତେ ଆସିଥାନ୍ତି ମାଆ ?

ଅଜିତ କହିଲା ଆଶ୍ଚର୍ଯ୍ୟ କଥା ଏହି ଯେ ଆପଣଙ୍କ ମତ ସହିତ ତାଙ୍କର ସବୁଠାରୁ ବେଶୀ ବିରୋଧ । ଅଥଚ ସେ ଆପଣଙ୍କ ସ୍ନେହ ପାଇଛନ୍ତି ସମସ୍ତଙ୍କଠାରୁ ଅଧିକ ।

ଅବିନାଶ ବାବୁ କହିଲେ—ତାର କାରଣ ଅଛି ଅଜିତବାବୁ । କମଳ ବିଷୟରେ ଆମେମାନେ କିଛି ଜାଣି ନାହୁଁ, ଜାଣୁ କେବଳ ତା' ବିପ୍ଳବର ମତ ସମ୍ପର୍କରେ । ଆଉ ଜାଣୁ ତାର ଖରାପ ଦିଗଟିକୁ । ସେଥିପାଇଁ ତା କଥା ଶୁଣିବା କ୍ଷଣି ଆମମାନଙ୍କର ଭୟ ହୁଏ । ରାଗ ମଧ୍ୟ ହୁଏ । ଭାବୁଛି, ଏଥର ଗଲେ ସବୁ ବୁଝିବି ।

ଆଶୁବାବୁଙ୍କ ଉଦ୍ଦେଶ୍ୟ କରି ତା ପରେ କହିଲେ—ତାଙ୍କର ନିଷ୍ପାପ ଦେହ । ନିଷ୍କଳୁଷ ମନ । ଯେଉଁଠାରେ ସନ୍ଦେହ ପାଇଁ ସ୍ଥାନ ନାହିଁ ଏବଂ ଭୟର ଦାଗ ମଧ୍ୟ ଲାଗେ ନାହିଁ । ମହାଦେବଙ୍କ ପାଇଁ ବିଷ ଅବା କ'ଣ ? ଅମୃତ ଅବା କ'ଣ ? ଗଳାରେ ଅଟକି ରହିବ । ଉଦରସ୍ଥ ହେବ ନାହିଁ । ଦେବତାମାନେ ଆସନ୍ତୁ କିମ୍ବା ଦୈତ୍ୟ ଦାନବମାନେ ଘେରି ବସନ୍ତୁ—ତାଙ୍କର ନିର୍ଲିପ୍ତ, ନିର୍ବିକାର ଚିତ୍ତ । କେବଳ ବାତ ରୋଗଟା ତାଙ୍କୁ କାବୁ କରି ନପାରିଲେ ସେ ଖୁସୀ । କିନ୍ତୁ ଆମମାନଙ୍କର ତ......

କଥା ଶେଷ ହୋଇ ନାହିଁ । ହଠାତ୍ ଆଶୁବାବୁ ଦୁଇ ହାତ ଟେକି ତାଙ୍କୁ ବାଧା ଦେଇ କହିଲେ—ଆଉ ଦ୍ଵିତୀୟ କଥାଟି ଉଚ୍ଚାରଣ କରିବେ ନାହିଁ ଅବିନାଶ ବାବୁ ଆପଣଙ୍କ ପାଦ ତଳେ ପଡ଼ୁଛି । ନିରବଚ୍ଛିନ୍ନ ଭାବରେ ଗୋଟାଏ ଯୁଗ ବିଲାତରେ କଟାଇ ଦେଇ ଆସିଛି । ସେଠାରେ କ'ଣ କରିଛି, ନ କରିଛି, ନିଜର ମଧ୍ୟ ମନେ ନାହିଁ । ଅକ୍ଷୟ କାନକୁ ଗଲେ ତେଣିକି ଆଉ ରକ୍ଷା ମିଳିବ ନାହିଁ । ଏକବାରେ ନାକ୍ଷ ନକ୍ଷତ୍ର ସବୁ ଟାଣି ବାହାର କରି ଆଣିବ । ସେତେବେଳେ ?

ଅବିନାଶ ବାବୁ ବିସ୍ମିତ ହୋଇ ପ୍ରଶ୍ନ କଲେ—ଆପଣ କ'ଣ ତାହାଲେ ବିଲାତ ଯାଇଥିଲେ କି ?

ଆଶୁବାବୁ କହିଲେ—ହଁ ସେ ଦୁଷ୍କାର୍ଯ୍ୟ ହୋଇଯାଇଛି ।

ମନୋରମା କହିଲା—ପିଲା ଦିନରୁ ବାପାଙ୍କର ସମସ୍ତ ପାଠ ପଢ଼ା ୟୁରୋପରେ ହୋଇ ଯାଇଛି । ବାବା ହେଉଛନ୍ତି ବାରିଷ୍ଟର ଏବଂ ଦାଦା ମଧ୍ୟ ଡାକ୍ତର ।

ଅବିନାଶ ବାବୁ ବିସ୍ମିତ ହୋଇ କହି ଉଠିଲେ—କ'ଣ କହୁଛନ୍ତି !

ଆଶୁବାବୁ ସେହିପରି ଭାବରେ କହି ଉଠିଲେ—ଭୟ ନାହିଁ, ଭୟ ନାହିଁ ପ୍ରଫେସର, ସବୁ ବିଷୟ ଭୁଲି ଯାଇଛି । ଦୀର୍ଘକାଳ ଦେଶ ସଙ୍ଗରେ ହିଁ ଅଛି ଧରି ଏଣେ ତେଣେ ବୁଲି ଯାଯାବର ଜୀବନ ଯାପନ କରିଚାଲିଛି । ଏଇ ଯାହା କହିଲେ ସାରା ଚିତ୍ତ ମୋର ସେଥିପାଇଁ ପରିଷ୍କାର ହୋଇ ନିଷ୍ପାପ ଏବଂ ନିଷ୍କଳଙ୍କ ହୋଇ ଯାଇଛି । କେଉଁଠାରେ ଟିକିଏ ହେଲେ ଦାଗ ନାହିଁ । ମୋ ଯାହାହେଉ ଘଟଣାଟା ଯେପରି ଅକ୍ଷୟବାବୁଙ୍କ ଆଉ ନଜଣାନ୍ତୁ ।

ଅବିନାଶ ବାବୁ ହସିଦେଇ କହିଲେ—ଅକ୍ଷୟଙ୍କୁ ବୋଧହୁଏ ଆପଣଙ୍କର ଭାରି ଭୟ ?

ଆଶୁବାବୁ ତତ୍କ୍ଷଣାତ୍ ସ୍ଵୀକାର କରି କହିଲେ—ହଁ, ଏକରେ ବାତ ଜ୍ଵାଳାରେ ବିମ୍ବ ପାରୁନି; ତାହା ସହିତ ତାର କୌତୂହଳ ଜାଗି ଉଠିଲେ ସମ୍ପୂର୍ଣ୍ଣ ମରିଯିବ ।

ମନୋରମା ରାଗି ଉଠି ହସି ପକାଇ କହିଲା—ବାବା, ଏଇଟା ଆପଣଙ୍କର କିନ୍ତୁ ବଡ଼ ଅନ୍ୟାୟ ।

ଆଶୁବାବୁ କହିଲେ—ଅନ୍ୟାୟ ହେଉ ମାଆ, ଆତ୍ମରକ୍ଷା କରିବା ଅଧିକାର ସମସ୍ତଙ୍କର ଅଛି ।

ଏହା ଶୁଣି ସମସ୍ତେ ହସି ଉଠିଲେ । ମନୋରମା ପଚାରିଲା—ଆଚ୍ଛା ବାବା, ମନୁଷ୍ୟ ସମାଜରେ କ'ଣ ଅକ୍ଷୟ ବାବୁଙ୍କ ଭଳି ଲୋକଙ୍କର ପ୍ରୟୋଜନ ନାହିଁ ବୋଲି ତୁମେ ମନେକର ?

ଆଶୁବାବୁ କହିଲେ—ତୋର ଏହି ପ୍ରୟୋଜନ ଶବ୍ଦଟା ହେଉଛି ସଂସାରରେ ସବୁଠାରୁ ଗୋଳମାଳର ବିଷୟ ମାଆ । ଆଗ ଏହାର ନିଷ୍ପତ୍ତି ହେଉ । ତାପରେ ତୋର ସବୁ ପ୍ରଶ୍ନର ଉତ୍ତର ଦିଆଯିବ । କିନ୍ତୁ ତାହା ତ ହେବାର ନୁହେଁ, ସେଥିପାଇଁ ଚିରକାଳ ହିଁ ଏଥି ନିମନ୍ତେ ଯୁକ୍ତି ତର୍କ ଚାଲିଛି । ମୀମାଂସା ଆଉ ହୋଇ ପାରିଲା ନାହିଁ ।

ମନୋରମା ଦୁଃଖିତ ହୋଇ କହିଲା—ତୁମେ ସବୁକଥାର ଉତ୍ତର ଏପରି ଭାବରେ ଏଡ଼ାଇ ଚାଲିଯାଅ ଯେ ବାବା, କେତେବେଳେ ସ୍ପଷ୍ଟ କରି କିଛି କହ ନାହିଁ । ଏହା ତୁମର ବଡ଼ ଅନ୍ୟାୟ ।

ଆଶୁବାବୁ ହସ ହସ ମୁହଁରେ କହିଲେ—ସ୍ପଷ୍ଟ କରି କହିବା ଭଳି ବିଦ୍ୟାବୁଦ୍ଧି ଯେ ତୋ ବାପର ନାହିଁ ମାଆ । ସେଇଟା ହେଉଛି ତୋ କପାଳ ମନ୍ଦ । ବର୍ତ୍ତମାନ ଅଯଥାରେ ମୋ ଉପରେ ରାଗ କଲେ କ'ଣ ଚଳିବ କହିତ ?

ଅଜିତ୍ ହଠାତ୍ ଉଠି ପଡ଼ି ଠିଆ ହୋଇ କହିଲା—ମୁଣ୍ଡଟା ଟିକିଏ ବନ୍ଧୁଛି । ବାହାରେ ଟିକିଏ ବୁଲି ଆସିଲେ···

ଆଶୁବାବୁ ବ୍ୟସ୍ତ ହୋଇ କହିଲେ, ମୁଣ୍ଡର ଅପରାଧ ନାହିଁ ବାବା, କିନ୍ତୁ ଏଇ ଶୀତରେ···ଏଇ ଅନ୍ଧକାରରେ ?

ଦକ୍ଷିଣ ଦିଗର ଖୋଲା ଝରକା ଦେଇ, ସ୍ନିଗ୍ଧ ଜ୍ୟୋତ୍ସ୍ନା ଆସି ଚଟାଣରେ ପଡ଼ିଥିବା କାର୍ପେଟ ଉପରେ ବିସ୍ତୃତ ହୋଇ ପଡ଼ିଥିଲା । ଅଜିତ ସେଇ ଆଡ଼କୁ ତାଙ୍କ ଦୃଷ୍ଟି ଆକର୍ଷିତ କରାଇ କହିଲା—ଶୀତ ହୁଏତ ଟିକିଏ ପଡ଼ୁଛି । କିନ୍ତୁ ଅନ୍ଧକାର ନାହିଁ । ଯାଉଛି ଟିକିଏ ବୁଲି ଆସେ···

: କିନ୍ତୁ ଚାଲିକରି ବୁଲି ଯାଅନି ।

: ନା, ଗାଡ଼ିରେ ଯିବି ।

: ଗାଡ଼ିର ହୁଡ୍‌ଟା ଟେକି ଦେବ ଯେପରି ଥଣ୍ଡା ନ ପଡ଼େ ।

ଅଜିତ ସମ୍ମତ ହେଲା । ଆଶୁବାବୁ କହିଲେ—ତା ହେଲେ ଅବିନାଶବାବୁଙ୍କୁ ମଧ୍ୟ ସଙ୍ଗରେ ନେଇ ଛାଡ଼ିଦେଇ ଆସ । କିନ୍ତୁ ଫେରିବାକୁ ଯେପରି ବିଳମ୍ବ ନ ହୁଏ ।

: ଅଚ୍ଛା, କହି ଅଜିତ ବାହାରି ଚାଲିଗଲା । ଆଶୁବାବୁ ମଧ୍ୟ ହସି ଉଠିଲେ - ଦେଖୁଛ ଏଇ ପିଲାଟାର ମଟରଗାଡ଼ି ଧରି ବୁଲିବାର ସଉକ୍ ଯାଇନାହିଁ । ଏଭଳି ଅନ୍ଧାରେ ଦେଖ୍‌ନ ବୁଲି ବାହାରିଲାଣି···

ପନ୍ଦର ଦିନ ପର କଥା । ସନ୍ଧ୍ୟା ହେବାକୁ ବିଳମ୍ବ ନାହିଁ । ଅଜିତ, ଆଶୁବାବୁ ଓ ମନୋରମାକୁ ଅବିନାଶବାବୁଙ୍କ ଘରେ ଛାଡ଼ି ଦେଇ ଏକାକୀ ବୁଲି ବାହାରିଗଲା । ଏପରି ସେ ପ୍ରାୟ କରିଥାଏ । ଯେଉଁ ରାସ୍ତାଟା ଉତ୍ତର ଦିଗରୁ ଆସି କଲେଜ ଆଗଦେଇ କିଛି ଦୂର ପର୍ଯ୍ୟନ୍ତ ଯାଇ ସିଧା ପଶ୍ଚିମକୁ ଚାଲିଯାଇଛି ସେହି ରାସ୍ତାର ଏକ ନିରୋଳା ସ୍ଥାନରେ ହଠାତ୍ ନାରୀ କଣ୍ଠରେ ଆପଣାର ନାମ ଶୁଣିପାରି ଅଜିତ୍ ଗାଡ଼ି ଅଟକାଇ ଦେଖିଲା, ଶିବନାଥର ସ୍ତ୍ରୀ କମଳଙ୍କୁ । ରାସ୍ତା କଡ଼ରେ ଜୀର୍ଣ୍ଣ ଗୋଟାଏ ପୁରାତନ କାଳର ଦ୍ୱିତଳ କୋଠା । କୋଠା ଆଗରେ ଶ୍ରେଷ୍ଠ ଶ୍ରୀହୀନ ବଗିଚାଟିଏ । ସେଠାରେ ଠିଆ ହୋଇ କମଳ ହାତ ଠାରି ଡାକିବାରେ ଲାଗିଛି । ମଟର ଅଟକି ରହିବାରୁ, ସେ ପାଖକୁ ଆସି କହିଲା— ଆଉ ଦିନେ ଆପଣ ଏପରି ଏକୁଟିଆ ଯାଉଥିଲେ । ମୁଁ କେତେ ଡାକିଲି । କିନ୍ତୁ ଶୁଣି ପାରିଲେ ନାହିଁ ବୋଧହୁଏ । ପାରିବେ ଅବା କିପରି ? ବାପ୍‌ରେ ବାପ୍ ! ଯେଉଁ ଜୋରରେ ଗାଡ଼ି ଚଳାଉଛନ୍ତି ଦେଖିଲେ ମୋ ଛାତି କ'ଣ ହୋଇ ଯାଉଛି । ଆପଣଙ୍କୁ କ'ଣ ଭୟ ଲାଗେ ନାହିଁ ?

ଅଜିତ ଗାଡ଼ିରୁ ଓଲ୍ହାଇ ପଡ଼ି ତଳେ ଠିଆ ହୋଇ କହିଲା - ଆପଣ ଏକାକୀ ଯେ ? ଶିବନାଥ ବାବୁ କାହାନ୍ତି ?

: ସେ ଘରେ ନାହାନ୍ତି । କିନ୍ତୁ ଆପଣ ଅବା ଏକାକୀ ବାହାରିଛନ୍ତି କାହିଁକି ? ସେଦିନ ମଧ୍ୟ ଦେଖିଥିଲି ସଙ୍ଗରେ କେହି ନ ଥିଲେ ?

: ନା, ଏଇ କେତେଦିନ ହେବ ଆଶୁବାବୁଙ୍କ ସ୍ୱାସ୍ଥ୍ୟ ଭଲ ନ ଥିଲା । ସେଥିପାଇଁ ସେମାନେ କେହି ବାହାରକୁ ବାହାରୁ ନ ଥିଲେ । ଆଜି ସେମାନଙ୍କୁ ଅବିନାଶ ବାବୁଙ୍କ ଘରେ ଓଲ୍ହାଇ ଦେଇ ମୁଁ ବୁଲି ବାହାରିଛି । ସନ୍ଧ୍ୟାବେଳେ କୌଣସି ମତେ ମୁଁ ଘରେ ରହିପାରେ ନାହିଁ ।

: ମୁଁ ମଧ୍ୟ ନୁହେଁ । କିନ୍ତୁ ରହି ପାରେ ନାହିଁ କହିଲେ ତ ଚଳିବ ନାହିଁ । ଗରିବମାନଙ୍କ ପକ୍ଷରେ ଅନେକ କିଛି ପାରିବାକୁ ହୁଏ । ଏହା କହି ସେ ଅଜିତ ମୁହଁକୁ ଚାହିଁ ହଠାତ୍ କହି ଉଠିଲା—ମୋତେ ସଙ୍ଗରେ ନେବ ? ଟିକିଏ ବୁଲି ଆସିବ ।

ଅଜିତ ବଡ଼ ଅଡୁଆରେ ପଡ଼ିଗଲା । ସଙ୍ଗରେ ଆଜି ଡ୍ରାଇଭର ପର୍ଯ୍ୟନ୍ତ ନାହିଁ । ଶିବନାଥ ବାବୁ ଘରେ ନାହାନ୍ତି ସେ କଥା ସେ ଆଗରୁ ଶୁଣିଛି । କିନ୍ତୁ ମନା କରିଦେବା ପାଇଁ କଷ୍ଟ ହେଲା । ଟିକେ ଦ୍ୱିଧା କରି କହିଲା—ଏଠାରେ ବୋଧହୁଏ ଆପଣଙ୍କର ସଙ୍ଗୀ କିମ୍ବା ସଖୀ କେହି ନାହାନ୍ତି ?

: ଶୁଣନ୍ତୁ ଏଙ୍କ କଥା ? ସଙ୍ଗୀସଖୀ ପାଇବି କେଉଁଠୁ ? ଥରକ ପାଇଁ ଟିକିଏ ବୁଲି ଦେଖନ୍ତୁ ତ ଆମ ପଡ଼ାର ଅବସ୍ଥାକୁ । ସହରର ବାହାରେ କହନ୍ତେ ଚଳେ—ସାହାଗଞ୍ଜ କି କ'ଣ ନାଆଁ ହେବ, ତାହାର ପାଖାପାଖି କେଉଁଠି ଗୋଟାଏ ଚମଡ଼ା କାରଖାନା ଅଛି । ମୋର ପଡ଼ୋଶୀ କେବଳ ମୁଚିମାନେ । ସେହି କାରଖାନାକୁ ଯାଏ—ଆସେ । ମଦ ଖାଏ । ସାରା ରାତି ହଲ୍ଲା କରେ, ଏହା ହିଁ ତ ଆମର ପଡ଼ାର ଅବସ୍ଥା ।

: ଏ ଆଡ଼େ ବୋଧହୁଏ ଭଦ୍ରଲୋକ ନାହାନ୍ତି ?

: ବୋଧହୁଏ ନାହାନ୍ତି । ଥିଲେ ଅବା କ'ଣ ହୋଇ ଥାନ୍ତା ? ସେମାନେ ଆମକୁ ସେମାନଙ୍କ ଘରକୁ ଅବା ଯିବା ପାଇଁ ଦେବେ କାହିଁକି ? ସେଥିପାଇଁ ତ ମଝିରେ ମଝିରେ ଯେତେବେଳେ ନିହାତି ଏକଲା ମନେ କରେ, ସେତେବେଳେ ଆପଣଙ୍କ ବସାକୁ ତ ଯାଇ ପାରନ୍ତି । କହି କହି ସେ ଗାଡ଼ିର ଖୋଲା ଦରଜା ବାଟେ ନିଜେ ଯାଇ ଗାଡ଼ି ଭିତରେ ବସି ପଡ଼ିଲା । କହିଲା—ଆସନ୍ତୁ । ମୁଁ ଅନେକ ଦିନ ହେବ ମଟର ଗାଡ଼ିରେ ଚଢ଼ିନାହିଁ । ଆଜି କିନ୍ତୁ ଆପଣଙ୍କୁ ମୋତେ ଅନେକଦୂର ପର୍ଯ୍ୟନ୍ତ ବୁଲାଇ ଆଣିବାକୁ ପଡ଼ିବ ।

କ'ଣ କରିବାକୁ ହେବ, ଅଜିତ ତାହା ସ୍ଥିର କରି ପାରିଲା ନାହିଁ । ସଙ୍କୁଚିତ ହୋଇ କହିଲା ବେଶି ଦୂର ଗଲେ ରାତି ବହୁତ ହୋଇ ଯିବ । ଶିବନାଥବାବୁ ଘରକୁ ଫେରି ଆସି ଆପଣଙ୍କୁ ନ ଦେଖି ହୁଏତ କିଛି ମନେ କରି ପାରନ୍ତି ।

: ନା, ମନେକରିବାର କିଛି ନାହିଁ ।

: ତାହାହେଲେ ଡ୍ରାଇଭର ପାଖରେ ନ ବସି ଭିତର ସିଟ୍‌ରେ ବସନ୍ତୁ ।

: ଡ୍ରାଇଭର ତ ଆପଣ ନିଜେ । ପାଖରେ ନ ବସିଲେ ଗପ କରିହେବ କିପରି ? ଏତେ ଦୂରରେ ପଛରେ ବସିଗଲେ ମୁହଁରେ ତୁଣ୍ଡି ବାନ୍ଧିବାକୁ ପଡ଼ିବ । ଆପଣ ଆସନ୍ତୁ । ଆଉ ଡେରି କରନ୍ତୁ ନାହିଁ ।

ଅଜିତ ବସିପଡ଼ି ଗାଡ଼ି ଷ୍ଟାର୍ଟ କରି ଛାଡ଼ି ଦେଲା । ପଥ ସୁନ୍ଦର ଏବଂ ନିର୍ଜନ । କେବେ କେମିତି ବାଟରେ ଜଣେ ଅଧଜଙ୍କୁ ଦେଖିବାକୁ ମିଳେ । ଗାଡ଼ିର ଗତି କ୍ରମଶଃ ଦ୍ରୁତତର ହୋଇ ଉଠିଲା । କମଳ କହିଲା—ଆପଣ ଜୋରରେ ଚଳାଇବାକୁ ବୋଧହୁଏ ଭଲ ପାଆନ୍ତି, ନୁହେଁ ?

: ହଁ ।

: ଭୟ ହୁଏ ନାହିଁ ।

: ନାହିଁ, ମୋର ଅଭ୍ୟାସ ଅଛି ।

: ଅଭ୍ୟାସ ହେଉଛି ସବୁ । ଏହା କହି କମଳ ମୁହୂର୍ତ୍ତିକ ପାଇଁ ନୀରବ ରହି କହିଲା—ମୋର ତ ଅଭ୍ୟାସ ନାହିଁ ? ତଥାପି ଭଲ ଲାଗୁଛି । ବୋଧହୁଏ ସ୍ୱଭାବ—ନୁହେଁ ?

: ହୁଏତ ହୋଇ ପାରୁଥାଏ ?

: ନିଶ୍ଚୟ, ଅଥଚ ଏଥିରେ ବିପଦ ଅଛି । ଯେଉଁମାନେ ଚଢ଼ନ୍ତି ସେମାନଙ୍କର ଆଉ ଯେଉଁମାନେ ଗାଡ଼ି ତଳେ ଚ୍ୟାପା ପଡ଼ି ମରଯାଆନ୍ତି ସେମାନଙ୍କର, ନୁହେଁ ?

: ନାହିଁ । ଚ୍ୟାପା ପଡ଼ିବେ କାହିଁକି ?

: ପଡ଼ିଗଲେ ଅବା ଅଜିତ ବାବୁ ? ଦ୍ରୁତ ବେଗର ଭିତରେ ଗୋଟାଏ ଆନନ୍ଦ ଅଛି । ଗାଡ଼ି କ'ଣ ଏଇ ଜୀବନ ଅବା କ'ଣ ? କିନ୍ତୁ ଯେଉଁମାନେ ଭୟାକ୍ରାନ୍ତ ଲୋକ ସେମାନେ ପାରନ୍ତି ନାହିଁ । ସାବଧାନରେ ଧୀରେ ଧୀରେ ଚାଲନ୍ତି । ଭାବନ୍ତି ଯାହାହେଉ ବାଟଚଲା ଦୁଃଖରୁ ତ୍ରାହି ପାଇଛନ୍ତି—ଏଇ ଯଥେଷ୍ଟ । ରାସ୍ତାଟାକୁ ଠକି ଦେଇ ପାରୁଥିବାରୁ ସେମାନେ ଖୁସି । କିନ୍ତୁ ନିଜେ ଠକେଇ ହୋଇଥିବାର ସନ୍ଧାନ ପାଇ ପାରନ୍ତି ନାହିଁ । କ'ଣ ଯାହା କହୁଛି ଠିକ୍ ନା ଅଜିତ ବାବୁ ?

କଥାଟା ଅଜିତ ବୁଝି ପାରିଲା ନାହିଁ, ପଚାରିଲା ଏହାର ଅର୍ଥ ?

କମଳ ତା ମୁହଁକୁ ଚାହିଁ ଟିକିଏ ହସିଲା । କିଛି ସମୟ ପରେ ମୁଣ୍ଡ ହଲାଇ କହିଲା—କିଛି ନାହିଁ । ଏଇମିତି ?

କଥାଟା ଯେ ସେ ବୁଝାଇ କହିବାକୁ ଚାହେଁ ନାହିଁ ଏତକ ମାତ୍ର ବୁଝାଗଲା । ଆଉ କିଛି ନୁହେଁ ।

ଅନ୍ଧକାର ଗାଢ଼ତର ହୋଇ ଆସିଥାଏ । ଅଜିତ ଫେରିବାକୁ ଇଚ୍ଛା ପ୍ରକାଶ କଲା । କମଳ କହିଲା—ଏତେ ଶୀଘ୍ର ? ଚାଲନ୍ତୁ ନା ଟିକିଏ ଆଗକୁ ।

ଅଜିତ କହିଲା—ଅନେକ ଦୂର ଆସି ଗଲେଣି । ଫେରିବା ପାଇଁ ରାତି ହୋଇଯିବ ?

: ହେଲେ, ହେଉ ।

: ଶିବନାଥ ବାବୁ ହୁଏତ ବିରକ୍ତ ହେବେ ।

: ହେଲେ, ହୁଅନ୍ତୁ ।

ଅଜିତ ମନେ ମନେ ବିସ୍ମିତ ହୋଇ କହିଲା—କିନ୍ତୁ ଅଶୁବାବୁଙ୍କୁ ପୁଣି ଗାଡ଼ିରେ ଫେରାଇ ନେବାକୁ ହେବ । ବିଳମ୍ବ ହେଲେ ଭଲ ହେବ ନାହିଁ ।

କମଳ ପ୍ରତ୍ୟୁତ୍ତରରେ କହିଲା—ଆଗ୍ରା ସହରରେ ତ ଗାଡ଼ିର ଅଭାବ ନାହିଁ । ସେମାନେ ଅନାୟାସରେ ଯାଇ ପାରନ୍ତି । ଚାଲନ୍ତୁ ଆଉ ଟିକିଏ ଆଗକୁ । ଏହିପରି ଭାବରେ କମଳ ଯୋର କରି ତାକୁ ଆଗକୁ ଠେଲି ଚାଲିଲା ।

କ୍ରମଶଃ ଜନବିରଳ ପଥ ରାତିର ଅନ୍ଧକାରରେ ଭରି ଉଠିଲା । ଚାରିଆଡ଼େ ଦିଗନ୍ତ ବିସ୍ତୃତ ପ୍ରାନ୍ତର । ନିହାତି ନିସ୍ତବ୍ଧ । ଅଜିତ ହଠାତ୍ ଗାଡ଼ି ବନ୍ଦ କରି କହିଲା—ଆଉ, ଆଗକୁ ନୁହେଁ, ଫେରି ଚାଲନ୍ତୁ ।

: ହଉ, ଫେରନ୍ତୁ ।

ଫେରିବା ବାଟରେ କମଳ ଧୀରେ ଧୀରେ କହିଲା—ଭାବିଥିଲି, ମିଥ୍ୟା ସହିତ ସାଲିସ୍ କରିବାକୁ ଯାଇ ମଣିଷକୁ ଜୀବନର କେତେ ଅମୂଲ୍ୟ ସମ୍ପଦକୁ ନଷ୍ଟ କରିବାକୁ ନ ପଡ଼େ ? ମୋତେ ଏକାକୀ ନେଇ ଯିବା ପାଇଁ ଆପଣଙ୍କୁ କେତେ ସଂକୋଚ ଲାଗି ନ ଥିଲା ? ମୁଁ ଯଦି ସେହି ଭୟରେ ପଛାଇ ଯାଇଥାନ୍ତି ତେବେ ଏହି ଭଳି ଆନନ୍ଦ ତ ଅଦୃଷ୍ଟରେ ଘଟି ନ ଥାନ୍ତା ।

: କିନ୍ତୁ ଶେଷ ପର୍ଯ୍ୟନ୍ତ ନ ଦେଖି ନିଶ୍ଚିତ କରି କିଛି କହି ହୁଏ ନାହିଁ । ଫେରି ଗଲା ପରେ ଆନନ୍ଦ ବଦଳରେ ହୁଏତ ଭାଗ୍ୟରେ ନିରାନନ୍ଦ ଥାଇ ପାରେ ।

: ଏଇ ଅନ୍ଧକାର ନିର୍ଜନ ରାସ୍ତାରେ ଏକଲା ଆପଣଙ୍କ ପାଖରେ ବସି ରୁଦ୍ଧଶ୍ୱାସରେ କେତେଦୂର ଚାଲି ଆସିଲି ! ଆଜି ମୋତେ ଯେ କେତେ ଆନନ୍ଦ ଲାଗୁଛି ତାହା କହି ହେବ ନାହିଁ ।

ଅଜିତ ବୁଝି ପାରିଲା—କମଳ ତା କଥାକୁ କାନ ଦେଇ ନାହିଁ । ସେ କେବଳ ଆପଣା କଥା ଆପେ କହି ଚାଲିଛି । ଯଦିଓ ଶୁଣି କରି ଲଜ୍ୟା ପାଇବା ଭଳି ପ୍ରକୃତରେ ଏଥିରେ କିଛି ନାହିଁ; ତଥାପି ସେ କିପରି ସଙ୍କୁଚିତ ହୋଇ ଉଠିଲା । ଏହି ଝିଅଟି ସମ୍ବନ୍ଧରେ ବିରୁଦ୍ଧ କଳ୍ପନା ଏବଂ ଅତିରିକ୍ତ ଅଶୁଭ ଜନଶ୍ରୁତିରୁ ବୋଧହୁଏ ସେ କିଛି ଜାଣି ନାହିଁ । ଯାହା ଜାଣେ ତାହା ଭିତରୁ ହୁଏତ ଅନେକ ଗୁଡ଼ିଏ ମିଥ୍ୟା ଏବଂ ଯାହା ସତ୍ୟ ଅଛି ତାହା ଉପରେ ହୁଏତ ଅସତ୍ୟର ଛାୟା ଏପରି ଘୋଡ଼ାଇ ହୋଇ ପଡ଼ିଛି ଯେ ଚିହ୍ନି ପାରିବାର ବାଟ ନାହିଁ । ଇଚ୍ଛା କରି ତେଣୁ ଯେଉଁମାନେ ଅଯାଚିତ ଭାବରେ ସାହାଯ୍ୟ ଦେଇ ପାରନ୍ତେ ସେମାନେ ଦିଅନ୍ତି ନାହିଁ, ଯେହେତୁ ସମସ୍ତ ଘଟଣାଟା ସେମାନଙ୍କ ନିକଟରେ ନିଛକ ଅର୍ଥହୀନ ।

ଅଜିତ ନୀରବ ରହିଥିବାର ଖିଆଲ ହେବାରୁ କମଳର ଯେପରି ଚେତା ପଶିଲା । କହିଲା—ଭଲ କଥା, କ'ଣ କହୁଥିଲେ ? ଫେରିଗଲା ପରେ ଆନନ୍ଦ ପରିବର୍ତ୍ତିରେ ନିରାନନ୍ଦ ଅଦୃଷ୍ଟରେ ଯଦି ଲେଖାଥିବ ? ଥିଲେ ଥାଇପାରେ ।

: ତାହାହେଲେ ?

: ତାହାହେଲେ ମଧ୍ୟ ଏହା ପ୍ରମାଣିତ ହୋଇ ପାରିବ ନାହିଁ ଯେ ମୁଁ ଯେଉଁ ଆନନ୍ଦ ଆଜି ପାଇଛି ତାହା ପାଇନି ବୋଲି ।

ଏଥର ଅଜିତ ହସିଲା । କହିଲା—ତାହା ପ୍ରମାଣିତ ହେଲା ନାହିଁ କିନ୍ତୁ ଏତିକି ପ୍ରମାଣ ମିଳିଲା ଯେ ଆପଣ କମ ତାର୍କିକ ନୁହନ୍ତି ? ଆପଣଙ୍କ ସଙ୍ଗେ କଥା କହି ଜିତିବା ବଡ଼ କଷ୍ଟ ।

: ଅର୍ଥାତ୍ ଯାହାଙ୍କୁ କହନ୍ତି କୂଟନୀତିଜ୍ଞ—ତାର୍କିକ, ଆଜି ମୁଁ ହେଉଛି ତହିଁରୁ ଜଣେ ?

ଅଜିତ କହିଲା—ନା, ତାହା ନୁହେଁ । କିନ୍ତୁ ଯାହା ଜୀବନର ଶେଷ ଅଂଶ ଦୁଃଖରେ ଶେଷ ହୁଏ ସେ ଆରମ୍ଭରୁ ଯେତେ ଆନନ୍ଦରେ ଥାଉ ନା କାହିଁକି ସେ ଯେ ପ୍ରକୃତରେ ଆନନ୍ଦ ଉପଭୋଗ କରିଛି ବୋଲି କୁହାଯାଇ ପାରିବ ନାହିଁ । ଏକଥା ତ ଆପଣ ନିଶ୍ଚୟ ମାନନ୍ତି ?

କମଳ କହିଲା—ନା, ମୁଁ ମାନେ ନାହିଁ । ମୁଁ ଯେତେ ଅଳ୍ପ ହେଉନା କାହିଁକି ଯାହା ଯେତେବେଳେ ପାଇଥାଏ ତାହାକୁ ସତ୍ୟ ବୋଲି ମାନି ନେଇଥାଏ । ମୁଁ ଚେଷ୍ଟା କରେ ଦୁଃଖର ଦାହ ଯେପରି ମୋର ବିଗତ ସୁଖର ଶିଶିର ବିନ୍ଦୁ ଗୁଡ଼ିକୁ ଶୁଖି କରି ନ ପକାଏ । ତାହା ଯେତେ ଅଳ୍ପ ହେଉନା କାହିଁକି, ପରିମାଣ ତାର ସଂସାରରେ ଯେତେ ତୁଚ୍ଛ ହେଉନା କାହିଁକି, ତଥାପି ତାହାକୁ ଯେପରି ମୁଁ ଅସ୍ୱୀକାର ନ କରେ, ଏବଂ ମୋର ଦିନକର ଆନନ୍ଦ ଯେପରି ଅନ୍ୟ ଦିନଟିର ନିରାନନ୍ଦ ନିକଟରେ ଠିଆ ହୋଇ ଲଜ୍ଜ୍ୟାବୋଧ ନ କରେ । ଏହା କହି ସେ ମୁହୂର୍ତ୍ତିକ ପାଇଁ ସ୍ତବ୍ଧ ହୋଇ ରହି ପୁଣି କହିଲା—ଏ ଜୀବନରେ ସୁଖ—ଦୁଃଖ କୌଣସିଟା ସତ୍ୟ ନୁହେଁ ଅଜିତବାବୁ । ସତ୍ୟ କେବଳ ତାର ଚଞ୍ଚଳ ମୁହୂର୍ତ୍ତ ଗୁଡ଼ିକ । ସତ୍ୟ କେବଳ ତାର ଚାଲିଯିବାର ଛନ୍ଦ ଟିକକ । ବୁଦ୍ଧି ଏବଂ ହୃଦୟ ଦେଇ ତାହାକୁ ପାଇବାଟା ହିଁ ତ ପ୍ରକୃତରେ ପାଇବା । ଏହା କ'ଣ କମ କଠିନ ନୁହେଁ ?

ଏହି ପ୍ରଶ୍ନର ଉତ୍ତର ଅଜିତ ଦେଇ ପାରିଲା ନାହିଁ । କିନ୍ତୁ ତାର ମନେ ହେଲା—ଅନ୍ଧକାରରେ ମଧ୍ୟ ଆଉ ଦୁଇଟି ଚକ୍ଷୁ ଆଗ୍ରହର ସହିତ ତାହା ଆଡ଼କୁ ଚାହିଁ ରହିଛି । ସେ ଯେପରି ନିଶ୍ଚିତ ଭାବରେ କିଛି ଶୁଣିବା ପାଇଁ ଚାହେଁ ।

: କ'ଣ କିଛି ଉତ୍ତର ଦେଲେ ନାହିଁ ଯେ ?

: ଆପଣଙ୍କ କଥା ଗୁଡ଼ିକ ସ୍ପଷ୍ଟ ବୁଝି ପାରିଲି ନାହିଁ ।

: ପାରିଲେ ନାହିଁ ?

: ନା,

ଗୋଟାଏ ଗୁପ୍ତ ନିଃଶ୍ୱାସ ଶୁଣାଗଲା । ତାପରେ କମଳ ଧୀରେ ଧୀରେ କହିଲା—ତା'ମାନେ ଆପଣଙ୍କର ବର୍ତ୍ତମାନ ସୁଦ୍ଧା ପରିଷ୍କାର ରୂପେ ବୁଝି ପାରିବା ଭଳି ବୟସ ହୋଇ ନାହିଁ । ଯଦି କେତେବେଳେ ହୁଏ ସେତେବେଳେ ମୋତେ ମନେ କରିବେ । କ'ଣ କରିବେ ତ ?

: କରିବି ।

ଗାଡ଼ି ଆସି ସେହି ପୁରୁଣା ଫୁଲ ବଗିଚା ନିକଟରେ ଅଟକିଲା । ଅଜିତ ଦ୍ୱାର ଖୋଲି ଦେଇ ରାସ୍ତା ଉପରେ ଠିଆ ହେଲା । ଘର ଆଡ଼େ ଚାହିଁ କହିଲା—କେଉଁଠି ଟିକିଏ ଆଲୁଅ ନାହିଁ, ସମସ୍ତେ ବୋଧ ହୁଏ ଶୋଇ ପଡ଼ିଛନ୍ତି ।

କମଳ ଓହ୍ଲାଉ ଓହ୍ଲାଉ କହିଲା—ବୋଧହୁଏ ।

: ଏଇଟା କିନ୍ତୁ ଆପଣଙ୍କର ଠିକ୍ ହୋଇନାହିଁ, କାହାରିକୁ ଜଣାଇ କରି ଗଲେ ନାହିଁ, ଜାଣେ ନାହିଁ ଶିବନାଥବାବୁ କେତେ ନା କେତେ ଦୁଃଶ୍ଚିନ୍ତା ଭୋଗ କରି ନ ଥିବେ ?

: ହଁ, ବୋଧହୁଏ ଦୁଃଶ୍ଚିନ୍ତା ଭରରେ ଶୋଇପଡ଼ିଛନ୍ତି ।

: ଏଇ ଅନ୍ଧକାରରେ ଯିବେ କିପରି ? ଗାଡ଼ିରେ ଗୋଟାଏ ଲଣ୍ଠନ ଅଛି । ସେଇଟା ଜଳାଇ ସଙ୍ଗରେ ଧରି ନେଇକରି ଯିବି କି ?

କମଳ ଅତ୍ୟନ୍ତ ଖୁସି ହୋଇ କହିଲା—ତାହାହେଲେ ରକ୍ଷା ପାଇଯିବି ଅଜିତବାବୁ । ଆସନ୍ତୁ, ଆସନ୍ତୁ, ଆପଣଙ୍କୁ କିପେ ଗୃହା ହେଲେ ଦେଇ ପାରିବି ।

ଅଜିତ ଅନୁନୟ କଲାଭଳି କଣ୍ଠରେ କହିଲା—ଆଉ ଯାହା ହୁକୁମ କରିବେ ପାଳନ କରିପାରେ କିନ୍ତୁ ଏତେ ରାତିରେ ଚା ଖାଇବା ପାଇଁ ଆଦେଶ କରନ୍ତୁ ନାହିଁ । ଚାଲନ୍ତୁ, ମୁଁ ଆପଣଙ୍କୁ ଛାଡ଼ି ଦେଇ ଆସିବି ।

ସଦର ଦରଜାରେ ହାତ ମାରିବା ମାତ୍ରେ ତାହା ଖୋଲିଗଲା । ଭିତରର ବାରଣ୍ଡାରେ ଜଣେ ହିନ୍ଦୁସ୍ଥାନୀ ଦାସୀ ଶୋଇଥିଲା । ସେ ମଣିଷର ଯୋର ଶବ୍ଦ ପାଇ ଉଠିବସିଲା । ଘରଟି ଦୁଇମହଲା । ଉପରେ ଛୋଟ ଛୋଟ ଦୁଇଟି ଘର । ଅତଶୀୟ ସଙ୍କୀର୍ଣ୍ଣ ସିଡ଼ି ତଳେ ମିଞ୍ଜି ମିଞ୍ଜି ହୋଇ ଗୋଟିଏ ଲଣ୍ଠନ ଜଳୁଥାଏ । ତାକୁ ଧରି କମଳ ଅଜିତକୁ ଉପରକୁ ଆହ୍ୱାନ କରିବାକ୍ଷଣି ସେ ସଙ୍କୋଚରେ ବ୍ୟାକୁଳ ହୋଇ କହି ଉଠିଲା । ନା, ବର୍ତ୍ତମାନ ଯାଉଛି । ଅନେକ ରାତି ହେଲାଣି ।

କମଳ ଜିଦ୍ କରି କହିଲା—ସେ କଥା ହେବନାହିଁ । ଆସନ୍ତୁ ।

ଅଜିତ ତଥାପି ଦ୍ୱିଧା କରୁଥିବାର ଦେଖି ସେ କହିଲା—ଆସିଲେ କ'ଣ ଶିବନାଥ ବାବୁଙ୍କ ପକ୍ଷରେ ଲଜ୍ଜାକର କଥା ହେବ ବୋଲି ? ନଆସିଲେ ଯେ ମୋର ଲଜ୍ଜା ଆହୁରି ବେଶୀ ହେବ । ଏକଥା ଭାବୁ ନାହାନ୍ତି କାହିଁକି ? ଆସନ୍ତୁ । ତନ୍ତୁ ଆପଣଙ୍କୁ ଏପରି ଭାବରେ ଅନାଦର କରି ବିଦାୟ କରିଦେଲ ପରେ ରାତିରେ ମୁଁ ଯେ ଶାନ୍ତିରେ ଶୋଇ ପାରିବି ନାହିଁ ।

ଅଜିତ୍ ବାଧ୍ୟ ହୋଇ ଉପରକୁ ଉଠି ଆସି ଦେଖିଲା—ଘରେ ଆସବାବପତ୍ର କିଛି ନାହିଁ କହିଲେ ଚଳେ । ଖଣ୍ଡିଏ ଅଳ୍ପ ଦାମର ଚୌକି, ଗୋଟିଏ ଛୋଟ ଟେବୁଲ, ଖଣ୍ଡିଏ ଟୁଲ, ଦୁଇ ତିନିଟି ଟ୍ରଙ୍କ ଆଉ ଗୋଟିଏ ପାଖରେ ଲୁହା ଖଟଟି ଉପରେ ବିଛଣା, ତକିଆ ଗଦା ମାତ୍ର ରଖା ହୋଇଥାଏ ଯେପରି ସାଧାରଣତଃ ସେ ସବୁର ପ୍ରୟୋଜନ ନଥିଲା ପରି ଏକ ଅନାସ୍ଥା ଭାବ ଜଣାପଡ଼ି ଯାଉଥାଏ । ଘର ଶୂନ୍ୟ । ଶିବନାଥ ନାହାଁନ୍ତି ।

ଅଜିତ ବିସ୍ମିତ ହୋଇ ଉଠିଲା । କିନ୍ତୁ ମନେ ମନେ ଆଶ୍ୱସ୍ତି ଅନୁଭବ କରି କହିଲା—କାହିଁ ! ସେ ତ ଏ ପର୍ଯ୍ୟନ୍ତ ଆସି ନାହାନ୍ତି ?

: ନାହିଁ ।

: ଆଜି ବୋଧହୁଏ ଆମ ସେଠାରେ ତାଙ୍କର ଗାନ-ବାଜଣା ଜୋର ସୋରରେ ଚାଲିଛି ।

: କିମିତି ଜାଣି ପାରିଲେ ?

: ଗତ କାଲି ଓ ତା ପୂର୍ବ ଦିନ ଦୁଇଦିନ ଯାଇ ନାହାନ୍ତି । ଆଜି ହାତରେ ପାଇ ଆଶୁବାବୁ ବୋଧହୁଏ ସବୁ କ୍ଷତି ପୂରଣ ଆଦାୟ କରି ନେଇଛନ୍ତି ।

: ପ୍ରତି ଦିନ ତାହା ହେଲେ ଯାଆନ୍ତି । ଆଉ ଏଇ ଦୁଇଦିନ ଧରି କାହିଁକି ଯାଇ ନ ଥିଲେ ?

: ସେ ଖବର ମୋ ଠାରୁ ଆପଣ ବୋଧହୁଏ ବେଶୀ ଜାଣିଥିବେ । ସମ୍ଭବତଃ ଆପଣ ଗ୍ରହଣ ଦିଅନ୍ତି ନାହିଁ ବୋଲି ସେ ଯାଇ ନାହାଁନ୍ତି । ନ ହେଲେ ନିଜ ଇଚ୍ଛାରେ ସେ ଅନୁପସ୍ଥିତ ହୋଇଛନ୍ତି ଏହା ତାଙ୍କୁ ଦେଖିଲେ କୌଣସି ମତେ ମନେ ହୁଏ ନାହିଁ ।

କମଳ କେତେ ସମୟ ପର୍ଯ୍ୟନ୍ତ ଅଜିତ ମୁହଁକୁ ଚାହିଁ ରହିବା ପରେ ହଠାତ୍ ହସି ଉଠିଲା । କହିଲା—କିଏ ଜାଣେ ସେଠାକୁ ସେ ଗାନ-ବାଜଣା କରିବାକୁ ଯାଆନ୍ତି ବୋଲି । ପ୍ରକୃତରେ ମନୁଷ୍ୟକୁ ଜବରଦସ୍ତ ଘରେ ଅଟକାଇ ରଖିବାଟା ନିହାତି ଅନ୍ୟାୟ, ନୁହେଁ ?

: ନିଶ୍ଚୟ ।

: ତେବେ ସେ ନିହାତି ଭଲ ଲୋକ । ଆଚ୍ଛା, ଆପଣଙ୍କୁ ଯଦି କେହି ଧରି ରଖିବ, ରହିବେ ତ ?

: ନା, ତାଛଡ଼ା ମୋତେ ଧରି ରଖିବା ପାଇଁ ତ କେହି ନାହାଁନ୍ତି ।

କମଳ ହସ ହସ ମୁହଁରେ ଦୁଇ ତିନି ଥର ମୁଣ୍ଡ ହଲାଇ କହିଲା—ଏହା ହିଁ ତ ମୁସ୍କିଲ । ଧରି ରଖିବା ପାଇଁ କିଏ ଯେ କେଉଁଠାରେ ଲୁଚି ରହିଛି ଜାଣିପାରିବାର ଯୁ କାହାର ନାହିଁ । ଏଇ ଯେ ମୁଁ ଆପଣଙ୍କୁ ସନ୍ଧ୍ୟା ସମୟରୁ ଏତେବେଳ ପର୍ଯ୍ୟନ୍ତ ଧରି

ରଖିଛୁ କଏ ଅବା ତାର ଝେର ପାଇପାରିବ ? ଥାଉ, ଥାଉ, ପ୍ରତ୍ୟେକ କଥାରେ ଯୁକ୍ତି କରି ଅବା ଲାଭ କ'ଣ ? କଥା ହେଉ ହେଉ ଡେରି ହୋଇ ଯାଉଛି । ଯାଉଛି, ମୁଁ ସେ ଘରେ ଚ୍ହା କରି ଆଣିବ ।

: ଆଉ ମୁଁ ଏକାକୀ ଏଠାରେ ଚୁପ୍ ହୋଇ ବସିରହିଥିବ ? ତାହା ହେବ ନାହିଁ ।

: ହବାର ଦରକାର କ'ଣ ? ଏହା କହି କମଳ ତାକୁ ପାଖ ଘରକୁ ଡାକ ନେଇ ଖଣ୍ଡିଏ ନୂଆ ଆସନ ପକାଇ ଦେଇ କହିଲା ବସନ୍ତୁ, କିନ୍ତୁ କେତେ ବଡ଼ଠ ଏଇ ଦୁନିଆଁର ବ୍ୟାପାର ଅଜିତ ବାବୁ । ସେଦିନ ଏଇ ଆସନ ଖଣ୍ଡି ପସନ୍ଦ କରି କିଣିବାବେଳେ ଭାବିଥିଲି— ଜଣକୁ ବସିବା ପାଇଁ ଦେଇ କହିବ···କିନ୍ତୁ ସେକଥା ତ ଆଉ ଜଣକୁ କୁହାଯାଇ ପାରେ ନାହିଁ ଅଜିତ ବାବୁ । ତଥାପି ମଧ ଆପଣଙ୍କୁ ବସିବା ପାଇଁ ଦେଲି । ଅଥଚ କେତେ ସମସ୍ୟା ଅବା ବ୍ୟବଧାନ ! ଏହାର ଅର୍ଥ ଯେ କ'ଣ ତାହା ଭାବି କରି କହନ୍ତୁ । ହୁଏତ ଅତଣସ୍ତ ସହଜ, କିମ୍ବା ତତୋଧିକ ଦୁରୂହ ।

ଅଜିତର ମୁହଁ ଲାଜରେ ରଙ୍ଗ ପଡ଼ଗଲା । କଥା କହିବା ପାଇଁ ତା ଜିଭ ଯେପରି କିଏ ଟାଣି ଧରିଲା । ତଥାପି ସେ କହିଲା—ତାକୁ ଅବା ବସିବା ପାଇଁ ଦେଇନ ଜାହିଁକ ?

: ଏହା ହିଁ ତ ମନୁଷ୍ୟର ବଗ୍ଟ ଭୁଲ । ସେ ଭାବେ ସବୁ ତା ନିଜ ହାତରେ । କିନ୍ତୁ କେଉଁଠାରେ ବସି କିଏ ଯେ ସବୁ ହିସାବକୁ ଓଲଟ-ପାଲଟ କରିଦିଏ କେହି ତାର ସନ୍ଧାନ ପାଇ ପାରନ୍ତି ନାହିଁ । ଆପଣଙ୍କ ଚ୍ହାରେ କ'ଣ ବେଶୀ ଚିନି ଦେବ କି ?

: ଦଅନ୍ତୁ । ଚିନି ଆଉ ଦୁଧ ଲୋଭରେ ତ ମୁଁ ଚ୍ହା ଖାଇଥାଏ । ନଚେତ୍ ମୋର ସେଥିପ୍ରତି କୌଣସି ଆଗ୍ରହ ନାହିଁ ।

: ମୁଁ ମଧ ଠିକ୍ ସେଇପରି । ଜାହିଁକ ଯେ ମଣିଷ ଏଗୁଡ଼ାକ ପିଅନ୍ତି ମୁଁ ଭାବି ପାରେ ନାହିଁ । ଅଥଚ ସେମାନଙ୍କ ଦେଶରେ ମୋର ଜନ୍ମ ।

: ଆପଣଙ୍କ ଜନ୍ମ ଭୂମି ତାହା ହେଲେ ଆସାମ ?

: କେବଳ ଆସାମ ନୁହେଁ, ଯାହାକୁ କୁହନ୍ତି ଚ୍ହା ବଗିଚ୍ଚ ମଝିରେ ।

: ତଥାପି ମଧ ଆପଣଙ୍କର ଚ୍ହା ପ୍ରତି ଆଗ୍ରହ ନାହିଁ ?

: ଏକବାରେ ନୁହେଁ । କିନ୍ତୁ କେହି ଦେଲେ ଭଦ୍ରତା ଖାତିରରେ ଖାଇଥାଏ ।

ଅଜିତ ଚ୍ହା କପକୁ ହାତରେ ଧରି ଚ୍ଚରଆଡ଼େ ଥାଖି ବୁଲାଇ ଆଣି କହିଲା— ଏଇଟା ବୋଧହୁଏ ଆପଣଙ୍କ ଶୋଇବା ଘର ?

: ହଁ ।

: ଆପଣ ନିଜେ ବୋଧହୁଏ ରାନ୍ଧନ୍ତି ? କିନ୍ତୁ ଆଜି ତ ଆଉ ରାନ୍ଧିବା ପାଇଁ ସମୟ ପାଇବେ ନାହିଁ ?

: ନା ।

ଅଜିତ ଇତଃସ୍ତତଃ ହେବାକୁ ଲଗିଲା । କମଲ ତା ମୁହଁକୁ ଚାହିଁ ହସ ହସ ମୁହଁରେ କହିଲା—ଏଥର ତାହାହେଲେ ପ୍ରଶ୍ନ କରନ୍ତୁ, ଆପଣ ଖାଇବେ କ'ଣ ? ତାର ଉତ୍ତରରେ ମୁଁ କହିବି—ରାତିରେ ମୁଁ ଖାଏ ନାହିଁ । ଦିନ ଭିତରେ ମାତ୍ର ଥରଟିଏ ଖାଏ ।

: କେବଳ ଥରଟିଏ ମାତ୍ର ?

: ହଁ । କିନ୍ତୁ ଏହା ପରେ ଆପଣଙ୍କର ମନେ ହେବା ଉଚିତ ତାହା ଯଦି ହେଲା, ତେବେ ଶିବନାଥ ବାବୁ ଘରକୁ ଫେରିଲେ ଖାଇବେ କ'ଣ ? ତାଙ୍କ ଖାଇବା ତ ଦେଖିଛି, ତାହା ତ ଆଉ ଥରକଟିଏ ମାତ୍ର ନୁହେଁ । ତେବେ ? ଏହାର ଉତ୍ତର ଦେବାକୁ ଯାଇ ମୁଁ କହିବି—ସେ ତ ପ୍ରତ୍ୟେକ ଦିନ ଆପଣଙ୍କ ଘରେ ଖାଇକରି ଆସନ୍ତି । ତାଙ୍କର ଚିନ୍ତା କ'ଣ ଆପଣ କହିବେ । ତାହା ସତ ହୋଇପାରେ କିନ୍ତୁ ପ୍ରତ୍ୟେକ ଦିନ ତ ନୁହେଁ । ଶୁଣିକରି ମୁଁ ଭାବିବି ଏ କଥାର ଉତ୍ତର ଅପର ଲୋକକୁ ଦେଇ ଲାଭ ଅବା କ'ଣ ? କିନ୍ତୁ ସେତିକିରେ କ'ଣ ଆପଣଙ୍କୁ ସନ୍ତୁଷ୍ଟ କରିହେବ ? ବୋଧହୁଏ ନୁହେଁ । ସେତେବେଳେ ବାଧ୍ୟ ହୋଇ କହିବାକୁ ପଡ଼ିବ, ଅଜିତ ବାବୁ ଆପଣଙ୍କର ଭୟ କରିବାର କିଛି ନାହିଁ । ସେ ଏଠାକୁ ରାତିରେ ଆସୁ ନାହାନ୍ତି । ଶୈବ ବିବାହ ହେତୁ ପାଇଥିବା ଶିବାନୀ ପ୍ରତି ତାଙ୍କର ମୋହ ବୋଧହୁଏ ତୁଟିଛି ।

ଅଜିତ ପ୍ରକୃତରେ ଏକଥାର ଅର୍ଥ ବୁଝି ପାରିଲା ନାହିଁ । ଗମ୍ଭୀର ବିସ୍ମୟରେ ତା ମୁହଁକୁ ଚାହିଁ ପ୍ରଶ୍ନ କଲା—ଏହାର ମାନେ ? ଆପଣ କ'ଣ ରାଗି କରି କହୁଛନ୍ତି ?

: ନା, ରାଗ କରିବି କାହିଁକି ? ରାଗ କରିବା ପାଇଁ ବୋଧହୁଏ ଆଜି ମୋର ଜୋର ନାହିଁ । ମୁଁ ଜାଣିଛି ସେ ପଥର କିଣିବା ପାଇଁ ଜୟପୁର ଯାଇଛନ୍ତି, ଆପଣଙ୍କ ଠାରୁ ଆଜି ପ୍ରଥମ କରି ଜାଣିବାକୁ ପାଇଲି ସେ ସେ ଆଶା ଛାଡ଼ି ଯାଇ ନାହାନ୍ତି । ଚାଲନ୍ତୁ; ସେ ଘରେ ଯାଇ ବସିବା ।

ଅନ୍ୟ ଘରକୁ ଆସି କମଲ କହିଲା—ଏଇଟା ଆମର ଶୋଇବା ଘର । ସେତେବେଳେ ମଧ୍ୟ ଏହି ଘରେ ଯେତିକି ଜିନିଷ ପତ୍ର ଥିଲା, ଆଉ ଆଜି ମଧ୍ୟ ସେତିକି ଅଛି । କିନ୍ତୁ ସେଦିନ ତାଙ୍କର ଚେହେରା ଦେଖିଥିଲେ ଆଜି ମୋତେ କହିବାକୁ ପଡ଼ି ନଥାନ୍ତା ଯେ ମୁଁ ରାଗ କରିନାହିଁ । ଏଣେ ରାତି ହେବାରେ ଲାଗିଛି ଅଜିତ ବାବୁ, ଆଉ ବିଳମ୍ବ କରିବାଟା ଉଚିତ ହେବ ନାହିଁ ।

ଅଜିତ ଉଠି ଠିଆହୋଇ ପଡ଼ି କହିଲା—ତେବେ ମୁଁ ଆସୁଛି ।

କମଲ ମଧ୍ୟ ସଙ୍ଗେ ସଙ୍ଗେ ଉଠି ଠିଆ ହୋଇ ପଡ଼ିଲା ।

ଅଜିତ କହିଲା—ଯଦି ଅନୁମତି ଦିଅନ୍ତି ତ କାଲି ଆସିବି ।

: ହଁ, ଆସିବେ । କହି ସେ ସଙ୍ଗେ ସଙ୍ଗେ ତଳକୁ ଓହ୍ଲାଇବାରେ ଲାଗିଲା ।

ଅଜିତ ଭଲକୁ ଆସି କହିଲା—ଯଦି ଖରାପ ନ ଭାବବେ ତେବେ ଗୋଟାଏ କଥା ପଗ୍ଭରନ୍ତି । ଶିବନାଥ ବାବୁ କେତେ ଦିନ ହେବ ଆସିନାହାଁନ୍ତି ।

: ଅନେକ ଦିନ ହେବ । କହି ସେ ହସିଲା । ଅଜିତ ଲକ୍ଷ୍ୟ କରି ଦେଖି ପାରିଲା ଏ ହସ ଅନ୍ୟ ପ୍ରକାରର । କମଳର ପୂର୍ବ ହସ ସହିତ ଏ ହସର କୌଣସି ସାମଞ୍ଜସ୍ୟ ନାହିଁ ।

ଅଜିତ ଯେତେବେଳେ ଘରକୁ ଫେରିଲା—ସେତେବେଳକୁ ରାତି ବହୁତ ହୋଇ-ଥିଲା । ରାସ୍ତା ନିର୍ଜନ, ଦୋକାନ ବଜାର ସବୁ ବନ୍ଦ । କୌଣସିଠାରେ ମନୁଷ୍ୟର ଚିହ୍ନ ବର୍ତ୍ତି ନାହିଁ । ଘଣ୍ଟକୁ ଚାହିଁ ଦେଖିଲା ଚାବି ଦିଆ ହୋଇ ନ ଥିବାରୁ ତାହା ଆଠଟା ପରେ ବନ୍ଦ ହୋଇ ଯାଇଛି । ରାତି ବର୍ତ୍ତମାନ ହୁଏତ ଗୋଟାଏ କି ଦୁଇଟା ହେବ । ଆଶୁବାବୁଙ୍କ ଘରେ ଯେ ବର୍ତ୍ତମାନ ସମସ୍ତେ ଉତ୍କଣ୍ଠିତ ହୋଇ ପଡ଼ିଥିବେ ଏହା ନିଶ୍ଚିତ କଥା । ଶୋଇବା କଥା ଦୂରେ ଥାଉ ଖାଇବା ପିଇବା ପର୍ଯ୍ୟନ୍ତ ବନ୍ଦ ଥିବ । ଘରକୁ ଫେରି ସେ ଯେ କ'ଣ ଉତ୍ତର ଦେବ ତାହା ସ୍ଥିର କରି ପାରିଲା ନାହିଁ । ସତ କଥା କୁହାଯାଇ ପାରିବ ନାହିଁ । ବରଂ ମିଛ କୁହାଯାଇ ପାରିବ । ମିଛ କହିବା ଅଭ୍ୟାସ ନ ଥିଲା । ନଚେତ୍ ମଟରରେ ଏକାକୀ ବୁଲି ବାହାରିଥିବା ବ୍ୟକ୍ତିକୁ ବିଳମ୍ବର କାରଣ ଉଦ୍ଭାବନ କରିବା ପାଇଁ ଚିନ୍ତା କରିବାକୁ ପଡ଼ି ନଥାନ୍ତା ।

ଗେଟ୍ ଖୋଲା ଥିଲା । ଦରଓ୍ୱାନ ସଲାମ ଜଣାଇ କହିଲା ଯେ ଡ୍ରାଇଭର ନାହିଁ । ସେ ତାଙ୍କୁ ଖୋଜିବା ପାଇଁ ବାହାରି ଯାଇଛି । ଗାଡ଼ି ଗ୍ୟାରେଜ୍‌ରେ ରଖି ଅଜିତ ଆଶୁବାବୁଙ୍କ ଶୋଇବା ଘରେ ପହଞ୍ଚି ଦେଖିଲା ସେ ସେପର୍ଯ୍ୟନ୍ତ ଶୋଇ ନାହାଁନ୍ତି । ଅସୁସ୍ଥ ଶରୀରରେ ତାଙ୍କୁ ଅପେକ୍ଷା କରି ଚାହିଁ ବସିଛନ୍ତି । ଉଦ୍‌ବେଗରେ ସିଧା ହୋଇ ବସି ସେ କହିଲେ—ହେଇ ଆସିଲଣି ଯେ । ମୁଁ ବାରମ୍ବାର କହୁଛି କିଛି ଗୋଟାଏ ଆକ୍‌ସିଡ଼େଣ୍ଟ ହୋଇଥିବ । କେତେଥର ତୁମକୁ କହିଛି ରାସ୍ତାକୁ କଦାପି ଏକାକୀ ଯିବ ନାହିଁ । ବୁଢ଼ା କଥା ଠିକ୍ ହେଲାତ ? ଏଥର ଶିକ୍ଷା ମିଳିଲା ତ ?

ଅଜିତ ଅତ୍ୟନ୍ତ ଲଜ୍ଜିତ ହୋଇ କହିଲା—ଆପଣଙ୍କୁ ଏତେ ଦୂର ବିଚଳିତ କରାଇ ଥିବାରୁ ମୁଁ ଦୁଃଖିତ ।

: କାଲିକି ଦୁଃଖ କରିବ । ଘଣ୍ଟାକୁ ଚାହଁ ଦେଖ ଦୁଇଟା ବାଜିଲଣି । ଦିଇଟା ଖାଇ ଦେଇ ଯାଅ ଶୋଇବ । କାଲି ସକାଳେ ସବୁ କଥା ଶୁଣିବ । ଯଦୁ ! ଯଦୁ ! ବସ ଲୋକଟା ବୋଧହୁଏ ତୁମକୁ ଖୋଜିବା ପାଇଁ ବାହାରେ ବୁଲିଗଲା କି କ'ଣ ?

ଅଜିତ କହିଲା—ଏଇଟା ଆପଣଙ୍କର ଅନ୍ୟାୟ ହୋଇଛି । ଏତେ ବଡ଼ ସହରରେ ସେ କେଉଁଠାରୁ ମୋତେ ଖୋଜି ବାହାର କରି ପାରିବ ?

: ତୁମେ ତ କହିଦେଲ ଅନ୍ୟାୟ । କିନ୍ତୁ ଆମ ମନ କ'ଣ ହେଉଥିଲା ତାହା ଆମକୁ ଜଣା । ଏଗାରଟା ପରେ ଶିବନାଥର ଗାନ-ବାଜଣା ବନ୍ଦ ହେଲା । ସେତିକି-ବେଳଠାରୁ...ହିଁ, ମଣି ମଧ୍ୟ ଗଲା କୁଆଡ଼େ ? ତାକୁ ମୁଁ ସେତିକିବେଳୁ ଦେଖିବାକୁ ପାଉ ନାହିଁ ।

: ବୋଧହୁଏ ଶୋଇ ଯାଇଥିବେ ।

: ଶୋଇବ କୁଆଡ଼ୁ ? ବର୍ତ୍ତମାନ ପୁଙ୍ଖା ସେ ସେ ଖାଇ ନାହିଁ । ଏତିକି କହିବା ପରେ ଆଶୁବାବୁ ପ୍ରଶ୍ନ କଲେ ଘୋଡ଼ାଶାଳରେ କୋଚମ୍ୟାନ୍‌କୁ ଦେଖିଲ କି ?

: କାହିଁ ନାହିଁ ତ !

: ତେବେ ହୋଇଛି । କହି ଆଶୁବାବୁ ଦୁଃଶ୍ଚିନ୍ତାରେ ଭାରାକ୍ରାନ୍ତ ହୋଇ କହିଲେ—ଯାହା ଭାବିଥିଲି ଠିକ୍ । ଗାଡ଼ିଟା ଧରି ସେ ମଧ୍ୟ ଖୋଜିବା ପାଇଁ ବାହାରି ଯାଇଛି । ଜାଣିଲେ ମନା କରିବି, ଏଇ ଭୟରେ ମୋତେ ମଧ୍ୟ କହି ନାହିଁ । ଚୁପ୍‌ଚାପ୍ ଚାଲିଯାଇଛି । କେତେବେଳେ ଫେରିବ କିଏ ଜାଣେ ? ଆଜି ରାତିଟା ମୋର ଉଜାଗରରେ କଟିବ ଦେଖୁଛି ।

: ମୁଁ ଦେଖୁଛି ଗାଡ଼ିଟା ଅଛି କି ନାହିଁ । କହି, ଅଜିତ ଘରୁ ବାହାରି ଚାଲିଗଲା । ଘୋଡ଼ାଶାଳରେ ଯାଇ ଦେଖିଲା ଗାଡ଼ି ମହଜୁଦ୍ ରହିଛି ଏବଂ ଘୋଡ଼ାମାନେ ମଝିରେ ମଝିରେ ଖୁରା ବାଡ଼େଇ ଆନନ୍ଦରେ ଘାସ ଚୋବାଇବାରେ ଲାଗିଛନ୍ତି । ତାର ଗୋଟାଏ ଦୁଃଶ୍ଚିନ୍ତା ତୁଟିଲା । ତଳ ବାରଣ୍ଡାର ଉତ୍ତର ଦିଗରେ ଯେଉଁ କେତୋଟା ବିଲାତି ଝାଉଁ ଓ ପାମ୍ ଗଛ ବଡ଼ ଅଯତ୍ନରେ କୌଣସିମତେ ବଞ୍ଚି ରହିଛନ୍ତି ତାହାରି ଉପରେ ମନୋରମାର ଶୟନ କକ୍ଷ । ସେତେବେଳ ପର୍ଯ୍ୟନ୍ତ ଆଲୁଅ ଜଳୁଛି କି ନାହିଁ ଜାଣିବା ପାଇଁ ଅଜିତ୍ ସେହି ବାଟରେ ଚାଲି ଆଶୁବାବୁଙ୍କ ପାଖକୁ ଯାଉଥିଲା, ହଠାତ୍ ମନୁଷ୍ୟର କଣ୍ଠସ୍ୱର ଶୁଣିପାରିଲା । ଅତ୍ୟନ୍ତ ପରିଚିତ କଣ୍ଠ । କଥା ଚାଲିଥିଲା କେଉଁ ଗୋଟାଏ ଗାନର ସ୍ୱର ବିଷୟରେ । ଏଥିରେ ଦୋଷ ତ କିଛି ନାହିଁ, ସେଥିପାଇଁ ଛାୟାଚ୍ଛନ୍ନ ବୃକ୍ଷତଳର ପ୍ରୟୋଜନ ନ ଥିଲା । କ୍ଷଣକ ପାଇଁ ଅଜିତର ପାଦ ଅଟକିଗଲା । ଆଲୋଚନା ଚାଲିଥାଏ । ସେ ଯେପରି ନିଃଶବ୍ଦରେ ଆସିଥିଲା, ସେହିପରି ନିଃଶବ୍ଦରେ ଚାଲିଗଲା । ଉଭୟଙ୍କ ଭିତରୁ କେହି ଜାଣି ପାରିଲେ ନାହିଁ ଯେ ସେମାନଙ୍କର ଏଇ ନିଶୀଥ ବିଶ୍ରମ୍ଭାଳାପରେ କେହି ସାକ୍ଷୀ ରହିଗଲା କି ନାହିଁ ।

ଆଶୁବାବୁ ବ୍ୟସ୍ତ ହୋଇ ପଚାରିଲେ—କ'ଣ କିଛି ଖବର ପାଇଲ ?

ଅଜିତ୍ କହିଲା—ଗାଡ଼ି, ଘୋଡ଼ା ସବୁ ଘୋଡ଼ାଶାଳରେ ଅଛି । ମଣି ବାହାରକୁ ଯାଇ ନାହିଁ ।

: ବଞ୍ଚାଇ ଦେଲ ବାବା ! ଏହା କହି ଆଖିବାଡ଼ୁ ନିଶ୍ଚିନ୍ତ ପରତୃପ୍ତି ସହିତ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ ରାତିତ ଅନେକ ହେଲାଣି ତେଣୁ ସେ ବୋଧହୁଏ କ୍ଳାନ୍ତ ହୋଇ ଶୋଇ ପଡ଼ିଥିବ । ଆଜି ଦେଖୁଛି କିଛିଟା ଖାଇ ପାରିଲ ନାହିଁ । ଯାଅ ବାବା, ତୁମେ ଦୁଇଟା ଖାଇ ନେଇ ଶୋଇ ପଡ଼ିବ ।

: ଏତେ ରାତିରେ ଆଉ ଖାଇବି ନାହିଁ । ଆପଣ ଶୋଇବାକୁ ଯାଆନ୍ତୁ ।

: ଯାଉଛି । କିନ୍ତୁ କିଛି କ'ଣ ଖାଇବ ନାହିଁ ? ସାମାନ୍ୟ କିଛି ମୁହଁରେ ଦେଇ……

: ନା, କିଛି ନୁହେଁ । ଆପଣ ଆଉ ବିଳମ୍ବ କରନ୍ତୁ ନାହିଁ । ଶୋଇବେ ଯାଆନ୍ତୁ । ଏହା କହି ବୃଦ୍ଧ ମନୁଷ୍ୟଟିକୁ ଶୋଇବା ପାଇଁ ପଠାଇଦେଇ ଅଜିତ ନିଜ ଘରକୁ ଆସି ଖୋଲା ଝରକା ନିକଟରେ ଠିଆ ହୋଇ ରହିଲା । ସେ ଭଲଭାବରେ ଜାଣେ ସୁରର ଆଲୋଚନା ସରିବା ପରେ ମନୋରମା ନିଶ୍ଚୟ ଏହି ଘରକୁ ଆସିବ ।

ମଣି ଆସିଲା, କିନ୍ତୁ ଅଧଘଣ୍ଟାଏ ପରେ । ପ୍ରଥମେ ସେ ବାବାଙ୍କ ବୈଠକ ଘରକୁ ଯାଇ ଦେଖିଲା ଘର ଅନ୍ଧାର । ଯଦୁ ବୋଧହୁଏ ନିକଟରେ କେଉଁଠାରେ ଥିଲା, ମୁନିବଙ୍କ ଡାକରେ ଉତ୍ତର ଦେଇ ନାହିଁ ସତ କିନ୍ତୁ ସେ ଉଠି ଚାଲିଯିବା ପରେ ଆସି ବୋଧହୁଏ ଆଲୁଅ ଲିଭାଇ ଦେଇ ଯାଇଛି । ମନୋରମା କିଛି ସମୟ ପାଇଁ ଇତଃସ୍ତତଃ ହୋଇ ଦେଖିବାକୁ ପାଇଲା ଅଜିତ ତା ଶୋଇବା ଘରର ଖୋଲା ଝରକା ନିକଟରେ ଚୁପ ହୋଇ ଠିଆ ହୋଇ ରହିଛି । ତା ଘରେ ଆଲୁଅ ନ ଥିଲା । କିନ୍ତୁ ଉପର ଘରର ଆଲୁଅର କ୍ଷୀଣ ରଶ୍ମିରେଖା ତା ଝରକା ଭିତର ବାଟେ ଆସି ଘରେ ପଡ଼ିଥିଲା ।

: କିଏ ?

: ମୁଁ, ଅଜିତ୍ ।

: ବାଃ । କେତେବେଳେ ଆସିଲ ? ବାବା ବୋଧହୁଏ ଶୋଇଗଲେଣି । ଏତିକି କହି ସେ ଟିକିଏ ଚୁପ୍ ହୋଇ ରହିବା ପାଇଁ ଚେଷ୍ଟା କଲା କିନ୍ତୁ ଅସମାପ୍ତ କଥାର ବେଗ ତାକୁ ଅଟକାଇ ରଖିଦେଲା ନାହିଁ । କହିବାକୁ ଲାଗିଲା—ତୁମର କିନ୍ତୁ ଏଇଟା ବଡ ଅନ୍ୟାୟ ହୋଇଛି । ଘରଯାକ ସମସ୍ତେ ଚିନ୍ତା କରି କରି ବ୍ୟସ୍ତ । ନିଶ୍ଚୟ କିଛି ଗୋଟାଏ ବଡ଼ ଧରଣର ଦୁର୍ଘଟଣା ଘଟିଯାଇଛି । ସେଥିପାଇଁ ବାବା ବାରମ୍ବାର ତୁମକୁ ଏକାକୀ ଯିବାପାଇଁ ମନା କରୁଥିଲେ ।

ଅଜିତ୍ ଏହି ସମସ୍ତ ପ୍ରଶ୍ନ ଓ ମନ୍ତବ୍ୟରୁ ଗୋଟିକର ହେଲେ ଉତ୍ତର ଦେଲା ନାହିଁ ।

ମନୋରମା କହିଲା—କିନ୍ତୁ ସେ କଦାପି ଶୋଇପାରି ନ ଥିବେ । ନିଶ୍ଚୟ ଜାଗି ରହିଥିବେ । ତାଙ୍କୁ ଟିକିଏ ଖବର ଦେବି ଯାଉଛି ।

ଅଜିତ୍ କହିଲା—ଦରକାର ନାହିଁ । ସେ ମୋତେ ଦେଖିସାରି ତାପରେ ଶୋଇବାକୁ ଯାଇଛନ୍ତି ।

: ଦେଖିସାରି ଶୋଇବାକୁ ଯାଇଛନ୍ତି ! ତେବେ ମୋତେ ଟିକିଏ ଖବର ଦେଲେ ନାହିଁ ତାହାଙ୍କୁ ?

: ସେ ଭାବିଥିବେ ତୁମେ ବୋଧହୁଏ ଶୋଇ ପଡ଼ିଥିବ ।

: ଶୋଇ ପଡ଼ିଥିବ କିପରି ? ଏ ପର୍ଯ୍ୟନ୍ତ ମୁଁ ଯେ ଖାଇ ନାହିଁ ।

: ତାହାହେଲେ ଖାଇସାରି ଶୋଇପଡ଼ । ରାତି ଆଉ ବେଶୀ ନାହିଁ ।

: ତୁମେ ଖାଇବ ନାହିଁ ?

: ନା, କହି ଅଜିତ୍ ଝରକା ନିକଟରୁ ଅପସରି ଗଲା ।

: ବାଃ ! ଭଲ କଥା ତ କହୁଛ ? ଏହାଠାରୁ ଅଧିକ କଥା ତା ତୁଣ୍ଡରୁ ବାହାରିଲା ନାହିଁ । କିନ୍ତୁ ଭିତରୁ ଆଉ ଜବାବ ଆସିଲା ନାହିଁ । ବାହାରେ ଏକାକିନୀ ମନୋରମା ସ୍ତବ୍ଧ ହୋଇ ଠିଆ ହୋଇ ରହିଲା । ବାଧ୍ୟ କରି ଏବଂ ରାଗ କରି ନିଜର ଜିଦ୍ ବଜାୟ ରଖିବା ଭଳି ଝିଅ ତା ପରି ଆଉ କେହି ନାହାନ୍ତି । ତଥାପି ସେତେବେଳେ କିଏ ଯେପରି ତା ତୁଣ୍ଡକୁ ବନ୍ଦ କରି ରଖିଲା । ଅଜିତ ରାତି ଶେଷ ପ୍ରହରକୁ ଘରକୁ ଫେରିଛି, ଘର ସାରା ସମସ୍ତେ ତା ପାଇଁ ଉଦ୍‌ବିଗ୍ନ । ଏତେ ବଡ଼ ଅପରାଧ କରି ସୁଦ୍ଧା ସେ-ହିଁ ତାକୁ ଅପମାନିତ କରି ପାରିଲା । ତଥାପି ସାମାନ୍ୟ ପ୍ରତିବାଦ ପାଇଁ ଭାଷା ତା ତୁଣ୍ଡରୁ ଲେଉଟିଲା ନାହିଁ । ତା ଜିଭ ଯେ କେବଳ ନିର୍ବାକ ତାହା ନୁହେଁ, ତା ଦେହଟା ମଧ୍ୟ କିଛି ସମୟ ପାଇଁ ବିବଶ ହୋଇ ପଡ଼ିଲା । ଝରକା ନିକଟକୁ ସେ ଫେରି ଆସିଲା ନାହିଁ । କେହି ଠିଆ ହୋଇ ରହିଛି କି ଚାଲିଗଲା ତାହା ମଧ୍ୟ ଜାଣିବାର ପ୍ରୟୋଜନ ସେ ଅନୁଭବ କରି ପାରିଲା ନାହିଁ । ଗଭୀର ରାତିରେ ଏପରି ନୀରବରେ ଠିଆ ହୋଇ ମନୋରମା ବହୁ ସମୟ ପରେ ଧୀରେ ଧୀରେ ସେଠାରୁ ଚାଲି ଆସିଲା ।

ସକାଳୁ ବେହେରା ଠାରୁ ଆଣୁବାବୁ ଜାଣି ପାରିଲେ ଯେ ଗତ କାଲି ରାତିରେ ଅଜିତ କିମ୍ବା ମନୋରମା କେହି ଖାଇ ନାହାନ୍ତି । ଚାହା ପିଇ ପିଇ ସେ ଉତ୍କଣ୍ଠାର ସହିତ ପ୍ରଶ୍ନ କଲେ କାଲି ତୁମର ବୋଧହୁଏ ସାଙ୍ଘାତିକ କିଛି ଗୋଟାଏ ଦୁର୍ଘଟଣା ଘଟିଥିଲା, ନୁହେଁ ?

: ନା ।

: ତେବେ ଗାଡ଼ିରୁ ହଠାତ୍ ତେଲ ସରି ଯାଇଥିବ ।

: ନା, ତେଲ ଯଥେଷ୍ଟ ଥିଲା ।

: ତେବେ ଏତେ ବିଳମ୍ବ ହେଲା କାହିଁକି ?

: ଏମିତି ।

ମନୋରମା ନିଜେ ଚା ଖାଏ ନାହିଁ । ସେ ବାବାଙ୍କୁ ଚାହା ତିଆରି କରି ଦେଇ ଆଉ ଗୋଟିଏ କପ ଚାହା ଓ ଜଳଖିଆ ପ୍ଲେଟଟା ଅଜିତ ଆଡ଼କୁ ବଢ଼ାଇ ଦେଲା । କିନ୍ତୁ କିଛି ପ୍ରଶ୍ନ କଲା ନାହିଁ କିମ୍ବା ମୁହଁ ଟେକି ଚାହିଁଲା ନାହିଁ । ଉଭୟଙ୍କର ଏହି ଭବାନ୍ତର ଆଣୁ-

ବାବୁ ଲକ୍ଷ୍ୟ କରି ପାରିଲେ । ଆହାର ଶେଷ କରି ଅଜିତ ସ୍ନାନ କରିବା ପାଇଁ ଗଲା । ସେ ସେତେବେଳେ କନ୍ୟାକୁ ନିରୋଳାରେ ପାଇ ଉଦ୍ବିଗ୍ନ ହୋଇ ପ୍ରଶ୍ନ କଲେ—ମାଁ ମାଆ, ଏଇଟା ଭଲ କଥା ନୁହେଁ । ଅଜିତ ସହିତ ଆମର ସମ୍ପର୍କ ଯେତେ ଘନିଷ୍ଠ ହେଉ ନା କାହିଁକି ସେ କିନ୍ତୁ ଏ ଘରର ଅତିଥି । ଅତିଥିର ଯୋଗ୍ୟ ମର୍ଯ୍ୟାଦା ତାକୁ ଦେବା ଆମର ଉଚିତ ।

: ଦେବା ଯେ ଉଚିତ ଏକଥା ତ ମୁଁ ମନା କରୁନି ବାବା ।

: ନା, କରି ନାହୁଁ ସତ । କିନ୍ତୁ ଆମର ଆଚରଣରେ କୌଣସି ପ୍ରକାର ବିରକ୍ତି ପ୍ରକାଶ ପାଇବାଟା ମଧ୍ୟ ସ୍ପୃହଣୀୟ ନୁହେଁ ।

: ସେ କଥା ମୁଁ ଜାଣେ । ମୋ ବ୍ୟବହାରରେ ଯେ ଦୋଷ ଫୁଟି ଉଠିଛି ଏହା ତୁମେ କାହାଠାରୁ ଶୁଣିଲ ?

ଆଶୁବାବୁ ଏହି ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ । ସେ କିଛି ଶୁଣି ନାହାନ୍ତି ; କିଛି ଜାଣି ନାହାନ୍ତି । ଏସବୁ କେବଳ ତାଙ୍କର ଅନୁମାନ ମାତ୍ର । ତଥାପି ତାଙ୍କ ମନ ପ୍ରସନ୍ନ ହୋଇ ପାରିଲା ନାହିଁ । କାରଣ ଏପରି ଖବରେ ତର୍କ କରାଯାଇ ପାରେ । କିନ୍ତୁ ଉତ୍କଣ୍ଠିତ ପିତୃ ଚିତ୍ତକୁ ନିଃଶଙ୍କ କରାଯାଇ ପାରେ ନାହିଁ । କିଛି ସମୟ ପରେ ସେ ଧୀରେ ଧୀରେ କହିଲେ—ଏତେ ରାତିରେ ଅଜିତ ଖାଇବାକୁ ଇଚ୍ଛା କଲା ନାହିଁ, ମୁଁ ମଧ୍ୟ ଶୋଇବା ପାଇଁ ଚାଲିଗଲି । ତୁ ତ ନିଜେ ଶୋଇ ପଡ଼ିଥିଲୁ । କେଜାଣି କେଉଁଠି ଆମର ତା ପ୍ରତି ଅବହେଳା ପ୍ରକାଶ ପାଇଛି । ତା ମନଟା ସେଥିପାଇଁ ଆଜି ଭଲ ନାହିଁ ।

: କେହି ଯଦି ସାରା ରାତିଟା ରାସ୍ତାରେ କଟାଇବା ପାଇଁ ଚାହେଁ, ଆମମାନଙ୍କୁ କ'ଣ ଘର ଭିତରେ ବସି ତାଙ୍କ ପାଇଁ ଜାଗି ରହିବାକୁ ପଡ଼ିବ ? ଏହା କ'ଣ ଅତିଥି ପ୍ରତି ଗୃହସ୍ଥର କର୍ତ୍ତବ୍ୟବୋଧ ବାବା ?

ଆଶୁବାବୁ ହସିଲେ । ନିଜକୁ ଇଙ୍ଗିତ ଦ୍ୱାରା ଦେଖାଇ କହିଲେ—ଗୃହପତି ଯଦି ଏଇଭଳି ଗୋଟିଏ ରୁଗ୍ଣ ବ୍ୟକ୍ତି ହୁଏ ମାଆ, ତାହାର କର୍ତ୍ତବ୍ୟ ରାତି ଆଠଟା ଭିତରେ ଶୋଇ ପଡ଼ିବା । ନ ହେଲେ ଜାଗି ରହିଲେ ସବୁଠାରୁ ସମ୍ମାନିତ ଅତିଥି ବାତ-ବ୍ୟାଧି ପ୍ରତି ଅସମ୍ମାନ ଦେଖାଇବାକୁ ହୁଏ । କିନ୍ତୁ ଏହାର ଅର୍ଥ ଯଦି ଅନ୍ୟ କାହାକୁ ବୁଝାଉଥାଏ, ତେବେ ତାର କର୍ତ୍ତବ୍ୟ ବିଷୟରେ ନିର୍ଦ୍ଦେଶ ଦେବା ପାଇଁ ମୁଁ କେହି ନୁହେଁ । ଆଜି ଅନେକ ଦିନର ଗୋଟାଏ ଘଟଣା ମନେ ପଡ଼ିଲା ମଣି, ସେତେବେଳେ ତୋ ମାଆ ବଞ୍ଚିଥାଏ, ଗୁପ୍ତିପଡ଼ାକୁ ମାଛ ମାରିବାକୁ ଯାଇ ମୁଁ ଆଉ ଫେରି ପାରି ନ ଥିଲି । କେବଳ ଗୋଟିଏ ରାତି ମାତ୍ର । ତଥାପି ଜଣେ ଲୋକ ଝରକା ନିକଟରେ ଠିଆ ହୋଇ ସାରା ରାତିଟା କଟାଇ ଦେଲା । ତାର କର୍ତ୍ତବ୍ୟ ବିଷୟରେ ତାକୁ କିଏ ନିର୍ଦ୍ଦେଶ ଦେଇଥିଲେ ତାହା ଅବଶ୍ୟ ମୁଁ ପଚାରି ନାହିଁ । ଯଦି ଆଉ ଥରେ ଦେଖା ହୋଇ ପାରନ୍ତା ହୁଏତ ମୁଁ ତାକୁ ପଚାରି ପାରିବାର ସୁଯୋଗ ପାଇ ପାରନ୍ତି । ଏହା କହି କ୍ଷଣକ ପାଇଁ ଝିଅ ମୁହଁ ଉପରୁ ଆଖି ଫେରାଇ ନେଇ ସେ ବାହାରକୁ ଚାହିଁଲେ ।

ଏ କାହାଣୀଟି ନୂଆ ନୁହେଁ । ଗଳ୍ପ ଛଳରେ ଏହି ଘଟଣାଟି ସେ ଝିଅ ଆଗରେ ଅନେକ ଥର ଉଲ୍ଲେଖ କରିଛନ୍ତି । ତଥାପି କିନ୍ତୁ ଏହା ପୁରୁଣା ହୁଏ ନାହିଁ । ଯେତେବେଳେ ମନେପଡ଼େ ସେତେବେଳେ ନୂଆ ଭଳି ମନେ ହୁଏ ।

ସ୍ୱକସ୍ୱଣୀ ଆସି କାନ୍ଥ ଆଢ଼ୁଆଳରେ ଠିଆ ହେଲା । ମନୋରମା ଉଠିପଡ଼ି କହିଲା—ବାବା, ତୁମେ ଟିକିଏ ବସିଥାଅ କି ମୁଁ ଯାଇ ଖେଷାଇର ବ୍ୟବସ୍ଥା କରିଦେଇ ଆସୁଛି । ଏହା କହି ସେ ଭିତରକୁ ଚାଲିଗଲା । ଆଲୋଚନାଟା ବେଶୀ ଦୂର ଆଗେଇବା ପାଇଁ ସୁବିଧା ପାଇ ପାରିଲା ନାହିଁ । ଫଳରେ ସେ ଅଶାନ୍ତି ଅନୁଭବ କଲା ।

ଦିନ ଭିତରେ ଅନ୍ତତଃ ଖବର ନେବା ପାଇଁ ଆଶୁବାବୁ ଅନେକବାର ଚେଷ୍ଟା କରି ଜାଣିବାକୁ ପାଇଲେ ଯେ ସେ ଆପଣା ଘରେ ବସି କ'ଣ ଗୁଡ଼ାଏ ଚିଠିପତ୍ର ଲେଖିବାରେ ଲାଗିଛି । ମଧ୍ୟାହ୍ନ ଭୋଜନ ସମୟରେ ସେ ପ୍ରାୟ କଥା କହିଲା ନାହିଁ ଏବଂ ଖାଇ ସାରିବା ମାତ୍ରକେ ଉଠି ଚାଲିଗଲା । ଅନ୍ୟାନ୍ୟ ଦିନମାନଙ୍କ ତୁଳନାରେ ତାହାର ଚାଲିଚଳନ ଯେପରି ଦୃଢ଼, ସେହିପରି ବିସ୍ମୟକର ।

ଆଶୁବାବୁଙ୍କର ଦୁଃଖର ସୀମା ରହିଲା ନାହିଁ । କହିଲେ—ଘଟଣା କ'ଣ ମଣି ?

ମନୋରମା ଆଜି ବରାବର ତା ବାବାଙ୍କର ଦୃଷ୍ଟି ଏଡ଼ାଇ ଚାଲିଥାଏ । ଏଥର ମଧ୍ୟ ତାଙ୍କ ଆଡ଼େ ନ ଚାହିଁ କହିଲା—ମୁଁ ତ ଜାଣି ନାହିଁ ବାବା ।

ସେ ମୁହୂର୍ତ୍ତିକ ପାଇଁ ମନେ ମନେ ଚିନ୍ତା କରି ଯେପରି ଆପଣାମନକୁ ମନ କହିବାକୁ ଲାଗିଲେ—ତାର ଫେରି ଆସିବା ପର୍ଯ୍ୟନ୍ତ ମୁଁ ତ ଚାହିଁ ରହିଥିଲି । ଖାଇବାକୁ ମଧ୍ୟ କହିଲି । ଅନେକ ରାତି ହୋଇଥିଲା ବୋଲି ସେ ନିଜେ ଖାଇବା ପାଇଁ ମନାକଲା । ତୋର କିନ୍ତୁ ଶୋଇ ପଡ଼ିବାଟା ଠିକ୍ ହୋଇ ନାହିଁ । ହେଲେ ଏଥିରେ ଏପରି କ'ଣ ଅପରାଧ ହୋଇଛି ମୁଁ ତ କାହିଁ ଭାବି ଠିକ୍ କରି ପାରୁ ନାହିଁ । ଏଇଭଳି ଗୋଟାଏ ତୁଚ୍ଛ କଥାକୁ ସେ ଯଦି ଧରିବସିବ ତେବେ ଏହାଠାରୁ ବଳି ଆଉ ବିସ୍ମୟକର ଘଟଣା କ'ଣ ଥାଇପାରେ ?

ମନୋରମା ନୀରବ ହୋଇ ରହିଲା । ଆଶୁବାବୁ ମଧ୍ୟ କିଛି ସମୟ ପାଇଁ ନୀରବ ରହି ଭିତରର ଲଜ୍ୟାଟା ଦମନ କରି କହିଲେ— ଘଟଣା କ'ଣ ତାକୁ ପଚାରି ବୁଝିନେଲୁ ନାହିଁ କାହିଁକି ?

: ଏଥିରେ ପଚାରିବାର କ'ଣ ଅଛି ବାବା ?

ପଚାରିବାର ଅନେକ କିଛି ଯଦିଓ ଅଛି କିନ୍ତୁ ତାହା କରିବା ମଣି ପକ୍ଷରେ ବିଶେଷତଃ କଠିନ ଏହା ସେ ଭଲ କରି ଜାଣନ୍ତି । ତଥାପି ଆଶୁବାବୁ କହିଲେ—ସେ ଯେ ରାଗିଛି ଏହା ସୁସ୍ପଷ୍ଟ । ବୋଧହୁଏ ସେ ଭାବୁଛି ତୁ ତାକୁ ଉପେକ୍ଷା କରୁଛୁ । ଏ ଧରଣର ଧାରଣା ତ ତା ମନରେ ବେଶୀଦିନ ରଖାଯାଇ ପାରିବ ନାହିଁ ।

: ମୋ ବିଷୟରେ ତାଙ୍କର ଧାରଣା ଯଦି ଖରାପ ହୋଇଥାଏ ତେବେ ସେଇଟା ତାଙ୍କର ଦୋଷ । ଜଣକର ଦୋଷ କ'ଣ ଅନ୍ୟ ଜଣେ ତା ପାଦତଳେ ପଡ଼ି ମାଫ ନେବାକୁ ହେବ ବାବା ?

ଅଶୁବାବୁ କିନ୍ତୁ ଏ ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ । ଝିଅକୁ ଯେଉଁ ସ୍ୱଭାବରେ ସେ ଗଢ଼ି ଆସିଛନ୍ତି, ତହିଁରେ ତା ଆତ୍ମସମ୍ମାନ ଉପରେ ଆଞ୍ଚ ଆସିଲା ଭଳି କୌଣସି ଆଦେଶ ତାକୁ ଦେବା ପାଇଁ ସେ ଉଚିତ ମନେ କରନ୍ତି ନାହିଁ । ସେ ବୁଝିସିବା ପରେ ଏହି କଥାଟି ନିଜ ମନ ଭିତରେ ଅବିରତ ଗୁଡ଼େଇଗୁଡ଼େଇ ଭାବି ଭାବି ସେ ଅତ୍ୟନ୍ତ ବିମର୍ଷ ହୋଇପଡ଼ିଲେ । ଏପରି କଳହ ପ୍ରାୟ ଘଟିଥାଏ ଏବଂ ତାହା କ୍ଷଣିକ ପାଇଁ ରହେ । ଏହି କଥାଟାକୁ ମନେମନେ ଆବୃତ୍ତି କରି ସେ କୌଣସି ମତେ ଶାନ୍ତ ପାଇ ପାରିଲେ ନାହିଁ । ଅଜିତକୁ ସେ ଜାଣନ୍ତି । କେବଳ ସବୁ ଦିଗରୁ ସେ ସୁଶିକ୍ଷିତ ତାହା ନୁହେଁ, ଚରିତ୍ରବାନ ମଧ୍ୟ । ସମସ୍ତଙ୍କର ଉତ୍କଣ୍ଠା ଓ ଉଦ୍‌ବେଗର କାରଣ ହୋଇ ସେ ନିପରି ରାଗ କରି ରହିପାରିଛି ? ଏପରି ଅସମ୍ଭବ କଥା ଯେ କିପରି ତାହାଠାରେ ସମ୍ଭବପର ହୋଇ ପାରିଲା ଏହାର ମୀମାଂସା କରିବା ତାଙ୍କ ପକ୍ଷରେ କଠିନ ହୋଇ ପଡ଼ିଲା ।

ଉପରଓଳି ଗୋଟାଏ ଟାଙ୍ଗା ଗାଡ଼ି ଅସି ଗେଟ୍ ଭିତରେ ପଶିବା ଦେଖି ଆଶୁବାବୁ ଖବର ନେଇ ଜାଣି ପାରିଲେ ଗାଡ଼ିଟା ଆସିଛି ଅଜିତ୍ ପାଇଁ । ଅଜିତକୁ ଡାକି ପଠାଇଲେ । ସେ ଆସିବା ପରେ ବିସ୍ମିତ କଣ୍ଠରେ ହସି ଦେଇ ସେ ପ୍ରଶ୍ନ କଲେ—ଟାଙ୍ଗା କ'ଣ ହେବ ଅଜିତ ?

: ଟିକିଏ ବୁଲିଯିବି ।

: ନାହିଁକି ଯାଉ, କ'ଣ ହେଲା ? ପୁଣି ଖରାପ ହୋଇ ଯାଉଛି କି ?

: ନା ଆପଣଙ୍କର ଦରକାର ପଡ଼ିପାରେ···

: ଯଦି ପଡ଼ିପାରେ ସେଥିପାଇଁ ତ ଗୋଟାଏ ଘୋଡ଼ା ଗାଡ଼ି ଅଛି । ଏହା କହି ସେ କ୍ଷଣକ ପାଇଁ ନୀରବ ରହି କହିଲେ, ବାବା ଅଜିତ, ମୋତେ ସତ କରି କହ, ମଟର ଗାଡ଼ି ନେଇ କ'ଣ କିଛି ଆଲୋଚନା ହୋଇଛି କି ?

ଅଜିତ ବିସ୍ମିତ ହୋଇ କହିଲା – କାହିଁ ମୁଁ ତ କିଛି ଜାଣି ନାହିଁ ! ତେବେ ଆଜି ଆପଣଙ୍କ ଘରେ ଗାନ-ବାଜଣାର ଆୟୋଜନ ହୋଇଛି । ନିମନ୍ତ୍ରିତ ଅତିଥିମାନଙ୍କୁ ସେମାନଙ୍କ ଘରେ ପହଞ୍ଚାଇ ଦେବା ପାଇଁ ତାର ବି ଆବଶ୍ୟକତା ବହୁତ ପଡ଼ିବ । ଘୋଡ଼ା ଗାଡ଼ିରେ ସେ କାମ ହୋଇ ପାରିବ ନାହିଁ ।

ସକାଳରୁ ନାନା ପ୍ରକାରର ଦୁଶ୍ଚିନ୍ତା ହେତୁ ଅଶୁବାବୁ କଥାଟା ପ୍ରାୟ ଭୁଲି ଯାଇ-ଥିଲେ । ବର୍ତ୍ତମାନ ମନେ ପଡ଼ିଲା—ଗତ କାଲି ମଜଲିସ୍ ବସିବ ବୋଲି ଅଛି ପାଇଁ ମଧ୍ୟ

ସେମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସନ୍ଧ୍ୟା ପରେ ମଜଲିସ୍ ବସିବ । ସମସ୍ତଙ୍କୁ ଖାଇବା ପାଇଁ ନିମନ୍ତ୍ରଣ କରିବାର କଳ୍ପନା ମଧ୍ୟ ମନୋରମାର ଥିଲା । ଏହି କଥା ସଙ୍ଗେ ସଙ୍ଗେ ତାଙ୍କର ସେ କଥା ମନେ ପଡ଼ିଗଲା । କିନ୍ତୁ ମନେ ମନେ ସେ ଟିକିଏ ହସିଲେ । କାରଣ ପଛନ୍ନ କଲହ ହେତୁ ମାନସିକ ଅସୁସ୍ଥତା କଥା ତାଙ୍କ ନିଜର ମଧ୍ୟ ମନେ ନ ଥିଲା । ସଙ୍ଗେ ସଙ୍ଗେ ମନେପଡ଼ିସିବାରୁ ଭଲ ଲାଗିଲା ନାହିଁ ଏବଂ ଅଜିତ ଚାଲିଗଲା ପରେ ଅବସ୍ଥାଟା ମନୋରମା ପକ୍ଷରେ କପରି ବିରକ୍ତିକର ହୋଇ ଉଠିବ ଅନୁମାନ କରି କହିଲେ—ଆଜି ସେ ସବୁ ହେବ ନାହିଁ ଅଜିତ ।

ଅଜିତ ପ୍ରଶ୍ନ କଲା—କାହିଁକି ?

: କାହିଁକି ? ଅରେ ମଣିକୁ ପଚାରି ଦେଖନା ? ଏହା କହି ଆଶୁବାବୁ ବେହେରାକୁ ବଡ଼ ପାଟିରେ ଡାକ ପକାଇ କନ୍ୟାକୁ ପଠାଇ ଦେବାପାଇଁ ଆଦେଶ ଦେଇ ସାରି ଈଷତ୍ ହସି ଦେଇ କହିଲେ—ତୁମେ ତ ସରିଛ । ଗାନ-ବାଜଣା ଏଠାରେ ଆଜି କିଏ ଶୁଣିବ ବାବା ? ମଣି ? ଆଚ୍ଛା ସେ ସବୁ ଆଉ ଦିନେ ହେବ । ବର୍ତ୍ତମାନ ତୁମେ ମଟର ନେଇ ଟିକିଏ ବୁଲି ଆସ । କିନ୍ତୁ ବେଶୀ ଡେରି କରିବ ନାହିଁ । ଆଉ ତୁମକୁ ମଧ୍ୟ ଏକାକୀ ଯିବାକୁ ପଡ଼ିବ ନାହିଁ—ଏକଥା କହି ଦେଉଛୁ । ଡ୍ରାଇଭର ଟୋକାଟା ଯେ ଆସ୍ତେ ଆସ୍ତେ ଅଳସୁଆ ହୋଇଯାଉଛି । ଏହା କହି ସେ ସତେ ଯେପରି ଗୋଟାଏ କଠିନ ସମସ୍ୟାର ଅଭାବନୀୟ ସୁମୀମାଂସା କରିପାରିଥିବାରୁ ଆରାମ ଚୌକି ଉପରେ ଚିତ୍ ହୋଇ ଶୋଇ ରହି ପରିତୃପ୍ତିର ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ି ସଙ୍ଗେ ସଙ୍ଗେ କହିବାକୁ ଲାଗିଲେ—ତୁମେ ଯିବ ଟାଙ୍ଗା ଭଡ଼ା କରି ବୁଲିବା ପାଇଁ—ଛିଃ ! ଛି !

ମନୋରମା ଘର ଭିତରେ ପାଦ ଦେଇ ଅଜିତକୁ ଦେଖି ବେଶ ଗମ୍ଭୀର ଠିଆ ହୋଇ ରହିଲା । ସେ ଆସିବା ଜାଣିପାରି ଆଶୁବାବୁ ଚଉକିରେ ସିଧା ହୋଇ ବସିଲେ । ସ୍ନିଗ୍ଧ ହାସ୍ୟରେ ଆପଣା ମୁହଁକୁ ଉଜ୍ଜ୍ୱଳ କରି ପ୍ରଶ୍ନ କଲେ—ଆଜିକାର କଥାଟା ମନେ ଅଛି ତ ମାଆ ?

: କ'ଣ ବାବା ?

: ଆଜି ଯେ ସମସ୍ତଙ୍କୁ ନିମନ୍ତ୍ରଣ କରିହୋଇଛି । ତୁମମାନଙ୍କର ଗାନ ବାଜଣା ଶେଷ ହେବା ପରେ ସେମାନେ ଯେ ଏଠାରେ ଖାଇବେ । ଏକଥା ମନେ ଅଛି ତ ମାଆ ?

ମନୋରମା ମୁଣ୍ଡ ହଲାଇ କହିଲା—ଅଛି । ସେମାନଙ୍କୁ ସବୁ ଆଣିବା ପାଇଁ ମଟର ଗାଡ଼ି ପଠାଇ ଦେଇଛି ।

: କାର୍ ପଠାଇ ଦେଇଛୁ ଆଣିବା ପାଇଁ ? କିନ୍ତୁ ସେମାନଙ୍କର ଖିଆ; ପିଆ ?

: ସମସ୍ତ ଠିକ୍ ଅଛି ବାବା, ତହିଁରେ କୌଣସି ଭୁଲ ହେବ ନାହିଁ ।

: ଆଚ୍ଛା ! କହି ସେ ପୁଣି ଚୌକିରେ ଚିଣ୍ଟି ହୋଇ ପଡ଼ିଗଲେ । ତାଙ୍କ ମୁହଁରେ ଯେପରି କିଏ କାଳି ବୋଳିଦେଲା ।

ମନୋରମା ଚାଲିଗଲା । ଅଜିତ୍ ମଧ୍ୟ ବାହାରି ଚାଲି ଯାଉଥିଲା, ଆଶୁବାବୁ ତାକୁ ଇଙ୍ଗିତ ଦ୍ୱାରା ବାରଣ କରି ବହୁ ସମୟ ପର୍ଯ୍ୟନ୍ତ ନୀରବ ରହିଲେ । ତାପରେ ଉଠିବସି କହିଲେ—ଅଜିତ୍, ନିଅ ପକ୍ଷରୁ କ୍ଷମା ମାଗିବା ପାଇଁ ମୁଁ ନିଜକୁ ଲଜ୍ଜିତ ମନେ କରୁଛି । କିନ୍ତୁ ତା ମାଆ ବଞ୍ଚି ନାହିଁ । ସେ ଥିଲେ ମୋତେ ଏକଥା କହିବା ପାଇଁ ପଡ଼ି ନଥାନ୍ତା ।

ଅଜିତ୍ ଚୁପ୍ ହୋଇ ଠିଆ ହୋଇ ରହିଲା । ଆଶୁବାବୁ କହିଲେ—ତା ଉପରେ ତୁମେ କାହିଁକି ରାଗ କରିଛ, ସେଇ କଥାକୁ ତା ମାଆ କେବଳ ତୁମଠାରୁ ଆଦାୟ କରି ପାରନ୍ତା । କିନ୍ତୁ ସେ' ତ ନାହିଁ । ମୋତେ କ'ଣ ସେ କଥା କୁହାଯାଇ ପାରିବ ନାହିଁ ?

ତାଙ୍କ କଣ୍ଠସ୍ୱର ଏପରି ସକରୁଣ ଯେ ଶୁଣିଲେ କଷ୍ଟ ଲାଗିବ । ତଥାପି ଅଜିତ୍ ନିର୍ବାକ୍ ହୋଇ ରହିଲା ।

ଆଶୁବାବୁ ପଚାରିଲେ—ତା ସହିତ କ'ଣ ତୁମର କିଛି କଥାବାର୍ତ୍ତା ହୋଇ ନାହିଁ ?

: ହୋଇଥିଲା ।

: ହୋଇଥିଲା ! କେତେବେଳେ ? ମଣି ଯେ ହଠାତ୍ ଶୋଇ ପଡ଼ିଥିଲା ଏକଥା ତୁମକୁ କ'ଣ ସେ କହିଛି ?

ଅଜିତ୍ କିଛି ସମୟ ନୀରବ ରହି ବୋଧହୁଏ କ'ଣ ଉତ୍ତର ଦିଆଯିବ ବୋଲି ଭାବି ନେଲା । ତାପରେ ଧୀରେ ଧୀରେ କହିଲା—ଏତେ ରାତି ପର୍ଯ୍ୟନ୍ତ ନିରର୍ଥକ ଭଙ୍ଗାଗରେ ରହିବା ସହଜ ନୁହେଁ ଏବଂ ଉଚିତ ମଧ୍ୟ ନୁହେଁ । ଶୋଇ ପଡ଼ିଥିଲେ ଭଲ ହୋଇ ନ ଥାନ୍ତା କିନ୍ତୁ ସେ ଶୋଇ ନଥିଲେ । ଆପଣ ଶୋଇବାକୁ ଯିବାର କିଛି ସମୟ ପରେ ମୋର ତାଙ୍କ ସହିତ ସାକ୍ଷାତ୍ ହୋଇଥିଲା ।

: ତା ପରେ ?

: ତା ପରେ ଆଉ କୌଣସି କଥା ଆପଣଙ୍କୁ କହିବି ନାହିଁ । ଏତିକି କହି ସେ ଚାଲିଗଲା । ଦୁଆର ବନ୍ଦ ସେ ପାଖରେ କହିଦେଇ ଗଲା, ହୁଏତ କାଲି କିମ୍ବା ପଅରି ଦିନ ମୁଁ ଏଠାରୁ ଚାଲିଯାଇ ପାରେ ।

ଆଶୁବାବୁ କିଛି ବୁଝି ପାରିଲେ ନାହିଁ, କିନ୍ତୁ ଏତିକି ଅନୁମାନ କରି ପାରିଲେ ଯେ ଦୁହିଁଙ୍କ ଭିତରେ କିଛି ଗୋଟାଏ ଗୁରୁତର ମନୋମାଳିନ୍ୟ ବୋଧହୁଏ ଘଟି ଯାଇଛି ।

ଅଜିତ ଟାଙ୍ଗା ଧରି ଚାଲିଯିବାର ସେ ଶୁଣିପାରିଲେ । କେତେ ମିନିଟ୍ ପରେ ନିମନ୍ତ୍ରିତ ଅତିଥିମାନଙ୍କର ପ୍ରଚୁର କୋଳାହଳକୁ ଧରି ମଟରକାର୍ ଫେରି ଆସିବାର ମଧ୍ୟ ଜାଣିପାରିଲେ । ସେ କିନ୍ତୁ ହଲିଲେ ନାହିଁ । ସେହିଠାରେ ପଥର ମୂର୍ତ୍ତି ପରି ବସି-

ରହିଲେ । ବୈଠକ ବସିଲା । ବେହେରା ଯାଇ ଖବର ଦେଲା ଯେ ବାବୁଙ୍କ ଦେହ ଭଲ ନାହିଁ ତେଣୁ ସେ ଶୋଇ ପଡ଼ିଛନ୍ତି ।

ଘରୁ ଜଣେ ବାହାରକୁ ବୁଲି ବାହାରିଯିବାରୁ ଏବଂ ଘରର ମୁରବୀ: ଯିଏ କି ଆପଣାର ବିପୁଳ ବପୁକୁ ଓ ସ୍ନିଗ୍ଧ ହାସ୍ୟକୁ ଧରି ସଭାକୁ ଉଜ୍ଜ୍ୱଳ କରିଥାନ୍ତି, ସେ ଅନୁପସ୍ଥିତ ରହିବାରୁ ସେଦିନର ଜଲ୍‌ସା ଆଦୌ ଜମିଲା ନାହିଁ । ଖାଇବାରେ ମଧ୍ୟ କାହାକୁ ଆନନ୍ଦ ମିଳିଲା ନାହିଁ ।

ଏଣେ ଅଜିତର ଗାଡ଼ି ଆସି କମଳ ଘର ଆଗରେ ପହଞ୍ଚିଲା । କମଳ ପରିବାରର ସମସ୍ତେ ବାରଣ୍ଡାରେ ଠିଆ ହୋଇଥିଲେ । ଆଖି ପଡ଼ିବା ମାତ୍ରେ ହାତଯୋଡ଼ି ନମସ୍କାର ଜଣାଇଲେ । ଗାଡ଼ିଟାକୁ ଇଙ୍ଗିତରେ ଦେଖାଇ ଚିତ୍କାର କରି କହି ଉଠିଲା—ସେଇଟାକୁ ବିଦାୟ କରି ଦିଅନ୍ତୁ । ନଚେତ୍ ଗାଡ଼ି ଥିଲେ ଫେରିବା ପାଇଁ ବ୍ୟସ୍ତ ହେବେ......

ସିଡ଼ି ମୁହଁରେ ପୁଣି ଦେଖା ହେଲା । ଅଜିତ୍ କହିଲା—ଗାଡ଼ିଟାକୁ ତ ବିଦାୟ କରି ଦେଲି କିନ୍ତୁ ଫେରିବା ସମୟରେ ପୁଣି ଗୋଟାଏ ମିଳି ପାରିବ ତ ?

: ନା, କେତେଅବା ବାଟ ? ବୁଲିକରି ଯାଇ ପାରିବେ ।

: ବୁଲି କରି ଯିବି !

: କାହିଁକି, ଡର ମାଡ଼ିବ କି ? ନ ହେଲେ ମୁଁ ଯାଇ ଆପଣଙ୍କ ଘର ପାଖରେ ପହଞ୍ଚାଇ ଦେଇ ଆସିବି । ଆସନ୍ତୁ, ଆସନ୍ତୁ, କହି ସେ ତାହାକୁ ସଙ୍ଗରେ ଧରି ରୋଷାଇ ଘରକୁ ଆଣି ବସିବା ପାଇଁ କାଲିକାର ସେହି ଆସନ ଖଣ୍ଡି ପକାଇ ଦେଇ କହିଲା, ଚାହିଁ ଦେଖନ୍ତୁ ଦିନସାରା ଲାଗିପଡ଼ି କେତେ ପ୍ରକାରର ରୋଷାଇ କରିଛୁ । ଆପଣ ନ ଆସିଥିଲେ ରାଗି କରି ମୁଁ ରାସ୍ତାରୁ ମୋଟରକୁ ଡାକି ସବୁତକ ଦେଇ ଦେଇଥାନ୍ତି ।

: ଆପଣଙ୍କର ରାଗ ତ କମ ନୁହେଁ ! କିନ୍ତୁ ତାହାଦ୍ୱାରା ଖାଦ୍ୟପଦାର୍ଥଗୁଡ଼ିକର ଅବଶ୍ୟ ଢେର ବେଶୀ ସଦ୍‌ବ୍ୟବହାର କରାଯାଇ ପାରିଥାନ୍ତା ।

: ଏ କଥାର ମାନେ ? କହି କମଳ କ୍ଷଣେକ ପାଇଁ ଅଜିତ ମୁହଁକୁ ଚାହିଁରହି ଶେଷରେ ନିଜେ କହିଲା—ଅର୍ଥାତ୍ ଆପଣଙ୍କର ଅଭାବ ନାହିଁ । ହୁଏତ ଅଧିକାଂଶ ଫିଙ୍ଗା ଯିବ ଏବଂ ସେମାନେ ହେଉଛନ୍ତି ବଡ଼ ଅଭାବୀ । ସେମାନେ ଖାଇକରି ବଞ୍ଚିଯିବେ । ତେଣୁ ସେମାନଙ୍କୁ ଖୁଆଇବାଟା ଯଥାର୍ଥରେ ଖାଦ୍ୟର ସଦ୍‌ବ୍ୟବହାର, ଏଇଆ କହୁଛନ୍ତି ନା ?

ଅଜିତ ମୁଣ୍ଡ ହଲାଇ କହିଲା—ଏହାଛଡ଼ା ଆଉ କ'ଣ ହୋଇପାରେ ?

: ଏହା ହେଲା ସାଧୁଲୋକମାନଙ୍କର ଭଲମନ୍ଦର ବିଚାର । ପୁଣ୍ୟାତ୍ମାମାନଙ୍କର ଧର୍ମବୁଦ୍ଧିର ଯୁକ୍ତି । ପରଲୋକରେ ଥିବା ଖାତାରେ ସେମାନେ ଏହାକୁ ସାର୍ଥକ ବ୍ୟୟ ବୋଲି ଲେଖି ରଖିବା ପାଇଁ ଚାହାନ୍ତି । କିନ୍ତୁ ବୁଝିପାରନ୍ତି ନାହିଁ ଯେ ପ୍ରକୃତରେ ଏହଟା ହେଉଛି ମିଛ । ଆନନ୍ଦର ସୁଧାଧାର ଯେ ଅପବ୍ୟୟର ପାପରେ ପରିପୂର୍ଣ୍ଣ ହୋଇ ଉଠେ ଏକଥା ସେମାନେ ଅବା ଜାଣିବେ କେଉଁଠାରୁ ?

ଅଜିତ ଆଶ୍ଚର୍ଯ୍ୟ ହୋଇ କହିଲା—ମନୁଷ୍ୟର କର୍ତ୍ତବ୍ୟ ବୁଦ୍ଧି ଭିତରେ ଆନନ୍ଦ ନାହିଁ ନା କଣ !

: ନା, ନାହିଁ । କର୍ତ୍ତବ୍ୟ ମଧ୍ୟରେ ଯେଉଁ ଆନନ୍ଦର ଛଳନା ତାହା ଦୁଃଖର ହିଁ ନାମାନ୍ତର । ତାହାକୁ ବୁଦ୍ଧିର ଶାସନ ଦ୍ୱାରା ଜୋର୍ କରି ମାନି ନେବାକୁ ହୋଇଥାଏ । ତ'ହିଁତ ବନ୍ଧନ । ନ ହେଲେ ଏଇ ଯେଉଁ ଶିବନାଥର ଆସନରେ ଆପଣଙ୍କୁ ଆଣି ବସାଇଛି ଭଲ ପାଇବାର ଏହି ଅପବ୍ୟୟ ଭିତରେ ମୁଁ ଆନନ୍ଦ ପାଆନ୍ତି କେଉଁଠୁ ? ଏହି ଯେ ସାରା-ଦିନ ଉପାସ ରହି କେତେ କ'ଣ ଯେ ରାନ୍ଧିଛି, ଆପଣ ଆସି ଖାଇବେ ବୋଲି, ଏତେବଡ ଅକର୍ତ୍ତବ୍ୟ ମଝିରେ ମୁଁ ତୃପ୍ତି ପାଇଥାନ୍ତି କେଉଁଠୁ ? ଅଜିତ୍ ବାବୁ, ଆଜି ଆପଣ ମୋର ସବୁ କଥା ବୁଝି ପାରିବେ ନାହିଁ । ବୁଝିବା ପାଇଁ ଚେଷ୍ଟା କରି ମଧ୍ୟ ଲାଭ ନାହିଁ । କିନ୍ତୁ ଏତେଗୁଡ଼ାଏ ଓଲଟା କଥାର ଅର୍ଥ ଯଦି ଆପଣ ଆଜୁ ଉପଲବ୍ଧି କରିପାରିବେ, ସେଦିନ କିନ୍ତୁ ମୋତେ ସ୍ମରଣ କରିବେ । କିନ୍ତୁ ବର୍ତ୍ତମାନ ଥାଉ । ଆପଣ ଖାଇ ବସନ୍ତୁ କହି ସେ ପାତ୍ରଭରି ବହୁବିଧ ଭୋଜ୍ୟବସ୍ତୁ ତା ଆଗରେ ଆଣି ରଖିଲା ।

ଅଜିତ ବହୁ ସମୟ ପର୍ଯ୍ୟନ୍ତ ନୀରବ ରହିବା ପରେ କହିଲା—ଏହା ଠିକ୍ ଯେ, ଆପଣଙ୍କର ଶେଷ କଥାଗୁଡ଼ିକର ଅର୍ଥ ମୁଁ ବୁଝିପାରିଲି ନାହିଁ । କିନ୍ତୁ ତଥାପି ମନେହେଉଛି ଯେପରି ସେ ସବୁ ଅବୋଧ ନୁହେଁ । ବୁଝାଇ ଦେଲେ ହୁଏତ ବୁଝି ପାରିବି ।

: କିଏ ବୁଝାଇ ଦେବ ଅଜିତ୍ ବାବୁ ? ମୁଁ ? ମୋର ଦରକାର ? ସେ ହସିଦେଇ ଅନ୍ୟ ପାତ୍ରଗୁଡ଼ିକ ଆଗେଇ ଦେଲା ।

ଅଜିତ ଆହାରରେ ମନୋନିବେଶ କରି କହିଲା—ଆପଣ ବୋଧହୁଏ ଜାଣି ନାହାଁନ୍ତି ଯେ, କାଲି ମୁଁ ଖାଇ ନାହିଁ ।

: ଜାଣି ନାହିଁ ସତ । କିନ୍ତୁ ମୋର ଆଶଙ୍କା ଥିଲା ଯେ ଏତେ ରାତିରେ ଫେରି ହୁଏତ ଆପଣ ଖାଇବେ ନାହିଁ । ତାହା ହିଁ ହୋଇଛି । ମୋ ଦୋଷରୁ ଆପଣ କାଲି କଷ୍ଟ ପାଇଲେ ସିନା !

: ଆଜି କିନ୍ତୁ ସୁଧ ମୂଳ ଆଦାୟ ହେଉଛି । କଥାଟା କହି ସାରିବା ପରେ ଅଜିତର ମନେ ପଡ଼ିଲା କମଳ ବର୍ତ୍ତମାନ ଭୁକା ଅଛନ୍ତି । ସେ ମନେ ମନେ ଲାଜ ପାଇ କହିଲା ମୁଁ କିନ୍ତୁ ପଶୁଭଳି ସ୍ୱାର୍ଥପର । ଦିନସାରା ଆପଣ ଖାଇ ନାହାଁନ୍ତି, ଅଥଚ ସେଥିପ୍ରତି ମୋର ଖିଆଲ ନାହିଁ । ସୁନ୍ଦର ଭାବରେ ଖାଇବା ପାଇଁ ବସି ପଡ଼ିଛି, ନୁହେଁ ?

କମଳ ହସହସ ମୁହଁରେ କହିଲା—ଏହା ଯେ ମୋ ନିଜ ଖାଇବାଠାରୁ ଅଧିକ ସେଥିପାଇଁ ତ ଆପଣଙ୍କୁ ଶୀଘ୍ର ବସାଇ ଦେଇଛି ଅଜିତ ବାବୁ । ଏହାପରେ ଟିକିଏ ଅଟକି ଯାଇ ପୁଣି କହିଲା—ଏସବୁ ମାଛମାଂସର ତରକାରି । ମୁଁ ତ ଆମିଷ ଖାଏ ନାହିଁ ।

: ତେବେ କ'ଣ ଖାଇବେ ଆପଣ ?

: ଏଇ ଯେ···କହି ସେ ନିକଟରେ ଏନାମେଲ ଗିନାରେ ଢଙ୍କା ହୋଇଥିବା ବସ୍ତୁକୁ ଦେଖାଇ ଦେଇ କହିଲା—ତାହା ଭିତରେ ଚାଉଳ, ଆଳୁ, ଆଉ ଡାଲି ସିଝା ହୋଇ ରହିଛି । ତାହାହିଁ ମୋର ରାଜଭୋଗ ।

ଏହାଦ୍ୱାରା ଅଜିତର କୌତୂହଳ ଯଦିଓ କମିଲା ନାହିଁ କିନ୍ତୁ ସରମ ବଢ଼ି ଚାଲିଲା । କାଳେ ସେ ଦାରିଦ୍ର୍ୟ କଥା ଉଲ୍ଲେଖ କରି ବସିବ ଏହି ଆଶଙ୍କାରେ ସେ ଅନ୍ୟ ପ୍ରସଙ୍ଗ ଆରମ୍ଭ କରି କହିଲା—ଆପଣଙ୍କୁ ପ୍ରଥମ ଥର ଦେଖି ମୋତେ ଯେ କି ଆଶ୍ଚର୍ଯ୍ୟ ଲାଗିଥିଲା ତାହା ମୁଁ କହିପାରିବି ନାହିଁ ।

କମଳ ହସିପକାଇ କହିଲା—ତାହାତ ହେଉଛି ମୋର ରୂପ । ତାହା କିନ୍ତୁ ଅକ୍ଷୟ ବାବୁଙ୍କ ନିକଟରେ ହାର ମାନିଛି । ତାଙ୍କୁ ପରାସ୍ତ କରିପାରି ନାହିଁ ।

ଅଜିତ ଲଜ୍ଜିତ ହୋଇ କହିଲା—ନା, ବୋଧହୁଏ ନୁହେଁ । ସେ ହେଉଛନ୍ତି ଗୋଲକୁଣ୍ଡାର ମାଣିକ । ତାଙ୍କ ଦେହରେ ଦାଗ ପଡ଼େ ନାହିଁ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଥିଲା ଆପଣଙ୍କ କଥା । ଶୁଣିଲା ପରେ ହଠାତ ଯେପରି ଧୈର୍ଯ୍ୟ ରହେ ନାହିଁ ମନରେ ରାଗ ଆସେ । ମନେହୁଏ ପ୍ରକୃତରେ ଆପଣ କାହାକୁ ଛାଡ଼ିଦେବା ପାଇଁ ପ୍ରସ୍ତୁତ ନୁହନ୍ତି । ହାତ ଦେଖାଇ ବାଟ ଓଗାଳିବାଟା ଯେପରି ଆପଣଙ୍କର ସ୍ୱଭାବ ।

କମଳ ହୁଏତ ଦୁଃଖିତା ହେଲା । କହିଲା—ତାହା ହୋଇପାରେ । ଜଣକୁ ଦେଖିଲେ ସବୁଠାରୁ ଅଧିକ ବିସ୍ମିତ ହେବାକୁ ପଡ଼େ । ଯେପରି ବିପୁଳ ଦେହ, ସେପରି ଅସମ୍ଭବ ଶାନ୍ତ । ଧୈର୍ଯ୍ୟର ଯେପରି ହିମାଳୟ ପାହାଡ଼ । ଈର୍ଷାପର ବାଷ୍ପ କିନ୍ତୁ ତାଙ୍କ ନିକଟରେ ପହଞ୍ଚି ପାରେ ନାହିଁ । ଇଚ୍ଛା ହୁଏ ମୁଁ ଯଦି ତାଙ୍କର ଝିଅ ହୋଇଥାନ୍ତି···

କଥାଟି ଅଜିତକୁ ଖର ଭଲ ଲାଗିଲା । ଆଶୁବାବୁଙ୍କୁ ସେ ଅନ୍ତର ଭିତରେ ଦେବତାଙ୍କ ଭଳି ଭକ୍ତି କରେ । ତଥାପି କହିଲା—ଉଭୟଙ୍କର ଏପରି ବିପରୀତ ପ୍ରକୃତି ଥାଇ ସୁଦ୍ଧା କିପରି ମନର ମେଳ ଖାଇଲା ?

: ତାହା ଜାଣି ନାହିଁ । ମୋ ଇଚ୍ଛା କଥା ହିଁ କେବଳ କହିଲି । ମଣି ଭଳି ମୁଁ ଯଦି ତାଙ୍କର ଝିଅ ହୋଇ ଜନ୍ମ ହୋଇଥାନ୍ତି···ଏହା କହି ସେ ମୁହୂର୍ତ୍ତିକ ପାଇଁ ନିସ୍ତବ୍ଧ ରହିବା ପରେ କହିଲା, ମୋ ବାପା ମଧ୍ୟ କମ୍ ବଡ଼ ଲୋକ ନ ଥିଲେ । ସେ ଏହିପରି ଧୀର ଏବଂ ଏହିପରି ଶାନ୍ତ ଥିଲେ ।

କମଳ ଗୃହକର୍ତ୍ତ୍ରୀର ଝିଅ, ଶ୍ରେଷ୍ଠ ଜାତିର କନ୍ୟା ଏହା ଆଜି ପର୍ଯ୍ୟନ୍ତ ଅଜିତ ସମସ୍ତଙ୍କ ମୁହଁରୁ ଶୁଣି ଆସିଛି । ବର୍ତ୍ତମାନ ନିଜ ମୁହଁରେ ତା ପିତାଙ୍କ ଗୁଣର ଉଲ୍ଲେଖ ହେତୁ କମଳର ଜନ୍ମ ରହସ୍ୟ ଜାଣିବା ପାଇଁ ଅଜିତର ଆକାଙ୍କ୍ଷା ପ୍ରବଳ ହୋଇ ଉଠିଲା । ଜାଣିବା ପାଇଁ ପ୍ରଶ୍ନ କରି କାଳେ ସେ ତାକୁ ଆଘାତ କରି ବସିବ, ଏଇ ଭୟରେ ପଚାରି ପାରିଲା ନାହିଁ । କିନ୍ତୁ ମନଟି ତାର ଭିତରେ ଭିତରେ ସ୍ନେହ ଓ କରୁଣାରେ ପୂରି ଉଠିଲା ।

ଖାଇବା ଶେଷ ହେଲା । କିନ୍ତୁ ତାହାକୁ ଉଠିବା ପାଇଁ ମନା କରି ଅଜିତ କହିଲା—ଆଗ ଆପଣଙ୍କ ଖାଇବା ଶେଷ ହେଉ, ତାପରେ···

: ଆପଣ କାହିଁକି କଷ୍ଟ ପାଇବେ ଅଜିତ ବାବୁ । ଉଠନ୍ତୁ । ବରଂ ମୁହଁ ଧୋଇ ଆସି ବସନ୍ତୁ । ମୁଁ ଖାଉଛି ।

: ନା, ତାହା ହେବନି ନାହିଁ । ଆପଣ ନ ଖାଇବା ପର୍ଯ୍ୟନ୍ତ ମୁଁ ଆସନ ଛାଡ଼ି ପାଦେ ଘୁଞ୍ଚିବି ନାହିଁ ।

: ଆଚ୍ଛା ଲୋକ ତ ! କହି କମଳ ହସି ଦେଇ ଆହାର୍ଯ୍ୟ-ଦ୍ରବ୍ୟର ଢାଙ୍କୁଣୀ ଖୋଲି ଖାଇବା ପାଇଁ ପ୍ରବୃତ୍ତ ହେଲା । କମଳ ଲେଶ ମାତ୍ର ଅତ୍ୟୁକ୍ତି କରି ନାହିଁ । ଗୁଡ଼ଚାଉଳ, ଡାଲି ଏବଂ ଆଳୁ ସିଝା । ଶୁଖି ଶାଗି ବିବର୍ଣ୍ଣ ହୋଇଯାଇଥାଏ । ଅନ୍ୟ ଦିନମାନଙ୍କରେ ସେ କ'ଣ ଖାଏ, ନ ଖାଏ, ତାହା ଅଜିତ୍ ଜାଣେ ନାହିଁ । ଆଜି କିନ୍ତୁ ଏହି ପର୍ଯ୍ୟାପ୍ତ ଆୟୋଜନ ଭିତରେ ଏହି ସ୍ୱେଚ୍ଛାକୃତ ଆତ୍ମପୀଡ଼ନ ହେତୁ ଅଜିତ ଆଖିରେ ଲୁହ ଆସିଗଲା । ସୁତରାଂ ଯୁକ୍ତି କମ୍ବା ତର୍କ ଛଳରେ କମଳ ମୁହଁରେ ଯାହା କହୁନା କାହିଁକି ବାସ୍ତବିକ୍ ଭୋଗ କ୍ଷେତ୍ରରେ ତାହାର ଏହି ଆତ୍ମସଂଯମ ଅଜିତର ଅଭିଭୂତ ମୁଗ୍ଧ ଚକ୍ଷୁରେ ମାଧୁର୍ଯ୍ୟ ଓ ଶ୍ରଦ୍ଧାରେ ଅପରୂପ ହୋଇ ଉଠିଲା । ବଞ୍ଚନା, ଅସମ୍ମାନ ଓ ଅନାଦର କରି ଯେଉଁମାନେ ଏହାକୁ ଲାଞ୍ଛିତ କରିଛନ୍ତି ସେମାନଙ୍କ ପ୍ରତି ତାର ଘୃଣାର ସୀମା ରହିଲା ନାହିଁ । କମଳର ଖାଇବା ପ୍ରତି ଦୃଷ୍ଟି ରହି ସେ ତା ମନର ଏହି ଭାବନାକୁ ଚାପି ରଖି ପାରିଲା ନାହିଁ । ଉଚ୍ଛ୍ୱସିତ ଆବେଗରେ କହି ଉଠିଲା—ନିଜକୁ ବଡ଼ ମନେ କରି ଯେଉଁମାନେ ଅପମାନିତ

କରି ଆପଣଙ୍କୁ ଦୂରେଇ ରଖିବା ପାଇଁ ଚାହାନ୍ତି, ଯେଉଁମାନେ ଅକାରଣରେ ନିନ୍ଦା ଗାଇ ଚାଲନ୍ତି ସେମାନେ କିନ୍ତୁ ଆପଣଙ୍କର ପାଦ ଛୁଇଁବା ପାଇଁ ଯୋଗ୍ୟ ନୁହନ୍ତି । ସଂସାରରେ ଯଦି ଦେବୀର ଆସନ କାହା ପାଇଁ ଥାଏ, ତେବେ ତାହା ଆପଣଙ୍କ ପାଇଁ ।

କମଳ କୃତ୍ରିମ ବିସ୍ମୟରେ ମୁହଁ ଟେକି ପ୍ରଶ୍ନ କଲା—କାହିଁକି ?

: କାହିଁକି, ତାହା ଜାଣିନାହିଁ । କିନ୍ତୁ ଏକଥା ମୁଁ ଶପଥ କରି କହିପାରେ ।

କମଳର ବିସ୍ମୟର ଭାବ ଘୁଞ୍ଚିଲା ନାହିଁ । କିନ୍ତୁ ସେ ଚୁପ୍ ରହିଲା ।

ଅଜିତ କହିଲା—ଯଦି କ୍ଷମା କରିବେ, ତେବେ ଗୋଟାଏ ପ୍ରଶ୍ନ ପଚାରିବି ।

: କି ପ୍ରଶ୍ନ ?

: ପାପିଷ୍ଠ ଶିବନାଥଠାରୁ ଏଇଭଳି ଅପମାନ ଏବଂ ବଞ୍ଚନା ପାଇବା ପରେ କ'ଣ ଏପରି କଠିନ ସାଧନା ଅବଲମ୍ବନ କରିଛନ୍ତି କି ?

: ନା, ମୋର ପ୍ରଥମ ସ୍ୱାମୀ ମରିବା ପର ଠାରୁ ହିଁ ମୁଁ ଏହିପରି ଖାଇଥାଏ । ଏଥିରେ ମୋତେ କଷ୍ଟ ହୁଏ ନାହିଁ ।

ଅଜିତ ମୁହଁରେ ଯେପରି କିଏ କାଳି ବୋଳିଦେଲା । ସେ କେତେକ ମୁହୂର୍ତ୍ତ ସ୍ତବ୍ଧ ହୋଇ ରହିବା ପରେ ନିଜକୁ ସମ୍ଭାଳି ନେଇ ଆସ୍ତେ ଆସ୍ତେ ପଚାରିଲା—ଆପଣ କ'ଣ ଆଉ ଥରେ ବିବାହ କରିଥିଲେ କି ?

: ହଁ । ସେ ଜଣେ ଅସମୀୟା ଖ୍ରୀଷ୍ଟାନ ଥିଲେ । ତାଙ୍କ ମୃତ୍ୟୁ ପରେ ପରେ ମୋ ବାପା ହଠାତ୍ ଘୋଡ଼ା ଉପରୁ ପଡ଼ିଯାଇ ମରିଗଲେ । ସେତେବେଳେ ଶିବନାଥଙ୍କର ଜଣେ ଡାକ୍ତର ଥିଲେ ବଗିଚାର ହେଡ୍ କ୍ଲର୍କ । ତାଙ୍କର ସ୍ତ୍ରୀ ନ ଥିଲେ । ସେ ମାଆଙ୍କୁ ଆଶ୍ରୟ ଦେଲେ । ମୁଁ ମଧ୍ୟ ତାଙ୍କ ସଂସାରରେ ସ୍ଥାନ ପାଇଲି । ଏହି ରକମ ନାନା ଦୁଃଖ କଷ୍ଟରେ ପଡ଼ି ଗୋଟିଏ ଓଳି ଖାଇବା ଅଭ୍ୟାସ ମୋର ହୋଇ ଯାଇଛି । କଠିନ ସାଧନା ନୁହେଁ ବରଂ ଶରୀର ଓ ମନ ଏହାଦ୍ୱାରା ଭଲ ରହେ ।

ଅଜିତ ନିଶ୍ୱାସ ଛାଡ଼ି କହିଲା—ଶୁଣିଛି ଆପଣ କୁଆଡ଼େ ଜାତିରେ ତନ୍ତୀ ?

: ଲୋକେ ତାହା କହିଥାନ୍ତି । କିନ୍ତୁ ମାଆ ଯେ ହୋଇଥିଲା ତା ବାପା ଥିଲେ ଆପଣଙ୍କ ଜାତିର ଜଣେ କବିରାଜ । ମୋର ପ୍ରକୃତ ଅଜା ତନ୍ତୀ ନୁହନ୍ତି—ବୈଦ୍ୟ । ଏହା କହି ସେ ଟିକିଏ ହସି ଦେଇ କହିଲା'—ସେ ଯାହା ହୁଅନ୍ତୁ ନା କାହିଁକି, ବର୍ତ୍ତମାନ ରାଗିବା ବୃଥା । ଅବଶୋଷ କରିବା ମଧ୍ୟ ଅଯଥା ।

: ତାହା ଅବଶ୍ୟ ଠିକ୍ ।

: ମାର ରୂପ ଥିଲା କିନ୍ତୁ ରୁଚି ନ ଥିଲା । ବିବାହ ପରେ କ'ଣ ଗୋଟାଏ ଦୁର୍ନାମ ରଟିବା ହେତୁ ତା ସ୍ୱାମୀ ତାକୁ ସଙ୍ଗରେ ଧରି ଆସାମ ଚା ବଗିଚାକୁ ପଳାଇ ଆସିଲା ସିନା କିନ୍ତୁ ବାପା ବଞ୍ଚିଲେ ନାହିଁ । ମାସ କେତୋଟା ପରେ ମରିଗଲେ । ବଗିଚାର ସାହେବଙ୍କ ଘରେ ତିନି ବର୍ଷ ପରେ ମୋର ଜନ୍ମ ହେଲା ।

ତାହାର ବଂଶ ଓ ଜନ୍ମ ଗ୍ରହଣର ବିବରଣୀ ଶୁଣିବା ପରେ ଅଜିତର ମୁହୂର୍ତ୍ତିକାଳ ପୂର୍ବର ସ୍ନେହ ଓ ଶ୍ରଦ୍ଧା ବିସ୍ମୟାଗତ ହୃଦୟସ୍ଥ ବିତୃଷ୍ଣା ଓ ସଙ୍କୋଚରେ ବନ୍ଦୀ ହୋଇଗଲା । ତାକୁ ସବୁଠାରୁ ଏହି କଥା ବ୍ୟଥା ଦେଲା ଯେ ନିଜ ବିଷୟରେ ଏବଂ ଆପଣା ମାଆ ବିଷୟରେ ଏତେବଡ଼ ଲଜ୍ଜାକର ବୃତ୍ତାନ୍ତ କହିବା ପାଇଁ ସେ ଟିକିଏ ହେଲେ କୁଣ୍ଠା ବୋଧ କରିଲା ନାହିଁ । ଅନାୟାସରେ କହି ପାରିଲା—ମାଆର ମୋର ରୂପ ଥିଲା । କିନ୍ତୁ ରୁଚି ନଥିଲା । ଯେଉଁ ଅପରାଧ ହେତୁ ଜଣେ ମାଟିରେ ମିଶି ଯାଇପାରେ, ତାହା ନିକଟରେ ଏହା ହେଉଛି ରୁଚିର ବିକାର ମାତ୍ର । ତାହାଠାରୁ ବେଶୀ କିଛି ନୁହେଁ ।

କମଳ କହିବାକୁ ଲାଗିଲା—ମୋ ବାପା କିନ୍ତୁ ଥିଲେ ସାଧୁ ଲୋକ । ତାଙ୍କ ଭଳି ଚରିତ୍ରବାନ, ପଣ୍ଡିତ ଏବଂ ସତ୍ୟବାଦୀ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି, ଅଜିତ୍‌ବାବୁ । ଜୀବନର ଉଣେଇଶିଟି ବର୍ଷ ମୁଁ ତାଙ୍କ ନିକଟରେ ମଣିଷ ହୋଇଥିଲି ।

ଅଜିତର ସମ୍ପୂର୍ଣ୍ଣ ଧାରଣା ହେଲା ଯେ ସେ ହୁଏତ ପରିହାସ କରି କହୁଛି । ତେଣୁ କହିଲା—ଏସବୁ କ'ଣ ଆପଣ ସତ କହୁଛନ୍ତି ?

କମଳ ଆଶ୍ଚର୍ଯ୍ୟ ହୋଇ ଉତ୍ତର ଦେଲା—ମୁଁ ତ କଦାପି ମିଥ୍ୟା କହେ ନାହିଁ ଅଜିତ୍ ବାବୁ । ପିତାଙ୍କର ମୃତ୍ୟୁ ତା ମୁହଁକୁ କ୍ଷଣକ ପାଇଁ ଗୋଟାଏ ସ୍ନିଗ୍ଧ ଦୀପ୍ତିରେ ଝଲସାଇ ଦେଲା । କହିଲା—ଜୀବନରେ କେତେବେଳେ ହେଲେ ଯେପରି ମିଥ୍ୟା ଚିନ୍ତା, ମିଥ୍ୟା ଅଭିମାନ, ଏବଂ ମିଥ୍ୟା ବାକ୍ୟର ଆଶ୍ରୟ ନ ନିଏ, ବାବା ମୋତେ ଏହି ଶିକ୍ଷା ହିଁ ବାରମ୍ବାର ଦେଇ ଯାଇଛନ୍ତି ।

ଅଜିତ୍ ତଥାପି ଯେପରି ବିଶ୍ୱାସ କରି ପାରିଲା ନାହିଁ । କହିଲା—ଆପଣ ଯଦି ଇଂରାଜୀ ଜାତିର ଜଣକ ପାଖରେ ମନୁଷ୍ୟ ହୋଇଥାନ୍ତି ତେବେ ଆପଣଙ୍କର ତ ଇଂରେଜୀ ଭାଷାଟା ଜାଣିବା ଉଚିତ ଥିଲା ।

ପ୍ରତ୍ୟୁତ୍ତରରେ କମଳ କେବଳ ଟିକିଏ ମୁରୁକି ହସିଦେଲା । କହିଲା—ମୋର ଖାଇବା ଶେଷ ହୋଇ ଗଲାଣି । ଚାଲନ୍ତୁ—ସେ ଘରକୁ ଯିବା ।

: ନା, ବର୍ତ୍ତମାନ ମୁଁ ଯିବି ।

: କ'ଣ ଟିକିଏ ବସିବେ ନାହିଁ ? ଆଜି ଏତେ ଶୀଘ୍ର ଚାଲିଯିବେ ?

: ହଁ, ଆଜି ଆଉ ସମୟ ହେବ ନାହିଁ ।

ଏତେ ସମସ୍ତ ପରେ କମଳ ମୁହଁ ଟେକି ଅଜିତ୍ ମୁହଁର କଠୋରତା ଲକ୍ଷ୍ୟ କରି ପାରିଲା । ହୁଏତ କାରଣଟା ମଧ୍ୟ ଅନୁମାନ କରି ପାରିଲା । କିଛି ସମୟ ନିର୍ନିମେଷ ନେତ୍ରରେ ଚାହିଁ ରହିବା ପରେ ଧୀରେ ଧୀରେ କହିଲା—ଆଚ୍ଛା, ଯାଆନ୍ତୁ ।

ଏହାପରେ ସେ କ'ଣ କହିବ ଅଜିତ ଭାବି ଠିକ୍ କରିପାରିଲା ନାହିଁ । ଶେଷରେ କହିଲା—ଆପଣ କ'ଣ ବର୍ତ୍ତମାନ ଆଗ୍ରାରେ ହିଁ ରହିବେ ?

: କାହିଁକି ?

: ଧରନ୍ତୁ ଶିବନାଥ ବାବୁ ଯଦି ଆଉ ନ ଆସନ୍ତି । ତାଙ୍କ ଉପରେ ତ ଆପଣଙ୍କର ଜୋର୍ ନାହିଁ ।

: ନା, ଟିକେ ରହି କହିଲା—ଆପଣଙ୍କ ସେଠାକୁ ତ ସେ ପ୍ରତ୍ୟହ ଯାଉଛନ୍ତି, ଗୋପନରେ ଟିକିଏ ବୁଝିନେଇ ମୋତେ ଜଣାଇ ପାରିବେ କି ?

: ସେଥିରେ କ'ଣ ହେବ ?

: କ'ଣ ଆଉ ଅବା ହୋଇ ପାରିବ ? ଘର ଭଡ଼ାଟା ଏ ମାସର ଦିଆ ହୋଇ ଯାଇଛି । ମୁଁ ତାହା ହେଲେ କାଲି କମ୍ବା ପଅର ଦିନ ଚାଲିଯାଇ ପାରନ୍ତି ।

: କେଉଁଠାକୁ ଯିବେ ?

କମଳ ଏ ପ୍ରଶ୍ନର ଉତ୍ତର ନ ଦେଇ ଚୁପ୍ ହୋଇ ରହିଲା ।

ଅଜିତ ପଚାରିଲା—ଆପଣଙ୍କ ପାଖରେ ବୋଧହୁଏ ଟଙ୍କା ନାହିଁ ?

କମଳ ଏ ପ୍ରଶ୍ନର ମଧ୍ୟ କୌଣସି ଉତ୍ତର ଦେଲା ନାହିଁ ।

ଅଜିତ ନିଜେ ମଧ୍ୟ ବହୁତ ସମୟ ପର୍ଯ୍ୟନ୍ତ ନୀରବ ରହିବା ପରେ କହିଲା—ଆସିବା ବେଳେ ଆପଣଙ୍କ ପାଇଁ କିଛି ଟଙ୍କା ଆଣିଥିଲି । ନେବେ କି ?

: ନା ।

: ନେବେ ନାହିଁ କାହିଁକି ? ମୁଁ ଭଲକରି ଜାଣେ ଆପଣଙ୍କ ହାତରେ କିଛି ନାହିଁ । ଯାହା ଅବା ଥିଲା, ଆଜି ମୋ ପାଇଁ ତାହା ଶେଷ ହୋଇ ଯାଇଛି । କିନ୍ତୁ ଉତ୍ତର ନ ପାଇବାରୁ ସେ ପୁନଶ୍ଚ କହିଲା ଦରକାର ବେଳେ ବନ୍ଧୁ ନିକଟରୁ କେହି କ'ଣ କିଛି ନିଅନ୍ତି ନାହିଁ ?

: କିନ୍ତୁ ଆପଣ ତ ବନ୍ଧୁ ନୁହଁନ୍ତି ।

: ନ ହେଲି ଅବା । କିନ୍ତୁ ଅ-ବନ୍ଧୁ ଲୋକଠାରୁ ତ ପୁଣି ଲୋକମାନେ ଋଣ ନିଅନ୍ତି । ପୁଣି ଶୁଝି ଦେଇଥାନ୍ତି । ଆପଣ ସେପରି କାହିଁକି ନେବେ ନାହିଁ ?

କମଳ ମୁଣ୍ଡ ହଲାଇ କହିଲା—ଆପଣଙ୍କୁ କହୁଛି ମୁଁ କଦାପି ମିଛ କଥା କହେ ନାହିଁ ।

କଥା କୋମଳ କରୁ ଶରର ମୂନ ଭଳ । ଅଜନ୍ତ ବୁଝି ପାରଲା ସେ କହୁଥିବା କଥା ଅନ୍ୟଥା ହେବନାହିଁ । ଗୃହିଁ ଦେଖିଲା—ପ୍ରଥମ ଦିନ ତା ଦେହରେ ସାମାନ୍ୟ ଅଳଙ୍କାର ଯାହା କିଛି ଥିଲା ଆଜି ତାହା ମଧ୍ୟ ନାହିଁ । ସମ୍ଭବତଃ ଘରଭଡ଼ା ଏବଂ ଏଇ କେତେ ଦିନର ଖର୍ଚ୍ଚ ଚଳାଇବାରେ ଶେଷ ହୋଇଯାଇଛି । ହଠାତ୍ ଦୁଃଖରେ ତା ମନ ଭିତର କାନ୍ଦି ଉଠିଲା । ପଚାରିଲା—କିନ୍ତୁ ଯିବାଟା କ'ଣ ଠିକ ତ ?

: ତାହାଛଡ଼ା ଉପାୟ ଆଉ କ'ଣ ଅଛି ?

ଉପାୟ କ'ଣ ଅଛି ଅଜନ୍ତ ଜାଣେ ନାହିଁ ଏବଂ ଜାଣେ ନାହିଁ ବୋଲି ତାକୁ କଷ୍ଟ ଲାଗିଲା । ଶେଷ ଚେଷ୍ଟା କରି କହିଲା—ଜଗତରେ ଆପଣଙ୍କର କ'ଣ କେହି ନାହାନ୍ତି ଯାହାଙ୍କ ଠାରୁ ଏହି ସମୟରେ କିଛି ସାହାଯ୍ୟ ନେଇ ପାରିବେ ?

କମଳ ଟିକିଏ ହସି ଦେଇ କହିଲା—ଅଛନ୍ତି । ଝିଅ ଭଳିଆ ତାଙ୍କ ନିକଟରେ ପହଞ୍ଚି କେବଳ ହାତ ପାତି ପାରିବି । କିନ୍ତୁ ଆପଣଙ୍କର ଯେ ରାତି ହୋଇ ଯାଉଛି । ସଙ୍ଗରେ ଯାଇ ଛାଡ଼ି ଦେଇ ଆସିବି କି ?

ଅଜନ୍ତ ବ୍ୟସ୍ତ ହୋଇ କହି ଉଠିଲା—ନା, ମୁଁ ଏକାକୀ ଯାଇ ପାରିବି ।

: ତାହାହେଲେ ଆସନ୍ତୁ । ନମସ୍କାର । କହି କମଳ ତାର ଶୋଇବା ଘରେ ପ୍ରବେଶ କଲା ।

ଅଜନ୍ତ ଦୁଇ—ତିନି ମିନିଟ ସେଠାରେ ସ୍ତବ୍ଧ ଭାବରେ ଠିଆ ହୋଇ ରହିଲା । ତା ପରେ ଧୀରେ ଧୀରେ ନୀରବରେ ତଳକୁ ଓହ୍ଲାଇବାରେ ଲାଗିଲା ।

ବେଳ ତୃତୀୟ ପ୍ରହର । ଖୁବ ଶୀତ ହେଉଥାଏ । ଆଶୁବାବୁଙ୍କ ବୈଠକ ଘରର ଝରକା ଗୁଡ଼ାକ ସାରାଦିନ ବନ୍ଦ ରହିଛି । ସେ ଆରାମ ଚୌକିର ଦୁଇ ହାତ ଉପରେ ଦୁଇ ଗୋଡ଼କୁ ମେଲାଇ ରଖି ଗମ୍ଭୀର ମନଯୋଗ ସହିତ କ'ଣ ଗୋଟାଏ ପଢ଼ିବାରେ ଲାଗିଥିଲେ । ସେହି କାଗଜ ପଛରେ ଦରଜା ଆଡ଼୍ ଗୋଟାଏ ସ୍ତ୍ରୀ ମୂର୍ତ୍ତି ଦେଖି ସେ ସେତେବେଳେ ବୁଝି ପାରିଲେ ଯେ ଏତେବେଳକୁ ତାଙ୍କ ଶ୍ୱକରର ଦିବାନିଦ୍ରା ଭଙ୍ଗ ହେଲା । ଆଶୁବାବୁ କହିଲେ—କଣ ନିଦରୁ ଉଠି ପଡ଼ିଲ କି ବାବୁ ? ତାହାହେଲେ ପୁଣି ମୂଣ୍ଡ ବନ୍ଧିବ । ବିଶେଷ କଷ୍ଟ ଯଦି ଅନୁଭବ ନ କରୁଛ ତେବେ ଏଇ ଗରିବର ପାଦ ଦୁଇଟା ଟିକିଏ ଟେକି ଦେଇ ପାରିବ କି ?

ତଳେ କାର୍ପେଟ ଉପରେ ଗୋଟିଏ ଗ୍ଲେଟ ସ୍ଲିପର ପଡ଼ିଥିଲା । ଆଗନ୍ତୁକ ସେଇଟାକୁ ଉଠାଇ ନେଇ ତାହାର ଦୁଇ ପାଦକୁ ଢାଙ୍କି ଦେଇ ପାଦର ତଳ ପର୍ଯ୍ୟନ୍ତ ଅଚ୍ଛା କରି ମୋଡ଼ି ଦେଲା ।

ଆଶୁବାବୁ କହିଲେ—ହେଲାଣି ବାବା, ଆଉ ଅତଣସ୍ଥ ଯତ୍ନ ଦରକାର ନାହିଁ । ଏଥର ଖଣ୍ଡିଏ ଚୁରୁଟ୍ ମୋତେ ଦେଇ ଆଉ ଟିକଏ ଗଡ଼ପଡ଼ । ବର୍ତ୍ତମାନ ସୁଦ୍ଧା ଆହୁରି ଦିନ ଅଛି । କିନ୍ତୁ ବୁଝି ପାରିବୁ ବାବା କାଲି ସକାଳୁ···

ଅର୍ଥାତ୍ କାଲି ତୋ ଗ୍ଲକେସି ଯିବ । କୌଣସି ଉତ୍ତର ଆସିଲା ନାହିଁ । କାରଣ ପ୍ରଭୁଙ୍କର ଏବଂବିଧ ଆଚରଣରେ ଭୃତ୍ୟ ଚିର ଅଭ୍ୟସ୍ତ । ପ୍ରତିବାଦ କରିବା ଯେପରି ନିଷ୍ପ୍ରୟୋଜନ; ବିଚଳିତ ହେବା ମଧ୍ୟ ସେହିପରି ବାହୁଲ୍ୟ ।

ଆଶୁବାବୁ ହାତ ବଢ଼ାଇ ଚୁରୁଟ୍ ଗ୍ରହଣ କରିଲେ ଏବଂ ଦିଆସିଲି ଜଳାଇବା ଶବ୍ଦରେ ଏତେ ସମସ୍ତ ପରେ ମୁହଁ ଟେକି ଚାହିଁଲେ । କେତେ ସମୟ ପର୍ଯ୍ୟନ୍ତ ଅଭିଭୂତ ପରି ସ୍ତବ୍ଧ ହୋଇ ରହି କହିଲେ—ସେଥିପାଇଁ ତ କହୁଥିଲି କିଏ ଯେ ଝିଅ ପିଲାର ହାତ ? ଏପରି ପାଦ ଠାରୁ ଚିପିବା ଗ୍ଲକରମାନେ ତ ତାଙ୍କ ଚଉଦ ପୁରୁଷରେ ଜାଣି ନ ଥିବେ ।

କମଳ କହିଲା—କିନ୍ତୁ ଏଣେ ଯେ ହାତ ପୋଡ଼ି-ଯାଉଛି ।

ଆଶୁବାବୁ ବ୍ୟସ୍ତ ହୋଇ ତା ହାତରୁ ଜ୍ୱଳନ୍ତ କାଠିଟା ଫିଙ୍ଗି ଦେଲେ । ତାପରେ ସେହି ହାତକୁ ନିଜ ହାତରେ ଧରି ତାକୁ ଆଗକୁ ଟାଣି ଆଣି କହିଲେ—ଏତେ ଦିନ ଧରି ତୋତେ କାହିଁକି ଦେଖିବାକୁ ପାଇନି ମାଆ ?

ଏହି ପ୍ରଥମ ଥର ସେ ତାକୁ ମାଆ ବୋଲି ସମ୍ବୋଧନ କରିଲେ । କିନ୍ତୁ ତାଙ୍କ ପ୍ରଶ୍ନର ଯେ କୌଣସି ଅର୍ଥ ନାହିଁ ତାହା ଉଚ୍ଚାରଣ କରିବା ମାତ୍ରେ ଜାଣି ପାରିଲେ ।

କମଳ ଚୌକି ଖଣ୍ଡିଏ ଟାଣିନେଇ ଅଳ୍ପ ଦୂରରେ ବସିବା ପାଇଁ ଯାଉଥିଲା, ସେ ତାହା ହେବାକୁ ଦେଲେ ନାହିଁ । କହିଲେ ସେଠାରେ ନୁହେଁ ମାଆ, ମୋ ନିକଟରେ ଆସି ବସ । ଏହା କହି ତାକୁ ଅତି ନିକଟକୁ ଡାକି ଆଣି ପ୍ରଶ୍ନ କଲେ—ଏପରି ହଠାତ୍ ଗ୍ଲଲି ଆସିଲୁ ଯେ ?

କମଳ କହିଲା—ଆଜି ଘରେ ଇଚ୍ଛା ହେଲା, ଆପଣଙ୍କୁ ଥରେ ଦେଖି ଆସେ । ସେଥି ପାଇଁ ଗ୍ଲଲି ଆସିଲି ।

: ଭଲ କରିଛୁ ମାଆ । ଏହାଠାରୁ ଅଧିକ କିଛି ଆଶୁବାବୁ କହି ପାରିଲେ ନାହିଁ । ଅନ୍ୟାନ୍ୟ ମାନଙ୍କ ଭଳି ସେ ମଧ୍ୟ ଜାଣନ୍ତି ଏ ଦେଶରେ କମଳର ସାଙ୍ଗ—ସାଥୀ ନାହାନ୍ତି । କେହି ତାକୁ ଭଲ ପାଆନ୍ତି ନାହିଁ । କାହା ଘରକୁ ଯିବା ପାଇଁ ଅଧିକାର ତାର ନାହିଁ । ନିହାତି ନିଃସ୍ୱ ଭାବରେ ଏ ଝିଅଟିକୁ ଜୀବନ ବିତାଇବାକୁ ପଡ଼େ । ତଥାପି ଏପରି କଥା

ତାଙ୍କ ମୁହଁରୁ ବାହାର ପାରିଲା ନାହିଁ ଯେ— କମଳ, ତୋର ଯେତେବେଳେ ଖୁସି ତୁ ସ୍ୱଚ୍ଛନ୍ଦରେ ଏ ଘରକୁ ଆସିପାରୁ । ଆଉ ସାହା ପାଖରେ ହେଉ କ ନ ହେଉ ମୋ ନିକଟରେ ତୋର ସଂକୋଚ କରିବାର କିଛି ନାହିଁ । ଏହା ପରେ ବୋଧହୁଏ କଥା ଅଭାବରୁ ସେ ଦୁଇତିନ ମିନିଟ ଧରି ନୀରବ ରହିଗଲେ । ତାଙ୍କ ହାତରୁ କାଗଜଟା ତଳେ ଖସି ପଡ଼ିବାର ଦେଖି କମଳ ଉଠିପଡ଼ି ତାଙ୍କ ହାତକୁ ତୋଳି ଦେଇ କହିଲା—ଆପଣ ପଢ଼ୁଥିଲେ । ମୁଁ ଅସମୟରେ ଆସି ବୋଧହୁଏ ବିଘ୍ନ ଘଟାଇଲି ।

ଆଶୁବାବୁ କହିଲେ—ନା । ପଢ଼ା ମୋର ଶେଷ ହୋଇ ସାଇଛି । ଯେଉଁ ଟିକକ ବାକି ଅଛି ତାହା ନ ପଢ଼ିଲେ ବି ଚଳେ । ପଢ଼ିବାର ଇଚ୍ଛା ମଧ୍ୟ ନାହିଁ । ଟିକେଏ ଅଟକି ଯାଇ କହିଲେ—ତା ଛଡ଼ା ତୁ ଚାଲିଗଲା ପରେ ମୋ ତେ ତ ଏକାକୀ ରହିବାକୁ ପଡ଼ିବ । ତା ଅପେକ୍ଷା ବସି ଦୁପଦ ଗପ କହ । ଅନ୍ତତଃ ମୁଁ ଶୁଣିପାରିବି ।

କମଳ କହିଲା—ମୁଁ ଆପଣଙ୍କ ସହିତ ଦିନସାରା ଗଳ୍ପ କରି ପାରିଲେ ବର୍ତ୍ତିଯାଇ ପାରନ୍ତି । କିନ୍ତୁ ଅନ୍ୟ ସମସ୍ତେ ଯେ ରାଗି ଉଠିବେ ।

ତା ମୁହଁରେ ହସ ଥିବା ସତ୍ତ୍ୱେ ଆଶୁବାବୁ ବ୍ୟଥା ପାଇଲେ । କହିଲେ—ତୋ କଥା ମିଛ ନୁହେଁ କମଳ । କିନ୍ତୁ ଯେଉଁମାନେ ରାଗ କରନ୍ତେ ମାଆ, ସେମାନେ କେହି ନାହାଁନ୍ତି । ଏଠାକାର ନୂତନ ମାଜିଷ୍ଟ୍ରେଟ ବଙ୍ଗାଳୀ । ତା ସ୍ତ୍ରୀ ହେଉଛି ମଣିର ବନ୍ଧୁ । ଏକସଙ୍ଗରେ କଲେଜରେ ପଢ଼ୁଥିଲେ । ଦୁଇ ଦିନ ହେବ ସେ ତା ସ୍ୱାମୀ ପାଖକୁ ଆସିଛି । ମଣି ତାଙ୍କ ବସାକୁ ବୁଲିବା ପାଇଁ ଯାଇଛି । ଫେରୁ ଫେରୁ ବୋଧହୁଏ ରାତି ହେବ ।

କମଳ ହସି ହସି ପ୍ରଶ୍ନକଲା—ଆପଣ ତ କହିଲେ ଯେଉଁମାନେ ରାଗ କରନ୍ତି । ସେମାନଙ୍କ ଭିତରୁ ତ ମନୋରମା ଜଣେ ହେଲେ ବାକି ଅନ୍ୟମାନେ କିଏ ସବୁ ?

: ସମସ୍ତେ । ଏଠାରେ ସେପରି ଲୋକଙ୍କ ଅଭାବ ନାହିଁ । ଆଗେ ମନେ ହେଉଥିଲା ବୋଧହୁଏ ଅଜିତର ତୋ ଉପରେ ରାଗ ନାହିଁ ବୋଲି କିନ୍ତୁ ବର୍ତ୍ତମାନ ଦେଖି ପାରୁଛି ସମସ୍ତଙ୍କ ଅପେକ୍ଷା ତାର ବିଦ୍ୱେଷ ବେଶୀ । ସତେ ଯେପରି ଅକ୍ଷୟ ବାବୁଙ୍କୁ ପରାସ୍ତ କରି ଦେଇଛି ।

କମଳ ଚୁପ୍ ହୋଇ ଶୁଣୁଥିବାର ଦେଖି ସେ ପୁଣି କହିବାକୁ ଲାଗିଲେ ଆସିବା ପରେ ତାକୁ ଏପରି ଦେଖି ନଥିଲି । ହଠାତ୍ ଦୁଇ ତିନି ଦିନ ଭିତରେ ସେ ଏପରି ବଦଳି ଗଲା । ବର୍ତ୍ତମାନ ଅବିନାଶ ବାବୁଙ୍କୁ ମଧ୍ୟ ଦେଖିବାକୁ ପାଉ ନାହିଁ । ଏମାନେ ସମସ୍ତେ ମିଶି ଯେପରି ତୋ ବିରୁଦ୍ଧରେ କିଛି ଚକ୍ରାନ୍ତ କରିବାରେ ଲାଗିଛନ୍ତି ।

ଏଥର କମଳ ହସିଲା କହିଲା – ଅର୍ଥାତ୍ କୁଶ ଅଙ୍କୁର ଉପରେ ବଜ୍ରାଘାତ ! କିନ୍ତୁ ମୋ ଭଳି ସମାଜ ଓ ଲୋକାଳୟ ବାହାରେ ଥିବା ତୁଚ୍ଛ ଗୋଟାଏ ଝିଅପିଲା ବିରୁଦ୍ଧରେ ଏପରି ଚକ୍ରାନ୍ତ କେଉଁଥି ପାଇଁ ? ମୁଁ ତ କାହାର କ୍ଷତି କରୁ ନାହିଁ ।

ଆଶୁବାବୁ କହିଲେ—ତୁ କରୁ ନାହୁଁ, ସତ । ସହରରେ କେଉଁଠାରେ ତୋ ବସା ତାହା ମଧ୍ୟ ଅଧିକାଂଶଙ୍କୁ ଜଣା ନାହିଁ । କିନ୍ତୁ ଏହା ବୋଲି ତୁ ତୁଚ୍ଛ ନୁହଁ । ସେଥିପାଇଁ ତ ତୋତେ ସେମାନେ ଭୁଲି ପାରୁ ନାହାଁନ୍ତି । କ୍ଷମା କରିଦେବାକୁ ମଧ୍ୟ ପାରୁ ନାହାଁନ୍ତି । ତୋ ବିଷୟରେ ଆଲୋଚନା ନ କଲେ, ତୋତେ ଖୁଣ୍ଟା ନ ଦେଲେ ସେମାନଙ୍କୁ ଶାନ୍ତି ମିଳେ ନାହିଁ । ହଠାତ୍ ହାତରେ କାଗଜ ଗୁଡ଼ାକ ଧରି କହିଲେ—ଏଇଟା କ'ଣ ଜାଣୁ ? ଅକ୍ଷୟ ବାବୁର ରଚନା । ଇଂରେଜୀ ନ ହୋଇଥିଲେ ତୋତେ ପଢ଼ି ଶୁଣାଇ ଥାନ୍ତି । ନାମ ଧାମ ନାହିଁ । ମୂଳରୁ ଶେଷ ଯାଏଁ କେବଳ ତୋର କଥା । ତୋତେ ହିଁ ଆକ୍ରମଣ । କାଲି ମାଜିଷ୍ଟ୍ରେଟଙ୍କ ଘରେ ନାରୀ କଲ୍ୟାଣ ସମିତିର ଉଦ୍‌ଘାଟନ ହେବ, ଏବଂ ଏହା ହିଁ ହେଉଛି ତାହା ପୂର୍ବର ମଙ୍ଗଳ ଅନୁଷ୍ଠାନ । ଏହା କହି ସେଗୁଡ଼ାକୁ ସେ ଦୂରକୁ ଫିଙ୍ଗି ଦେଲେ । କହିଲେ– ଏହା କେବଳ ପ୍ରବନ୍ଧ ନୁହେଁ, ଗଳ୍ପ ଛଳରେ ମଝିରେ ପାତ୍ର ପାତ୍ରୀଙ୍କ ମୁହଁରେ ନାନା କଥା ବାହାର କରି- ହୋଇଛି । ଏହାର ମୂଳ ନୀତି ସଙ୍ଗେ କାହାର ବିରୋଧ ନାହିଁ—ବିରୋଧ ମଧ୍ୟ ରହିପାରେ ନାହିଁ । କିନ୍ତୁ ଏହା ତ ତାହା ନୁହେଁ । ବ୍ୟକ୍ତି ବିଶେଷକୁ ଆଘାତ କରି ପାରିଲେ ଯେପରି ଅସଲ ଆନନ୍ଦ ମିଳିଛି । କିନ୍ତୁ ଅକ୍ଷୟର ଆନନ୍ଦ ଆଉ ମୋ ଆନନ୍ଦ ତ ଏକ ନୁହେଁ, କମଳ । ଏହାକୁ କଦାପି ମୁଁ ତ ଭଲ ବୋଲି କହି ପାରିବି ନାହିଁ ।

କମଳ କହିଲା କିନ୍ତୁ ମୁଁ ତ ଆଉ ଏ ଲେଖା ପଢ଼ି ନ ଥାନ୍ତି—ତେଣୁ ମୋତେ ଆଘାତ କରିବାରେ ସାର୍ଥକତା ଆସିଲା କେଉଁଠୁ ?

: କୌଣସି ସାର୍ଥକତା ନାହିଁ । ସେଥିପାଇଁ ବୋଧହୁଏ ସେ ମୋତେ ପଢ଼ିବାକୁ ଦେଇଛି । ଭାବିଛି କିଛି ନ ହେଲେ ମୂଷା ତ କେଞ୍ଚେ ପାଇ ପାରିବ । ବୁଢ଼ାଟାକୁ ଦୁଃଖ ଦଆଇ ଆପଣା ମନର ଓଉମାନ ମେଣ୍ଟାଇ ପାରିବ ତ । ଏହା କହି ସେ କମଳର ହାତଟିକୁ ପୁଣି ଆପଣା ହାତ ଭିତରକୁ ଟାଣି ନେଲେ । ଏଇ ସ୍ପର୍ଶ ଭିତରେ ଯେ କି କଥା ଥିଲା ସମସ୍ତ ବିଷୟ ଯଦିଓ କମଳ ବୁଝି ପାରିଲା ନାହିଁ, ତେବେ ତା ଭିତରଟା କମିତ କମିତ ହୋଇ ଉଠିଲା । ଟିକିଏ ଅଟକି ଯାଇ କହିଲା—ଆପଣଙ୍କ ଦୁର୍ବଳତାଟିକୁ ସେମାନେ ଧରିପାରିଛନ୍ତି । କିନ୍ତୁ ଅସଲ ମନୁଷ୍ୟଟିକୁ ସେମାନେ ଚିହ୍ନି ପାରି ନାହାଁନ୍ତି ।

: ତୁ କ'ଣ ଚିହ୍ନି ପାରୁଛୁ ମାଆ ?

: ବୋଧହୁଏ ସେମାନଙ୍କଠାରୁ ବେଶୀ ଚିହ୍ନି ପାରିଛି ।

ଆଶୁବାବୁ ଏହାର ଉତ୍ତର ଦେଲେ ନାହିଁ । ବହୁ ସମୟ ନୀରବ ରହିବା ପରେ ଆସ୍ତେ ଆସ୍ତେ କହିବାକୁ ଲାଗିଲେ—ସମସ୍ତେ ଭାବନ୍ତି ଏଇ ସଦାନନ୍ଦ ବୁଢ଼ା ଲୋକଟି ପରି ସୁଖୀ ଦୁନିଆରେ କେହି ନାହାଁନ୍ତି । ଅନେକ ଟଙ୍କା ଅନେକ ସମ୍ପତ୍ତିବାଡ଼ି······

: କିନ୍ତୁ ସେମାନଙ୍କ ସ୍ୱବନା ତ ମିଛ ନୁହେଁ ।

: ନା, ମିଛ ନୁହେଁ । ଅର୍ଥ ଏବଂ ସମ୍ପତ୍ତି ମୋର ଯଥେଷ୍ଟ ଅଛି । କିନ୍ତୁ ସେ ସବୁ ମଣିଷ ପାଇଁ କେତେକ ମାତ୍ର, କମଳ ?

କମଳ ହସି ହସି କହିଲା—ଅନେକ କିଛି, ଆଶୁବାବୁ ।

ଆଶୁବାବୁ ମୁହଁ ବୁଲାଇ ତା ମୁହଁକୁ ଗୃହିଁ କହିଲେ—ଯଦି କିଛି ମନେ ନ କରିବୁ ତ ତୋତେ ଗୋଟାଏ କଥା କହିବି—

: କହନ୍ତୁ ।

: ମୁଁ ହେଉଛି ବୁଢ଼ାଲୋକ । ଆଉ ତୁ ହେଉଛୁ ମୋ ଝିଅର ସମବୟସୀ । ତୋ ମୁହଁରୁ ମୋ ନିଜ ନାଆଁଟା ବାହାରିଲେ ମୋତେ କଷ୍ଟ ହୁଏ କମଳ । ତୋର ଯଦି ଆପତ୍ତି ନ ଥାଏ ବରଂ ତୁ ମୋତେ ମଉସା ବୋଲି ଡ଼ାକିପାରୁ ।

କମଳର ବିସ୍ମୟର ସୀମା ରହିଲା ନାହିଁ । ଆଶୁବାବୁ କହିବାକୁ ଲଗିଲେ—କଥାରେ କହନ୍ତି ନାହିଁ, ନାହିଁ ମାମୁଁଠାରୁ କଣା ମାମୁଁଟିଏ ଥିବା ଭଲ । ମୁଁ କଣା ନୁହେଁ ସତ, କିନ୍ତୁ ଖ୍ରୋଟା । ବାତ ରୋଗ ହେବୁ ପଙ୍ଗୁ । ବଜାରରେ ଆଜିକାଲି ଅଣୁ ବୈଦ୍ୟର କଣା କଉଡ଼ିକର ଦାମ୍ ନାହିଁ । ଏହା କହି ସେ ହସି ହସି ଆନନ୍ଦରେ ବୁଢ଼ା ଆଙ୍ଗୁଠିଟିକୁ ହଲାଇ କହିଲେ—ନ ଥିଲେ ନ ଥାଉ ପଛକେ କିନ୍ତୁ ଯାହାର ବାପା ବହି ନାହିଁ ତା ପକ୍ଷରେ ଏତେ ଆଗପଛ ହେବାଟା ଚଳେ ନାହିଁ । ତା ଅପେକ୍ଷା ଖ୍ରୋଟା ମଉସାଟିଏ ଥିବା ଭଲ ।

ଅନ୍ୟ ପକ୍ଷରୁ କୌଣସି ଉତ୍ତର ନ ପାଇଲେ ସୁଦ୍ଧା ସେ ପୁଣି କହିଲେ—କେହି ଯଦି ତୋତେ ଖୁଣ୍ଟା ଦିଏ, ତାକୁ ବିନସ୍ତ କରି ଏତିକି କହିବୁ—ଏହାହିଁ ମୋ ପାଇଁ ଯଥେଷ୍ଟ । କହିବୁ ଗର୍ବର ରଙ୍ଗ ହେଉଛି ସୁନା ।

ତାଙ୍କ ଚୌକି ପଛ ଆଡ଼େ ବସି କମଳ ଲୁହକୁ ଗୃହିଁ ଅଶ୍ରୁ ନିରୋଧ କରିବାକୁ ଚେଷ୍ଟା କରିବାକୁ ଲଗିଲା । ଉତ୍ତର ଦେଇ ପାରିଲା ନାହିଁ । ଏ ଦୁଇଜଣଙ୍କର କେଉଁଠାରେ ସାମଞ୍ଜସ୍ୟ ନାହିଁ । କେବଳ ଅନାତ୍ମୀୟ କିମ୍ବା ଅପରିଚିତ ହେବୁ ବ୍ୟବଧାନ ନୁହେ, ଶିକ୍ଷା ସଂସ୍କାର, ରୀତିନୀତି, ସଂସାର ଏବଂ ସାମାଜିକ ବ୍ୟବସ୍ଥାରେ ଉଭୟଙ୍କ ଭିତରେ କେତେ ବିରାଟ ବ୍ୟବଧାନ ନାହିଁ ! କୌଣସି ସମ୍ବନ୍ଧ ଯେଉଁଠାରେ ନାହିଁ, ସେଠାରେ କେବଳ ଗୋଟାଏ ସମ୍ବୋଧନର ଛଳନା କରି ଏହିପରି ବାନ୍ଧି ରଖିବାର କୌଶଳ ହେବୁ କମଳର ଦୁଇ ଆଖିରେ ବହୁକାଳ ପରେ ଜଳ ଆସିଗଲା ।

ଆଶୁବାବୁ ପୁଣି ପ୍ରଶ୍ନ କଲେ—କ'ଣ ଡାକି ପାରିବୁ ତ ମାଆ ?

କମଳ ଉଚ୍ଛ୍ୱସିତ ଅଶ୍ରୁକୁ ସମ୍ଭାଳି ନେଇ କହିଲା—ନା ।

: ନା । ନାହିଁ କାହିଁକି ?

କମଳ ଏକଥାର ଉତ୍ତର ଦେଲା ନାହିଁ । ଅନ୍ୟକଥା ଆରମ୍ଭ କଲା । କହିଲା—ଅଜିତ ବାବୁ କେଉଁଠି ?

ଆଶୁବାବୁ କ୍ଷଣକାଳ ଚୁପ୍ ରହିବା ପରେ କହିଲେ—କେଜାଣି ? ହୁଏତ ଘରେ ଥାଇପାରେ । ପୁଣି କିଛି ସମୟ ନୀରବ ରହିବା ପରେ ଧୀରେ ଧୀରେ କହିବାକୁ ଲାଗିଲେ—କେତେଦିନ ହେବ ସେ ମୋ ପାଖକୁ ଆଉ ଆସୁନାହିଁ । ହୁଏତ ସେ ଶୀଘ୍ର ଏଠାରୁ ଚାଲି ଯାଇପାରେ ।

: କୁଆଡ଼େ ଯିବେ ?

ଆଶୁବାବୁ ହସିବା ପାଇଁ ଚେଷ୍ଟା କରି କହିଲେ—ବୁଢ଼ା ମଣିଷକୁ କ'ଣ ସମସ୍ତେ ସବୁ କଥା କହିଥାନ୍ତି ମା'ଆ ? କହନ୍ତି ନାହିଁ । ହୁଏତ ଆବଶ୍ୟକ ମନେ କରନ୍ତି ନାହିଁ । ଟିକିଏ ଅଟକି ଯାଇ କହିଲେ—ଶୁଣିଥିବୁ ଅନେକ ଦିନ ହେବ ମଣୀ ସହିତ ତାର ବିବାହ ପ୍ରସ୍ତାବ ସ୍ଥିର ହୋଇଥିଲା । ହଠାତ୍ କିପରି ମନେ ହେଉଛି ଏହା ନେଇ ବୋଧହୁଏ ଦୁହିଁଙ୍କ ଭିତରେ ଝଗଡ଼ା ସୃଷ୍ଟି ହୋଇଛି । କେହି କାହା ସହିତ ଭଲ ଭାବରେ କଥା ବି କହୁନାହାଁନ୍ତି ।

କମଳ ନୀରବ ହୋଇ ରହିଲା । ଆଶୁବାବୁ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ—ଭଗବାନ ହିଁ ମାଲିକ । ତାଙ୍କରି ଯାହା ଇଚ୍ଛା । ଜଣେ ଗାନ-ବାଜଣା ନେଇ ମାତି ଉଠିଛି । ଆଉ ଜଣେ ତାର ପୁରୁଣା ଅଭ୍ୟାସର ସୁଧମୂଳ ହିସାବ କରିବାର ଯୋଗାଡ଼ରେ ଲାଗି ପଡ଼ିଛି । ଏଇସବୁ ତ ଚାଲିଛି ।

କମଳ ଆଉ ନୀରବ ହୋଇ ରହି ପାରିଲା ନାହିଁ । କୌତୂହଳୀ ହୋଇ ପ୍ରଶ୍ନ କଲା—କ'ଣ ତାଙ୍କର ପୁରୁଣା ଅଭ୍ୟାସ ?

ଆଶୁବାବୁ କହିଲେ—ସେ ସବୁ ଅନେକ କଥା । ସେ ଗେରୁଆ ପିନ୍ଧି ସନ୍ନ୍ୟାସୀ ହୋଇଛି । ମଣୀକୁ ଭଲ ପାଇ ବସିଛି । ବିଲାତ ଯାଇ ଇଂଜିନିୟର ହୋଇ ପଶିଛି, ଫେରି ଆସି ହସାଣ୍ଡ ହେବା ପାଇଁ ମନ ବଳାଇଛି, ସମ୍ପ୍ରତି ସେ ସବୁ ସାମାନ୍ୟ ବଦଳି ଯାଇଛି । ଆଗେ ମାଛ ମାଂସ ଖାଉ ନଥିଲା, ତାପରେ ଖାଉଥିଲା, ପୁଣି ଦେଖୁଛି ପଅରଦିନ ଠାରୁ ବନ୍ଦ କରି ଦେଇଛି । ଯଦୁ କହୁଛି—ବାବୁ ଘଣ୍ଟା ଘଣ୍ଟା ଧରି ନାକ ଚିପି ଧରି ଯୋଗାଭ୍ୟାସ କରିବାରେ ଲାଗିଛନ୍ତି ।

: ଯୋଗାଭ୍ୟାସ କରୁଛନ୍ତି !

: ହଁ, ଚାକର କହୁଥିଲା ଫେରିବା ବାଟରେ ସେ କୁଆଡ଼େ କାଶୀରେ ସମୁଦ୍ର-ଯାତ୍ରା ପାଇଁ ପ୍ରାୟଶ୍ଚିତ୍ତ କରି ଯିବ ।

କମଲ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ କହିଲା—ସମୁଦ୍ର ଯାହା ପାଇଁ ପ୍ରାୟଶ୍ଚିତ୍ତ କରିବେ ? ଅଜିତ ବାବୁ !

ଆଶୁବାବୁ ମୁଣ୍ଡ ହଲାଇ କହିଲେ—କରିପାରେ । ଏହା ହେଲା ସର୍ବୋତ୍ତମୁଖୀ ପ୍ରତିଭା ।

କମଲ ହସି ପକାଇଲା । କ'ଣ ଗୋଟାଏ କହି ପକାଇବା ପାଇଁ ଯାଉଥିଲା ଏପରି ସମୟରେ ଦୁଆର ବନ୍ଧ ନିକଟରେ ମନୁଷ୍ୟର ଛାୟା ଦେଖାଗଲା । ଏବଂ ଯେଉଁ ଭୃତ୍ୟ ଆସି ମାଲିକଙ୍କୁ ବିଭିନ୍ନ ପ୍ରକାରର ସଂବାଦ ଯୋଗାଇ ଆସିଛି ସେହି ହିଁ ଆସି ସଣଘରରେ ଦଣ୍ଡାୟମାନ ହେଲା ଏବଂ ସର୍ବାପେକ୍ଷା ଦାରୁଣ ସମ୍ବାଦ ଦେଲା ଯେ ଅକ୍ଷୟ, ଅବିନାଶ, ହରେନ୍ଦ୍ର ପ୍ରଭୃତି ବାବୁମାନେ ଆସି ପହଞ୍ଚି ଗଲେଣି । ଏହା ଶୁଣି କେବଳ କମଲ ନୁହେଁ, ବନ୍ଧୁମାନଙ୍କ ଅଭ୍ୟର୍ଥନା ଜଣାଇବା ପାଇଁ ଉଚ୍ଛ୍ୱସିତ ଆନନ୍ଦରେ ଯିଏ ପ୍ରାୟ ପାଗଳ ହୋଇ ଉଠିଥାନ୍ତେ ସେହି ଆଶୁବାବୁଙ୍କର ମଧ୍ୟ ମୁହଁ ଶୁଖି ଆସିଲା । କ୍ଷଣକ ପରେ ଆଗନ୍ତୁକ ଭଦ୍ରବ୍ୟକ୍ତିମାନେ ଘର ଭିତରେ ପ୍ରବେଶ କରିବା ମାତ୍ରେ ଆଶ୍ଚର୍ଯ୍ୟ ହୋଇ ଉଠିଲେ । କାରଣ ଏହି ସ୍ତ୍ରୀ ଲୋକଟିର ଏପରି ସ୍ଥଳରେ ଏଠାରେ ଦର୍ଶନ ମିଳିପାରିବ, ତାହା ସେମାନଙ୍କର କଳ୍ପନାତୀତ ଥିଲା । ହରେନ୍ଦ୍ର ହାତ ଉଠାଇ କମଲକୁ ନମସ୍କାର କରି କହିଲା କ'ଣ ଭଲ ଅଛନ୍ତି ? ଅନେକ ଦିନ ହେବ ଆପଣଙ୍କୁ ଦେଖି ନାହିଁ ।...

ଅବିନାଶ ବାବୁ ହସିବାର ମୁଖଭଙ୍ଗୀ କରି ଥରେ ବାମ ଦିଗକୁ ଓ ଥରେ ଦକ୍ଷିଣ ଦିଗକୁ ମୁହଁ ବୁଲାଇଲେ । ଯାହାର କି କୌଣସି ଅର୍ଥ ହିଁ ନାହିଁ । ଆହୁରି ସରଳ ମନୁଷ୍ୟ ଅକ୍ଷୟ । ସେ ସିଧା ବାଟରେ ସିଧା ମତଲବ ନେଇ କାଠ ଭଳି ମୁହୂର୍ତ୍ତିକ ପାଇଁ ଦୁଇ ଆଖିରେ ଅବଜ୍ଞା ଓ ବିରକ୍ତି ପ୍ରକାଶ କରି ଚୌକିଟିଏ ଟାଣି ଆଣି ବସିପଡ଼ିଲା । ଆଶୁ ବାବୁଙ୍କୁ ଉଦ୍ଦେଶ୍ୟ କରି ପ୍ରଶ୍ନ କରି ବସିଲା—ମୋ ପ୍ରବନ୍ଧଟା ପଢ଼ିଲେ ତ ? ଏହା କହିବା ସଙ୍ଗେ ସଙ୍ଗେ ତା ଦୃଷ୍ଟିରେ ପଡ଼ିଲା ସେହି ଲେଖାଟା ମାଟିରେ ପଡ଼ି ଲୋଟୁଛି । ନିଜେ ତୋଳି ଧରିବାକୁ ଯାଉଥିଲା । ହରେନ୍ଦ୍ର ବାଧା ଦେଇ କହିଲା—ଥାଉ ନା ଅକ୍ଷୟ ବାବୁ । ଘର ଓଲାଇବା ବେଳେ ବର୍ତ୍ତିମାନ ଗୁକର ସେଇଟା ଫିଙ୍ଗି ଦେବ ।

ତା ହାତଟାକୁ ଠେଲି ଦେଇ ଅକ୍ଷୟ କାଗଜଟାକୁ ଗୋଟାଇ ଆଣିଲା ।

: ହଁ, ପଢ଼ିଲି । କହି ଆଶୁବାବୁ ଉଠି ବସିଲେ । ସ୍ପଷ୍ଟକରି ଦେଖିଲେ ଅଜିତ ସେ ପାଖ ସୋଫାରେ ବସି ସେହି ଦିନର କାଗଜଟାରେ ଆଖି ବୁଲାଇବା ଆରମ୍ଭ କରିଛି । ଅବିନାଶ ବାବୁ କଛି ଗୋଟାଏ କହି ପକାଇ ନିଃଶ୍ୱାସ ମାରି ରକ୍ଷା ପାଇବା ପାଇଁ କହିଲେ—ମୁଁ ମଧ୍ୟ ଅକ୍ଷୟର ଲେଖାଟା ଆମୂଳ ଚୂଳ ପଢ଼ିଛି ଆଶୁ ବାବୁ । ତହିଁରୁ ଅଧିକାଂଶ ହେଉଛି ସତ୍ୟ ଏବଂ ମୂଲ୍ୟବାନ୍ । ଦେଶର ସାମାଜିକ ଅବସ୍ଥାର ଯଦି ସଂସ୍କାର କରିବାକୁ ହେବ ତେବେ ସମସ୍ତଙ୍କୁ ସୁପରିଚିତ ଓ ସୁପ୍ରତିଷ୍ଠିତ ପଥରେ ହିଁ ଚାଲିବାକୁ

ଘଟିବ । ୟୁରୋପ ସଂସ୍ପର୍ଶରେ ଆସିବା ପରେ ଅବଶ୍ୟ ଆମେମାନେ ବହୁତ ଭଲଜିନିଷ ଦେଖିବାକୁ ପାଇ ପାରିଛେ, ଆମମାନଙ୍କର ଅନେକ ତ୍ରୁଟି ଆଖିରେ ପଡ଼ୁଛି, ମାନୁଛୁ, କିନ୍ତୁ ଆମର ସଂସ୍କାର ହେଉଛି ଆମ ନିଜ ପଥରେ ହିଁ ଅଗ୍ରସର ହେବା ଉଚିତ । ପରକୁ ଅନୁକରଣ କଲେ ମଙ୍ଗଳ ହେବ ନାହିଁ । ଭାରତୀୟ ନାରୀର ଯାହା ବୈଶିଷ୍ଟ୍ୟ, ଯାହା ସେମାନଙ୍କର ନିଜସ୍ୱ, ଯଦି ଲୋଭ କିମ୍ବା ମୋହ ବଶତଃ ସେ ସବୁ ଆମେ ନଷ୍ଟ କରିବସିବା ତେବେ ସକଳ ଦିଗରୁ ଆମେ ବ୍ୟର୍ଥ ହୋଇ ଉଠିବା । ଏଇ ଆମ ଅକ୍ଷୟ ବାବୁ ?

କଥାଗୁଡ଼ିକ ଉତ୍ତମ ଏବଂ ସମସ୍ତ ହିଁ ଅକ୍ଷୟ ବାବୁଙ୍କ ପ୍ରବନ୍ଧର ବିଷୟବସ୍ତୁ । ବିନୟ ବଶବର୍ତ୍ତୀ ହୋଇ ସେ ମୁହଁରେ କିଛି କହିଲେ ନାହିଁ । କେବଳ ଆତ୍ମପ୍ରସାଦର ଅନିର୍ବଚନୀୟ ତୃପ୍ତି ହେତୁ ଅର୍ଦ୍ଧ ନିମୀଳିତ ନେତ୍ରରେ ମୁଣ୍ଡକୁ କେତେ ଥର ହଲାଇବାକୁ ଲାଗିଲେ ।

ଆଶୁବାବୁ ଅକପଟରେ ସ୍ୱୀକାର କରି କହିଲେ—ଏ ବିଷୟରେ ଯୁକ୍ତି କରିବାର କିଛି ନାହିଁ । ବହୁ ମନୀଷୀ ଏହା ପୂର୍ବରୁ ଏହି କଥା କହି ଯାଇଛନ୍ତି ଏବଂ ଭାରତବର୍ଷରେ ମଧ୍ୟ କେହି ଏହାର ପ୍ରତିବାଦ କରି ନାହାଁନ୍ତି ।

ଅକ୍ଷୟ ବାବୁ କହିଲେ—କରିବା ପାଇଁ ଶକ୍ତି ନାହିଁ । ଏହା ଛଡ଼ା ଆହୁରି ଅନେକ ବିଷୟ ଅଛି ଯାହା ପ୍ରବନ୍ଧରେ ମୁଁ ଲେଖି ପାରି ନାହିଁ କିନ୍ତୁ କାଲି ନାରୀ କଲ୍ୟାଣ ସମିତିରେ ସେ ସମ୍ପର୍କରେ ମୁଁ ମୋ ବକ୍ତୃତାରେ କହିବି ।

ଆଶୁବାବୁ ହଠାତ୍ ଫେରି କମଳ ଆଡ଼କୁ ଚାହିଁଲେ, କହିଲେ—ତୋତେ ସମିତିକୁ ଯିବା ପାଇଁ ନିମନ୍ତ୍ରଣ ନାହିଁ । ତୁ ତ ସେଠାକୁ ଯିବୁ ନାହିଁ । ମୁଁ ମଧ୍ୟ ବାତରୋଗୀ । ମୁଁ ନିଯାଏ କିଛି ଯାଏ ଆସେ ନାହିଁ କିନ୍ତୁ ଏ ସବୁ ତୋ ଭଲ ମନ୍ଦର କଥା । ହଁ କମଳ, ତୋର ଏ ପ୍ରସ୍ତାବରେ ତ ଆପତ୍ତି ନାହିଁ ?

ଅନ୍ୟ ସମୟ ହୋଇଥିଲେ କମଳ ନୀରବ ରହିଥାନ୍ତା, କିନ୍ତୁ ଏକରେ ତା ମନ ଖରାପ, ତା ସହିତ ଏହି ଲୋକଗୁଡ଼ିକଙ୍କର ପୌରୁଷହୀନ, ସଙ୍ଗବଦ୍ଧ ବିରୁଦ୍ଧାଚରଣ ହେତୁ ତା ମନରେ ଯେପରି ନିଆଁ ଲାଗିଗଲା । ତଥାପି ସେ ନିଜକୁ ଯଥା ସମ୍ଭବ ସମ୍ବରଣ କରି ପ୍ରଶ୍ନ କଲା—କେଉଁ କଥା ଆଶୁବାବୁ ? ଅନୁକରଣଟା, ନା ଭାରତୀୟ ବୈଶିଷ୍ଟ୍ୟ ?

ଆଶୁବାବୁ କହିଲେ—ଧର ଯଦି କହେ ଦୁଇଟା ହିଁ ।

କମଳ କହିଲା ଅନୁକରଣଟା ଯେତେବେଳେ ବାହାରକୁ ନକଲ ହୁଏ ସେତେବେଳେ ତାହା ହେଉଛି ଫାଙ୍କି । ସେତେବେଳେ ଆକୃତିରେ ମେଳ ରହିଲେ ସୁଦ୍ଧା ପ୍ରକୃତିରେ ମେଳ ଖାଏ ନାହିଁ । କିନ୍ତୁ ଭିତରେ ବାହାରେ ଯଦି ସେ ଏକ ହୋଇ-ଯାଏ ସେତେବେଳେ ଅନୁକରଣ ବୋଲି ଲଜ୍ୟା ପାଇବା ଭଳି ତ କିଛି ନ ଥାଏ ।

ଆଶୁବାବୁ ମୂଣ୍ଡ ହଲାଇ କହିଲେ—ଅଛୁ, କମଳ ଅଛୁ । ଏହି ରକମର ସର୍ବାଙ୍ଗୀନ ଅନୁକରଣ ଫଳରେ ଆମେମାନେ ନିଜର ବିଶେଷତ୍ୱ ହରାଇବା । ତା ଅର୍ଥ ନିଜକୁ ସମ୍ପୂର୍ଣ୍ଣ ରୂପେ ହଜାଇଦେବା । ଏଥିରେ ଯଦି ଦୁଃଖ ଏବଂ ଲଜ୍ୟା କରିବାର କିଛି ନାହିଁ ତେବେ ଆଉ କେଉଁଥିରେ ଅଛି କୁହନ୍ତ ?

କମଳ କହିଲା – ହଜାଇବାରେ ମଧ୍ୟ ବିଶେଷତ୍ୱ ରହିଛି ଆଶୁବାବୁ । ଭାରତର ଏବଂ ୟୁରୋପର ବୈଶିଷ୍ଟ୍ୟ ଭିତରେ ପ୍ରଭେଦ ରହିଛି । କିନ୍ତୁ କୌଣସି ଦେଶର କୌଣସି ବୈଶିଷ୍ଟ୍ୟ ପାଇଁ ମନୁଷ୍ୟ ନୁହେଁ ବରଂ ମନୁଷ୍ୟ ପାଇଁ ବୈଶିଷ୍ଟ୍ୟର ଆଦର । ଅସଲ କଥା, ବର୍ତ୍ତମାନ କାଳରେ ସେ ବୈଶିଷ୍ଟ୍ୟ ମନୁଷ୍ୟ ପାଇଁ କଲ୍ୟାଣ କର କି ନୁହେଁ—ଚିନ୍ତା କରିବାର କଥା । ଏହା ବ୍ୟତୀତ ଆଉ ସବୁ କେବଳ—ଅନ୍ଧାନୁସରଣ ଓ ମୋହ ।

ଆଶୁବାବୁ ଦୁଃଖିତ ହୋଇ କହିଲେ—କେବଳ ଅନ୍ଧଭାବରେ ଅନୁସରଣ କରିବା ବ୍ୟତୀତ ଆଉ ଅଧିକ କିଛି ନୁହେଁ ?

କମଳ କହିଲା—ନା, ତାହାଠାରୁ ଅଧିକ ନୁହେଁ । କୌଣସି ଗୋଟିଏ ଜାତିର କୌଣସି ବୈଶିଷ୍ଟ୍ୟ ଦିହୁଦିନ ଧରି ଚାଲି ଆସି ପାରିଛି ବୋଲି, ସେହି ଗୁଣରେ ତାକୁ ବହୁଦିନ ପାଇଁ ଦେଶର ମନୁଷ୍ୟଙ୍କୁ ଗଢ଼ି ତୋଳିବାକୁ ହେବ, ଏହାର କୌଣସି ଅର୍ଥ ନାହିଁ । ମନୁଷ୍ୟ ଠାରୁ ମନୁଷ୍ୟର ବୈଶିଷ୍ଟ୍ୟ ବଡ଼ ନୁହେଁ । ଆଉ ତାହା ଯେତେବେଳେ ଆମେମାନେ ଭୁଲି ଯାଉ ସେତେବେଳେ ଆମର ବିଶେଷତ୍ୱ ଚାଲିଯାଏ । ଆଉ ପ୍ରକୃତ ମନୁଷ୍ୟମାନଙ୍କ ମଧ୍ୟ ହରାଇ ବସୁ । ସେହିଠାରେ ହିଁ ଆମର ଲଜ୍ୟା ପାଇବା କଥା—ଆଶୁବାବୁ ।

ଆଶୁବାବୁ ଯେପରି ବୁଝି ହରାଇ ବସିଲେ । କହିଲେ—ତାହାହେଲେ ତ ସବୁ ଏକାକାର ହୋଇଯିବ । ଭାରତୀୟ ବୋଲି ଆମକୁ ତ ଆଉ କେହି ଜାଣିବେ ନାହିଁ ? ଇତିହାସ ଯେ ଏହିଭଳି ଘଟଣାର ସାକ୍ଷୀ ରହିଛି ।

ଆଶୁବାବୁଙ୍କ କୁଣ୍ଠିତ, ଓ ବିକ୍ଷୁବ୍ଧ ମୁହଁକୁ ଚାହିଁ କମଳ ହସି ହସି କହିଲା—ସେତେବେଳେ ମୁନି-ଋଷି ମାନଙ୍କର ବଂଶଧର କହିଲେ ହୁଏତ ଚିହ୍ନା ଯାଇ ପାରିବେ ନାହିଁ କିନ୍ତୁ ମନୁଷ୍ୟ ବୋଲି ଚିହ୍ନା ଯିବେ । ଆଉ ଆପଣ ଯାହାକୁ ଭଗବାନ ବୋଲି ମାନନ୍ତି ତାଙ୍କୁ ହିଁ ଚିହ୍ନି ପାରିବେ । ଆଉ ତେଣିକି ଭୁଲ ହେବ ନାହିଁ ।

ଅକ୍ଷୟ ଉପହାସ କରି କଠୋର କଣ୍ଠରେ କହିଲା—ଭଗବାନ କେବଳ ଆମ ମାନଙ୍କର । ଆପଣଙ୍କର ନୁହନ୍ତି ?

କମଳ ଉତ୍ତର ଦେଇ କହିଲା—ନା ।

ଅକ୍ଷୟ କହିଲା—ଏହା କେବଳ ଶିବନାଥର ପ୍ରତିଧ୍ୱନି ଶିଖାଇଥିବା କଥା ।

ହରେନ୍ଦ୍ର କହିଲା—ଚୁପ୍ ।

: ଦେଖନ୍ତୁ ହରେନ୍ଦ୍ରବାବୁ···

: ଦେଖିଛି । ବସ୍ତୁ ।

ଆଶୁବାବୁ ହଠାତ୍ ଯେପରି ସ୍ୱପ୍ନ ଦେଖାରୁ ଚେଇଁ ଉଠିଲା ପରି କହିଲେ—ଦେଖ କମଳ, ଅନ୍ୟ ମାନଙ୍କ କଥା କହିବା ପାଇଁ ଯାଉନାହିଁ, କିନ୍ତୁ ଆମ ଭାରତୀୟ ମାନଙ୍କର ବୈଶିଷ୍ଟ୍ୟ କେବଳ କଥାରେ ନୁହେଁ । ଏହା ଲୁଚିଯିବା ଦ୍ୱାରା କେତେ ବଡ଼ କ୍ଷତି ହେବ ତାହା ଅନୁମାନ କରିବା ଦୁଃସାଧ୍ୟ । କେତେ ଧର୍ମ, ଆଦର୍ଶ, ପୁରାଣ, ଇତିହାସ, କାବ୍ୟ, ଉପାଖ୍ୟାନ, ଶିଳ୍ପ ଏବଂ କେତେ ଅମୂଲ୍ୟ ସମ୍ପଦ ତ ଏହି ବୈଶିଷ୍ଟ୍ୟକୁ ହିଁ ଆଶ୍ରୟ କରି ବଞ୍ଚି ରହିପାରିଛି । ଏସବୁ ତାହାହେଲେ କିଛି ତ ଆଉ ରହିବ ନାହିଁ ?

କମଳ କହିଲା—ରହିବା ପାଇଁ ଅବା ଏତେ ବ୍ୟାକୁଳତା କାହିଁକି ? ଯାହା ଯିବାର ନୁହେଁ ତାହା ଯିବ ନାହିଁ । ମନୁଷ୍ୟର ପ୍ରୟୋଜନ ଅନୁସାରେ ତାହା ନୂତନ ରୂପ, ନୂତନ ସୌନ୍ଦର୍ଯ୍ୟ, ନୂତନ ମୂଲ୍ୟବୋଧ ଧରି ଦେଖାଦେବ । ତାହାହିଁ ହେବ ସେମାନଙ୍କର ଅସଲ ପରିଚୟ । ନଚେତ୍ ବହୁ ଦିନ ଧରି ରହି ଆସିଛି ବୋଲି ତାହାକୁ ଜାବୁଡ଼ି ଧରି ରଖିବାକୁ ହେବ—ଏହା କିପରି କଥା କହନ୍ତୁ ତ ?

ଅକ୍ଷୟ କହିଲା—ତାହା ବୁଝିି ପାରିବାର ଶକ୍ତି ଆପଣଙ୍କର ନାହିଁ ।

ହରେନ୍ଦ୍ର କହିଲା—ଆପଣଙ୍କ ଅଭଦ୍ର ବ୍ୟବହାର ପାଇଁ ମୁଁ ଆପତ୍ତି କରୁଛି, ଅକ୍ଷୟ ବାବୁ ।

ଆଶୁବାବୁ କହିଲେ—କମଳ, ତୋ ଯୁକ୍ତିରେ ଯେ ସତ୍ୟତା ନାହିଁ ତାହା ମୁଁ କହୁ ନାହିଁ କିନ୍ତୁ ଯାହା ତୁ ଅଜ୍ଞତା ହେତୁ ଅବଜ୍ଞା କରୁଛୁ ତାହା ଭିତରେ ବହୁତ ସତ୍ୟ ରହିଛି । ନାନା କାରଣରୁ ଆମର ସାମାଜିକ ବିଧି ବ୍ୟବସ୍ଥା ଉପରେ ତୋର ଅଶ୍ରଦ୍ଧା ଜନ୍ମିଛି । କିନ୍ତୁ ଗୋଟାଏ କଥା ଭୁଲି ଯାଅନା କମଳ, ବାହାରର ଅନେକ ଉତ୍ପାତ ଆମକୁ ସହ୍ୟ କରିବାକୁ ପଡ଼ିଛି ତଥାପି ଆଜି ଯେ ଆମେ ସମସ୍ତ ବୈଶିଷ୍ଟ୍ୟକୁ ଧରି ବଞ୍ଚି ରହି ପାରୁଛୁ ତାହା କେବଳ ଆମମାନଙ୍କର ସତ୍ୟ ପ୍ରତି ଆଶ୍ରୟ ହେତୁ ସମ୍ଭବପର ହୋଇ ପାରିଛି । ଜଗତରେ ଅନେକ ଜାତି ଆଜି ବିଲୁପ୍ତ ହୋଇ ଯାଇଛନ୍ତି ।

କମଳ କହିଲା—ସେଥିପାଇଁ ଅବା ଦୁଃଖ କାହିଁକି ? ଚିରଦିନ ପାଇଁ ଯେ ସେମାନେ ସ୍ଥାନ ମାଡ଼ି ବସିଥାନ୍ତେ ତହିଁରେ କି ଅବା ଆବଶ୍ୟକତା ଥିଲା ?

: ତାହାତ ଭିନ୍ନ କଥା—କମଳ ।

: ହୋଇଥାଇପାରେ । ବାବାଙ୍କ ନିକଟରୁ ଶୁଣିଥିଲି ଯେ ଆର୍ଯ୍ୟମାନଙ୍କର ଗୋଟିଏ ଶାଖା ୟୁରୋପରେ ଯାଇ ବାସ କରିଥିଲେ ଯେଉଁମାନେ କି ବର୍ତ୍ତମାନ ବଞ୍ଚି ନାହାଁନ୍ତି । କିନ୍ତୁ ସେମାନଙ୍କ ବଦଳରେ ଯେଉଁମାନେ ବଞ୍ଚି ରହିଛନ୍ତି ସେମାନେ

ଆମ୍ଭର ବଡ଼ । ସେହିପରି ଯଦି ଏ ଦେଶରେ ଘଟି ପାରନ୍ତା, ତେବେ ଆଜି ଆମେ ଆମର ପୂର୍ବପୁରୁଷମାନଙ୍କ ପାଇଁ ଶୋକ କରି ବସନ୍ତୁ ନାହିଁ । ନିଜର ସନାତନ ବିଶେଷତ୍ୱ ନେଇ ଗର୍ବ କରି କରି ଦିନ କଟାଉ ନ ଥାନ୍ତୁ । ଆପଣ କହୁଥିଲେ ଅତୀତର ଉପଦ୍ରବ କଥା, କିନ୍ତୁ ତାହାଠାରୁ ଯେ ଅଧିକ ଉପଦ୍ରବ ଭବିଷ୍ୟତରେ ନ ଘଟିବ କିମ୍ବା ସମସ୍ତ ବିପଦ ଯେ ନିଃଶେଷ ହୋଇ ଯାଇଛି, ତାହା ମଧ୍ୟ ସତ୍ୟ ନ ହୋଇ ପାରେ । ସେତେବେଳେ ଆମେମାନେ କାହା ଜୋରରେ ବଞ୍ଚିବୁ କହନ୍ତୁ ?

ଆଶୁବାବୁ ଏହି ପ୍ରଶ୍ନର ଉତ୍ତର ଦେଲେ ନାହିଁ, କିନ୍ତୁ ଅକ୍ଷୟ ବାବୁ ଉତ୍ତେଜିତ ହୋଇ ଉଠିଲେ । କହିଲେ—ସେତେବେଳେ ବଞ୍ଚିବୁ ଆମମାନଙ୍କ ଆଦର୍ଶର ଜୋରରେ । ଯେଉଁ ଆଦର୍ଶ ବହୁ ଯୁଗରୁ ଆମମାନଙ୍କ ମନ ଭିତରେ ଅବିଚଳିତ ଭାବରେ ରହି ଆସିଛି; ଯେଉଁ ଆଦର୍ଶ ଆମମାନଙ୍କ ଦାନ ଭିତରେ, ଆମମାନଙ୍କ ପୁଣ୍ୟ ଭିତରେ ଏବଂ ଆମମାନଙ୍କ ତପସ୍ୟା ଭିତରେ ରହି ଆସିଛି, ପୁଣି ଯେଉଁ ଆଦର୍ଶ ଆମମାନଙ୍କ ନାରୀଜାତିର ଅକ୍ଷୟ ସତୀତ୍ୱର ମଧ୍ୟରେ ନିହିତ ଅଛି, ଆମେମାନେ ତାହାରି ଜୋରରେ ହିଁ ବଞ୍ଚିବୁ । ହିନ୍ଦୁ କଦାପି ମରିପାରେ ନାହିଁ ।

ଅଜିତ ହାତରେ ଧରିଥିବା କାଗଜକୁ ଫିଙ୍ଗିଦେଇ ବିସ୍ମୟ ବିସ୍ଫାରିତ ନେତ୍ରରେ ଚାହିଁ ରହିଲା ଏବଂ ମୁହୂର୍ତ୍ତିକ ପାଇଁ କମଳ ମଧ୍ୟ ମୂକ ପାଲଟି ଗଲା । ତାର ମନେ ପଡ଼ିଗଲା ପ୍ରବନ୍ଧ ଲେଖି ଅକାରଣରେ ସେ ଏହି ଲୋକଟି ତାକୁ ଆକ୍ରମଣ କରି ବସିଛି ଏବଂ ସେହି ପ୍ରବନ୍ଧକୁ ହିଁ କାଲି ସେ ନାରୀମାନଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ଅନେକ ନାରୀଙ୍କ ସମ୍ମୁଖରେ ଦମ୍ଭର ସହିତ ପାଠ କରିବସିବ । ଏହି ଶେଷୋକ୍ତ ଇଙ୍ଗିତ ହିଁ କେବଳ ତାହାକୁ ହିଁ ଲକ୍ଷ୍ୟ କରି ଲେଖାଯାଇଛି । କ୍ରୋଧରେ ମୁହଁ ତାର ଲାଲ ହୋଇ ଉଠିଲା । ଏଥର ମଧ୍ୟ ସେ ଆପଣାକୁ ସଂଯତ ରଖି ସରଳ କଣ୍ଠରେ କହିଲା—ଆପଣଙ୍କ ସହିତ ଆଳାପ-ଆଲୋଚନା କରିବା ପାଇଁ ମୋର ଇଚ୍ଛା ହୁଏ ନାହିଁ ଅକ୍ଷୟ ବାବୁ । ମୋର ଆତ୍ମସମ୍ମାନକୁ ବାଧା ଲାଗେ । ଏତିକି କହିସାରି ସେ ଆଶୁ ବାବୁଙ୍କ ଆଡ଼କୁ ମୁହଁ କରି କହିଲା—କୌଣସି ଆଦର୍ଶ ବହୁକାଳ ସ୍ଥାୟୀ ହୋଇ ରହିଲେ ମଧ୍ୟ ସବୁଦିନ ପାଇଁ ଆଦର୍ଶ ହୋଇ ରହିପାରିବ ନାହିଁ । ସେଥିପାଇଁ ତାହାର ପରିବର୍ତ୍ତନରେ ଲଜ୍ୟା କରିବାର କିଛି ନାହିଁ । ଏହି କଥାଟା ହିଁ ମୁଁ ଆପଣଙ୍କୁ କହିବା ପାଇଁ ଇଚ୍ଛା କରିଥିଲି । ତଦ୍ଭିନ୍ନ ଜାତିର ବୈଶିଷ୍ଟ୍ୟ ଯଦି ଯାଉଥାଏ ତେବେ ଗୋଟାଏ ଉଦାହରଣ ଦେବି । ଆତିଥେୟତା ଆମର ବଡ଼ ଆଦର୍ଶ । କେତେ କାବ୍ୟ, କେତେ ଉପନ୍ୟାସ, ଏବଂ କେତେ ଧର୍ମକାହାଣୀ ଏହାକୁ ନେଇ ଲେଖା ଯାଇଛି । ଅତିଥିଙ୍କୁ ଖୁସି କରିବା ପାଇଁ ଦାତା କର୍ଣ୍ଣ ନିଜେ ହିଁ ପୁତ୍ର ହତ୍ୟା କରି ବସିଥିଲେ । ଏଥିପାଇଁ କେତେ ଲୋକଙ୍କ ଆଖିରୁ କେତେ ଯେ ଲୁହ ବହିଛି ତାର ଇୟତ୍ତା ନାହିଁ । ଅଥଚ ଏ କାହାଣୀ ଆଜି କେବଳ କୁତ୍ସିତ ନୁହେଁ ବରଂ ବିଭତ୍ସ । ସତୀ ସ୍ତ୍ରୀ କୁଷ୍ଠରୋଗଗ୍ରସ୍ତ ସ୍ୱାମୀକୁ କାନ୍ଧରେ ବସାଇ ବେଶ୍ୟାଳୟ ନିକଟରେ ପହଞ୍ଚାଇ ଦେଇଥିଲା । ଏହି ସତୀତ୍ୱର

ଏବଂ ଆଦର୍ଶର ସହିତ ତୁଳନା ନ ଥିଲା । କିନ୍ତୁ ଆଜିକାଲି ତାହା ମନୁଷ୍ୟ ମନରେ ଘୃଣା ଉଦ୍ରେକ କରେ । ଆପଣଙ୍କ ନିଜ ଜୀବନର ଯେଉଁ ଆଦର୍ଶ, ଯେଉଁ ତ୍ୟାଗ ଆଜି ଲୋକମାନଙ୍କ ମନରେ ଶ୍ରଦ୍ଧା ଓ ବିସ୍ମୟର କାରଣ ହୋଇଛି ସିନେ ହୁଏତ ତାହା ଅନୁକମ୍ପାର ବ୍ୟାପାର ହେବ । ଏହି ନିଷ୍ଫଳ ଆତ୍ମପୀଡ଼ନକୁ ସିନେ ଲୋକେ ଉପହାସ କରି ଉଠିବେ ।

ଏହି ନିଷ୍ଠୁର ଆଘାତ ହେତୁ କ୍ଷଣକେ ପାଇଁ ଆଶୁବାବୁଙ୍କ ମୁହଁ ପାଣ୍ଡୁର ବର୍ଣ୍ଣ ହୋଇଗଲା । କହିଲେ, କମଲ ଏହାକୁ ନିଶ୍ଚିହ୍ନ ବୋଲି ଧରି ନେଉଛି କାହିଁକି ? ଏଥିରେ ଯେ ମୋର ଆନନ୍ଦ । ଉତ୍ତରାଧିକାରୀ ସୂତ୍ରରେ ଏହା ମୋର ବହୁଯୁଗର ପ୍ରାପ୍ତ ସମ୍ପତ୍ତି ।

କମଲ କହିଲା—ହେଉ ବହୁଯୁଗ । କେବଳ ବର୍ଷ ଗଣନା କରି ଆଦର୍ଶର ମୂଲ୍ୟ ଧାର୍ଯ୍ୟ କରାଯାଏ ନାହିଁ । ଅଚଳ, ପଙ୍ଗୁ, ଭୁଲ ଭ୍ରାନ୍ତିରେ ପୂର୍ଣ୍ଣ ସମାଜର ସହସ୍ର ବର୍ଷ ହୁଏତ ଅନାଗତ ଦଶଟା ବର୍ଷର ଗତିବେଗରେ ଭାସି ଯାଇଥାଏ । ସେହି ଦଶଟି ବର୍ଷ ହିଁ ତେର ଅଧିକ ଆଶୁବାବୁ ।

ଅଜିତ ହଠାତ୍ 'ଜ୍ୟା-ମୁକ୍ତ ଧନୁ' ଭଳି ସିଧା ଠିଆ ହୋଇପଡ଼ି କହିଲା—ଆପଣଙ୍କ ବାକ୍ୟର ଉଗ୍ରତା ହେତୁ ହୁଏତ ଏମାନଙ୍କର ବିସ୍ମୟର ସୀମା ନାହିଁ । କିନ୍ତୁ ମୁଁ ଆଦୌ ବିସ୍ମିତ ହୋଇ ନାହିଁ । ମୁଁ ଭଲ କରି ଜାଣେ ଏହି ବିଜାତୀୟ ମନୋଭାବର ଉତ୍ସ କେଉଁଠାରେ । କେଉଁଥିପାଇଁ ଆମମାନଙ୍କର ସମସ୍ତ ମଙ୍ଗଳକର ଆଦର୍ଶ ପ୍ରତି ଆପଣଙ୍କର ଏତେ ତୀବ୍ର ଘୃଣା ଜାତ ହୋଇଛି । ଚାଲନ୍ତୁ, ଆଉ ଆମମାନଙ୍କର ମିଛଟାରେ ଡେରି କରିବାର ସମୟ ନାହିଁ । ପାଞ୍ଚଟା ବାଜି ଗଲାଣି ।

ଅଜିତ ପଛେ ପଛେ ସମସ୍ତେ ଉଠି ବାହାରି ଚାଲିଗଲେ । କେହି ତାକୁ ସାମାନ୍ୟ ଅଭିବାଦନ କଲେ ନାହିଁ । କେହି ମଧ୍ୟ ତାହାପ୍ରତି ଫେରି କରି ଚାହିଁଲେ ନାହିଁ । ଯୁକ୍ତି ଯେତେବେଳେ ହାରି ମାନିଲା ସେତେବେଳେ ଏହିପରି ଭାବରେ ପୁରୁଷର ଦଳ ଆପଣାର ବିଜୟ ଘୋଷଣା କରି ପୌରୁଷ ବଜାୟ ରଖିଲେ । ସେମାନେ ଚାଲିଯିବା ପରେ ଆଶୁବାବୁ ଧୀରେ ଧୀରେ କହିଲେ—କମଲ ଅନ୍ୟମାନଙ୍କ ଅପେକ୍ଷା ତୁ ମୋତେ ହିଁ ଅଧିକ ଆଘାତ କରିଛୁ କିନ୍ତୁ ତା ବଦଳରେ ଆଜି ମୁଁ ତୋତେ ମୋର ସମସ୍ତ ପ୍ରାଣ ଦେଇ ବେଶୀ ଭଲ ପାଇ ବସିଛି । ମୋ ମଣିଠାରୁ ତୁ କୌଣସି ଗୁଣରେ କମ୍ ନୁହଁ ।

କମଲ କହିଲା, ସେଥିପାଇଁ ପ୍ରକୃତରେ ମଣିଷ ଆପଣ ହେଉଛନ୍ତି ଜଣେ ବିରାଟ ପୁରୁଷ । ଆପଣ ତ ଆଉ ସେମାନଙ୍କ ଭଳି ମିଥ୍ୟାବାଦୀ ନୁହଁନ୍ତି । କିନ୍ତୁ ମୋର ମଧ୍ୟ ସମୟ ଗଡ଼ିଯାଉଛି, ମୁଁ ଯାଉଛି । ଏତିକି କହି ସେ ଉଠି ଆସି ଆଶୁବାବୁଙ୍କ ପାଦତଳେ ମୁଣ୍ଡ ନୁଆଇଁ ପ୍ରଣାମ କରିଲା ।

ପ୍ରଣାମ ସେ ପ୍ରାପ୍ୟ କାହାକୁ କରି ନ ଥାଏ । ତାର ଏହି ଅଭାବନୀୟ ଆଚରଣରେ ଆଶୁବାବୁ ଅତି ବ୍ୟସ୍ତ ହୋଇ ପଡ଼ିଲେ । ଆଶୀର୍ବାଦ କରି କହିଲେ—ଆଉ କେବେ ଆସିବୁ ମାଆ ?

ଆଉ ହୁଏତ ମୁଁ ଆସିବି ନାହିଁ ମଉସା, କହି ସେ ଘରୁ ବାହାରିଗଲା ।

ଆଶୁବାବୁ ସେହି ଦିଗକୁ ଚାହିଁ ନୀରବରେ ବସି ରହିଲେ ।

ଆଗ୍ରାର ନୂଆ ମାଜିଷ୍ଟ୍ରେଟଙ୍କର ସ୍ତ୍ରୀଙ୍କ ନାମ ମାଳିନୀ । ତାଙ୍କର ଉଦ୍ୟମରେ ଏବଂ ତାଙ୍କର ଗୃହରେ ନାରୀ-କଲ୍ୟାଣ ସମିତି ପ୍ରତିଷ୍ଠିତ ହୋଇଛି । ଉଦ୍ୟୋଗଟା ପ୍ରଥମରୁ ଜୋର ସୋରରେ ହୋଇଥିଲେ ମଧ୍ୟ କିନ୍ତୁ କାର୍ଯ୍ୟଟା ସୁସମ୍ପନ୍ନ ତ ହୋଇ ପାରିଲା ନାହିଁ ବରଂ କିପରି ବିଶୃଙ୍ଖଳ ହୋଇ ଉଠିଲା । କାର୍ଯ୍ୟଟା ବିଶେଷତଃ ସ୍ତ୍ରୀ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲେ ସୁଦ୍ଧା ତହିଁରେ ପୁରୁଷମାନଙ୍କର ଯୋଗଦାନ କରିବାରେ ଆପତ୍ତି ନ ଥିଲା । ବାସ୍ତବରେ ସେମାନେ କିନ୍ତୁ ବିଶେଷ ଭାବରେ ନିମନ୍ତ୍ରିତ ହୋଇଥିଲେ । ଏହି ଦାୟିତ୍ୱ ଥିଲା ଅବିନାଶ ବାବୁଙ୍କ ଉପରେ । ଚିନ୍ତାଶୀଳ ଲେଖକ ବୋଲି ଅକ୍ଷୟଙ୍କର ସୁନାମ ଥିଲା । ଲେଖା-ଲେଖିର ଦାୟିତ୍ୱ ସେ ଗ୍ରହଣ କରିଥିଲା । ଅତଏବ ତାଙ୍କ ପରାମର୍ଶ ଅନୁସାରେ କେବଳ ଶିବନାଥ ବ୍ୟତୀତ ଅନ୍ୟ କାହାରିକୁ ବାଦ୍ ଦିଆଯାଇ ନ ଥିଲା । ଅବିନାଶ ବାବୁଙ୍କର ଶ୍ରେଷ୍ଠ ଶାଳୀ ନୀଳିମା ଘରେ ଘରେ ବୁଲି ଧନୀ-ଦରିଦ୍ର ନିର୍ବିଶେଷରେ ସହରର ସମସ୍ତ ବଙ୍ଗାଳୀ ଭଦ୍ର ମହିଳାମାନଙ୍କୁ ଡାକ ଦେଇ ଆସିଥିଲା । କେବଳ ଯିବା ପାଇଁ ଇଚ୍ଛା ନ ଥିଲା ଆଶୁ-ବାବୁଙ୍କର । ବାତର ଦାରୁଣ କଷ୍ଟ କିନ୍ତୁ ତାଙ୍କୁ ଏଥିରୁ ରକ୍ଷା କରି ପାରିଲା ନାହିଁ, ମାଳିନୀ ନିଜେ ଯାଇ ଧରି କରି ଘେନି ଆସିଲା । ଅକ୍ଷୟ ହାତରେ ଲେଖା ଧରି ପ୍ରସ୍ତୁତ ଥିଲେ । ପ୍ରଚଳିତ ଦୁଇ ଚାରିପଦ ମାମୁଲି ବିନୟ ଭାଷଣ ପରେ ସିଧା ଓ ଶକ୍ତ ଭାବରେ ଠିଆ ହୋଇ ପ୍ରବନ୍ଧ ପାଠରେ ନିଯୁକ୍ତ ହେଲେ । ଅଳ୍ପ ସମୟ ପରେ ବୁଝାପଡ଼ିଲା ତାଙ୍କର ବକ୍ତବ୍ୟ ଯେପରି ଅରୁଚିକର, ସେହିପରି ଦୀର୍ଘ । ସଚରାଚର ଯେପରି ହୋଇଥାଏ, ପୁରାକାଳର ସୀତା, ସାବିତ୍ରୀଙ୍କ ନାମ ଉଲ୍ଲେଖ କରି ସେ ଆଧୁନିକ ନାରୀ ସମାଜର ଆଦର୍ଶ-ବିଚ୍ଛିନ୍ନତା ପ୍ରତି କଟାକ୍ଷ କରିଥିଲେ । ଜଣେ ଆଧୁନିକ ମହିଳାଙ୍କ ଘରେ ବସି ରହି, ତାଙ୍କର ତଥାକଥିତ ଶିକ୍ଷା ବିରୁଦ୍ଧରେ କଟୂକ୍ତି ପ୍ରକାଶ କରିବା ପାଇଁ ତାଙ୍କୁ ଖରାପ ବୋଧ ହେଲା ନାହିଁ । କାରଣ ଅକ୍ଷୟଙ୍କର ଗର୍ବ ଥିଲା ଏହି ଯେ, ସେ ଅପ୍ରିୟ ସତ୍ୟ କହିବା ପାଇଁ ଭୟ କରେ ନାହିଁ । ସୁତରାଂ ଲେଖା ଭିତରେ ଯେତେ ସତ୍ୟ ଥାଉ ପଛକେ, ଅପ୍ରିୟ ବଚନର ଅଭାବ ନ ଥିଲା । ବରଂ

ଏହି ତଥାକଥିତ ଶବ୍ଦଟାର ବ୍ୟାଖ୍ୟା କରିବା ନିମିତ୍ତ ବଶିଷ୍ଟ ଉଦାହରଣର ଯାହା ନଜିର ଥିଲା, ତାହା ହେଉଛି ଏକମାତ୍ର କମଳା । ଅନିମନ୍ତ୍ରିତା ଏହି ଝିଅଟିକୁ ଅକ୍ଷୟ ଲେଖା ମାଧ୍ୟମରେ ଅପମାନ ଦେବା ପାଇଁ ଖିନ୍‌ଭିନ କରି ପକାଇଥିଲା । ଶେଷ ଆଡ଼କୁ ସେ ଗଭୀର ଦୁଃଖର ସହିତ ଏହି କଥାଟା ବ୍ୟକ୍ତ କରିବା ପାଇଁ ବାଧ୍ୟ ହୋଇଥିଲା ଯେ ଏହି ସହରରେ ଠିକ୍ ଏହିପରି ଜଣେ ସ୍ତ୍ରୀ ଲୋକ ରହିଛନ୍ତି ଯିଏ କି ଭଦ୍ର ସମାଜରେ ନିରନ୍ତର ପ୍ରଶ୍ରୟ ପାଇବା ପାଇଁ ଆସୁଛନ୍ତି । ସେହି ସ୍ତ୍ରୀ ଲୋକ ଜଣକ ନିଜର ଦାମ୍ପତ୍ୟ ଜୀବନକୁ ଅବୈଧ ବୋଲି ଜାଣି ଲଜ୍ଜିତା ହେବା ଦୂରେ ଥାଉ, ବରଂ ଉପେକ୍ଷା କରି ହସି କହୁଛନ୍ତି ବିବାହ ଭଳି ପବିତ୍ର କାର୍ଯ୍ୟ ତାଙ୍କ ନିକଟରେ ଅର୍ଥହୀନ ସଂସ୍କାର । ପତି-ପତ୍ନୀର ଏକନିଷ୍ଠ ପ୍ରେମ ନିଛକ ମାନସିକ ଦୁର୍ବଳତା । ଉପସଂହାରରେ ଅକ୍ଷୟ ଏକଥା ମଧ୍ୟ ଉଲ୍ଲେଖ କରିଥିଲା ଯେ ନାରୀ ହୋଇ ଯିଏ ନାରୀତ୍ୱର ଆଦର୍ଶକୁ ଅସ୍ୱୀକାର କରେ ତଥାକଥିତ ସେହି ଶିକ୍ଷିତା ନାରୀର ଉପଯୁକ୍ତ ବିଶେଷଣ ଓ ବାସସ୍ଥାନ ନିର୍ଣ୍ଣୟ କରିବା ବିଷୟରେ ପ୍ରବନ୍ଧ ଲେଖକଙ୍କର କୌଣସି ସନ୍ଦେହ ନ ଥିଲେ ମଧ୍ୟ କେବଳ ସଂକୋଚ ବଶତଃ କହି ପାରି ନାହାନ୍ତି । ଏହି ତ୍ରୁଟି ପାଇଁ ସେ ସମସ୍ତଙ୍କ ନିକଟରେ କ୍ଷମା ଭିକ୍ଷା କରୁଛନ୍ତି ।

ମହିଳା ସମାଜ ଭିତରୁ ମନୋରମା ବ୍ୟତୀତ କମଳାକୁ ଅନ୍ୟମାନେ କେହି ଭଲ ଆଖିରେ ଦେଖି ନାହାନ୍ତି । ତା ରୂପର ପ୍ରଶଂସା ଏବଂ ଚରିତ୍ରର ନିନ୍ଦା ପୁରୁଷମାନଙ୍କ ମୁହଁରେ ପରିବ୍ୟାପ୍ତ ହେବା ପାଇଁ ବାକି ନ ଥିଲା । ଏପରିକି ଏହି ନବ ପ୍ରତିଷ୍ଠିତ ନାରୀ-କଲ୍ୟାଣ ସମିତିର ସଭାନେତ୍ରୀ ମାଲତୀ ଦେବୀଙ୍କ କାନରେ ମଧ୍ୟ ସେହି କଥା ପହଞ୍ଚି ପାରିଥିଲା । ଏଥିପାଇଁ ନାରୀ ମହଲରେ ପର୍ଦ୍ଦା ଅନ୍ତରାଳରେ ଏବଂ ବାହାରରେ କୌତୂହଳର ସୀମା ନ ଥିଲା । ସୁତରାଂ ରୁଚି ଓ ନୀତିର ସମ୍ୟକ୍ ବିସ୍ତୃତ ହେତୁ ଉତ୍ସାହରେ ଉଦ୍ଦୀପ୍ତ ପ୍ରଶ୍ନମାଳା— ଗୁଡ଼ିକର ପ୍ରଖରତା ହେତୁ ବ୍ୟକ୍ତିଗତ ଆଲୋଚନା ସତେଜ ହେବା ପାଇଁ ବୋଧହୁଏ ବିଳମ୍ବ ଘଟି ନଥାନ୍ତା । କିନ୍ତୁ ଲେଖକଙ୍କର ପରମ ବନ୍ଧୁ ହରେନ୍ଦ୍ର ଏଥିପାଇଁ ପ୍ରତିବନ୍ଧକ ହୋଇ ଉଠିଲେ । ସେ ସିଧା ଠିଆ ହୋଇ କହିଲେ ଅକ୍ଷୟ ବାବୁଙ୍କର ଏହି ଲେଖା ବିରୁଦ୍ଧରେ ମୁଁ ମୋର ପ୍ରତିବାଦ ଜଣାଉଛି । କେବଳ ଅପ୍ରାସଙ୍ଗିକ ବୋଲି ନୁହେଁ, କୌଣସି ମହିଳାଙ୍କୁ ତାଙ୍କ ପରୋକ୍ଷରେ ଆକ୍ରମଣ କରିବାର ରୀତି ହିଁ ବିଷ୍ଟଲ (ପଶୁତ୍ୱ) ଏବଂ ତାଙ୍କ ଚରିତ୍ରର ଉଲ୍ଲେଖ ଅକାରଣ ଏବଂ ଅଭଦ୍ରୋଚିତ ହୋଇଥାଏ । ନାରୀ କଲ୍ୟାଣ ସମିତି ପକ୍ଷରୁ ଏହି ପ୍ରବନ୍ଧର ଲେଖକଙ୍କୁ ଭର୍ତ୍ସନା କରାଯିବା ଉଚିତ୍ ।

ଏହାପରେ ଗୋଟାଏ ଗୁରୁତର କାଣ୍ଡ ଘଟିଲା । ଅକ୍ଷୟ ହିତାହିତ ଜ୍ଞାନଶୂନ୍ୟ ହୋଇ ଯାହା ଇଚ୍ଛା ତାହା କହିବକୁ ଲାଗିଲେ ଏବଂ ପ୍ରତ୍ୟୁତ୍ତର ଦେବା ପାଇଁ ସ୍ୱଳ୍ପଭାଷୀ ହରେନ୍ଦ୍ର ମଝିରେ ମଝିରେ କେବଳ ବିଷ୍ଟ ଏବଂ ବ୍ରୁଟ କହିବାକୁ ଲାଗିଥିଲା ।

ମାଲତୀ ଦେବୀ ସମ୍ପୂର୍ଣ୍ଣ ନବାଗତା । ହଠାତ୍ ଏହି ପ୍ରକାର ବାକ୍ ବିତଣ୍ଡାରେ ବିପନ୍ନା ହୋଇ ପଡ଼ିଲେ । ଉତ୍ତେଜନା ବଶତଃ ପ୍ରତ୍ୟେକ ଆପଣା ଆପଣାର ମତାମତ

ପ୍ରକାଶ କରିବା ପାଇଁ କାର୍ପଣ୍ୟ କଲେ ନାହିଁ । ଚୁପ ହୋଇ କେବଳ ବସି ରହିଲେ ଆଶୁ-ବାବୁ । ପ୍ରବନ୍ଧ ପାଠ ଆରମ୍ଭରୁ ସେହି ଯେ ମଥା ଟେକି ବସିଥିଲେ, ସଭା ଶେଷ ନ ହୋଇ ଥିଲେ ସୁଦ୍ଧା ସେ ଭ୍ରୂଣ୍ଡ ଫିଟାଇଲେ ନାହିଁ । ତର୍କ ଯୁଦ୍ଧରେ ଅନ୍ୟ ଯେଉଁମାନେ ଯୋଗ ଦେଲେ ସେମାନେ ହେଉଛନ୍ତି ହରେନ୍ଦ୍ର, ଏବଂ ଅକ୍ଷୟଙ୍କର ଆଳାପ ଆଲୋଚନାରେ ନିତ୍ୟ ଅଭ୍ୟସ୍ତ ଅବିନାଶ ବାବୁ ।

ବ୍ୟକ୍ତିବିଶେଷଙ୍କର ଚରିତ୍ରର ଭଲ ମନ୍ଦ ନିରୂପଣ କରିବା ଏହି ସମିତିର ଲକ୍ଷ୍ୟ ନୁହେଁ ଏବଂ ଏହି ପ୍ରକାର ଆଲୋଚନାଦ୍ୱାରା ନର-ନାରୀ କାହାରି ମଧ୍ୟ କଲ୍ୟାଣ ହୁଏ ନାହିଁ—ମାଳିନୀ ଦେବୀ ତାହା ଜାଣନ୍ତି । ବିଶେଷତଃ ଲେଖା ଭିତରେ ଆଶୁବାବୁଙ୍କୁ ମଧ୍ୟ କଟାକ୍ଷ କରାଯାଇଛି । ଏହି କଥା କପରି ଭାବରେ ବୁଝି ପାରିବା ହେତୁ ତାଙ୍କ ମନରେ ଅଶେଷ ଦୁଃଖ ଜାତ ହୋଇଛି । ସଭା ଶେଷ ହେବା ପରେ ମାଳିନୀ ଦେବୀ ନୀରବରେ ନିଜ ଆସନ ଛାଡ଼ି ଏହି ପ୍ରୌଢ଼ ବ୍ୟକ୍ତିଙ୍କ ପାଖକୁ ଆସି ଲଜ୍ଜିତା ହୋଇ ମୃଦୁ କଣ୍ଠରେ କହିଲେ—ଅଯଥାରେ ଆପଣଙ୍କ ଶାନ୍ତି ନଷ୍ଟ କରାଇ ଥିବା ହେତୁ ମୁଁ ଦୁଃଖିତ, ଆଶୁବାବୁ ।

ଆଶୁବାବୁ ହସିବା ପାଇଁ ଚେଷ୍ଟା କରି କହିଲେ—ଘରେ ତ ମୁଁ ଏକାକୀ ବସି ରହି ଥାନ୍ତି । ଯାହାହେଉ ସମୟଟା କଟିଗଲା ।

ମାଳିନୀ ଦେବୀ କହିଲେ—ତାହା ଏହାଠାରୁ ଭଲ ଥିଲା । ଟିକିଏ ଅଟକି ଯାଇ ପୁଣି କହିଲେ—ଆଜି ସେ ନାହାନ୍ତି, ମଣି ଏଠାରେ ଖାଇ ସାରି ଯିବ ।

: ଭଲ କଥା, ମୁଁ ଯାଉଛି ଗାଡ଼ି ପଠାଇ ଦେବି । କିନ୍ତୁ ଆଉ ସବୁ ଝିଅମାନେ ?

: ସେମାନେ ମଧ୍ୟ ଏହିଠାରେ ଖାଇବେ ।

ଅବିନାଶ ବାବୁ ଓ ଅଜିତଙ୍କୁ ସଙ୍ଗରେ ଧରି ଆଶୁବାବୁ ଗାଡ଼ି ଭିତରକୁ ଉଠିବାକୁ ଯାଉଛନ୍ତି ହରେନ୍ଦ୍ର ଓ ଅକ୍ଷୟ ଆସି ଉପସ୍ଥିତ ହେଲେ । ଅନୁରୋଧ କଲେ ସେମାନଙ୍କୁ ପହଞ୍ଚାଇ ଦେବା ପାଇଁ । ରାଜି ହେବାକୁ ପଡ଼ିଲା । ବାଟସାରା କେବଳ ଆଶୁବାବୁ ନୀରବରେ ବସି ରହିଲେ । କମଳକୁ ଉପଲକ୍ଷ କରି ଝିଅମାନଙ୍କ ଆଗରେ ଅକ୍ଷୟ ତାଙ୍କୁ ଅଶ୍ଳୀଳ ଭାବରେ କଟାକ୍ଷ କରିଛି, ଏହି କଥାଟା ତାଙ୍କର ଅନବରତ ମନ ଭିତରେ ଘୂରାଇ ଘୂରାଇ ଉଠୁଥିଲା ।

ଗାଡ଼ି ଆସି ବସାରେ ପହଞ୍ଚିଲା । ତଳ ବାରଣ୍ଡାରେ ଜଣେ ଅପରିଚିତ ଭଦ୍ର ଲୋକ ବସିଥିଲା । ବମ୍ବେଇ ବାଲା ପରି ତାର ପୋଷାକ, ପାଖକୁ ଆସି ଆଶୁବାବୁଙ୍କୁ ଅଭିବାଦନ କଲା ।

: କ'ଣ ?

ଉତ୍ତର ପ୍ରତି ବଦଳରେ ସେ ତାଙ୍କ ହାତକୁ ଖଣ୍ଡିଏ ଚିଠି ବଢ଼ାଇ ଦେଲା ।

ଚିଠି ଖଣ୍ଡିକ ସେ ଅଜିତ ହାତକୁ ବଢ଼ାଇ ଦେଲେ । ଅଜିତ ମଟର ଆଲୁଅରେ ଚିଠିଟି ଖୋଲି କହି ଉଠିଲା—ଏହା କମଳାର ଚିଠି ।

: କମଳାର ? କ'ଣ ଲେଖିଛି ?

: ଲେଖିଛନ୍ତି, ପତ୍ର ବାହକ ମୁହଁରୁ ସମସ୍ତ ଜାଣି ପାରିବେ ।

ଆଶୁବାବୁ ଜିଜ୍ଞାସୁ ନେତ୍ରରେ ତା ମୁହଁକୁ ଚାହିଁବା କ୍ଷଣି ସେ କହିଲା—ଏ ଚିଠି ଆଉ କାହା ହାତରେ ପଡ଼ିବା ତାଙ୍କର ଇଚ୍ଛା ନ ଥିଲା । ଆପଣ ତାଙ୍କର ଆତ୍ମୀୟ—ମୁଁ କିଛି ଟଙ୍କା ପାଇଁ···

କଥାଟା ଶେଷ ହୋଇ ପାରିଲା ନାହିଁ, ଆଶୁବାବୁ ହଠାତ୍ ରାଗି ଉଠି କହିଲେ—ମୁଁ ତାର ଆତ୍ମୀୟ ନୁହେଁ, ପ୍ରକୃତରେ ସେ ମୋର କେହି ନୁହେଁ । ତା ପାଇଁ ମୁଁ ଟଙ୍କା ଦେବାକୁ ଯିବି କାହିଁକି ?

ଗାଡ଼ି ଭିତରେ ରହି ଅକ୍ଷୟ କହିଲେ—Just like her.

କଥାଟା ସମସ୍ତଙ୍କ କାନରେ ବାଜିଲା । ପତ୍ରବାହକ ଅପ୍ରତିଭ ହୋଇ କହିଲା—ଟଙ୍କା ଆପଣଙ୍କୁ ଦେବାକୁ ପଡ଼ିବ ନାହିଁ—ସେ ଦେବେ । ଆପଣ କେବଳ କିଛିଦିନ ପାଇଁ ଜାମିନ ହୋଇ ପାରିଲେ···

ଆଶୁବାବୁଙ୍କର ରାଗ ଆହୁରି ବଢ଼ିଗଲା । କହିଲେ ଜାମିନ ହେବା ପାଇଁ ମୋର ଗରଜ ନାହିଁ । ତାର ସ୍ୱାମୀ ଅଛନ୍ତି, ଯାର କଥା ତାଙ୍କୁ କହୁ ନାହିଁ ?

ଭଦ୍ର ଲୋକ ଅତ୍ୟନ୍ତ ବିସ୍ମିତ ହୋଇ କହିଲେ—ତାର ସ୍ୱାମୀ ଥିବା କଥା ତ ଶୁଣିନାହିଁ !

: ଖବର ନେଲେ ଶୁଣି ପାରିବେ । Good night, ଆସ ଅଜିତ, ଆଉ ଡେରି କର ନାହିଁ । କହି ସେ ତାକୁ ସଙ୍ଗରେ ଧରି ଉପରକୁ ଚାଲିଗଲେ । ଉପରର ବାରଣ୍ଡାରୁ ଡ୍ରାଇଭରକୁ ସ୍ମରଣ କରାଇ କହିଲେ ଯେ ମ୍ୟାଜିଷ୍ଟ୍ରେଟଙ୍କ କୋଠିରେ ଗାଡ଼ି ନେଇ ପହଞ୍ଚିବା ପାଇଁ ସେ ଯେପରି ବିଳମ୍ବ ନ କରେ । ଅଜିତ ସିଧା ତା ଘରକୁ ଚାଲିଯାଉଥିଲା, ଆଶୁବାବୁ ତାକୁ ବୈଠକ ଘରକୁ ଡାକି ଆଣି କହିଲେ ବସ । ମଜା ଦେଖିଲ ତ !

ଏହି କଥାର ଅର୍ଥ କ'ଣ ଅଜିତ ବୁଝି ପାରିଲା । ପ୍ରକୃତରେ ତାର ସ୍ୱାଭାବିକ ସହୃଦୟତା, ଶାନ୍ତପ୍ରିୟତା, ଏବଂ ଚିରାଭ୍ୟସ୍ତ ସହିଷ୍ଣୁତାର ସହିତ ଏହି କ୍ଷଣକ ପୂର୍ବର ଓ ଅଭାବିତ ରୂଢ଼ତା ଏବଂ ଅକ୍ଷୟ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ଆଘାତ କରିବା ପାଇଁ ବାକି ରହି ନ ଥିଲା । କିନ୍ତୁ ନ ଜାଣି ଦିନେ ଏହି ରହସ୍ୟମୟୀ ତରୁଣୀ ପ୍ରତି ଅଜିତର ଅନ୍ତର ସଶ୍ରଦ୍ଧ ବିସ୍ମୟରେ ପୂର୍ଣ୍ଣ ହୋଇ ଉଠିଥିଲା । କିନ୍ତୁ ଯେଉଁଦିନ କମଳ ତା ନିର୍ଜ୍ଜନ ନଶୀଥ

ଗୃହ କକ୍ଷରେ ଏହି ଅପରିଚିତ ପୁରୁଷ ସମ୍ମୁଖରେ ଆପଣାର ବିଗତ ନାରୀ ଜୀବନର ଅସବୃତ ଇତିହାସକୁ ଅବଲୀଳା କ୍ରମରେ ଉଦ୍‌ଘାଟିତ କରିନେଲା ସେହିଦିନ ଠାରୁ ଅଜିତ ମନରେ ପୁଞ୍ଜିଭୂତ ବିସ୍ମୟ ଓ ବିତୃଷ୍ଣାର ଆଉ ଯେପରି ସୀମା ନ ଥିଲା । ଏପରି ଭାବରେ ତାର ଏଇ କେତେଟା ଦିନ କଟିଛି । ସେଥିପାଇଁ ଆଜି ନାରୀକଲ୍ୟାଣ ସମିତିର ଉଦ୍‌ବୋଧନ ଉପଲକ୍ଷରେ ଆଦର୍ଶପତ୍ନୀ ଅକ୍ଷୟ ଆଦର୍ଶ ଏବଂ ନିର୍ଦ୍ଦେଶର ଛଳନାରେ ଯେତେ କଟୂକ୍ତି ଏଇ ସ୍ତ୍ରୀ ଲୋକଟି ପ୍ରତି କରିଥାଉ ନା କାହିଁକି, ଅଜିତ ସେଥିପାଇଁ ଆଦୌ ଦୁଃଖିତ ହୋଇନାହିଁ । ଏପରି ବ୍ୟବହାର ସେ ଯେପରି ଆଶା କରିଥିଲା । ତଥାପି ଅକ୍ଷୟର କ୍ରୋଧାନ୍ଧ ବକ୍ତୃତାରେ ଯେତେ ତୀକ୍ଷ୍ଣ ଶୂଳ ଥାଉନା କାହିଁକି, ଆଶୁବାବୁ ଏଇ ମାତ୍ର ଯାହା କହିଥିଲେ ତାହା ଦ୍ୱାରା ଯେପରି କମଲର କାନ ସେ ମୋଡ଼ି ଦେଲେ । କେବଳ ଅଗ୍ରାବଗ୍ରସ୍ତ ବୋଲି ନୁହେଁ, ବରଂ ତା ସ୍ୱାମୀର ଅଯୋଗ୍ୟ ପଣିଆ ହେତୁ ସେ ଏପରି ପରାଭବ ପାଇଲା । କମଲକୁ ଭଲ ବୋଲି ସେ କହୁ ନାହିଁ । ତା ମତାମତରେ ଏବଂ ସାମାଜିକ ଆଚରଣ ହେତୁ ସେ ନିନ୍ଦିତ ନ ହେବାର କିଛି କାରଣ ଅଜିତ ଦେଖି ପାରୁନାହିଁ । ତା ନିଜ ମଧ୍ୟରେ ମଧ୍ୟ ଏହି ରମଣୀ ବିରୁଦ୍ଧରେ ତୀବ୍ର ଘୃଣା ଭାବ ପରିସ୍ଫୁଟ ହୋଇ ରହିଛି । ତା ମତରେ ଭଦ୍ର ସମାଜରେ ଯିଏ ଅଚଳ, ତାହାକୁ ପରିତ୍ୟାଗ କରିଲେ ଅପରାଧ ସ୍ପର୍ଶ କରେନାହିଁ । କିନ୍ତୁ ତାହା ବୋଲି ଏ କ'ଣ ହେଲା ! ଦୁର୍ଦ୍ଦଶାପନ୍ନା, ଋଣଗ୍ରସ୍ତା ରମଣୀର ଦୁଃସମୟ କାଳରେ ସାମାନ୍ୟ କେତୋଟି ଟଙ୍କାର ଭିକ୍ଷା ପ୍ରତ୍ୟାଖ୍ୟାତ ହେବା ଦ୍ୱାରା ଯେପରି ସମସ୍ତ ପୁରୁଷ ସମାଜ ପ୍ରତି ଚରମ ଅପମାନ ଅଜିତ ଅନୁଭବ କରି ଅନ୍ତର ଭିତରେ ଲଜ୍ଜାରେ ସଢ଼ିଗଲା । ରାତିର ସମସ୍ତ ଆଲୋଚନା ତାର ମନେ ପଡ଼ି-ଗଲା । ତାକୁ ଯତ୍ନ କରି ଖୁଆଇବା ଭିତରେ ମଝିରେ ସ୍ୱାହା ବଗିଚ୍ଛର ଅତୀତ ଘଟଣାର ବର୍ଣ୍ଣନା, ତା ମାଆର କାହାଣୀ, ତା ନିଜର ଇତିହାସ, ଏବଂ ଇଂରେଜ ସାହେବ ଘରେ ଜନ୍ମ ହେବାର ବିବରଣୀ ସେ ସବୁ ଯେପରି ବିସ୍ମୟକର ସେହିପରି ଅରୁଚିକର । କିନ୍ତୁ ଏ ସବୁ କହିବା କଣ ତାର ଅବା ଆବଶ୍ୟକତା ଥିଲା ? ଗୋପନ କରି ରଖିଥିଲେ କ'ଣ ଅବା କ୍ଷତି ହୋଇଥାନ୍ତା ? କିନ୍ତୁ ଦୁନିଆଁର ଏହି ସରଳ ସୁବୁଦ୍ଧିର ଜମା-ଖର୍ଚ୍ଚ ବୋଧହୁଏ କମଲର ମନେ ପଡ଼େ ନାହିଁ । ଯଦି ଅବା ମନେ ପଡ଼ୁଥିବ ତେବେ ହୁଏତ ସେ ତାହାକୁ ଗ୍ରହଣ କରି ପାରୁ ନ ଥିବ ।

ସବୁଠାରୁ ଆହୁରି ବିସ୍ମୟକର ହେଉଛି ତାର ଧୈର୍ଯ୍ୟ । ଦୈବ କ୍ରମେ ତାଙ୍କରି ମୁହଁରୁ ହିଁ ସେ ପ୍ରଥମେ ସମ୍ବାଦ ପାଇଥିଲା ଯେ ଶିବନାଥ କେଉଁଆଡ଼େ ଯାଇ ନାହିଁ । ଏହି ସହରରେ ଆତ୍ମଗୋପନ କରି ରହିଛି । ଶୁଣିକରି ସେ ଚୁପ୍ ରହିଲା । ମୁହଁରେ ବେଦନାର ଆଭାସ ଫୁଟିଲା ନାହିଁ । ତୁଣ୍ଡରୁ ଅଭିଯୋଗର ଭାଷା ବାହାରିଲା ନାହିଁ । ଶିବନାଥର ଏତେବଡ଼ ମିଥ୍ୟାଚରଣ ପାଇଁ ସେ ଅନ୍ୟ କାହା ପାଖରେ ନାଲିଶ କରି ପାରିଲା ନାହିଁ । ସେଦିନ ସମ୍ରାଟ ମହିଷୀ ମମତାଜର ସ୍ମୃତି ସୌଧ ନିକଟରେ ବସି ଯେଉଁ

କଥା ସେ ହସ ହସ ମୁହଁରେ ଉଚ୍ଚାରଣ କରିଥିଲା । ତାହାକୁ ହିଁ ଅକ୍ଷରେ ଅକ୍ଷରେ ପାଳନ କଲି ।

ଅଂଶୁବାବୁ କିଛି ସମୟ ପାଇଁ ବୋଧହୁଏ ଅନ୍ୟମନସ୍କ ହୋଇ ପଡ଼ିଥିଲେ । ହଠାତ୍ ସଚେତନ ହୋଇ ପୂର୍ବ ପ୍ରଶ୍ନର ପୁନରାବୃତ୍ତି କରି କହିଲେ, ମଜ୍ଜା ଦେଖିଲ ତ ଅଜିତ ? ମୁଁ ନିଶ୍ଚିତ ଭାବରେ କହିବି—ଏହା ହେଉଛି ସେହି ଶିବନାଥ ଲୋକଟାର କୌଶଳ ।

ଅଜିତ କହିଲା—ନ ହୋଇ ବି ପାରେ । ନ ଜାଣି କହିହେବ ନାହିଁ ।

: ତାହା ଅବଶ୍ୟ ସତ । ତଥାପି ମୋର ବିଶ୍ୱାସ ଏ ଚାଲ୍ ହେଉଛି ଶିବନାଥର । ମୋତେ ସେ ଧନୀ ବୋଲି ଜାଣେ ।

: ଏ ଖବର ତ ପ୍ରାୟ ସମସ୍ତେ ଜାଣନ୍ତି । କମଳ ଯେ ନିଜେ ନ ଜାଣନ୍ତି ତାହା ମଧ୍ୟ ନୁହେଁ ।

: ତା ହେଲେ ତ ଢେର ବେଶୀ ଅନ୍ୟାୟ । ସ୍ୱାମୀକୁ ଲୁଚାଇ ଏପରି କରିବାଟା ଆଦୌ ଭଲ କାର୍ଯ୍ୟ ନୁହେଁ ।

ଅଜିତ ଚୁପ୍ ହୋଇ ରହିଲା । ଅଂଶୁବାବୁ କହିବାକୁ ଲାଗିଲେ, ସ୍ୱାମୀର ଅଜାଣତରେ, ହୁଏତ ତା ମତ ବିରୁଦ୍ଧରେ ପରଠାରୁ ଟଙ୍କା ଧାର କରିବାକୁ ଯିବା ଜଣେ ସ୍ତ୍ରୀ ଲୋକ ପକ୍ଷରେ କେତେ ବଡ଼ ଖରାପ କାର୍ଯ୍ୟ କୁହତ ? ଏହାକୁ କୌଣସି ମତେ ପ୍ରଶ୍ରୟ ଦେବା ଉଚିତ ନୁହେଁ ।

: ସିଏ ଟଙ୍କା ତ ମାଗି ନଥିଲେ, କେବଳ ଆପଣଙ୍କୁ ଜାମିନ ହେବା ପାଇଁ ଅନୁରୋଧ କରିଥିଲେ ।

: ଏକ କଥା କହିଲେ ଚଳେ । କ୍ଷଣକ ପାଇଁ ଚୁପ୍ ରହିବା ପରେ ପୁଣି କହିଲେ—ଆଉ ମୋତେ ଆତ୍ମୀୟ ବୋଲି ଛଳନା କରିବାରେ ତାତ୍ପର୍ଯ୍ୟ କ'ଣ ଅବା ଥିଲା ? ପ୍ରକୃତରେ ତ ମୁଁ ତାର ଆତ୍ମୀୟ ନୁହେଁ ।

: ସେ ହୁଏତ ଆପଣଙ୍କୁ ପ୍ରକୃତରେ ଆତ୍ମୀୟ ବୋଲି ମନେ କରନ୍ତି । ବୋଧହୁଏ ଛଳନା କରିବା ତାଙ୍କର ସ୍ୱଭାବ ନୁହେଁ ।

: ନା, ନା, କଥାଟା ଠିକ୍ ଏହିଭାବରେ ମୁଁ କହିନାହିଁ ଅଜିତ । ଏହି କଥା କହି ସେ ନିଜ ତରଫକୁ ସଫେଇ ଦେଲେ । ସେହି ଲୋକଟାକୁ ହଠାତ୍ ଗୋଟାଏ ଝୁଙ୍କରେ ପଡ଼ି ବିଦାୟ କରିଦେବା ପରଠାରୁ ତାଙ୍କ ମନରେ ଗ୍ଳାନିର ଝଡ ବହିଚାଲିଥାଏ । କହିଲେ—ସେ ଯଦି ମୋତେ ଆତ୍ମୀୟ ବୋଲି ଜାଣେ, ଆଉ ଦୁଇ, ପାଞ୍ଚଶହ ଟଙ୍କା ଯଦି ଦରକାର ପଡ଼ିଥିଲା ସିଧା ଆସି ନେଇ ଯାଇଥିଲେ ତ ଚଳିଥାନ୍ତା । ଗୋଟାଏ ବାହାର ଲୋକକୁ ଏପରି ଭାବରେ ସମସ୍ତଙ୍କ ଆଗରେ ପଠାଇବାର ତାର କି ଆବଶ୍ୟକତା ଥିଲା ? ଆଉ ଯାହା କହ, ଝିଅଟାର ବୁଦ୍ଧି ବିଚାର ବୋଲି କିଛି ନାହିଁ ।

ଗ୍ରୁକରର ଆଖି ଖାଇବା ବଢ଼ା ହେଲଣି ବୋଲି ଖବର ଦେଇ ଗ୍ରୁଲିଗଲା । ଅଜିତ ଉଠିବା ପାଇଁ ଯାଉଥିଲା ଆଶୁବାବୁ କହିଲେ—ଲୋକଟାକୁ ମାର୍ଜ କରିଥିଲ ଅଜିତ ? କ କଦର୍ଯ୍ୟ ଚେହେରା ? ମନ-ଲେଣ୍ଡାର କନା ? ଫେର ମାଉ ହୁଏତ ଏଣୁ ତେଣୁ କେତେ କଥା ବନେଇ ଚୁନେଇ କର କହିବ ।

ଅଜିତ ହସିଦେଇ କହିଲା—ବନେଇ କର କହିବା ଦରକାର ପଡ଼ିବ ନାହିଁ । ସତ କଥା ହିଁ କହି ପାରିଲେ ଯଥେଷ୍ଟ ହେବ । ଏହା କହି ଯିବାକୁ ଉଦ୍ୟତ ହେଉଥିଲା, ହଠାତ୍ ଆଶୁବାବୁ ବିଚଳିତ ହୋଇ ଉଠିଲେ । କହିଲେ—ଏହି ଅକ୍ଷୟ ଲୋକଟା ଯାହାକୁ କହନ୍ତି ଏକବାରେ ନୁଇସେନ୍‌ସ । ମନୁଷ୍ୟର ସହ୍ୟ କରିବାର ସୀମା ଅତିକ୍ରମ କରିଯାଏ । ନ ହେଲେ ଗୋଟାଏ କାମ କରନ୍ତ ଅଜିତ୍ । ଯଦୁକୁ ଡାକ ସେ ପାଖ ଡ୍ରୟାରଟା ଖୋଲି ଦେଖିତ କ'ଣ କିଛି ଥିବ । ଅନ୍ତତଃ ପାଞ୍ଚ-ସାତଶହ ଟଙ୍କା, ଆପାତତଃ ଯାହା ଥିବ ପଠାଇ ଦିଅ । ଆମ ଡ୍ରାଇଭର ବୋଧହୁଏ ତା ବସାଟା ଚିହ୍ନିଛି । ଶିବନାଥଙ୍କୁ ମଦିରେ ମଦିରେ ନେଇ ଘୁଞ୍ଚ ଦେଇ ଆସିଛି । ଏହା କହି ସେ ନିଜେ ବଡ଼ ପାଟିରେ ଗ୍ରୁକରଙ୍କୁ ଡାକିବା ଆରମ୍ଭ କରିଦେଲେ ।

ଅଜିତ ବାଧା ଦେଇ କହିଲା—ଯାହା ହେବାର କଥା ତା ହୋଇ ଯାଇଛି । ଆଜି ରାତିରେ ଥାଉ, କାଲି ସକାଳେ ବିଚାର କରି ଦେଖିଲେ ଭଲ ହେବ ।

ଆଶୁବାବୁ ପ୍ରତିବାଦ କରି କହିଲେ—ତୁମେ ବୁଝିପାରୁନ ଅଜିତ । ସେପରି କିଛି ଜରୁରୀ ଦରକାର ନ ଥିଲେ ସେ କଦାପି ରାତିରେ ଲୋକ ପଠାଇ ନ ଥାନ୍ତା ।

ଅଜିତ କିଛି ସମୟ ସ୍ଥିର ଭାବରେ ଠିଆ ହୋଇ ରହିଲା । ଶେଷରେ କହିଲା—ଡ୍ରାଇଭର ଘରେ ନାହିଁ । ମନୋରମାଙ୍କୁ ଧରି କେତେବେଳେ ଫେରିବ ତାର ଠିକଣା ନାହିଁ । ଇତି ମଧ୍ୟରେ କମଲ ସବୁକଥା ଶୁଣି ସାରିଥିବ । ତାପରେ ଆଉ ଟଙ୍କା ପଠାଇବାଟା ଉଚିତ୍ ହେବ ନାହିଁ । ବୋଧହୁଏ ଆଉ ଆପଣଙ୍କ ହାତରୁ ସେ ସାହାଯ୍ୟ ଗ୍ରହଣ କରିବ ନାହିଁ ।

: କିନ୍ତୁ ଏସବୁ ତ ତୁମର ଅନୁମାନ ମାତ୍ର, ଅଜିତ ।

: ହଁ, ଅନୁମାନ ନୁହେଁ ତ ଆଉ କ'ଣ ହୋଇପାରେ ?

: କିନ୍ତୁ ବିଦେଶ ସ୍ଥାନରେ ଟଙ୍କାର ଆବଶ୍ୟକତା ତୁମ ଅନୁମାନଠାରୁ ଅଧିକ ହୋଇପାରେ ?

: ତାହା ହୋଇପାରେ, ବରଂ ଆତ୍ମମର୍ଯ୍ୟାଦାଠାରୁ ବଡ଼ ହୋଇପାରେ ।

: ଏହା ମଧ୍ୟ ତୁମର ଅନୁମାନ ମାତ୍ର ।

ଅଜିତ ହଠାତ୍ ଉତ୍ତର ଦେଲା ନାହିଁ । କ୍ଷଣକ ପରେ ମୁହଁ ତଳକୁ କରି ରହି କହିଲା—ନା, ଏହା ମୋର ଅନୁମାନଠାରୁ ଅଧିକ । ଏହା ମୋର ବିଶ୍ୱାସ । ଏହା କହି ସେ ଧୀରେ ଧୀରେ ଘରୁ ବାହାରି ଗ୍ରୁଲିଗଲା ।

ଅଶୁବାବୁ ଆଉ ତାଙ୍କୁ ପଛରୁ ଡାକଲେ ନାହିଁ । କେବଳ ବେଦନାରେ ଦୁଇ ଚକ୍ଷୁ ପ୍ରସାରିତ କରି ସେହି ଦିଗକୁ ଚାହିଁ ରହିଲେ । କମଳ ସମ୍ପର୍କରେ ଏପରି ବିଶ୍ୱାସ ଅସମ୍ଭବ ନୁହେଁ, କିମ୍ବା ଅସଙ୍ଗତ ମଧ୍ୟ ନୁହେ । ଏହା ସେ ନିଜେ ଜାଣନ୍ତି । ନିରୁପାୟ ଅନୁଶୋଚନାରେ ଗୁପ୍ତ ଭିତରଟା ଯେପରି ତାଙ୍କର କୋଣ ହେବାକୁ ଲାଗିଲା ।

ନାରୀ କଲ୍ୟାଣ ସମିତିରୁ ଫେରି ନୀଳିମା ଅବିନାଶ ବାବୁଙ୍କୁ ଧରି ପକାଇ କହିଲା— ମୁଖାର୍ଜ୍ଜୀ ମହାଶୟ, କମଳକୁ ମୁଁ ଥରେ ପାଇଁ ଦେଖିବି । ମୋର ଭାରି ଇଚ୍ଛା ହେଉଛି ତାଙ୍କୁ ଦିନେ ଆମ ଘରକୁ ଖାଇବା ପାଇଁ ନିମନ୍ତ୍ରଣ କରନ୍ତୁ ।

ଅବିନାଶ ଆଶ୍ଚର୍ଯ୍ୟ ହୋଇ କହିଲେ—ତୁମର ତ କମ୍ ସାହସ ନୁହେଁ, ଶ୍ରେଷ୍ଠ ଘରଣୀ ! କେବଳ କଥାବାର୍ତ୍ତା ନୁହେଁ, ଏକବାରେ ଖାଇବା ପାଇଁ ନିମନ୍ତ୍ରଣ !

: କାହିଁକି ସେ କ'ଣ ବାଘ ନା ଭାଲୁ ? ତାଙ୍କୁ ଏତେ ଭୟ କାହିଁକି ?

: ବାଘ ଭାଲୁ ଏ ଦେଶରେ ନାହାନ୍ତି । ନଚେତ୍ ତୁମ ହୁକୁମ ପାଇଲେ ସେମାନଙ୍କୁ ମଧ୍ୟ ନିମନ୍ତ୍ରଣ କରି ଆଣି ପାରନ୍ତି । କିନ୍ତୁ ତାଙ୍କୁ ନୁହେଁ । ଅକ୍ଷୟ ଖବର ପାଇଲେ ଆଉ ରକ୍ଷା ମିଳିବ ନାହିଁ । ସେ ମୋତେ ଦେଶତ୍ୟାଗୀ କରାଇ ଦେବ ।

: ଅକ୍ଷୟ ବାବୁଙ୍କୁ ମୁଁ ଭୟ କରେ ନାହିଁ ।

: ତୁମେ ନ କରିଲେ କିଛି କ୍ଷତି ନାହିଁ । ମୁଁ ଏକା କରିଲେ ହିଁ ତାର କାର୍ଯ୍ୟ ହୋଇ ଯିବ ।

ନୀଳିମା କ୍ରୁଦ୍ଧ ସ୍ୱରରେ କହିଲା—ନା, ତାହା ହେବ ନାହିଁ । ତୁମେ ଯଦି ନିଜେ ନ ଯିବ ତେବେ ମୁଁ ଯାଇ ତାଙ୍କୁ ନିମନ୍ତ୍ରଣ କରି ଆସିବି ।

: କିନ୍ତୁ ମୁଁ ତା ବସାଟା ଚିହ୍ନି ନାହିଁ ।

: ମୋ ଦେଅର ହରେନ୍ଦ୍ର, ତୁମ ସାନଭାଇ, ତାଙ୍କୁ ଚିହ୍ନିଛନ୍ତି । ମୁଁ ତାଙ୍କୁ ସଙ୍ଗରେ ନେଇକରି ଯିବି । ସେ ତୁମଭଳି ଭୟାଳୁ ନୁହଁନ୍ତି ।

ଟିକିଏ ଚିନ୍ତା କରି ନୀଳିମା କହିଲା—ତୁମମାନଙ୍କଠାରୁ ଯାହା ଶୁଣିଲି ସେଥିରେ ସବୁ ଦୋଷ ଶିବନାଥବାବୁଙ୍କର । ତାଙ୍କୁ ତ ମୁଁ ନିମନ୍ତ୍ରଣ କରିବା ପାଇଁ ଚାହୁଁ ନାହିଁ । ମୁଁ ଚାହେଁ କମଳକୁ ଦେଖିବା ପାଇଁ, ତା ସଙ୍ଗେ ଆଳାପ କରିବା ପାଇଁ । କମଳ ଯଦି

ଆସିବାକୁ ଶୁଣୁ ହୁଏ, ତେବେ ମ୍ୟାକକ୍ରେଞ୍ଚ ସାହେବଙ୍କର ସ୍ତ୍ରୀ, ସେ ମଧ୍ୟ କହୁଛନ୍ତି ଆସିବେ । କ'ଣ ବୁଝି ପାରିଲ ?

ଅବନାଶ ବାବୁ ସବୁ ବିଷୟ ବୁଝି ପାରିଲେ । କିନ୍ତୁ ସ୍ପଷ୍ଟ ଭାବରେ ସମ୍ମତ ଦେଇ ପାରିଲେ ନାହିଁ କିମ୍ବା ମନା କରିବା ପାଇଁ ସାହସ ମଧ୍ୟ କରି ପାରିଲେ ନାହିଁ । ନଳିମାକୁ ସେ କେବଳ ଶ୍ରଦ୍ଧା ଓ ସ୍ନେହ କରନ୍ତି ତାହା ନୁହେଁ ମନେ ମନେ ମଧ୍ୟ ଭୟ କରନ୍ତି ।

ପର ଦିନ ହରେନ୍ଦ୍ରକୁ ଡକାଇ ନଳିମା କହିଲା, ମୋ ସୁନା ଦିଅରଟି ପରା, ତୁମକୁ ଗୋଟିଏ କାମ କରିବାକୁ ପଡ଼ିବ । ତୁମେ ବୁଢ଼ା ମଣିଷ । ଘରେ ସ୍ତ୍ରୀ ନାହିଁ ଯେ ସଦାବେଳେ ନାମ କରି ତୁମର କାନ ମୋଡ଼ି ଦେବ ? କେବଳ ମାଆ-ବାପ ଛେଉଣ୍ଡ ଗୁଡ଼ିଏ ପିଲାଙ୍କୁ ବସାରେ ରଖି ପଢ଼ାଉଛ । ତେଣୁ ତୁମର ଅବା ଭୟ ହେବ କେଉଁଥିପାଇଁ ?

ହରେନ୍ଦ୍ର କହିଲା—ଭୟ କଥା ଉଠିବ ପରେ । କିନ୍ତୁ କି କାମ କରିବାକୁ ପଡ଼ିବ ?

ନଳିମା କହିଲା—କମଲକୁ ମୁଁ ଟିକିଏ ଦେଖିବା ପାଇଁ ଚାହୁଁଛି । ତା ସହିତ କଥାବାର୍ତ୍ତା କରିବି । ଘରକୁ ଡାକି ଆଣି ଖୁଆଇବି । ତୁମେ କୁଆଡ଼େ ତା ବସା ଦେଖିଛ ? ମୋତେ ସାଙ୍ଗରେ ନେଇ ତାକୁ ନିମନ୍ତ୍ରଣ କରି ଆସିବାକୁ ହେବ । କେତେବେଳେ ଯାଇ ପାରିବ କୁହତ ?

: ଯେତେବେଳେ ହୁକୁମ କରିବେ । କିନ୍ତୁ ଘରର ମାଲିକ ? ମାନେ ଭାଇ ? ତାଙ୍କର ଅଭିପ୍ରାୟ କ'ଣ ? ଏହା କହି ବରଣ୍ଡା ସେପାଖରେ ବସିଥିବା ଅବନାଶଙ୍କୁ ଇଙ୍ଗିତ କରି ଦେଖାଇ ଦେଲା । ସେ ଆରାମ ଚୌକିରେ ଶୋଇ "ପାଇନିୟୋର" ପଢ଼ୁଥିଲେ । ଶୁଣି ପାରିଲେ ସବୁ । କିନ୍ତୁ କିଛି ଉତ୍ତର ଦେଲେ ନାହିଁ ।

ନଳିମା କହିଲା—ତାଙ୍କ ଅଭିପ୍ରାୟ ଧରି ବସିଏ ଥାନ୍ତୁ । ମୋର ସେଥିରେ ଯାଏ ଆସେ ନାହିଁ । ମୁଁ ତାଙ୍କ ଶାଳୀର ଭଉଣୀ ନୁହେଁ ଯେ ପଦେ ପରମ ଗୁରୁ ଗଦା ଘୁରାଇ ସେ ମୋତେ ଶାସନ କରି ବସିବେ । ମୁଁ ଯାହାକୁ ଇଚ୍ଛା ତାକୁ ଡାକି ଖୁଆଇ ପାରିବି । ମାକକ୍ରେଞ୍ଚଙ୍କ ସ୍ତ୍ରୀ କହିଛନ୍ତି ଖବର ପାଇଲେ ସେ ମଧ୍ୟ ଆସିବେ । ତାଙ୍କୁ ଯଦି ଭଲ ନ ଲାଗିବ ତେବେ ସେହି ସମୟତକ ସେ ଘରେ ନ ରହି ଅନ୍ୟ କେଉଁଠାରେ କଟାଇ ଦେଇ ଆସିବେ ।

ଅବନାଶ କାଗଜ ଉପରୁ ମୁହଁ ଉଠାଇ କହିଲା—କିନ୍ତୁ କାର୍ଯ୍ୟଟା ଠିକ୍ ହେବ ନାହିଁ ହରେନ୍ । ଗତ କାଲିର ଘଟଣାଟା ମନେ ଅଛି ତ ? ଆଶୁବାବୁଙ୍କ ଭଳି ସଦାଶିବ ଲୋକଟିକୁ ମଧ୍ୟ ସାବଧାନ ହେବାକୁ ପଡ଼ିଲା ।

ହରେନ୍ଦ୍ର ଉତ୍ତର ଦେଲା ନାହିଁ । ଏ କାଳେ ସେହି ଲକ୍ଷ୍ୟକର କଥାଟା ଉଠ ପାରେ ଏବଂ ନୀଳମାର କାନକୁ ଚାଲିଯାଇ ପାରେ ସେହି ଭୟରେ ସେ ଶୀଘ୍ର ପ୍ରସଙ୍ଗଟାକୁ ଚାପି ଦେଇ କହିଲା ତା ଅପେକ୍ଷା ଆଉ ଗୋଟାଏ କାମ କରନ୍ତୁ ନୂଆବୋଉ । ମୋ ବସାକୁ ତାଙ୍କୁ ନିମନ୍ତ୍ରଣ କରି ଆଣନ୍ତୁ । ଆପଣ ହେବେ ଗୃହକର୍ତ୍ତ୍ରୀ । ଲକ୍ଷ୍ମୀଛଡ଼ା ଘରେ ଧନକ ପାଇଁ ହେଲେ ଲକ୍ଷ୍ମୀଙ୍କର ଆବିର୍ଭାବ ହୋଇ ପାରିବ ତ ? ମୋ ପିଲା ଗୁଡ଼ାକ ଧନଟିଏ ହେଲେ ଭଲ ମନ୍ଦ ଜିନିଷ ଟିକିଏ ପାଟିରେ ଦେଇ ପାରିବେ ।

ନୀଳମା ଅଭିମାନ ସ୍ୱରରେ କହିଲା—ବେଶ୍ । ତାହାହିଁ ହେଉ । ଆଉ ମୁଁ ମଧ୍ୟ ଭବିଷ୍ୟତରେ ଖୁଣ୍ଟା ଖାଇବାରୁ ବଞ୍ଚିଯାଇ ପାରିବି ।

ଅବିନାଶ ବାବୁ ଉଠି ବସି ପଡ଼ି କହିଲେ—ତାହା ହେଲେ ଆଉ ଅପବାଦର ଆଶଙ୍କା ରହିବ ନାହିଁ । ଶିବନାଥଙ୍କୁ ବାଦ୍ ଦେଇ ତାଙ୍କୁ ତୁମ ବସାକୁ ଡାକିଥିବା ହେତୁ କୌଣସି କୈଫିୟତ ଦେବାକୁ ପଡ଼ିବ ନାହିଁ । ତା ଅପେକ୍ଷା ବରଞ୍ଚ ସ୍ତ୍ରୀମାନେ ପରସ୍ପର ଭିତରେ ଚାଲି ପରିଚିତ ହେବାକୁ ଚାହାନ୍ତି—ଏହା କହିଲେ କାନକୁ ବେଶ ଭଲ ଶୁଣାଯାଇ ପାରିବ ।

କଥାଟା ପ୍ରକୃତରେ ଯୁକ୍ତିସଙ୍ଗତ । ତେଣୁ ଏହା ସ୍ଥିର ହେଲା ଯେ କଲେଜ ଛୁଟି ହେବା ପରେ ପରେ ହରେନ୍ଦ୍ର ଗାଡ଼ି କରି ନୀଳମାକୁ ସଙ୍ଗରେ ଧରି କମଳଙ୍କୁ ନିମନ୍ତ୍ରଣ କରି ଆସିବ ।

ଓପର ଓଳି ହରେନ୍ଦ୍ର ଆସି କହିଲା ଯେ କଷ୍ଟ କରି ଆଉ ଯିବାର ଆବଶ୍ୟକତା ନାହିଁ । ତାଙ୍କୁ ଖାଇବା କଥା ବୁଝାଯାଇଛି ଏବଂ ସେ ଆସିବା ପାଇଁ ରାଜି ହୋଇଛନ୍ତି ।

ନଳୀମା ଉତ୍ସୁକ ହୋଇ ଉଠିଲା । ହରେନ୍ଦ୍ର କହିବାକୁ ଲାଗିଲା—ଫେରିବା ବାଟରେ ରାସ୍ତାରେ ହଠାତ୍ ତାଙ୍କ ସହିତ ଦେଖା ହୋଇଗଲା । ସଙ୍ଗରେ କୁଲି ମୁଣ୍ଡରେ ଗୋଟାଏ ବଡ଼ ଟ୍ରଙ୍କ ବାକ୍ସ । ପଚାରିଲି—ଏଇଟା କ'ଣ ? କୁଆଡ଼େ ଯାଉଛନ୍ତି ? କହିଲେ—ଟିକିଏ କାମରେ ଯାଉଛି । ସେତେବେଳେ ଆପଣଙ୍କ ପରିଚୟ ଦେଇ କହିଲି—ନୂଆଁଉ ଯେ କାଲି ସନ୍ଧ୍ୟାରେ ଆପଣଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କରିଛନ୍ତି । ସ୍ତ୍ରୀ ଲୋକମାନଙ୍କର ବ୍ୟାପାର । ତେଣୁ ନିଶ୍ଚୟ ଆସିବାକୁ ପଡ଼ିବ । ଟିକିଏ ଚୁପ୍ ହୋଇ ରହିବା ପରେ କହିଲେ—ଆଚ୍ଛା । କହିଲି—କଥାଥିଲା ନୂଆଁଉ ମୋତେ ସଙ୍ଗରେ ଧରି ଆପଣଙ୍କ ବସାକୁ ଯାଇ ଯଥାରୀତି ନିମନ୍ତ୍ରଣ କରି ଆସିବା ପାଇଁ । କିନ୍ତୁ ତାହାର ଆଉ ପ୍ରୟୋଜନ ଅଛି କି ? ସାମାନ୍ୟ ଟିକିଏ ହସି ଦେଇ ସେ କହିଲେ—ନା । ପଚାରିଲି—ଏକାକୀ ତ ଯାଇ ପାରିବେ ନାହିଁ, କାଲି କେତେବେଳକୁ ଆସି ଆପଣଙ୍କୁ ନେଇ ଯାଇ ପାରିବି ? ଶୁଣିକରି ସେହିପରି ହସିବାକୁ ଲାଗିଲେ । କହିଲେ—ଏକାକୀ ଯାଇ ପାରିବି । ମୁଁ ଅବିନାଶବାବୁଙ୍କ ବସା ଚିହ୍ନିଛି ।

ନୀଳିମା ନରମି ଯାଇ କହିଲା—ହିଁ ଅଛି କିନ୍ତୁ ଏ ଦିଗରୁ ଯଥେଷ୍ଟ ଭଲ । ଅତି ନିରହଂକାରୀ ।

ପାଖ ଘରେ ଅବିନାଶ ବାବୁ ଲୁଗା ପାଲଟୁ ପାଲଟୁ ସବୁ ଶୁଣିପାରୁ ଥିଲେ । ଭିତରୁ ଥାଇ ପ୍ରଶ୍ନ କଲେ—ଆଉ କୁଳି ମୁଣ୍ଡରେ ଥିବା ସେହି ବାକ୍‌ସଟା ? ତା ଇତିହାସ ତ ଆଉ କହିଲ ନାହିଁ ?

ନରେନ୍ଦ୍ର କହିଲା—ପଚାରି ପାରିନାହିଁ ।

: ପଚାରିଥିଲେ ଭଲ ହୋଇ ଥାନ୍ତା । ବୋଧହୁଏ ବନ୍ଧକ କରିବା ପାଇଁ କିମ୍ବା ବନ୍ଧକ ଦେବା ପାଇଁ ନେଇ ଯାଉଥିଲେ ।

: ହୋଇ ପାରିଥାଏ । ଆପଣଙ୍କ ନିକଟରେ ବନ୍ଧକ ଦେବାକୁ ଆସିଲେ ଘଣ୍ଟାଟା ପଚାରି ବୁଝି ନେବ । ଏହା କହି ସେ ଚାଲି ଯାଉଥିଲା—ହଠାତ୍ ଦୁଆର ନିକଟରେ ଠିଆ ହୋଇ ଫେରିପଡ଼ି କହିଲା—ନୂଆ'ଉ ଆପଣଙ୍କ ନାରୀ କଲ୍ୟାଣ ସମିତିରେ ଅକ୍ଷୟର ବକ୍ତୃତା ଶୁଣିଛ ତ ? ମୁଁ ଲୋକଟାକୁ ବ୍ରୁଟ୍ ବୋଲି କହେ । କିନ୍ତୁ ସେହି ବିଷୟର ସାମାନ୍ୟ ବୁଦ୍ଧି ଥିଲେ ସେ ସମାଜରେ ଅନାୟାସରେ ବାବୁ ଅବା ସଜ୍ଜନ ବୋଲି ଚଳିଯାଇ ପାରନ୍ତା । କ'ଣ କହୁଛ ? ଠିକ ନା ?

ଅବିନାଶ ଘର ଭିତରୁ ଗର୍ଜନ କରି କହି ଉଠିଲେ—ହଁରେ ନିତ୍ୟାନନ୍ଦ, ଶ୍ରୀ ଗୌରାଙ୍ଗ ମହାପ୍ରଭୁ । ଏ ବିଷୟରେ ଆଉ ସନ୍ଦେହ ନାହିଁ । ଦନ୍ଦୁ ବରକୁ ଟିକିଏ କୌଶଳ ଯାଇ ଶିଖାଇ ଦେଇ ଆସ ।

: ଚେଷ୍ଟା କରିବି । କିନ୍ତୁ ଯାଉଛି ନୂଆ'ଉ । କାଲି ଆସି ଯଥା ସମୟରେ ପହଞ୍ଚିବି । କହି ସେ ଚାଲିଗଲା ।

ନୀଳିମା କୌଣସି ପ୍ରକାର ଆୟୋଜନ କରିବାରେ ତ୍ରୁଟି କରିନଥିଲା । ମନୋରମା ଆରମ୍ଭରୁ କମଳର ବିରୋଧୀ । ତେଣୁ ସେ ଆସିବ କି ନାହିଁ ସବୁ ଆଶୁବାବୁ ପ୍ରଭୃତିଙ୍କୁ ବୁଝାଯାଇ ନାହିଁ । ମାଳିନୀ ପାଖକୁ ଖବର ପଠା ହୋଇଥିଲା । କିନ୍ତୁ ସେ ହଠାତ୍ ଅସୁସ୍ଥ ହୋଇ ପଡ଼ିବାରୁ ଆସିଲେ ନାହିଁ ।

ଠିକ୍ ସମୟରେ କିନ୍ତୁ କମଳ ଆସି ପହଞ୍ଚିଲା । ଯାନ ବାହାନ ନାହିଁ । ଏକାକିନୀ ପାଦରେ ଚାଲି ଚାଲି ଆସି ପହଞ୍ଚିଲା । ଗୃହକର୍ତ୍ତ୍ରୀ ତାକୁ ଆଦର ଅଭ୍ୟର୍ଥନା କରି ପାଛୋଟି ନେଲେ । ଅବିନାଶ ବାବୁ ଆଗରେ ଠିଆ ହୋଇଥିଲେ । କମଳକୁ ସେ ଅନେକଦିନ

ହେବ ଦେଖି ନାହାଁନ୍ତି । ଅନ୍ତ ତାହାର ଚେହେରା ଓ ଲୁଗାପଟା ପ୍ରତି ଦୃଷ୍ଟି ଦେଇ ଆଶ୍ଚର୍ଯ୍ୟ ହୋଇଗଲେ । ଦୈନ୍ୟର ଛାପ ତାହିଁରେ ସୁସ୍ପଷ୍ଟ ହୋଇ ଫୁଟି ଉଠୁଛି । ବିସ୍ମିତ ହୋଇ ପଚାରିଲେ—ରାତିରେ ଏକୋଡ଼ି ଚାଲି ଆସିପାରିଲ କମଳ ?

କମଳ କହିଲା—କାରଣ ଅତି ସରଳ ଅବିନାଶ ବାବୁ । ବୁଝିବା ପାଇଁ ଆଦୌ କଷ୍ଟକର ନୁହେଁ ।

ଅବିନାଶ ବାବୁ ଅପ୍ରତିଭ ହୋଇ ପଡ଼ିଲେ । ଏବଂ ତାହାଙ୍କୁ ଗୋପନ କରିବା ପାଇଁ ଯାଇ ଶୀଘ୍ର କହି ଉଠିଲେ—ନା, ନା, ସେପରି କଥା କ'ଣ କହୁଛ ? ଏହା କିଛି ଭଲ ହେଲା ନାହିଁ । ନୀଳମା ଏ ହେଉଛନ୍ତି କମଳ । ଆଉ ଗୋଟାଏ ନାମ ତାଙ୍କର ଶିବାନୀ । ଏହାଙ୍କୁ ଦେଖିବା ପାଇଁ ପରା ବ୍ୟସ୍ତ ହୋଇ ପଡ଼ିଥିଲ ? ଘର ଭିତରକୁ ଡାକି ନେଇ ବସାଅ । ସବୁ ବନ୍ଦୋବସ୍ତ ତୁମର ବୋଧହୁଏ ହୋଇ ସାରିଛି । ଅଯଥା ଡେରି କରି କିଛି ଲାଭ ହେବ ନାହିଁ । ଠିକ୍ ସମୟରେ ବସାକୁ ଫେରି ଯିବାଟା ତାଙ୍କ ପକ୍ଷରେ ଉଚିତ ହେବ ।

ଏ ସମସ୍ତ ଉପଦେଶ ହିଁ ଅନେକଟା ପ୍ରାୟ ବାହୁଲ୍ୟ ମାତ୍ର । ଉତ୍ତରର ଆବଶ୍ୟକ ପଡେ ନାହିଁ । ପ୍ରତ୍ୟାଶା ମଧ୍ୟ ନ ଥାଏ ।

ହରେନ୍ଦ୍ର ଆସି କମଳକୁ ନମସ୍କାର କଲା । କହିଲା—ଅତିଥିଙ୍କୁ ଅଭ୍ୟର୍ଥନା କରି ପାଛୋଟି ନେବା ସମୟରେ ପହଞ୍ଚି ପାରି ନ ଥିବାରୁ ଭୁଲ୍ ହୋଇ ଯାଇଛି ନା ଆଉ । ଅକ୍ଷୟ ଆସିଥିଲା, ତାହାକୁ ଯଥୋଚିତ ମିଠାକଥାରେ ତୁଷ୍ଟ କରି ବିଦାୟ ଦେବାକୁ ବିଳମ୍ବ ହେଲା । ଏହା କହି ସେ ହସିବାକୁ ଲାଗିଲା ।

ଭିତରକୁ ଆସି କମଳ ଆହାର୍ଯ୍ୟ ଦ୍ରବ୍ୟର ପ୍ରାଚୁର୍ଯ୍ୟ ଦେଖି ମୁହୂର୍ତ୍ତିକ ପାଇଁ ନୀରବ ରହି କହିଲା, ମୁଁ ତ ଖାଇ କରି ଆସିଛି । ତାପରେ ଏ ସବୁ ତ ମୁଁ ଖାଏ ନାହିଁ ।

ସମସ୍ତେ ବ୍ୟସ୍ତ ହୋଇ ଉଠିବାର ଦେଖି ସେ ପୁଣି କହିଲା—ଆପଣମାନେ ଯାହାକୁ ହବିଷ୍ୟାନ୍ନ କହନ୍ତି – ମୁଁ ତାହାହିଁ କେବଳ ଖାଇଥାଏ ।

ଏହା ଶୁଣି ନୀଳମା ଅବାକ୍ ହୋଇ ଉଠି କହିଲା—ସେ କିପରି କଥା ! ଆପଣ କେଉଁ ଦୁଃଖ ପାଇଁ ହବିଷ୍ୟାନ୍ନ ଖାଇବାକୁ ଯିବେ ?

କମଳ କହିଲା—ତାହା ଅବଶ୍ୟ ଠିକ୍ । ଦୁଃଖ ଯେ ନାହିଁ ତାହା ନୁହେଁ । ଏସବୁ ମୁଁ ଖାଏନା ବୋଲି ମୋର ଅଭାବ ଖୁବ୍ କମ୍ । ଆପଣ କିନ୍ତୁ କିଛି ଏଥିପାଇଁ କିଛି ମନେ କରିବେ ନାହିଁ ।

: ଆପଣ ନ ଖାଇଲେ ଏତେ ଜିନିଷ ନଷ୍ଟ ହେବନିନା ?

ନୀଳମା ହସି ଦେଇ କହିଲା—ଯାହା ହେବାର ତାହା ହୋଇ ଯାଇଛି । ତାହା ତ ଆଉ ଫେରିବ ନାହିଁ । ତା ଉପରେ ଆହୁରି ଖାଇ ଆପେ ନଷ୍ଟ ହେବ କାହିଁକି ?

ନୀଳିମା କାତର ହୋଇ ଶେଷ ଚେଷ୍ଟା କରି କହିଲା—କେବଳ କ'ଣ ଆଜି ଗୋଟାଏ ଦିନ ପାଇଁ ନିୟମ ଭଙ୍ଗ କରି ପାରିବ ନାହିଁ ?

କମଳ ମୁଣ୍ଡ ହଲାଇ କହିଲା—ନା ।

ତା ହସ ହସ ମୁହଁରୁ ସେହି ଗୋଟିଏ ମାତ୍ର ଶବ୍ଦ । ଶୁଣିଲେ ହଠାତ୍ କିଛି ମନେ ହୁଏ ନାହିଁ, କିନ୍ତୁ ତାହାର ଦୃଢ଼ତା ଯେ କେତେ ବିରାଟ ଯାହାକି ହରେନ୍ଦ୍ର କାନରେ ପହଞ୍ଚି ପାରିଲା । କେବଳ ସେ—ହିଁ ବୁଝି ପାରିଲା, ଏହାର ବ୍ୟତିକ୍ରମ ହୋଇ ପାରିବ ନାହିଁ । ସେଥିପାଇଁ ଗୃହକର୍ତ୍ତ୍ରୀଙ୍କ ତରଫରୁ ଅନୁରୋଧର ପୁନରାବୃତ୍ତି ହେବା କ୍ଷଣି ସେ ବାଧା ଦେଇ କହିଲା—ଥାଉ ନୂଆଁଉ—ଆଉ ବଳାନ୍ତୁ ନାହିଁ । ଆପଣଙ୍କର ଖାଇବା ନଷ୍ଟ ହେବ ନାହିଁ । ମୋ ବସାରୁ ପିଲାମାନେ ଆସି ପୋଛି ପାଛି ସବୁ ଖାଇ ଦେଇ ଯିବେ । କିନ୍ତୁ ତାଙ୍କୁ ଆଉ ବାଧ୍ୟ କର ନାହିଁ । ବରଞ୍ଚ ଯାହା ଖାଇବେ ତାହାର ବନ୍ଦୋବସ୍ତ କରିଦିଅ ।

ନୀଳିମା ରାଗ କରି କହିଲା—ହଁ, ତାହା କରି ଦେଉଛି । କିନ୍ତୁ ଆପଣଙ୍କୁ ଆଉ ମୋତେ ସାନ୍ତ୍ୱନା ଦେବା ପାଇଁ ପଡ଼ିବ ନାହିଁ । ତୁମେ ଚୁପ୍ ହୋଇ ରୁହ । ଏ ଗୁଡ଼ାକ ଘାସ ନୁହେଁ ଯେ ତୁମ ବସାରୁ ପଲେ ମେଣ୍ଢା ଆସି ଚୋବାଇ ପକାଇବେ । ବରଂ ଏସବୁ ମୁଁ ରାସ୍ତାରେ ଫିଙ୍ଗି ଦେବି କିନ୍ତୁ ସେମାନଙ୍କୁ ଖାଇବା ପାଇଁ ଦେବି ନାହିଁ···

ହରେନ୍ଦ୍ର ହସି ଦେଇ କହିଲା—ସେମାନଙ୍କ ଉପରେ ଆପଣଙ୍କର ଏତେ ରାଗ କାହିଁକି ?

: ସେମାନଙ୍କ ପାଇଁ ତ ତୁମର ଯେତେ ପ୍ରକାର ଦୁଃଖ । ବାପ ଟଙ୍କା ରଖି ଯାଇଛନ୍ତି । ନିଜେ ମଧ୍ୟ କମ୍ ରୋଜଗାର କରୁ ନାହଁ ? ବୋହୂ ଆସିଥିଲେ ଏତେ ଦିନ ଭିତରେ ଘର ପିଲା ପିଲିରେ ଭର୍ତ୍ତି ହୋଇ ଯାଆନ୍ତାଣି । ଏପରି ହତଲକ୍ଷ୍ମୀ କାଣ୍ଡ ଆଉ ଘଟୁ ନ ଥାନ୍ତା । ନିଜେ ଯେପରି ବୁଢ଼ା କାର୍ତ୍ତିକ, ଦଳଟି ମଧ୍ୟ ସେହିପରି ଉପଯୁକ୍ତ କରି ଗଢ଼ିଛି । ସେମାନଙ୍କୁ ମୁଁ କୌଣସି ମତେ ଖାଇବା ପାଇଁ ଦେବି ନାହିଁ—ତୁମକୁ ଏକଥା ମୁଁ କହି—ରଖୁଛି । ଯାଉ ମୋର ନଷ୍ଟ ହେଲେ ହେଉ ।

କମଳ କିଛି ବୁଝି ପାରିଲା ନାହିଁ । କେବଳ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା । ହରେନ୍ଦ୍ର ଲଜ୍ୟା ପାଇ କହିଲା—ନୂଆ ବୋଉଙ୍କର ମୋ ଉପରେ ଅନେକ ଦିନରୁ ରାଗ ଥିଲା । ଏହା ହିଁ ହେଉଛି ତାହାର ଶାନ୍ତି । ଏହା କହି ସେ ସଂକ୍ଷେପରେ ଜିନିଷଟା ବାଖ୍ୟା କରି କହିଲା ଯେ ମାଆ-ବାପ-ଛେଉଣ୍ଡ କେତେଗୁଡ଼ିଏ ଛାତ୍ର ମୋର ଅଛନ୍ତି । ସେମାନେ ମୋ ପାଖରେ ରହନ୍ତି ଆଉ ସ୍କୁଲ, କଲେଜରେ ପଢ଼ନ୍ତି । ସେମାନଙ୍କ ଉପରେ ଏଙ୍କର ଯେତେ ପ୍ରକାର ଆକ୍ରୋଶ ।

କମଳ ଅତ୍ୟନ୍ତ ବିସ୍ମିତା ହୋଇ କହିଲା—ସତରେ ନା କ'ଣ ! କାହିଁ ଏତେଦିନ ହେବ ତ ଶୁଣି ନ ଥିଲି ?

: ଶୁଣିବା ଭଲ କଥା ଏ ସବୁ ନୁହେଁ । ସେମାନେ କିନ୍ତୁ ସମସ୍ତେ ଚରିତ୍ରବାନ୍ । ସେମାନଙ୍କୁ ମୁଁ ଖୁବ ଭଲ ପାଏ ।

ନୀଳିମା ମୃଦୁ କଣ୍ଠରେ କହିଲା—ବଡ଼ ହେଲେ କୁଆଡ଼େ ସେମାନେ ଦେଶକୁ ଉଦ୍ଧାର କରିବେ । ଅର୍ଥାତ୍ ଗୁରୁଙ୍କ ପରି ବ୍ରହ୍ମଚାରୀ ହୋଇ ଦିଗ୍‌ବିଜୟୀ ବୀର ହେବେ ବୋଧହୁଏ ।

ହରେନ୍ଦ୍ର କହିଲା—ଯିବେ ତାଙ୍କୁ ଦେଖିବା ପାଇଁ ଥରକ ଲାଗି ? ଦେଖିଲେ ନିଶ୍ଚୟ ଖୁସି ହେବେ ।

କମଳ ତତ୍‌କ୍ଷଣାତ୍ ସମ୍ମତ ହୋଇ କହିଲା—ଯଦି ନେଇ ପାରନ୍ତ ତେବେ ମୁଁ କାଲି ଯାଇପାରେ ।

ହରେନ୍ଦ୍ର କହିଲା—ନା, କାଲି ନୁହେଁ, ଆଉ ଦିନେ । ଆମ ଆଶ୍ରମର ରାଜେନ୍ ଏବଂ ସତୀଶ କାଶୀ ବୁଲିବା ପାଇଁ ଯାଇଛନ୍ତି । ସେମାନେ ଫେରି ଆସିଲେ ଆପଣଙ୍କୁ ନେଇ ଯିବି । ମୁଁ ନିଶ୍ଚିତ ଭାବରେ କହି ପାରିବି—ସେମାନଙ୍କୁ ଦେଖିଲେ ଆପଣ ଖୁସି ହେବେ ।

ଅବିନାଶ ବାବୁ ସେଇ ମାତ୍ର ଆସି ଠିଆ ହୋଇଥିଲେ । ଶୁଣିକରି ଚକ୍ଷୁ ବିସ୍ତାରିତ କରି କହିଲେ, କେତେ ଗୁଡ଼ାଏ ଲକ୍ଷ୍ମୀଛଡ଼ାଙ୍କର ଆଡ୍‌ଡା ଏହା ଭିତରେ ଆଶ୍ରମ ହୋଇ ଉଠିଲାଣି ? କେତେ ଭଣ୍ଡାମି ବି ଜାଣିଛୁ କରେ ହରେନ୍ଦ୍ର !

ନୀଳିମା ରାଗିଗଲା । କହିଲା—ଏହା ତୁମର ଅନ୍ୟାୟ ହେଉଛି ମୁଖାର୍ଜି ମହାଶୟ । ଦିଅର ତ ମୋର କେବେ ଆପଣଙ୍କ ପାଖକୁ ତାଙ୍କ ଆଶ୍ରମ ପାଇଁ ଚନ୍ଦା ମାଗି ଆସି ନାହାନ୍ତି । ତେଣୁ ତାଙ୍କୁ ଭଣ୍ଡ ବୋଲି ଗାଳି ଦେଉଛ କାହିଁକି ? ନିଜ ଅର୍ଜ୍ଜନରେ ପର ପିଲାମାନଙ୍କୁ ମଣିଷ କରିବାଟାକୁ ଭଣ୍ଡାମି କୁହାଯାଏ ନାହିଁ । ବରଞ୍ଚ ଯେଉଁମାନେ କହନ୍ତି ସେମାନଙ୍କୁ ସେହିଆ କହି ଡାକିବା ଉଚିତ ହେବ ।

ହରେନ୍ଦ୍ର ହସି ଉଠି କହିଲା—ନା, ଆଜି ଏଇ ମାତ୍ର ଆପଣ ନିଜେ ତ ସେମାନଙ୍କୁ ମେଣ୍ଢା ପଲ କହି ତିରସ୍କାର କରିଥିଲ । ବର୍ତ୍ତମାନ ଆପଣଙ୍କ କଥାର ପ୍ରତିଧ୍ୱନି କରିବାକୁ ଯାଇ ଭାଇଙ୍କ ଭାଗ୍ୟରେ କଣ ଏଇ ପୁରସ୍କାର ଥିଲା ?

ନୀଳିମା କହିଲା—ମୁଁ କହିଥିଲି ରାଗରେ । କିନ୍ତୁ ସେ କେଉଁଥିପାଇଁ କହିଲେ ? ଭଣ୍ଡାମିର ଧାରଣା ଆଗେ ଆପଣା ଭିତରେ ସ୍ପଷ୍ଟ ହୋଇ ଉଠୁ, ତାପରେ ଯାଇ ପରକୁ କହିବା ପାଇଁ ଯିବେ ।

କମଳ ପଚାରିଲା—ଆପଣଙ୍କର ପିଲାମାନେ ତ ସବୁ ସ୍କୁଲ-କଲେଜରେ ପଢ଼ୁଥିବେ ।

ହରେନ୍ଦ୍ର କହିଲା—ହଁ । ପ୍ରକାଶ୍ୟରେ ତାହାହିଁ ଅଛି ।

ଅବିନାଶ କହିଲେ—ଆଜି ଅପ୍ରକାଶ୍ୟରେ କ'ଣ ସବୁ ପ୍ରାଣାୟାମ ଓ ରେଚକ-କୁମ୍ଭକର ଚର୍ଚ୍ଚା କରାଯାଏ ? ଖୋଲିକରି କହନ୍ତୁ ।

ଶୁଣିକରି ସମସ୍ତେ ହସିଲେ । ନୀଳିମା ଅନୁନୟ ସ୍ୱରରେ କମଳଙ୍କୁ କହିଲା—ମୁଖାର୍ଜ୍ଜୀ ମହାଶୟଙ୍କର ଆଜିର ମିଜାଜ୍ ଦେଖି ତାଙ୍କୁ ଯେପରି ସବୁଦିନ ସେହି ଧରଣର ବୋଲି ଭାବ ନ ନଅନ୍ତୁ । ମଝିରେ ମଝିରେ ତାଙ୍କ ମୁଣ୍ଡ ବହୁତ ଥଣ୍ଡା ଥାଏ । ନଚେତ୍ ବହୁ ପୂର୍ବରୁ ମୋତେ ଏଠାରୁ ଚାଲିଯିବାକୁ ପଡ଼ନ୍ତାଣି—ଏହା କହି ସେ ହସିବାକୁ ଲାଗିଲା ।

କେଉଁଠାରେ ଯେପରି ସାମାନ୍ୟ ଉତ୍ତାପର ବାଷ୍ପ ଜମି ଉଠିଥିଲା । ଏହି କୋମଳ ପରିହାସ ଫଳରେ ତାହା ମିଳାଇ ଗଲା । ପୂଜାରୀ ଆସି କହିଲା—କମଳଙ୍କ ପାଇଁ ଖାଇବା ପ୍ରସ୍ତୁତ ହୋଇ ସାରିଲାଣି । ଅତଏବ ଏହିଠାରେ ଆଲୋଚନାକୁ ସ୍ଥଗିତ ରଖି ସମସ୍ତଙ୍କୁ ଉଠିବାକୁ ପଡ଼ିଲା ।

ଦୁଇଘଣ୍ଟା ପରେ ଖାଇବା ପିଇବା ସାରି ପୁଣି ଯେତେବେଳେ ଆସି ବାହାର ଘରେ ବସିଲେ ସେତେବେଳେ କମଳ ପୂର୍ବ ଆଲୋଚନାର ସୂତ୍ର ଧରି ପ୍ରଶ୍ନ କଲା—ପିଲାମାନେ ରେଚକ, କୁମ୍ଭକ ନ କରନ୍ତୁ ପଛକେ କଲେଜ ପଢ଼ା ପରେ ଆଉ ଯାହା କରନ୍ତି, ତାହା କ'ଣ ?

ହରେନ୍ଦ୍ର କହିଲା—କରନ୍ତି । ଭବିଷ୍ୟତରେ ଯେପରି ପ୍ରକୃତ ମନୁଷ୍ୟ ହୋଇ ପାରନ୍ତି ସେପରି ଚେଷ୍ଟାରେ ସେମାନଙ୍କର ହେଳା ନାହିଁ । ଯାଦ୍ୟପି ଯେଉଁଦିନ ପଡ଼ିବ, ସେଦିନ ମୁଁ ବୁଝାଇ କହିପାରିବ, କିନ୍ତୁ ଆଜି ନୁହେଁ ।

ଏହି ଝିଅଟି ପ୍ରତି ସମ୍ମାନର ଆତିଶଯ୍ୟ ହେତୁ ଅବିନାଶଙ୍କ ଦେହ ଯେପରି ଜଳି ଯିବାକୁ ଲାଗିଥାଏ । ତଥାପି କିନ୍ତୁ ସେ ଚୁପ୍ ହୋଇ ରହିଥାନ୍ତି ।

ନୀଳିମା କହିଲା—ଆଜି କହିବା ପାଇଁ କ'ଣ ଅବା ବାଧା, ହରେନ୍ ବାବୁ । ତୁମେ ଶିଖାଇଥିବା ପଦ୍ଧତି ନ ଜାଣିଲୁ, କିନ୍ତୁ ପୁରାତନ ଭାରତୀୟ ଆଦର୍ଶରେ ନିଜ ଭଳି ଯେ ସେମାନଙ୍କୁ ବ୍ରହ୍ମଚର୍ଯ୍ୟ ଶିକ୍ଷା ଦେଉଛ ଏକଥା ଜଣାଇବାରେ ଦୋଷ ଅବା କ'ଣ ? ତୁମ ନିକଟରୁ ଦିନେ ମୁଁ ତ ଏଇ କଥା ଇଙ୍ଗିତରେ ଶୁଣିଥିଲି ।

ହରେନ୍ଦ୍ର ବିନମ୍ର ସହିତ କହିଲା—ମିଛ କଥା ଶୁଣି ନାହିଁ ବୋଲି ତ କହୁଛି ନ'ଆଉ, କହି ସେଦିନକାର ଯୁକ୍ତିତର୍କର ଘଟଣାଟା ତାର ମନେ ପଡ଼ିଗଲା । କମଳ ଆଡ଼କୁ ଚାହିଁ କହିଲା—ଆପଣଙ୍କର ବୋଧହୁଏ ମୋ କାର୍ଯ୍ୟ ପ୍ରତି ସହାନୁଭୂତି ନାହିଁ !

କମଳ କହିଲା—କାମଟା କ'ଣ ଆପଣଙ୍କର ଠିକ୍ ଭାବରେ ନ ଜାଣିଲା ପର୍ଯ୍ୟନ୍ତ କହିପାରୁ ନାହିଁ । ପୁରାତନ ଛାଞ୍ଚରେ ଗଢ଼ିବା ଅର୍ଥ ତ ଯେ ପ୍ରକୃତ ମନୁଷ୍ୟ କରି ଗଢ଼ିବା ହେଲା ତାହାକୁ ତ ଯୁକ୍ତି ବୋଲି ଗ୍ରହଣ କରାଯାଇ ପାରେ ନାହିଁ ।

ହରେନ୍ଦ୍ର କହିଲା—କିନ୍ତୁ, ତାହାହିଁ ତ ଆମ ଭାରତବର୍ଷର ଆଦର୍ଶ !

କମଳ ଉତ୍ତର ଦେଇ କହିଲା—ଭାରତବର୍ଷର ଆଦର୍ଶ ଯେ ସବୁ ଯୁଗ ପାଇଁ ପ୍ରଯୁଜ୍ୟ—ଏହା କିଏ ସ୍ଥିର କରି କହିଛନ୍ତି କହନ୍ତୁ ?

ଅବିନାଶ ବାବୁ ଏତେ ସମସ୍ତ ପର୍ଯ୍ୟନ୍ତ କଥା କହି ନ ଥିଲେ । ରାଗି ରୁଷି କହିଲେ—ସବୁ ଯୁଗପାଇଁ ଆଦର୍ଶ ହୋଇ ନ ପାରେ କମଳ । କିନ୍ତୁ ଏହା ଯେ ଆମର ପୂର୍ବ ପିତା-ପ୍ରପିତାମହଙ୍କର ଆଦର୍ଶ । ଭାରତବାସୀଙ୍କର ଏହା ହେଉଛି ନିତ୍ୟକାଳର ଲକ୍ଷ୍ୟ ଏବଂ ଏହା ସେମାନଙ୍କ ପାଇଁ ଏକମାତ୍ର ଚାଲିବାର ମାର୍ଗ । ହରେନ୍ଦ୍ରର ଆଶ୍ରମ ଘଟଣା ବିଷୟରେ ମୁଁ କିଛି ଜାଣେ ନାହିଁ ସତ, କିନ୍ତୁ ସେ ଯଦି ଏହି ଲକ୍ଷ୍ୟକୁ ଗ୍ରହଣ କରିଥାଏ, ତେବେ ତାକୁ ମୁଁ ଆଶୀର୍ବାଦ କରୁଛି ।

କମଳ କିଛି ସମୟ ପାଇଁ ନୀରବରେ ତାଙ୍କ ମୁହଁକୁ ଚାହିଁ ରହିବା ପରେ କହିଲା—ଜାଣେନା ମନୁଷ୍ୟର କାହିଁକି ଏପରି ଭୁଲ୍ ହୁଏ । ନିଜ ବ୍ୟତୀତ ସେମାନେ ଆଉ କୌଣସି ଭାରତବାସୀଙ୍କୁ ଦୁଇ ଆଖିରେ ଦେଖି ପାରନ୍ତି ନାହିଁ । ଆହୁରି ତ ଅନେକ ଜାତି ଭାରତରେ ଅଛନ୍ତି—ସେମାନେ ଏହି ଆଦର୍ଶକୁ ଅବା ଗ୍ରହଣ କରିବେ କାହିଁକି ?

ଅବିନାଶ ରାଗି ଉଠି କହିଲେ—ଚୁଲିକୁ ଯାଆନ୍ତୁ ସେମାନେ । ଆମମାନଙ୍କ ନିକଟରେ ସେହି ଆବେଦନ ନିଷ୍ଫଳ । ଆମେମାନେ କେବଳ ଆମମାନଙ୍କ ଆଦର୍ଶକୁ ଆଖିରେ ଦେଖିବାକୁ ପାଇଲେ ଯଥେଷ୍ଟ ହେଲା ବୋଲି ମନେ କରୁ ।

କମଳ ଧୀରେ ଧୀରେ କହିଲା—ଆପଣ ଅତ୍ୟନ୍ତ ରାଗରେ ଏହି କଥା କହୁଛନ୍ତି ଅବିନାଶ ବାବୁ । ନଚେତ୍ ଆପଣଙ୍କୁ ଏତେଦୂର ଅନ୍ଧ ବୋଲି ଭାବିବା ପାଇଁ ମୋର ପ୍ରବୃତ୍ତି ହୁଏ ନାହିଁ । ଟିକିଏ ଅଟକି ଯାଇ ପୁଣି କହିଲା—କିନ୍ତୁ କେଜାଣି କାହିଁକି ପ୍ରତ୍ୟେକ ପୁରୁଷ ଏହିପରି ଚିନ୍ତା କରନ୍ତି । ସେଦିନ ଅଜିତ୍ ବାବୁଙ୍କ ମୁହଁରେ ମଧ୍ୟ ଏହି ପ୍ରସଙ୍ଗ ଉଠିଥିଲା । ଭାରତର ସନାତନ ବୈଶିଷ୍ଟ୍ୟ, ତାହାର ସ୍ୱାତନ୍ତ୍ର୍ୟ ନଷ୍ଟ ହେବା ଉଲ୍ଲେଖ କରି ତାଙ୍କ ମୁହଁ ସେଦିନ ମଧ୍ୟ ଦୁଃଖରେ କଳା ପଡ଼ି ଯାଇଥିଲା । ଦିନେ ସେ ଥିଲେ ଅତ୍ୟନ୍ତ ସ୍ୱଦେଶୀ, ଏବଂ ଆଜି ମଧ୍ୟ ମନେହୁଏ ସେ ସେହିଆ ହିଁ ରହିଛନ୍ତି । ଏହି ସମ୍ଭାବନା ତାଙ୍କ ନିକଟରେ ପ୍ରଳୟର ନାମାନ୍ତର ମାତ୍ର । ଏହା କହି ସେ ଏକ ଦୀର୍ଘଶ୍ୱାସ ଛାଡ଼ିଲା । ଅବିନାଶ ବାବୁ କ'ଣ ବୋଧହୁଏ ଉତ୍ତର ଦେବା ପାଇଁ ଉଦ୍ୟତ ହେଉଥିଲେ, କିନ୍ତୁ କମଳ ସେ ଦିଗକୁ ଦୃଷ୍ଟି ନ ଦେଇ କହିବାକୁ ଲାଗିଲା, ମୁଁ ଭାବୁଛି ଏତେ ଭୟ କେଉଁଥି ପାଇଁ ? କୌଣସି ଗୋଟାଏ ଦେଶରେ ଜନ୍ମ ଗ୍ରହଣ କରିଛୁ ବୋଲି ତାହାର ନିଜସ୍ୱ ଆଚାର-ଆଚରଣକୁ ଚିରଦିନ ପାଇଁ ଜାବୁଡ଼ି ଧରିବୁ କାହିଁକି ? ଯାଉ ଅବା ତାର ବିଶେଷତ୍ୱ ନିଃଶେଷ ହୋଇ । ଏତେ ମମତା କାହିଁକି ଯେ ? ଯଦି ବିଶ୍ୱର ସକଳ ମାନବ ଜାତିକୁ ଜଣେ ବୋଲି ପରିଚୟ ଦେଇ ହୁଏ ଏବଂ ତହିଁରେ କେହି ବାଧା ଦେଇପାରନ୍ତି ନାହିଁ ତେବେ ସେହି ଗୌରବ ଅବା କ'ଣ କମ୍ କି ?

ଅବିନାଶ ବାବୁ ହଠାତ୍ ଉତ୍ତର ଖୋଜି ନ ପାଇ କହିଲେ, କମଳ, ତୁମେ ଯାହା କହୁଛ ନିଜେ ତାର ଅର୍ଥ ବୁଝି ନାହଁ । ଏଥିରେ ମନୁଷ୍ୟର ସର୍ବନାଶ ହେବ ।

କମଳ ଉତ୍ତର ଦେଲା—ମନୁଷ୍ୟର ହେବ ନାହିଁ—ଅବିନାଶବାବୁ, ଯେଉଁମାନେ ଅନ୍ଧ ସେମାନଙ୍କ ଅହଂକାରର ସର୍ବନାଶ ହେବ ।

ଅବିନାଶବାବୁ କହିଲେ—ଏ ସବୁ ନିଚ୍ଛକ ଶିବନାଥର କଥା ।

: ତାହା ତ ଜାଣି ନାହିଁ । ସେ ମଧ୍ୟ ଏହି କଥା ହିଁ କରନ୍ତି ।

ଏଥର ଅବିନାଶବାବୁ ଆତ୍ମ ବିସ୍ମୃତ ହେଲେ । ବିଦ୍ରୂପରେ ମୁହଁ କଳାରଙ୍ଗ କରି କହିଲେ—ଖୁବ୍ ଜାଣ । କଥାଗୁଡ଼ିକ ମୁଖସ୍ଥ କରିଛ । ଆଉ ଜାଣ ନାହିଁ କାହାର ?

ତାଙ୍କର ଏହି କଦର୍ଯ୍ୟ ପ୍ରଶ୍ନର ଉତ୍ତର କମଳ ଦେଲା ନାହିଁ । ଦେଲା ନୀଲିମା । କହିଲା, କଥା ଯାହାର ହେଉ ମୁଖାର୍ଜ୍ଜୀ ମହାଶୟ, ମାଷ୍ଟ୍ରଙ୍କ ଗିରି କାର୍ଯ୍ୟରେ କଡ଼ା କଥାରେ ଧମକ ଦେଇ ଛାତ୍ରର ମୁହଁ ବନ୍ଦ କରିଯାଇ ପାରେ କିନ୍ତୁ ତହିଁରେ ସମସ୍ୟାର ସମାଧାନ ହୋଇ ପାରେ ନାହିଁ । ପ୍ରଶ୍ନର ଉତ୍ତର ଦେଇ ନ ପାରିବାରେ ହୁଏତ ଲଜ୍ୟା ନ ଥାଇ ପାରେ କିନ୍ତୁ ଭଦ୍ରତା ଲଙ୍ଘନ କରି ବସିଲେ ଲଜ୍ଜିତ ହେବାକୁ ପଡ଼ିଥାଏ । ମୋ ସୁନା ହରେନ୍‌ଟା ପରି, ଗୋଟାଏ ଗାଡ଼ି ଡକାଇ ଆଣ ତ, ଭାଇ । ତୁମକୁ କିନ୍ତୁ କମଳକୁ ନେଇ ପହଞ୍ଚାଇ ଦେବାକୁ ପଡ଼ିବ । ତୁମେ ବ୍ରହ୍ମଚାରୀ ମନୁଷ୍ୟ । ତୁମ ସଙ୍ଗରେ ପଠାଇ ଦେଲେ ଭୟ କରିବାର କିଛି ନାହିଁ । ଏହା କହି ସେ କଟାକ୍ଷରେ ଅବିନାଶବାବୁଙ୍କୁ ଚାହିଁ କହିଲା—ମୁଖାର୍ଜ୍ଜୀ ମହାଶୟଙ୍କର ଚେହେରା ଯେଉଁ ରକମର ମିଠା ହୋଇ ଉଠୁଛି ତହିଁରେ ଆଉ ଡେରି କରିବା ସଙ୍ଗତ ହେବ ନାହିଁ ।

ଅବିନାଶ ଗମ୍ଭୀର ହୋଇ କହିଲେ—ବେଶ ତ । ତୁମେ ସବୁ ଗଳ୍ପ କର । ମୁଁ ଶୋଇବାକୁ ଯାଉଛି । କହି ଉଠିଲେ ।

ଚାକର ଗାଡ଼ି ଡାକିବା ପାଇଁ ଯାଉଥିଲା । ହରେନ୍ଦ୍ର କମଳକୁ ଉଦ୍ଦେଶ୍ୟ କରି କହିଲା ଆଶ୍ରମକୁ ଦିନେ କିନ୍ତୁ ଯିବାକୁ ପଡ଼ିବ । ସେଦିନ କିନ୍ତୁ ଆସିବାକୁ ଗଲେ ନାହିଁ ବୋଲି କହିଲେ ଚଳିବ ନାହିଁ ।

କମଳ ହସି ହସି କହିଲା—ବ୍ରହ୍ମଚାରୀଙ୍କ ଆଶ୍ରମକୁ ମୋତେ କାହିଁକି ନିମନ୍ତ୍ରଣ ହରେନବାବୁ ? ନ ଗଲେ କ'ଣ ହେବ ନାହିଁ ?

: ନା । ତାହା ହେବ ନାହିଁ । ବ୍ରହ୍ମଚାରୀ ବୋଲି ମୁଁ ସେପରି କିଛି ଭୟଙ୍କର ଜନ୍ତୁ ନୁହେଁ । ନିହାତି ସାଦା ସିଧା । ଗେରୁଆ ପିନ୍ଧି ନାହିଁ, ଲମ୍ବା ଜଟା ବକଳ ମଧ୍ୟ ଧାରଣ କରି ନାହିଁ । ସାଧାରଣ ଭାବରେ ମୁଁ ସେମାନଙ୍କ ସହିତ ଯାହା ମିଶିଛି ।

: ତାହା କିନ୍ତୁ ତ ଭଲ ନୁହେଁ । ଅସାଧାରଣ ହୋଇ ମଧ୍ୟ ସାଧାରଣଙ୍କ ଭିତରେ ଆତ୍ମଗୋପନ କରିବାର ଚେଷ୍ଟା ଆହୁରି ଏକ ପ୍ରକାର ଅନ୍ୟାୟ ଆଚରଣ । ବୋଧହୁଏ

ଅବନୀଶବାବୁ ଏହାକୁ କହୁଥିଲେ ଭଣ୍ଡାମି । ତାହା ଅପେକ୍ଷା ବରଂ ନଷ୍ଟା କମଳ ଗେରୁଆ ଢେର ଭଲ । ତାହା ଦ୍ୱାରା ମନୁଷ୍ୟକୁ ଚିହ୍ନିବା ପାଇଁ ସୁବିଧା ହୋଇଥାଏ । ଠକ ହେବାର ସମ୍ଭାବନା ଖୁବ୍ କମ୍ ଥାଏ ।

ହରେନ୍ଦ୍ର କହିଲା—ଆପଣଙ୍କ ସଙ୍ଗରେ ଯୁକ୍ତିରେ ପାରିବା ଶକ୍ତ ନାହିଁ—ହାରିବାକୁ ହିଁ ପଡ଼ିବ । କିନ୍ତୁ ପ୍ରକୃତରେ କ'ଣ ମୋ ଅନୁଷ୍ଠାନଟିକୁ ଆପଣ ଭଲ ବୋଲି କହୁ ନାହାନ୍ତି ? ପାରେ ବା ନ ପାରେ, ଏହି ଆଦର୍ଶ କେତେ ବଡ଼ !

: ତାହା କହି ପାରିବି ନାହିଁ ହରେନବାବୁ । ସମସ୍ତ ସଂଯମ ଭଳି ଯୌନ ସଂଯମରେ ମଧ୍ୟ ସତ୍ୟ ଅଛି । କିନ୍ତୁ ତାହା ଗୌଣ ସତ୍ୟାଛଳନାରେ ଜୀବନର ମୁଖ୍ୟ ସତ୍ୟ ବୋଲି ତାହାକୁ ତୋଳି ଧରିଲେ ତାହା ହୋଇ ଉଠେ ଆଉ ଏକ ଧରଣର ଅସଂଯମ । ସେଥିପାଇଁ ଦଣ୍ଡ ଅଛି । ଆତ୍ମ ନିଗ୍ରହର ଉଗ୍ର ଦମ୍ଭ ହେତୁ ଆଧ୍ୟାତ୍ମିକତା କ୍ଷୀଣ ହୋଇ ଆସେ । ବେଶ୍, ମୁଁ ଆପଣଙ୍କ ଆଶ୍ରମକୁ ଯିବି ।

: ଯିବାକୁ ହିଁ ପଡ଼ିବ । ନ ଗଲେ ମୁଁ କିନ୍ତୁ ଛାଡ଼ିବି ନାହିଁ । କିନ୍ତୁ ଗୋଟାଏ କଥା କହି ରଖୁଛି । ଆମର ଆଡମ୍ବର ନାହିଁ । ଛଳନାରେ ଆମେମାନେ କିଛି କରୁ ନାହୁଁ । ସହସା ନୀଲିମାକୁ ଉଦ୍ଦେଶ୍ୟ କରି ହରେନ୍ଦ୍ର କହିଲା—ଆମର ଆଦର୍ଶ କିନ୍ତୁ ହେଉଛନ୍ତି ସେ । ତାଙ୍କ ଭଳି ଆମେମାନେ ସରଳ ପଥର ପଥିକ । ବୈଧବ୍ୟର କୌଣସି ବାହ୍ୟ ପ୍ରକାଶ ତାଙ୍କ ନିକଟରେ ନାହିଁ, ତାହାକୁ ଦେଖିଲେ ଯେପରି ମନେହୁଏ ସେ ବିଳାସ ବ୍ୟସନରେ ବୁଡ଼ି ରହିଛନ୍ତି କିନ୍ତୁ ଜାଣେ ତାଙ୍କର ଆନ୍ତର - ନିଷ୍ଠା ଆଉ କଠୋର ଆତ୍ମ ଶାସନ କେତେଦୂର ଦୁଃସାଧ୍ୟ ।

କମଳ ନୀରବ ହୋଇ ଚାହିଁଲା । ହରେନ୍ଦ୍ର ଭକ୍ତି ଓ ଶ୍ରଦ୍ଧାରେ ବିଗଳିତ ହୋଇ କହିବାକୁ ଲାଗିଲା—ଆପଣ ଭାରତର ଅତୀତ ଯୁଗ ପ୍ରତି ଶ୍ରଦ୍ଧାସମ୍ପନ୍ନ ନୁହଁନ୍ତି । ଭାରତର ଆଦର୍ଶ ଆପଣଙ୍କୁ ମୁଗ୍ଧ କରେ ନାହିଁ, କହନ୍ତୁ ତ, ନାରୀତ୍ୱର ଏତେ ବଡ଼ ମହିମା, ଏତେ ବଡ଼ ଆଦର୍ଶ ଆଉ କେଉଁ ଦେଶରେ ଅଛି କି ? ଏହି ଗୃହରେ ସେ ଗୃହିଣୀ । ଭାଇଙ୍କ ମାଆ ଛେଉଣ୍ଡ ପିଲାମାନଙ୍କର ସେ ଜନନୀ ଭଳି । ଏ ଘରର ସମସ୍ତ ଦାୟିତ୍ୱ ତାଙ୍କ ଉପରେ । ଅଥଚ କୌଣସି ସ୍ୱାର୍ଥ, କୌଣସି ବନ୍ଧନ ତାଙ୍କର ନାହିଁ । କହନ୍ତୁ ତ, କେଉଁ ଦେଶର ବିଧବା ଏପରି ଭାବରେ ଅପରର କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରି ପାରିଛି ?

କମଳର ମୁହଁ ମୃଦୁ ହାସ୍ୟରେ ବିକଶିତ ହୋଇ ଉଠିଲା । କହିଲା—ଏହା ଭିତରେ ଭଲଟା କ'ଣ ଅଛି ହରେନ୍ଦ୍ର ବାବୁ ? ଅପର ଗୃହର ନିଃସ୍ୱାର୍ଥପର ଗୃହିଣୀ ମଧ୍ୟ ଅପର ପିଲାମାନଙ୍କର ନିଃସ୍ୱାର୍ଥପର ଜନନୀ ହେବାର ଦୃଷ୍ଟାନ୍ତ ଜଗତରେ ଆଉ କେଉଁଠାରେ ନାହିଁ । ନାହିଁ ବୋଲି ଅଦ୍ଭୁତ ହୋଇପାରେ, କିନ୍ତୁ ଭଲ ହୋଇ ପାରିବ କେଉଁ କାରଣରୁ ?

ଏହା ଶୁଣି ହରେନ୍ଦ୍ର ସ୍ତବ୍ଧ ହୋଇ ରହିଗଲା ଏବଂ ନଳିମା ଅତ୍ୟର୍ଥ ହୋଇ ଉର୍ଦ୍ଧମେଷ ନୟନରେ ତାହାର ମୁହଁକୁ ଚାହିଁ ରହିଲା । କମଳ ତାହା ଲକ୍ଷ୍ୟକରି କହିଲା—ବାକ୍ୟର ଚାତୁର୍ଯ୍ୟରେ, ବିଶେଷଣର ଛଟାରେ ଲୋକେ ଏହାକୁ ଯେତେ ଗୌରବାନ୍ୱିତ କରି ତୋଳନ୍ତୁ ନା କାହିଁକି, ଦୁର୍ବୁଣୀ ପକ୍ଷିଆଁର ଏହି ମିଥ୍ୟା ଅଭିନୟର ସମ୍ମାନ ନାହିଁ । ଏହି ଗୌରବ ନ ଥିବା ହିଁ ଭଲ ।

ହରେନ୍ଦ୍ର ଗଭୀର ଦୁଃଖରେ ସହିତ କହିଲା—ଆପଣଙ୍କ ଠାରୁ ଗୋଟାଏ ସୁଶୃଙ୍ଖଳ ସଂସାରକୁ ନଷ୍ଟ କରି ଚାଲିଯିବା ପାଇଁ ଉପଦେଶ କେହି ଆଶା କରନ୍ତି ନାହିଁ ।

କମଳ କହିଲା—ସଂସାରଟା ତ ତାଙ୍କ ନିଜର ନୁହେଁ । ନିଜର ହୋଇଥିଲେ ଏହିଭଳି ଉପଦେଶ ଦେଇ ନଥାନ୍ତି । ଅଥଚ ଏପରି କରି ପୁରୁଷମାନେ କର୍ମଭୋଗ ନିଶାରେ ଆମମାନଙ୍କୁ ମାତାଲ କରି ରଖନ୍ତି । ସେମାନଙ୍କ 'ବାହାବା'ର କଡ଼ା ମଦ ପିଇବା କ୍ଷଣି ଆଖିରେ ଆମମାନଙ୍କର ମାୟା ସୃଷ୍ଟି ହୁଏ, ଭାବୁ ଏହା ହିଁ ହେଉଛି ନାରୀ-ଜୀବନର ସାର୍ଥକତା । ଆମ ଚାହା ବଗିଚାର ହରିଣ ବାବୁଙ୍କ କଥା ମନେ ପଡ଼େ । ଷୋଳ ବରଷର ଶ୍ରେଷ୍ଠ ଭଉଣୀଟିଏ ଯେତେବେଳେ ସ୍ୱାମୀ ମରିଗଲା, ତାଙ୍କୁ ଘରକୁ ଆଣି ନିଜର ସାନ ଛୁଆ-ପିଲାଙ୍କୁ ଦେଖାଇ କାନ୍ଦି କାନ୍ଦି କହିଥିଲେ—ଲକ୍ଷ୍ମୀ, ଶ୍ରେଷ୍ଠ ଭଉଣୀଟି ମୋର, ବର୍ତ୍ତମାନ ଏଇମାନେ ହିଁ ହେଉଛନ୍ତି ତୋର ପୁଅ—ଝିଅ । ତୋର ଆଉ ଚିନ୍ତା କରିବାର କ'ଣ ଅଛି ? ଏମାନଙ୍କୁ ମଣିଷ କରି, ଏମାନଙ୍କ ମାଆ ପରି ଭୁ ଏ ଘରର ସବେଂସର୍ବା ହୋଇ ଆଜିଠାରୁ ତୋ ଜୀବନକୁ ସାର୍ଥକ କର । ଏହାହିଁ ମୋର ଆଶୀର୍ବାଦ । ହରିଣବାବୁ ଭଲ ଲୋକ ଥିଲେ । ବଗିଚା ସାରା ତାଙ୍କ ନାଆଁରେ ଧନ୍ୟ ଧନ୍ୟ ଡାକ ଶୁଣାଗଲା । ସମସ୍ତେ କହିଲେ—ଲକ୍ଷ୍ମୀର କପାଳ ଭଲ । ଭଲ ତ ନିଶ୍ଚୟ । କିନ୍ତୁ କେବଳ ଝିଅ ପିଲା ବୁଝିପାରେ ଏତେ ବଡ଼ ଦୁର୍ଭୋଗ, ଏତେ ବଡ଼ ଠକାମି ଏହାଠାରୁ ବୋଧ ହୁଏ ଆଉ କିଛି ନାହିଁ । କିନ୍ତୁ ଦିନେ ଏହି ଛଳନା ଯେତେବେଳେ ଧରା ପଡ଼ିଯାଏ ସେତେବେଳେ ପ୍ରତିକାର କରିବା ପାଇଁ ଆଉ ସମୟ ନ ଥାଏ ।

ହରେନ୍ଦ୍ର କହିଲା—ତାପରେ ?

କମଳ କହିଲା—ତାହାପରର ଖବର ଆଉ ଜାଣି ନାହିଁ ହରେନ୍ ବାବୁ । ଲକ୍ଷ୍ମୀର ସାର୍ଥକତାର ଶେଷ ଦେଖି ଆସି ପାରିଲି ନାହିଁ । ମୋତେ ତାହା ଆଗରୁ ଚାଲି ଆସିବାକୁ ପଡ଼ିଥିଲା । କିନ୍ତୁ ଏଇ ଯେ ଗାଡ଼ି ଆସି ଠିଆ ହେଲାଣି । ଚାଲନ୍ତୁ, ବାଟରେ ଯାଉ ଯାଉ ସବୁ କହିବି । ନମସ୍କାର ଜଣାଇ ସେ ମୁହୂର୍ତ୍ତିକ ଭିତରେ ଠିଆ ହୋଇ ପଡ଼ିଲା ।

ନୀଳିମା ନୀରବରେ ପ୍ରତି ନମସ୍କାର ଜଣାଇ ଠିଆ ହୋଇ ରହିଲା । ତାହାର ଦୁଇ ଆଖିର ତାରକା ଯେପରି ନିଆଁ ଭଳି ଜଳିବାକୁ ଲାଗିଥିଲେ ।

ଆଶ୍ରମ ଶଢଟା କମଳ ଆଗରେ ହରେନ୍ଦ୍ର ମୁହଁରୁ ହଠାତ୍ ବାହାରି ପଡ଼ିଥିଲା। ତାହା ଶୁଣି ଅବିନାଶ ବାବୁ ଅଟ୍ଟା କରି ଭୁଲ୍ କରି ନଥିଲେ। କେତେ ଜଣ ଦରିଦ୍ର ଗ୍ଲାଡ଼ ସେଠାରେ ରହି ବିନା ଖର୍ଚ୍ଚରେ ସ୍କୁଲରେ ପଢ଼ାପଢ଼ି କରନ୍ତି—ଏହାହିଁ ଲୋକମାନେ ଜାଣନ୍ତି। ପ୍ରକୃତରେ ନିଜର ଏହି ବାସସ୍ଥାନଟାକୁ ବାହାର ଲୋକଙ୍କ ଆଗରେ ଏତେ ବଡ଼ ଗୋଟାଏ ଗୌରବର ପଦବୀରେ ଟେକି ଧରିବାର ସଂକଳ୍ପ ହରେନ୍ଦ୍ରର ନଥିଲା। ଏହା ନିହାତ ଗୋଟାଏ ସାଧାରଣ ଘଟଣା, ଏବଂ ପ୍ରଥମେ ମଧ୍ୟ ନିହାତ ସାମାନ୍ୟ ଭାବରେ ଆରମ୍ଭ ହୋଇଥିଲା। କିନ୍ତୁ ଏ ସବୁ ଜିନିଷର ସ୍ୱଭାବ ଏପରି ଯେ ଥରେ ଦାତାର ଏଥି ପ୍ରତି ଦୁର୍ବଳତା ଦେଖା ଦେଲେ ଆଉ ଏହାର ଗତିରେ ବିରାମ ଘଟେ ନାହିଁ। ଅମରି ଗଛ ଭଳି ମୃତ୍ତିକାରୁ ସମସ୍ତ ରସ ନିଃଶେଷ କରି ଚେର ମାଡ଼ି ଡାଳ ପତ୍ର ମେଲି ଦେବା ପାଇଁ ସେମାନଙ୍କର ବିଳମ୍ବ ହୁଏ ନାହିଁ। ତାହା ହିଁ ମଧ୍ୟ ହେଲା। ଏହି ବିବରଣଟାକୁ ଟିକିଏ ଖୋଲିକରି କହୁଛୁ।

ହରେନ୍ଦ୍ର ଭାଇ-ଭଉଣୀ ନ ଥିଲେ। ବାପା ଓକିଲାତି କରି ଅର୍ଥ ସଞ୍ଚୟ କରି ଯାଇଥିଲେ। ତାଙ୍କ ମୃତ୍ୟୁ ପରେ ସଂସାରରେ କେବଳ ଅବଶିଷ୍ଟ ରହିଥିଲେ ହରେନ୍ଦ୍ରର ବିଧବା ମାଆ। ସେ ମଧ୍ୟ ପରଲୋକ ଗମନ କଲେ। ପୁଅର ଯେତେବେଳେ ପାଠ ପଢ଼ା ସରିଲା ସେତେବେଳେ ଏପରି କେହି ଆତ୍ମୀୟ ରହିଲେ ନାହିଁ ଯିଏ କି ତାକୁ ବିବାହ ପାଇଁ ବାଧ୍ୟ କରି, କିମ୍ବା ଆୟୋଜନ କରି ତା ପାଦରେ ବେଡ଼ି ପିନ୍ଧାଇ ଦେଇ ପାରିଥାନ୍ତେ। ଅତଏବ ପଢ଼ା ଯେତେବେଳେ ସରିଲା ସେତେବେଳେ କାମ ଅଭାବରୁ ହରେନ୍ଦ୍ର ଦେଶ ଓ ଦଶର ସେବାରେ ଆତ୍ମ ନିୟୋଗ କଲା। ସାଧୁ ସଙ୍ଗ ବହୁତ କଲା। ବ୍ୟାଙ୍କରେ ଜମା ହୋଇଥିବା ଟଙ୍କାର ସୁଧକୁ କାଢ଼ି ଦୁର୍ଭିକ୍ଷ-ନିବାରଣୀ-ସମିତି ଗଠନ କଲା। ବନ୍ୟା ସମୟରେ ସେବକ ହେଲା। ସେବକ ସଙ୍ଘରେ ଯୋଗଦେଇ ଅନ୍ଧ, ମୂକ ଓ ବଧିର-ମାନଙ୍କୁ ଧରିଆଣି ସେବା କରିବାରେ ଲାଗିଲା। ତା' ସୁନାମ ପ୍ରଚ୍ୟର ହେବା ପରେ ପରେ ଦଳ ଦଳ ହୋଇ ଭଲ ଲୋକମାନେ ତା ପାଖକୁ ଆସି ପରୋପକାର କରିବା ବାହାନାରେ ଟଙ୍କା ମାଗିଲେ। ବଢ଼ିଥିବା ଟଙ୍କା ଶେଷ ହେବାକୁ ଲାଗିଲା। ପୁଞ୍ଜିରେ ହାତ ନ ମାରିଲେ ଆଉ ନ ଚଳେ—ଏପରି ଯେତେବେଳେ ଅବସ୍ଥା ସେତେବେଳେ ହଠାତ୍ ଦିନେ ଅବିନାଶବାବୁଙ୍କ ସହିତ ତାର ପରିଚୟ ହୁଏ। ସମ୍ବନ୍ଧ ଯେତେ ଦୂର ହେଉ, ପୃଥିବୀରେ ସେ ଗୋଟିଏ ହେଲେ ଲୋକ ବଞ୍ଚି ରହିପାରିଛି ଯାହାକୁ କି ଆତ୍ମୀୟ ବୋଲି କୁହାଯାଇ ପାରିବ—ଏହା ସେ ପ୍ରଥମ କରି ସେଦିନ ଜାଣିପାରିଲା। ଅବିନାଶବାବୁଙ୍କ କଲେଜରେ ସେତେବେଳେ ଅଧ୍ୟାପକ ପଦଟିଏ ଖାଲିଥିଲା, ଚେଷ୍ଟା କରି ସେ ସେହି କାର୍ଯ୍ୟରେ ତାକୁ

ନିଯୁକ୍ତ ଦଆଇ ଆଗ୍ରାକୁ ନେଇ ଆସିଲେ । ଆଗ୍ରାକୁ ଆସିବାରେ ଏହାହିଁ ତାର ଇତିହାସ । ମୁସଲମାନି ଅମଲର ପ୍ରାଚୀନ ସହର ଗୁଡ଼ିକରେ ସାହେବ ମାନଙ୍କର ଅନେକ ଘର ବର୍ତ୍ତମାନ ମଧ୍ଯ ଅଳ୍ପ ଭଡ଼ାରେ ମିଳୁଛି । ତହିଁରୁ ସେ ଗୋଟିଏ ଯୋଗାଡ଼ କରି ନେଲା । ତାହା ହିଁ ହେଉଛି ତାର ଏବକାର ଆଶ୍ରମ ।

ଏଠାକୁ ଆସିବା ପରେ ଯେଉଁ କେତେଦିନ ସେ ଅବନୀଶବାବୁଙ୍କ ଘରେ ଅତିବାହିତ କରିଲା, ସେହି ଅବସରରେ ତାର ମହିମା ମଣ୍ଡିତ ପରିଚୟ ହୁଏ । ଏହି ଟିଏ ଅଚିହ୍ନା ଲୋକ ବୋଲି ଆଡ଼ୁଆଳରେ ରହି ଦାସୀ-ଚାକରଙ୍କ ଦ୍ଵାରା ଆତ୍ମୀୟତା ସୃଷ୍ଟି କରିବାକୁ ଇଚ୍ଛା କରି ନ ଥିଲା । ପ୍ରଥମ ଦିନରୁ ହିଁ ଆଗକୁ ବାହାରି ଆସିଲା । କହିଲା ତୁମର ଯେତେବେଳେ ଯାହା ଦରକାର ମୋତେ କହିବା ପାଇଁ ସଙ୍କୁଚିତ ନାହିଁ । ମୁଁ ଏ ଘରର ଘରଣୀ ନୁହେଁ କିନ୍ତୁ ଘରଣୀଗିରି କରିବାର ଦାୟିତ୍ଵ ମୋ ଉପରେ ପଡ଼ିଛି । ତୁମ ଖାଇ କହୁଛନ୍ତି ତୁମର ଅଣହେଲା ହେଲେ ମୋର ଦରମା କାଟି ନିଆଯିବ । ଗରିବ ଲୋକର କ୍ଷତି କରିବା ପାଇଁ କାହିଁକି ଯିବ ଭାଇ, ତୁମର ଯାହା ଦରକାର ସେ ସବୁ ଯେପରି ମୁଁ ଜାଣିପାରେ ।

ହରେନ୍ଦ୍ର କ'ଣ ଜବାବ ଦେବ ଖୋଜି ପାଇଲା ନାହିଁ । ଲାଜରେ ସେ ଏପରି ଜଡ଼ସଡ଼ ହୋଇଗଲା ଯେ ଏହି ମିଠା ମିଠା କଥା ଗୁଡ଼ିକ ଯିଏ ଅବଲୀଳା କ୍ରମେ କହି ଗଲେ ତାଙ୍କ ମୁହଁକୁ ଚାହିଁ ପାରିଲା ନାହିଁ । କିନ୍ତୁ ତା ଲାଜ କଟିବା ପାଇଁ ଦିନ ଦୁଇଟା ଲାଗିଲା ନାହିଁ । ଏହି ରମଣୀଟିର ଯେପରି ସ୍ଵଚ୍ଛଳ, ଅନାଡ଼ମ୍ବର ପ୍ରୀତି, ସେହିପରି ସେବା । ସେ ବିଧବା । ପ୍ରକୃତରେ ସଂସାରରେ ତାର ଆତ୍ମୀୟ କେଉଁଠାରେ ନାହିଁ । ସେ ଯେ ଏ ଘରେ ପରି ମଣିଷ, ଏହି କଥାଟା ଯେପରି ତା ମୁହଁର ଚେହେରାରୁ, ତା ବେଶ ଭୂଷାରୁ, ତା ଥଟ୍ଟା ତାମସାରୁ, ଏବଂ ମଧୁର ଆଳାପ ଆଲୋଚନାରୁ ଧରିପାରିବାର ଶକ୍ତି କାହାର ନ ଥିଲା ।

ବୟସ କିଛି ଅଧିକ କମ୍ ନୁହେଁ । ବୋଧହୁଏ ତିରିଶ ପାଖାପାଖି ହେବ । ଏହି ବୟସର ସମୁଚିତ ଗାମ୍ଭୀର୍ଯ୍ୟ ହଠାତ୍ ଖୋଜି ବସିଲେ ମିଳି ଯାଇ ପାରେ । ଏପରି ହୋହାଲ୍ଲା ତାର ହସ ଖୁସି, ମିଳାମିଶା, ଅଥଚ ସାମାନ୍ୟ ଟିକିଏ ମନୋନିବେଶ କରି ପାରିଲେ, ସ୍ପଷ୍ଟ ବୁଝା ପଡ଼େ ଏପରି ଗୋଟାଏ ଅଦୃଶ୍ୟ ବନ୍ଧନ ତାକୁ ଅହର୍ନିଶି ଧରି ରଖିଛି ଯାହା ଭିତରେ ପ୍ରବେଶ କରିବା ପାଇଁ ବାଟ ନାହିଁ । ଘରର ଚାକର, ଚାକରାଣୀ ଏପରିକି ଘରର ମୁନିବ ଯିଏ ସେ ମଧ୍ଯ ପାଇ ପାରନ୍ତି ନାହିଁ ।

ଏହି ଘରେ, ଏହି ଭଳି ଆବହାଓ୍ଵା ଭିତରେ ହରେନ୍ଦ୍ରର ଦୁଇ ସପ୍ତାହ କଟିଗଲା । ହଠାତ୍ ଦିନେ ସେ ଅଲଗା ବସା ଭଡ଼ା କରିଛି ଶୁଣିପାରି ନୀଳିମା ଦୁଃଖିତ ହୋଇ କହିଲା—ଏତେ ଶୀଘ୍ର ଭଡ଼ା ଘର କରିବାକୁ ବ୍ୟସ୍ତ ହୋଇ ପଡ଼ିଲ କାହିଁକି ? ଏଠାରେ ତୁମର କ'ଣ କେଉଁ କାମ ଅଟକି ଯାଉଥିଲା ?

ହରେନ୍ଦ୍ର ଲଜରେ ଝାଉଁଳି ପଡ଼ି କହିଲା—ଦିନେ ତ ଯିବାକୁ ପଡ଼ିଥାନ୍ତା ନୂଆଁଉ ।

: ହୁଏତ ପଡ଼ିଥାନ୍ତା । କିନ୍ତୁ ଦେଖ ସେବାର ଜଣା ଏପର୍ଯ୍ୟନ୍ତ ସୁଦ୍ଧା ତୁମ ଦୁଇ ଆଖିରୁ କଟି ନାହିଁ । ଆଉ ଦିନ କେତେଟା ହୁଏତ ନୂଆଁଉ ହେପାଜତରେ ରହି ଯାଇ ଥାନ୍ତି…

: ରହିବ ନୂଆଁଉ । ଏଇତ ମାତ୍ର ଦଶ ମିନିଟର ବାଟ । ଆପଣଙ୍କ ଦୃଷ୍ଟିକୁ ଫାଙ୍କି ଦେଇ ଅବା ଯିବ କୁଆଡ଼େ ?

ଅବିନାଶବାବୁ ଘର ଭିତରେ ବସି କ'ଣ କାମ କରୁଥିଲେ । ସେହିଠାରେ ରହି କହିଲେ—ଯିବ ନର୍କକୁ । ଅନେକ ଥର ମନା କରିଛୁ ହରେନ୍ ଯାଅ ନାହିଁ, ଏଇଠାରେ ରହ । କିନ୍ତୁ ସେ କ'ଣ ଶୁଣିଲା ? ଇଜ୍ଜତ ତାର ବଡ଼ ନା ବଡ଼ ସ୍ୱଇର କଥା ବଡ଼ ? ଯାଉ । ନୂତନ ଆଡ୍‌ଡାରେ ପୁଣି ଦରିଦ୍ର ନାରାୟଣ ସେବାରେ ମାତୁ । ତାକୁ ମନା କରିବା ବୃଥା ସେ ହେଲା ତୁଲା ଫକୀର । ଗୁରୁ ନ ବୁଲିଲେ ତାକୁ ଶାନ୍ତି ମିଳିବ ନାହିଁ ।

ନୂଆ ବସାକୁ ଆସିବା ପରେ ହରେନ୍ଦ୍ର ସ୍ୱକର, ପୁଜାସ୍ୱ ଋଷି ଅଢଣସ୍ୱ ଶାନ୍ତିଶିଷ୍ଟ ନିସ୍ୱାହ ମାଷ୍ଟ୍ରଙ୍କ ଭଳି କଲେଜ କାମରେ ମନ ଦେଲା । ପ୍ରକାଣ୍ଡ କୋଠାରେ ଅନେକଗୁଡ଼ିଏ ଘର । ଗୋଟାଏ ଦୁଇଟା ଘର ବ୍ୟତୀତ ଆଉ ସବୁ ଘର ସିମିତ ପଡ଼ି ରହିଲା । କେତେଟା ମାସ ପରେ ଏ ଘରଗୁଡ଼ାକ ତାକୁ କେବଳ କଷ୍ଟ ଦେବାକୁ ଲାଗିଲା । ଭଡ଼ା ଦେବାକୁ ପଡ଼େ ଅଥଚ କାମରେ ଲଗେ ନାହିଁ । ଅତଏବ ଚିଠି ଗଲା ସ୍ୱଜେନ୍ ପାଖକୁ । ସେ ଥିଲା ତାର ଦୁର୍ଭିକ୍ଷ ନିବାରିଣୀ ସମିତିର ସେକ୍ରେଟାରୀ । ଦେଶ ଉଦ୍ଧାରର ଆଗ୍ରହାତିଶଯ୍ୟ ହେତୁ ଦୁଇବର୍ଷ କାଳ ଜେଲ ଭିତରେ ରହିବାପରେ ପାଞ୍ଚଛଅମାସ ହେବ ମୁକ୍ତ ପାଇ ପୁରୁଣା ବନ୍ଧୁବାନ୍ଧବମାନଙ୍କ ସନ୍ଧାନରେ ଲାଗି ପଡ଼ିଥିଲା । ହରେନ୍ଦ୍ରଠାରୁ ଚିଠି ଏବଂ ବାଟ ଖର୍ଚ୍ଚ ପାଇବାକ୍ଷଣି ତତ୍‌କ୍ଷଣାତ୍ ଆସି ପହଁଞ୍ଚିଗଲା । ହରେନ୍ଦ୍ର କହିଲା—ଦେଖେ ଯଦି ତୋ ପାଇଁ ଖଣ୍ଡିଏ ବୃଜକସ୍ୱ ଯୋଗାଡ଼ କରିପାରେ । ସ୍ୱଜେନ କହିଲା—ଆଚ୍ଛା । ସତୀଶ ତାର ପରମବନ୍ଧୁ ଥିଲା । ସେ କୌଣସିମତେ ଆରେଷ୍ଟ ନ ହୋଇ ମେଦନୀପୁର ଜିଲ୍ଲାର କୌଣସି ଏକ ଗାଆଁରେ ବ୍ରହ୍ମଚର୍ଯ୍ୟାଶ୍ରମ ଖୋଲିବା ଚେଷ୍ଟାରେ ଲାଗି ପଡ଼ିଥିଲା । ସ୍ୱଜେନଠାରୁ ପତ୍ର ପାଇବାକ୍ଷଣି ସପ୍ତାହକ ମଧ୍ୟରେ ସେ ତାର ସାଧୁ ସଂକଳ୍ପକୁ ମୁଲତବି ରଖି ଆଗ୍ରାରେ ଆସି ପହଁଞ୍ଚିଲା । ଏକାକୀ ମଧ୍ୟ ଆସିଲା ନାହିଁ । ସାଙ୍ଗରେ ତାର ଜଣେ ଭକ୍ତକୁ ଧରି ଆସି ପହଁଞ୍ଚିଲା । ସତୀଶ ଯୁକ୍ତି ଓ ଶାସ୍ତ୍ର ବଚନ ଦ୍ୱାରା ଶେଷରେ ଏହି କଥା ପ୍ରମାଣ କରାଇ ଦେଲା ଯେ ଭାରତବର୍ଷ ହିଁ ଧର୍ମଭୂମି । ମୁନିଋଷିମାନେ ଏଠାରେ ଦେବତା । ଆମେମାନେ ବ୍ରହ୍ମଚର୍ଯ୍ୟ ହେବାପାଇଁ ଭୁଲିଯାଇଛୁ ବୋଲି ଆମମାନଙ୍କର ସବୁ ଯାଇଛି । ଏ ଦେଶ ସହିତ କୌଣସି ଦେଶର ତୁଳନା ହୋଇ ନ ପାରେ । କାରଣ ଆମେମାନେ ଦିନେ ଥିଲୁ ସାରା ଜଗତର ଶିକ୍ଷକ । ଆମେମାନେ ଥିଲୁ ମନୁଷ୍ୟ ସମାଜର ଗୁରୁ । ସୁତରାଂ ବର୍ତ୍ତମାନ

ଭାରତବାସୀଙ୍କର ଏକମାତ୍ର କର୍ତ୍ତବ୍ୟ ହେଉଛି ପ୍ରତ୍ୟେକ ଗାଆଁରେ ଓ ସହରରେ ଅସଂଖ୍ୟ ବ୍ରହ୍ମଚର୍ଯ୍ୟାଶ୍ରମ ସ୍ଥାପନ କରିବା । ଦେଶୋଦ୍ଧାର ଯଦି କେବେ ସମ୍ଭବ ହୋଇପାରେ ତ ଏହି ପଥଦ୍ୱାରା ହିଁ ସମ୍ଭବ ହୋଇ ପାରିବ ।

ଏହା ଶୁଣି ହରେନ୍ଦ୍ର ମୁଗ୍ଧ ହୋଇଗଲା । ସତୀଶ ନାମ ସେ ଶୁଣିଥିଲା । କିନ୍ତୁ ପରିଚୟ ନ ଥିଲା । ସୁତରାଂ ଏହି ସୌଭାଗ୍ୟ ପାଇଁ ସେ ମନେ ମନେ ରାଜେନକୁ ଧନ୍ୟ ।ାଦ ଦେଲା ଏବଂ ଏହା ଭିତରେ ଯେ ତାହାର ବିବାହ ହୋଇ ନାହିଁ ଏଥିପାଇଁ ସେ ଆପଣାକୁ ଭଗବାନ୍ ବୋଲି ଜ୍ଞାନ କଲା । ସତୀଶ କେତେଗୁଡ଼ିଏ ସର୍ବବାଦୀସମ୍ମତ ଭଲ ଭଲ କଥା ଜାଣେ । କେତେଦିନ ଧରି ସେହିସବୁ ଆଲୋଚନା ଚାଲିଲା । ଏହି ପୁଣ୍ୟଭୂମିର ମୁନିଋଷିମାନଙ୍କର ଆମେମାନେ ବଂଶଧର । ଆମମାନଙ୍କର ପୂର୍ବ ପିତାମହଗଣ ଦିନେ ଜଗତର ଗୁରୁ ଥିଲେ, ତେଣୁ ସେହି ଗୁରୁଗିରି କରିବାପାଇଁ ଆମେମାନେ ହିଁ କେବଳ ଉତ୍ତରାଧିକାରୀ । ଆର୍ଯ୍ୟ ରକ୍ତ ସମ୍ଭୂତ କୌଣସି ପାଷାଣ୍ଡ କ'ଣ ଏହାର ପ୍ରତିବାଦ କରି- ପାରେ ? ପାରେ ନାହିଁ ଏବଂ ପାରିବାଭଳି ଦୁର୍ମତି ପରାୟଣ ଲୋକ ମଧ୍ୟ କେହି ସେଠାରେ ନ ଥିଲେ ।

ହରେନ୍ଦ୍ର ମାତି ଉଠିଲା । କିନ୍ତୁ ଏହି ତପସ୍ୟା ସାଧନାର ବିଷୟ ସମସ୍ତଙ୍କଠାରୁ ସାଧ୍ୟମତେ ଗୋପନ ରଖାଗଲା, କେବଳ ରାଜେନ ଓ ସତୀଶ ଦୁହେଁ ମଝିରେ ମଝିରେ ଗାଆଁମାନଙ୍କୁ ଯାଇ ପିଲାମାନଙ୍କୁ ସଂଗ୍ରହ କରିବାକୁ ଲାଗିଲେ । ଯେଉଁମାନଙ୍କର ବୟସ ଅଳ୍ପ ସେମାନେ ସ୍କୁଲରେ ନାଆଁ ଲେଖାଇଲେ ଆଉ ଯେଉଁମା ନ ସ୍କୁଲ ପାଠ ସାରି ଦେଇଥାନ୍ତି ସେମାନଙ୍କୁ ହରେନ୍ଦ୍ର ଚେଷ୍ଟାକରି କଲେଜରେ ଭର୍ତ୍ତି କରାଇ ଦେଲା । ଏହି ରୂପରେ ଅଳ୍ପ ସମୟ ଭିତରେ ଘରଟା ନାନାପ୍ରକାର ବୟସର ପିଲାମାନଙ୍କ ଦ୍ୱାରା ଭରି ଉଠିଲା । ବାହାରର ଲୋକେ ବିଶେଷ କିଛି ଜାଣନ୍ତି ନାହିଁ ଏବଂ ଜାଣିବା ପାଇଁ ଚେଷ୍ଟା ମଧ୍ୟ କରନ୍ତି ନାହିଁ । କେବଳ ଏତିକି ମାତ୍ର ଉଡ଼ା ଖବର ପାଆନ୍ତି ଯେ ହରେନ୍ଦ୍ର ବସାରେ କେତେଗୁଡ଼ିଏ ଗରିବ ପିଲା ରହି ପଢ଼ାପଢ଼ି କରୁଛନ୍ତି । ଏହାଠାରୁ ଅଧିକ ଅବିନାଶ ବାବୁ କମ୍ବା ନୀଳିମା ମଧ୍ୟ ଜାଣନ୍ତି ନାହିଁ ।

ସତୀଶର କଠୋର ଶାସନ ହେତୁ ବସାକୁ ମାଛମାଂସ ଆଣିବାର ଶକ୍ତି ତାହାର ନ ଥିଲା । ବ୍ରାହ୍ମମୁହୂର୍ତ୍ତରେ ଉଠି ସମସ୍ତଙ୍କୁ ସ୍ତୋତ୍ର ପଠନ, ଧ୍ୟାନ, ପ୍ରାଣାୟାମ, ପ୍ରଭୃତି ଶାସ୍ତ୍ର ବିହିତ ପ୍ରକ୍ରିୟା ସମ୍ପନ୍ନ କରିବାକୁ ହୁଏ । ତା'ପରେ ଲେଖାପଢ଼ା ଓ ଗୃହକର୍ମ । କିନ୍ତୁ କର୍ତ୍ତୃପକ୍ଷମାନଙ୍କର ଏଥିରେ ମନ ସନ୍ତୋଷ ହୋଇ ପାରିଲା ନାହିଁ । ସେଥିପାଇଁ ସାଧନା ମାର୍ଗ କ୍ରମଶଃ କଠୋରତର ହୋଇ ଉଠିଲା । ପୂଜାରୀ ପ ାଇଲା । ଚାକରମାନଙ୍କୁ ବିଦାୟ କରି ଦିଆଗଲା । ଅତଏବ ଏସବୁ କାମଗୁଡ଼ିକ ଚଳାଇବାର ଦାୟିତ୍ୱ ପିଲାମାନଙ୍କ ଉପରେ ପଡ଼ିଲା । କେଉଁଦିନ ଗୋଟାଏ ତରକାରୀ ହେଲା ତ କେଉଁଦିନ ସେତିକି ମଧ୍ୟ

ହେବା ସମ୍ଭବପର ହୋଇ ଉଠିଲା ନାହିଁ । ପିଲାମାନଙ୍କ ପାଠପଢ଼ାରେ ବ୍ୟାଘାତ ଘଟିଲା, ତା'ପରେ ସେମାନେ ସ୍କୁଲ କଲେଜରେ ଗାଳି ଖାଇଲେ । ତଥାପି କିନ୍ତୁ କଠିନ ଅନୁଶାସନରେ ଶିଥିଳତା ଦେଖା ଦେଇପାରିଲା ନାହିଁ । ସେଇପରି କଡ଼ାକଡ଼ି ହୋଇ ରହିଲା । କେବଳ ଗୋଟିଏ ବ୍ୟତିକ୍ରମ ଘଟିଲା ତାହା ହେଉଛି ବାହାରେ ଗୋଟିଏ ସ୍ଥାନରେ ଖାଇବା ପାଇଁ ନିମନ୍ତ୍ରଣ ଜୁଟିଲେ ଯିବାପାଇଁ ବାଧା ରହିଲା ନାହିଁ । ତାହା ହେଉଛି ମିଳମାର କ'ଣ ଗୋଟାଏ ବ୍ରତ ଉଦ୍‌ଯାପନ ଉପଲକ୍ଷରେ ହରେନ୍ଦ୍ର ଏହି ନିୟମକୁ କୋହଳ କରି ଦେଇଥିଲା । ଏହା ବ୍ୟତୀତ ଅନ୍ୟ କୌଣସି କ୍ଷେତ୍ରରେ ମାର୍ଜନା ନ ଥିଲା । ପିଲାମାନଙ୍କ ପାଦରେ ଯୋତା କି ଚପଲ ନ ଥିଲା କିମ୍ବା ମୁଣ୍ଡରେ ତେଲ ଲାଗୁ ନ ଥିଲା —ହାଲେ କେଉଁ ବାଟରେ ବିଳାସିତା, ଅନଧିକାର ଭାବରେ ପ୍ରବେଶ କରି ପକାଇବ ସେହି ଦିଗପ୍ରତି ସତୀଶର ଅତି ସତର୍କ ଚକ୍ଷୁ ଅନୁକ୍ଷଣ ପହରା ଦେବାପାଇଁ ଲାଗିଥିଲା । ମୋଟାମୋଟି ଏଇପରି ଭାବରେ ଆଶ୍ରମର ଦିନ ବଢ଼ିବାକୁ ଲାଗିଥିଲା । ସତୀଶର କଥା ମଧ୍ୟ ସେହି ପ୍ରକାରର । ହରେନ୍ଦ୍ର ମନରେ ମଧ୍ୟ ବଡ଼ିମାର ସୀମା ନ ଥିଲା । ବାହାରେ କାହା ନିକଟରେ ସେ କିଛି ପ୍ରକାଶ କରୁ ନ ଥିଲା, କିନ୍ତୁ ନିଜ ଭିତରେ ହରେନ୍ଦ୍ର ଆତ୍ମ-ପ୍ରସାଦ ଓ ପରିତୃପ୍ତିରେ ଉଚ୍ଛ୍ୱସିତ ଆବେଗରେ ଏଇ କଥାଟା ବରାବର କହି ଚାଲିଥିଲା ଯେ, ଗୋଟାଏ ପିଲାକୁ ଯଦି ସେ ମଣିଷ କରି ଠିଆ କରାଇ ପାରେ ତେବେ ସେ ତା ଜନ୍ମର ସାର୍ଥକତା କରି ପାରିଛି ବୋଲି ମନେ କରିପାରିବ । ସତୀଶ କଥା କହେ ନାହିଁ, ବିନସ୍ତ୍ରରେ ମୁହଁଟି ସଦାବେଳେ ତଳକୁ କରିଥାଏ ।

କେବଳ ଗୋଟିଏ ବିଷୟରେ ହରେନ୍ଦ୍ର ଏବଂ ସତୀଶ କଷ୍ଟ ଅନୁଭବ କରୁଥିଲେ । କିଛି ଦିନ ହେବ ଉଭୟ ଜାଣି ପାରୁଥିଲେ ଯେ ରାଜେନ୍‌ର ଆଚରଣ ଆଉ ପୂର୍ବ ଭଳି ନାହିଁ । ଆଶ୍ରମର କୌଣସି କାର୍ଯ୍ୟରେ ସେ ଆଉ ମନ ଦେଉ ନାହିଁ । ସକାଳର ଭଜନ କୀର୍ତ୍ତନ ବେଳେ ସେ ପ୍ରାୟ ଏଣିକି ଅନୁପସ୍ଥିତ ରହୁଛି । ପଚାରିଲେ ଉତ୍ତର ଦେଉଛି—ଦେହ ଭଲ ନାହିଁ । ଅଥଚ ଦେହ ଖରାପ ଥିବାର କୌଣସି ବିଶେଷ ଲକ୍ଷଣ ତାହାଠାରେ ଦେଖା ଯାଏ ନାହିଁ । କିନ୍ତୁ କାହିଁକି ସେ ଏପରି ହେଉଛି ପଚାରିଲେ ମଧ୍ୟ କୌଣସି ଉତ୍ତର ମିଳୁ ନାହିଁ । କେଉଁଦିନ ସକାଳୁ ହୁଏତ କୁଆଡ଼େ ଚାଲିଯାଏ । ଦିନ ସାରା ତାର ଆଉ ଦେଖା ନ ଥାଏ । ଯେତେବେଳେ ଘରକୁ ଫେରେ ସେତେବେଳେ ତା ଚେହେରା ଏପରି ହୋଇଥାଏ ଯେ କାରଣ ପଚାରିବା ପାଇଁ ହରେନ୍ଦ୍ରର ସାହାସ ହୁଏ ନାହିଁ । ଅଥଚ ଏସବୁ କାର୍ଯ୍ୟ ଆଶ୍ରମର ଏକାନ୍ତ ନିୟମ ବିରୁଦ୍ଧ କାର୍ଯ୍ୟ । ଏକା ହରେନ୍ଦ୍ର ବ୍ୟତୀତ ସନ୍ଧ୍ୟା ପରେ ଯଦିଓ କାହାର ବାହାରେ ରହିବା ପାଇଁ ଶକ୍ତି ନ ଥିଲା—ତଥାପି ଏକଥା ରାଜେନ୍ ଭଲ କରି ଜାଣି ମଧ୍ୟ ଖାତିର କରେ ନାହିଁ । ଆଶ୍ରମର ସେକ୍ରେଟାରୀ ସତୀଶ । ଶୃଙ୍ଖଳା ରକ୍ଷା କରିବା ଭାର ତା ଉପରେ । ଏହି ସବୁ ଅନ୍ୟାୟ ଆଚରଣ ବିରୁଦ୍ଧରେ ସେ ଯେ ହରେନ୍ଦ୍ର ନିକଟରେ ଅଭିଯୋଗ ନ କରେ ତାହା ନୁହେଁ, କିନ୍ତୁ ମଝିରେ ମଝିରେ ଇଙ୍ଗିତରେ

ଏପରି ଗପ କରି ଜଣାଇ ଦେଏ ଯେ ତାକୁ ଏଣିକି ଆଶ୍ରମରେ ଆଉ ରଖିବା ଠିକ୍ ହେବ ନାହିଁ । କାରଣ ତାରି ଲାଗି ଭବିଷ୍ୟତରେ ଆଶ୍ରମର ଛାତ୍ରମାନେ ବିପଥଗାମୀ ହୋଇ ଯାଇ ପାରନ୍ତି । ହରେନ୍ଦ୍ର ଯେ ମନେ ଏହିକଥା ବୁଝିପାରେନା, ତାହା ନୁହେଁ, କିନ୍ତୁ ମୁହଁ ଫିଟାଇ କହିବା ପାଇଁ ତାର ସାହାସ ହୁଏ ନାହିଁ । ଥରେ ସାରା ରାତି ତାର ଦେଖା ମିଳିଲା ନାହିଁ । ସକାଳେ ସେ ଯେତେବେଳେ ଘରକୁ ଫେରିଲା, ସେତେବେଳେ ଏଥିପାଇଁ ରୀତିମତ ଗୋଟାଏ ଆଲୋଚନା ଚାଲିଥିଲା । ହରେନ୍ଦ୍ର ପ୍ରଶ୍ନ କଲା—ଘଟଣା କ'ଣ ରାଜେନ୍, କାଲି ଥିଲୁ କେଉଁଠି ?

ସେ ସାମାନ୍ୟ ହସିବା ପାଇଁ ଚେଷ୍ଟା କରି କହିଲା—ଗୋଟିଏ ଗଛ ତଳେ ପଡ଼ିଥିଲି ।

: ଗଛ ତଳରେ ! ଗଛ ତଳେ କାହିଁକି ?

: ଅନେକ ରାତି ହୋଇ ଯାଇଥିଲା ତ, ଆଉ ଡକାଡକି କରି ତୁମମାନଙ୍କର ନିଦ ଭାଙ୍ଗିଲି ନାହିଁ ।

: ବେଶ ! ଏତେ ରାତି ଅବା ହେଲା କାହିଁକି ?

: ଏଇମିତି ବୁଲୁ ବୁଲୁ, ଏତକି କହି ସେ ନିଜ ଘର ଭିତରକୁ ପଶିଗଲା ।

ସତୀଶ ନିକଟରେ ଥିଲେ । ହରେନ୍ଦ୍ର ପଚାରିଲା—ଏ କିଭଳି ଘଟଣା କହନ୍ତୁ ?

: ଆପଣଙ୍କୁ ଉତ୍ତର ନ ଦେଇ ଚାଲିଗଲା ! ଖାତିର ମଧ୍ୟ କଲା ନାହିଁ ! ଆଉ ମୁଁ ଅବା ଜାଣିବି କିପରି ?

: ତାହା ତ ଦେଖୁଛୁ । କିନ୍ତୁ ଏତେଟା ହେବା ଭଲ ନୁହେଁ ।

ସତୀଶ ଗମ୍ଭୀର ହୋଇ ଅନେକ ସମୟ ପର୍ଯ୍ୟନ୍ତ ନୀରବ ରହି କହିଲେ –ଆପଣ ତ ଜାଣନ୍ତି । ପୋଲିସ୍ ତାକୁ ଦୁଇ ବର୍ଷ ଜେଲରେ ରଖିଥିଲା ?

: ଜାଣେ । କିନ୍ତୁ ତାହା ମିଥ୍ୟା ସନ୍ଦେହ ଉପରେ । ତାର ତ ପ୍ରକୃତରେ କୌଣସି ଦୋଷ ନ ଥିଲା ।

: ମୁଁ କେବଳ ତା ବନ୍ଧୁ ବୋଲି ଜେଲ ଭିତରକୁ ଯାଉ ଯାଉ ରହିଗଲି । ପୋଲିସର ସୁଦୃଷ୍ଟି ଏ ପର୍ଯ୍ୟନ୍ତ ସୁଦ୍ଧା ତା ଉପରୁ ଅପସରି ଯାଇ ନାହିଁ ।

: ଅସମ୍ଭବ ମଧ୍ୟ ନୁହେଁ ।

ସତୀଶ ସାମାନ୍ୟ ବିଷାଦର ହସ ହସି କହିଲା—ମୁଁ ଭାବୁଛି । ତାର ବୋଧହୁଏ ଆଶ୍ରମ ପ୍ରତି ମାୟା ନାହିଁ ।

ଏହା ଶୁଣି ହରେନ୍ଦ୍ର ଚିନ୍ତିତ ହୋଇ ଚୁପ୍ ହୋଇ ରହିଲା । ସତୀଶ ମଧ୍ୟ କିଛି ସମୟ ଚୁପ୍ ରହିବା ପରେ ହଠାତ୍ ପ୍ରଶ୍ନ କଲା ଆପଣ ବୋଧହୁଏ ଜାଣନ୍ତି ନାହିଁ ଯେ ରାଜେନ୍ ଭଗବାନଙ୍କୁ ମଧ୍ୟ ବିଶ୍ୱାସ କରେ ନାହିଁ ।

ହରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ କହିଲା—କାହିଁ ନାହିଁ ତ !

: ମୁଁ ଜାଣେ ସେ କରେ ନାହିଁ । ଆଶ୍ରମର କାର୍ଯ୍ୟାବଳୀ, ବିଧି ନିଷେଧ ପ୍ରତି ତାର ଅଳାର୍କ ଶ୍ରଦ୍ଧା ନାହିଁ । ଆପଣ ତା ପାଇଁ କେଉଁଠାରେ ହେଲେ ଗୋଟାଏ ଚାକିରୀ—ବାକିରୀ ଠିକ କରି ଦିଅନ୍ତୁ ।

: ଚାକିରୀ ତ ଆଉ ଗଛର ଫଳ ନୁହେଁ ଯେ, ଇଚ୍ଛା କଲେ ତୋଳି ଆଣି ହାତରେ ଧରାଇ ଦେବ ? ସେଥିପାଇଁ ଯେ ଅନେକ ଚେଷ୍ଟା କରିବାକୁ ହେବ ।

: ତାହା ହେଲେ ସେଇଆ ହିଁ କରନ୍ତୁ । ଆପଣ ଯେତେବେଳେ ଆଶ୍ରମ ପ୍ରତିଷ୍ଠାତା ଏବଂ ପ୍ରେସିଡେଣ୍ଟ ଏବଂ ମୁଁ ହେଉଛି ସେକ୍ରେଟାରୀ, ସେତେବେଳେ ସବୁ ବିଷୟ ଆପଣଙ୍କୁ ଜଣାଇବାଟା ମୋର କର୍ତ୍ତବ୍ୟ । ଆପଣ ତାକୁ ଅତ୍ୟନ୍ତ ସ୍ନେହ କରନ୍ତି ଏବଂ ସେ ମଧ୍ୟ ମୋର ବନ୍ଧୁ । ସେଥିପାଇଁ ତା ବିରୁଦ୍ଧରେ କୌଣସି କଥା କହିବା ପାଇଁ ମୋର ଧନକ ପାଇଁ ପ୍ରବୃତ୍ତି ହୋଇ ନାହିଁ । ବର୍ତ୍ତମାନ କିନ୍ତୁ ଆପଣଙ୍କୁ ସତର୍କ କରି ଦେବାଟାକୁ ମୁଁ ମୋର କର୍ତ୍ତବ୍ୟ ବୋଲି ମନେ କରୁଛି ।

ହରେନ୍ଦ୍ର ମନେ ମନେ କ୍ଷୁବ୍ଧ ହୋଇ ପଡ଼ି କହିଲା—କିନ୍ତୁ ମୁଁ ଜାଣେ ତା ଚରିତ୍ର ନିର୍ମଳ...

ସତୀଶ ମୁଣ୍ଡ ହଲାଇ କହିଲା—ହଁ, ଏ ଦିଗରୁ ଅତି ବଡ଼ ଶତ୍ରୁ ମଧ୍ୟ ତାକୁ ଦୋଷ ଦେଇ ପାରିବ ନାହିଁ । ରାଜେନ୍ ହେଉଛି ଆଜୀବନ କୁମାର । କିନ୍ତୁ ଏହା ବୋଲି ସେ ବ୍ରହ୍ମଚାରୀ ନୁହେଁ । ଅସଲ କାରଣ ସ୍ତ୍ରୀ ଲୋକ ବୋଲି ସଂସାରରେ କିଛି ଅଛନ୍ତି । ସେମାନଙ୍କୁ ଚାହିଁବା ପାଇଁ ତାର ସମୟ ନାହିଁ । ଏତକ କହି ସେ ମୁହୂର୍ତ୍ତିକ ପାଇଁ ନୀରବ ରହିବା ପରେ କହିଲା—ତା ଚରିତ୍ର ବିରୁଦ୍ଧରେ ମୁଁ ଅଭିଯୋଗ କରୁ ନାହିଁ । ସେ ହେଉଛି ଅସ୍ୱାଭାବିକ ଭାବରେ ନିର୍ମଳ କିନ୍ତୁ...

: ତଥାପି ତୁମର କିନ୍ତୁଟା କ'ଣ ?

: କଲିକତା ବସାରେ ଆମେ ଦୁଇ ଜଣ ରହୁ ଥାଉ । ସେ ସେତେବେଳକୁ କ୍ୟାମ୍ବେଲ ମେଡ଼ିକାଲ କଲେଜର ଛାତ୍ର ଥାଇ ସୁଦ୍ଧା ବସାରେ ବି. ଏସ୍. ସି. ପଢ଼ୁଥାଏ । ସମସ୍ତେ ଜାଣୁଥିଲେ ସେ ଫାଷ୍ଟ-ହେବ ବୋଲି । କିନ୍ତୁ ଠିକ୍ ପରୀକ୍ଷା ଦିନ ଭୁଆଡ଼େ ଚାଲିଗଲା ।

ହରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା—ସେ କ'ଣ ଡାକ୍ତରୀ ପଢୁ ନ ଥିଲା କି ? କିନ୍ତୁ ମୋତେ କହିଥିଲା ଯେ ସେ ଶିବପୁର ଇଂଜିନିୟରିଂ କଲେଜରେ ଭର୍ତ୍ତି ହୋଇଥିଲା ବୋଲି କିନ୍ତୁ ପାଠ ନିହାତି କଷ୍ଟକର ବୋଲି ଛାଡ଼ି ପଳାଇ ଆସିଲା ।

: କିନ୍ତୁ ଆପଣ ସନ୍ଧାନ ନେଲେ ଜାଣି ପାରିବେ ଯେ କଲେଜରେ ଥାର୍ଡ଼ ଇୟରର ପର୍ଯ୍ୟନ୍ତ ସେ ହିଁ ହୋଇଥିଲା ପ୍ରଥମ । ଅଥଚ ବିନା କାରଣରେ କଲେଜ ଛାଡ଼ି

ଆସିବାରୁ ଅଧ୍ୟାପକମାନେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ତା ପିଉସୀ ଖୁବ୍ ବଡ଼ ଲୋକ ଥିଲେ । ସେ ପଢ଼ାଖର୍ଚ୍ଚ ବହନ କରିଥିଲେ । ଏହି ଘଟଣା ହେତୁ ବିରକ୍ତ ହୋଇ ଟଙ୍କା ପଠାଇବା ବନ୍ଦ କରିଦେଲେ । ତାପରେ ବୋଧହୁଏ ତାର ଆପଣଙ୍କ ସହିତ ପରିଚୟ ହୋଇଛି । ଦୁଇଟା ବର୍ଷ ବୁଲି ବୁଲି ଯେତେବେଳେ ଫେରି ଆସିଲା, ପିଉସୀ ତାରି ସମ୍ମତି ନେଇ ତାକୁ ଡାକ୍ତରୀ ସ୍କୁଲରେ ଭର୍ତ୍ତି କରିଦେଲେ । କ୍ଲାସରେ ପ୍ରତ୍ୟେକ ବିଷୟରେ ଫାଷ୍ଟ ହେଉଥିଲା । ଅଥଚ ତିନିଟା ବର୍ଷ ପରେ ହଠାତ୍ ଦିନେ ପାଠ ପଢ଼ା ଛାଡ଼ିଦେଲା । ସେଇ ଗୋଟିଏ କଥା—ବଡ଼ କଷ୍ଟ ପାଠ, ମୁଁ ପାରିବି ନାହିଁ । ଛାଡ଼ିଦେଇ ପୁଣି ଆସି ମୋ ବସାରେ ଆଡ଼୍ଡ଼ା ମାରିଲା । କହିଲା—ବି. ଏସ୍. ସି. ପାସ୍ କଲାପରେ କୌଣସି ଗାଆଁରେ ପହିଲି ପିଲାଙ୍କୁ ପଢ଼ାଇବା ପାଇଁ ମାଷ୍ଟରୀ କାମ କରିବ । ମୁଁ କହିଲି—ଆଚ୍ଛା, ତାହା ହିଁ କର । ତାପରେ ଦିନ ପନ୍ଦରଟା ପର୍ଯ୍ୟନ୍ତ ଖାଇବା, ଗାଧୋଇବାକୁ ସମୟ ମିଳିଲା ନାହିଁ । ଆଖିକୁ ନିଦ କୁଆଡ଼େ ଗୁଲିଗଲା ତାର ଠିକଣା ନାହିଁ । ଏପରି ପାଠ ପଢ଼ିଲା ଯେ ତାହା ଏକ ଆଶ୍ଚର୍ଯ୍ୟକର ବିଷୟ । ସମସ୍ତେ କହିଲେ, ଏପରି ନ ହେଲେ କ'ଣ କେହି କେବେ ପ୍ରତ୍ୟେକ ବିଷୟରେ ଫାଷ୍ଟ ହୋଇପାରେ ?

ହରେନ୍ଦ୍ର ଏସବୁ କିଛୁ ଜାଣି ନଥିଲା । ରୁଦ୍ଧ ନିଃଶ୍ୱାସ ଛାଡ଼ି କହିଲା—ତାପରେ ?

: ତାହାପରେ ଯାହା ଆରମ୍ଭ କଲା ତାହା ମଧ୍ୟ ଅଦ୍ଭୁତ ଧରଣର । ବହି ଆଉ ଛୁଇଁଲା ନାହିଁ । କେଉଁଠି ରହିଲା ତା ଖାତା ପେନ୍ସିଲ, କେଉଁଠି ରହିଲା ତା ନୋଟ୍‌ବୁକ୍, କୁଆଡ଼େ ଗଲା, କେଉଁଠି ରହିଲା, ଠିକଣା ମଧ୍ୟ ଜଣା ପଡ଼ିଲା ନାହିଁ । ଯେତେବେଳେ ଫେରି ଆସିଲା, ସେତେବେଳେ ତା ଚେହେରା ଦେଖିଲେ ମନରେ ଭୟ ହେଲା । ଯେପରି ଏତେ ଦିନ ଧରି ସେ ଗାଧୋଇ ନାହିଁ କମ୍ବା ଖାଇ ନାହିଁ ।

: ତା ପରେ ?

: ତାପରେ ଦିନେ ପୋଲିସର ଦଳବଳ ଆସି ସକାଳୁ ଆମ ମେସରେ ଦକ୍ଷଯଜ୍ଞ ଆରମ୍ଭ କରିଦେଲେ । ସେଇଟା ଫିଙ୍ଗିଲେ, ଏଇଟା ଖୋଲିଲେ, କାହାକୁ ଧମକାଇଲେ, ଏବଂ ତାକୁ ଅଟକ ରଖିଲେ ସେ ଦୃଶ୍ୟ ନ ଦେଖିଲେ କଳ୍ପନା କରି ହୁଏ ନାହିଁ । ବସାରେ ସମସ୍ତେ କିରାଣୀ କାମ କରନ୍ତି । ସମସ୍ତେ ଭୟରେ ଛୁନିଆଁ ହୋଇ ଉଠିଲେ । ସମସ୍ତେ ଭାବିଲେ ଆଉ ରକ୍ଷା ନାହିଁ । ପୁଲିସମାନେ ବୋଧହୁଏ ଆଜ ସମସ୍ତଙ୍କୁ ଧରି ଫାଶୀ ଦେବେ ।

: ତା ପରେ ?

: ତାପରେ ଓପର ଓଳକୁ ରାଜେନ୍‌କୁ ଏବଂ ତାର ବନ୍ଧୁ ବୋଲି ମୋତେ ଦୁହିଁଙ୍କୁ ଧରି ନେଇ ସେମାନେ ବସାରୁ ବିଦାୟ ହୋଇଗଲେ । ମୋତେ ଦୁଇ ଦିନରଦିନ ପରେ

ଛାଡ଼ି ଦେଲେ । କିନ୍ତୁ ତାଙ୍କୁ ଛାଡ଼ି ଦେବାପାଇଁ ସେମାନଙ୍କର କୌଣସି ଉଦ୍ଦେଶ୍ୟ ଥିବା ଭଳି ଜଣା ପଡ଼ିଲା ନାହିଁ । ଛାଡ଼ିବା ବେଳେ ସାହେବ ବାରମ୍ବାର ସତର୍କ କରି ସ୍ମରଣ କରାଇ ଦେଲେ ଯେ—ଓ୍ୱାନ୍ ଷ୍ଟେପ୍ । ଓନଲି ଓ୍ୱାନ୍ ଷ୍ଟେପ୍ । ତୁମ ବସାଘର ଆଉ ଜେଲଖାନାର ଏଇ କୋଠରି ଭିତରେ ମାତ୍ର ବ୍ୟବଧାନ ରହିଲା କେବଳ ଓ୍ୱାନ୍‌ଷ୍ଟେପ୍ । ଗଙ୍ଗାସ୍ନାନ କରି, କାଳୀଘାଟରେ ମାଆ କାଳୀଙ୍କୁ ଦର୍ଶନ କରି ବସାକୁ ଫେରି ଆସିଲି । ସମସ୍ତେ କହିଲେ, ସତୀଶ ତୁ ଭାଗ୍ୟବାନ । ଅଫିସକୁ ଗଲି । ସାହେବ ଡକାଇ ପଠାଇ ଦୁଇ ମାସର ଦରମା ଧରାଇ ଦେଇ କହିଲେ —ଗୋ (Go) । ଶୁଣିଲି ଏହା ଭିତରେ ମୋ ସମ୍ପର୍କରେ ଅନେକ ଖୋଜ ଖବର ଏବଂ ତଲାସୀ କରା ସରିଛି ।

ହରେନ୍ଦ୍ର ସ୍ତବ୍ଧ ହୋଇ ରହିଲା । କିଛି ସମୟ ଏହିପରି ରହିବା ପରେ ଶେଷରେ ଧୀରେ ଧୀରେ କହିଲା—ତାହାଲେ କ'ଣ ତୁମର ନିଶ୍ଚିତ ଭାବରେ ମନେ ହେଉଛି ଯେ ରାଜେନ୍....

ସତୀଶ ମିନତି ଭରା କଣ୍ଠରେ କହିଲା—ମୋତେ ସେ କଥା ପ୍ରଶ୍ନ କରିବେ ନାହିଁ । ସେ ହେଉଛି ମୋର ବନ୍ଧୁ ।

ହରେନ୍ଦ୍ର ଖୁସି ହେଲା ନାହିଁ । କହିଲା—ସେ ମଧ୍ୟ ମୋର ଭାଇ ଭଳି ।

ସତୀଶ କହିଲା—ଆମକୁ ଟିକିଏ ଚିନ୍ତା କରିବାକୁ ହେବ । ଯେପରି ସେ ଆମକୁ ବିନା ଦୋଷରେ ଲାଞ୍ଛନା ଦେଇଛି, ସେହିପରି ମଧ୍ୟ କ୍ଷମା ବି ଦେଇଛି ।

: ବିନା ଦୋଷରେ ଲାଞ୍ଛନା ଦେବାଟା ତ ନ୍ୟାୟ କଥା ନୁହେଁ । ଯେଉଁମାନେ ତାହା କରିପାରନ୍ତି, ସେମାନେ ଏଇଟାକୁ ଅବା କରି ନ ପାରିବେ କାହିଁକି ? ଏହା କହି ହରେନ୍ଦ୍ର କଲେଜକୁ ଚାଲିଗଲା ସିନା କିନ୍ତୁ ତା ମନରେ ଅଶାନ୍ତି ଲାଗି ରହିଲା । କେବଳ ରାଜେନ୍‌ର ଭବିଷ୍ୟତ ଚିନ୍ତା କରି ନୁହେଁ—ଦେଶ କାର୍ଯ୍ୟ ପାଇଁ ଦେଶର ପିଲାମାନଙ୍କୁ ମଣିଷ ପରି ମଣିଷ କରି ଗଢ଼ି ତୋଳିବା ପାଇଁ ଏହି ଯେଉଁ ଆୟୋଜନ ସେ କରିବସିଛି କାଳେ ତାହା ଅକାଳରେ ନଷ୍ଟ ହୋଇଯିବ ଏଇ ଆଶଙ୍କାରେ । ହରେନ୍ ସ୍ଥିର କଲା—ଘଟଣାଟା ସତ ହେଉ, ବା ମିଛ ହେଉ, ପୁଲିସର ଦୃଷ୍ଟି ଆଶ୍ରମ ପ୍ରତି ଆକର୍ଷିତ କରାଇବାଟା କୌଣସି ମତେ ଠିକ୍ ହୋଇ ନାହିଁ । ବିଶେଷତଃ ସେ ଯେତେବେଳେ ଏଠିକାର ଆଇନ ଲଙ୍ଘନ କରି ଚାଲିଛି ସେତେବେଳେ କେଉଁଠାରେ ଚାକିରି କରି ଦିଆଇ ହେଉ, କିମ୍ବା ଅନ୍ୟ କୌଣସି କାରଣରେ ତାକୁ ଏଠାରୁ ଅନ୍ୟତ୍ର ଅପସାରିତ କରିବାଟା ବାଞ୍ଛନୀୟ ହେବ ।

ଏହାର କେତେଦିନ ପରେ ମୁସଲମାନଙ୍କର କ'ଣ ଗୋଟାଏ ପର୍ବ ଉପଲକ୍ଷରେ ଦୁଇଦିନ କଲେଜ ଛୁଟି ଥିଲା । ସତୀଶ କାଶୀ ଯିବା ପାଇଁ ଅନୁମତି ମାଗିବାକୁ ଆସିଲା । ଆଜି ଆଶ୍ରମ ଭଳି ସାରା ଭାରତରେ ସବୁଠୁ ଆଦର୍ଶ ଆଶ୍ରମ ଗଢ଼ିବା ପାଇଁ ଏକ ବିରାଟ

ପରିକଳ୍ପନା ହରେନ୍ଦ୍ର ମନରେ ଥିଲା ଏବଂ ଏହି ଉଦ୍ଦେଶ୍ୟରେ ସନ୍ତାଣର କାଶୀ ଯାତ୍ରା । ଶୁଣିପାରି ରାଜେନ ଆସି କହିଲା—ହରେନ ଭାଇ, ମୁଁ ମଧ୍ୟ ତା ସହିତ କେତେଟା ଦିନ କାଶୀ ଯାଇ ବୁଲି ଆସନ୍ତି ।

ହରେନ୍ଦ୍ର କହିଲା—ତାର କାମ ଅଛି ବୋଲି ସେ ଯାଉଛି ।

ରାଜେନ କହିଲା—ମୋର କାମ ନାହିଁ ବୋଲି ତ ଯିବା ପାଇଁ ଇଚ୍ଛା କରୁଛି । ଯିବା ପାଇଁ ଗାଡ଼ି ଭଡ଼ା ମୋ ପାଖରେ ଅଛି ।

ହରେନ୍ଦ୍ର ପ୍ରଶ୍ନ କଲା—କିନ୍ତୁ ଫେରି ଆସିବା ପାଇଁ ?

ରାଜେନ ଚୁପ୍ ହୋଇ ରହିଲା ।

ହରେନ୍ଦ୍ର କହିଲା—ବହୁଦିନ ହେବ ତୋତେ ଗୋଟାଏ କଥା କହିବ କହିବ ହୋଇ କହି ପାରି ନାହିଁ ।

ରାଜେନ ସାମାନ୍ୟ ହସି ଦେଇ କହିଲା—କହିବାର ଆବଶ୍ୟକତା ନାହିଁ । ସେ କଥା ମୁଁ ଜାଣେ ହରେନ ଭାଇ । ଏତକ କହି ସେ ସେଠାରୁ ଚାଲିଗଲା ।

ରାତି ଗାଡ଼ିରେ ସେମାନଙ୍କର ଯିବାର ଥିଲା । ବସାରୁ ବାହାରିବା ସମୟରେ ହରେନ୍ଦ୍ର ଘର ଦୁଆର ବନ୍ଦ ନିକଟରେ ଠିଆ ହୋଇଥିଲା । ସେ ହଠାତ୍ ତା ହାତରେ ଗୋଟିଏ କାଗଜ ପୁଡ଼ିଆ ଗୁଞ୍ଜି ଦେଇ ଚୁପ୍ ଚୁପ୍ କରି କହିଲା—ଫେରି ନ ଆସିଲେ ବହୁତ ମନକଷ୍ଟ କରିବ ରାଜେନ । ଏତକ କହି ଆଖି ପଲକମାତେ ପଳାଇ ଯାଇ ନିଜ ରହିବା ଘରେ ପଶିଗଲା ।

ଏହାର ଦଶଦିନ ପରେ ଦୁଇଜଣ ଯାକ ଫେରି ଆସିଲେ । ହରେନ୍ଦ୍ରକୁ ଏକ ନିଭୃତ ସ୍ଥାନକୁ ଡାକି ସନ୍ତାଣ ପ୍ରଫୁଲ୍ଲିତ ହୋଇ କହିଲା—ଆପଣଙ୍କର ସେଦିନ ଏତକ କହିବା ହିଁ କାମ ଦେଇଛି । କାଶୀରେ ଆଶ୍ରମ ସ୍ଥାପନ ପାଇଁ ଏଇ କେତେଦିନ ରାଜେନ ଅକ୍ଳାନ୍ତ ପରିଶ୍ରମ କରିଛି ।

: ତାର ପରିଶ୍ରମ କରିବାକୁ ଇଚ୍ଛା କଲେ ସେ ଅକ୍ଳାନ୍ତ ପରିଶ୍ରମ ହିଁ କରିଥାଏ ।

: ହଁ, ତାହାହିଁ ସେ କରିଛି । କିନ୍ତୁ ଏହି ପରିଶ୍ରମର ଚାରିଣା ଅଂଶ ଯଦି ସେ ଆମ ଆଶ୍ରମ ପାଇଁ କରିପାରନ୍ତା ?

ହରେନ୍ଦ୍ର ଆଶ୍ୱାନ୍ୱିତ ହୋଇ କହିଲା—କରିବ ସନ୍ତାଣ, ସେ କରିବ । ଏତେ ଦିନ ବୋଧହୁଏ ଠିକ୍ ଜାଗାଟି ସେ ଧରି ପାରି ନ ଥିଲା । ମୁଁ ନିଶ୍ଚିତ କରି କହୁଛି ତୁମେ ଦେଖିବାକୁ ପାଇବ ଏଣିକି ତା କାମର ଖାପ ମାପ ରହିବ ନାହିଁ ।

ସନ୍ତାଣ ନିଜେ ମଧ୍ୟ ସେଇ ଆଶା ହିଁ କରିଲା ।

ହରେନ୍ଦ୍ର କହିଲା—ତୁମ ମାନଙ୍କର ଫେରି ଆସିବା ପର୍ଯ୍ୟନ୍ତ ଗୋଟାଏ କାର୍ଯ୍ୟ ସ୍ଥଗିତ ରହିଥିଲା । ମୁଁ ମନେ ମନେ କ'ଣ ସ୍ଥିର କରିଛି ଜାଣ ? ଆମମାନଙ୍କର ଆଶ୍ରମର

ଅସ୍ତିତ୍ୱ ଏବଂ ଉଦ୍ଦେଶ୍ୟ ଗୋପନ ରଖିଲେ ଆଉ ଚଳିବ ନାହିଁ । ଦେଶବାସୀଙ୍କର ସହାନୁଭୂତି ପାଇବା ପାଇଁ ଆମ ମାନଙ୍କୁ ଆଶ୍ରମର କର୍ମ ପଦ୍ଧତି ସାଧାରଣରେ ପ୍ରଚାର କରିବାକୁ ପଡ଼ିବ ।

ସତ୍ୟଶ ସନ୍ଦିଗ୍ଧ କଣ୍ଠରେ କହିଲା—କିନ୍ତୁ ତାହାଦ୍ୱାରା କ'ଣ କାର୍ଯ୍ୟର ଅଗ୍ରଗତି ବାଧା ପାଇବ ନାହିଁ ?

: ନା । ଆସନ୍ତା ରବିବାର ଦିନ ମୁଁ କେତେଜଣଙ୍କୁ ଡାକିଛି । ସେମାନେ ଦେଖିବାକୁ ଆସିବେ । ଆଶ୍ରମର ଶିକ୍ଷା, ସାଧନା, ସଂଯମ ଓ ବିଶୃଙ୍ଖଳତାର ପରିଚୟ ପାଇ ସେଦିନ ଯେପରି ସେମାନେ ଆମମାନଙ୍କୁ ମୁଗ୍ଧ କରିଦଅନ୍ତି । ତୁମ ଉପରେ ହିଁ ସମସ୍ତ ଦାୟିତ୍ୱ ରହିଲା ।

: କିଏ, କିଏ, ଆସିବେ ?

: ଅଜିତବାବୁ, ଅବିନାଶ ଭାଇ, ଆଉ କ'ଣ ଆଉ । ଶିବନାଥବାବୁ, ବର୍ତ୍ତମାନ ଏଠାରେ ନାହାନ୍ତି । ଶୁଣିଲି କର୍ଯ୍ୟୋପଲକ୍ଷେ ଜୟପୁର ଯାଇଛନ୍ତି । କିନ୍ତୁ ତାଙ୍କ ସ୍ତ୍ରୀ କମଳଙ୍କ ନାମ ଶୁଣିଥିବ ବୋଧହୁଏ, ସେ ମଧ୍ୟ ଆସିବେ । ଦେହ ଭଲ ଥିଲେ ଆଶୁବାବୁଙ୍କୁ ମଧ୍ୟ ଧରି ଆଣି ପାରିବ । ତୁମେ ଜାଣିଥିବ ତ ସେମାନେ କେହି ଏପରି ସେପରି ଲୋକ ନୁହନ୍ତି । ସେଦିନ ଯେପରି ସେମାନଙ୍କଠାରୁ ପ୍ରକୃତ ଶ୍ରଦ୍ଧା ଆମେମାନେ ଆଦାୟ କରିପାରୁ । ସେ ଭାର ତୁମ ଉପରେ ରହିଲା ।

ସତ୍ୟଶ ବିନୟର ସହିତ ମଥାନତ କରି କହିଲା, ଆଶୀର୍ବାଦ କରନ୍ତୁ । ତାହା ହିଁ ଯେପରି ମୁଁ କରିପାରେ ।

ରବିବାର ସନ୍ଧ୍ୟା ସମୟରେ ସେମାନେ ସମସ୍ତେ ଆସି ଉପସ୍ଥିତ ହେଲେ । ଆସିପାରିଲେ ନାହିଁ କେବଳ ଆଶୁବାବୁ । ହରେନ୍ଦ୍ର ଦୁଆର ମୁହଁରୁ ସେମାନଙ୍କୁ ପାଛୋଟି ଆଣିଲା । ପିଲାମାନେ ସେତେବେଳେ ଆଶ୍ରମର ନିତ୍ୟ ପ୍ରୟୋଜନୀୟ କର୍ମରେ ବ୍ୟାପୃତ । କେହି ଆଲୁଅ ଲଗାଉଛି, କେହି ଘର ଓଳାଉଛି, କେହି ଚୂଲିରେ ନିଆଁ ଧରାଉଛି, କେହି ପାଣି ଆଣୁଛି, ଏବଂ କେହି ରୋଷାଇ ବାସ ପାଇଁ ଜିନିଷ ପ୍ରସ୍ତୁତ କରିବାରେ ଲାଗିଛି । ହରେନ୍ଦ୍ର ଅବିନାଶ ବାବୁଙ୍କୁ ଲକ୍ଷ୍ୟ କରି କହିଲା, ଭାଇ, ଏ ସବୁ ଆମ ଆଶ୍ରମର ପିଲା ।

ସେଇମାନଙ୍କୁ ଆପଣ ଲକ୍ଷ୍ମୀଛଡ଼ାର ଦଳ ବୋଲି କହିଥାନ୍ତି । ଆମମାନଙ୍କର ସ୍ୱଭର-ପୂଜାଶ୍ରି ନାହାନ୍ତି । ସମସ୍ତ କାମ ଏମାନଙ୍କୁ ନିଜେ ନିଜେ କରିବାକୁ ପଡ଼ିଥାଏ । ନୂଆ'ଉ ସ୍କୁଲରୁ ଆମର ରୋଷାଇ ଘରକୁ । ଆଜି ଆମର ପର୍ବ । ସେଠିକାର ଆୟୋଜନ ଟିକିଏ ଦେଖି ଆସିବେ ।

ନୀଳିମା ପଛେ ପଛେ ସମସ୍ତେ ଯାଇ ରୋଷଘର ଦୁଆର ପାଖରେ ଠିଆ ହେଲେ । ଗୋଟିଏ ଦଶ ବାର ବର୍ଷର ପିଲା ଚୂଲି ଲଗାଉଥିଲା ଏବଂ ସେହି ବୟସର ଆଉ ଗୋଟିଏ ପିଲା ଗିନାରେ ଆଳୁ ଚକୁଟୁ ଥିଲା । ଦୁହେଁ ଯାକ ଉଠି ଠିଆ ହୋଇ ନମସ୍କାର କଲେ । ନୀଳିମା ପିଲାଟିକୁ ସ୍ନେହ ବୋଳା କଣ୍ଠରେ ସମ୍ବୋଧନ କରି ପ୍ରଶ୍ନ କଲା—ଆଜି ତୁମର କ'ଣ ସବୁ ରୋଷାଇ ହେବ, ବାବା ?

ପିଲାଟି ପ୍ରସନ୍ନ ମୁହଁରେ କହିଲା—ଆଜି ରବିବାର । ଆମର ଅଳୁ ଦମ୍ ହବ ।

: ଆଉ କ'ଣ ହବ ?

: ଆଉ କିଛୁ ନାହିଁ ।

ନୀଳିମା ବ୍ୟାକୁଳ ହୋଇ ପଚ୍ଚରିଲା—କ'ଣ କେବଳ ଆଳୁଦମ୍ ?

ଡାଲି, ଝୋଲ, କମ୍ବା ଆଉ କିଛି···

ପିଲାଟି କହିଲା—ଆମର କାଲି ଡାଲି ହୋଇଥିଲା ।

ସତୀଶ ପାଖରେ ଠିଆ ହୋଇଥିଲା । ବୁଝାଇ କରି କହିଲା—ଆମ ଆଶ୍ରମରେ ଗୋଟିଏରୁ ଅଧିକା ତରକାରି କରିବା ନିୟମ ନାହିଁ ।

ହରେନ୍ଦ୍ର ହସି ଦେଇ କହିଲା—କହିବାର ଶବ୍ଦ 'ନାହିଁ ନୂଆ'ଉ ।' ହେବ କେଉଁଠୁ ? ଏଇପରି ଭାବରେ ଅନ୍ୟମାନଙ୍କ ନିକଟରେ ଆଶ୍ରମର ଗୌରବ ଆମେ ରଖି ପାରିଛୁ ।

ନୀଳିମା ପ୍ରଶ୍ନ କଲା—ସ୍କୁକର, କମ୍ବା ସ୍କୁକରଣୀ'ନାହାନ୍ତି'ବୋଧହୁଏ ?

ହରେନ୍ଦ୍ର କହିଲା ନା । ସେମାନଙ୍କୁ ରଖିଲେ ଆଳୁ ଦମ୍‌କୁ ବଦାସ୍ତ କରି ଦେବାକୁ ପଡ଼ିବ । ପିଲାମାନେ ତାହା ପସନ୍ଦ କରନ୍ତି ନାହିଁ ।

ନୀଳିମା ଆଉ ପ୍ରଶ୍ନ କଲା ନାହିଁ—ପିଲା ଦୁଇଟିଙ୍କ ମୁହଁକୁ ଚାହିଁବା କ୍ଷଣି ତା ଦୁଇ ଆଖି ଲୁହରେ ଛଳ ଛଳ ହୋଇ ଉଠିଲା । କହିଲା—ଚାଲ, ଆଉ କେଉଁଠିକି ଯିବା ।

ସମସ୍ତେ ଏ କଥାର ଅର୍ଥ ବୁଝି ପାରିଲେ । ହରେନ୍ଦ୍ର ମନେ ମନେ ଆନନ୍ଦିତ ହୋଇ କହିଲା—ଚାଲନ୍ତୁ । ମୁଁ କିନ୍ତୁ ନିଷ୍ପ୍ରିତ ଭାବରେ ଜାଣେ ନୂଆ'ଉ ଆପଣ ଏହା ଆଦୌ ସହ୍ୟ କରି ପାରିବେ ନାହିଁ । ଏହା କହି ସାରି ସେ କମଳ ଆଡ଼କୁ ଚାହିଁ କହିଲା—କିନ୍ତୁ ଆପଣ ନିଜେ ଏଥିରେ ଅଭ୍ୟସ୍ତ । କେବଳ ଆପଣ ହିଁ ବୁଝି ପାରିବେ ଏହାର

ମାର୍ଜିତତା । ସେଥିପାଇଁ ସେଦିନ ମୋର ଏହି ବ୍ରହ୍ମଚର୍ଯ୍ୟାଶ୍ରମକୁ ଆପଣଙ୍କୁ ଆସିବା ପାଇଁ ନିମନ୍ତ୍ରଣ ଜଣାଇଥିଲି ।

ହରେନ୍ଦ୍ରର ଗମ୍ଭୀର ମୁହଁକୁ ଚାହିଁ କମଳ ହସି ପକାଇ କହିଲା—ମୋ ନିଜ କଥା ଅଲଗା । କିନ୍ତୁ ଏଇ ସବୁ ଶିଶୁମାନଙ୍କୁ ନେଇ ବିରାଟ ଆଡ଼ମ୍ବରରେ ଏହି ନିଷ୍ଫଳ ଦାରିଦ୍ର୍ୟ ଚର୍ଯ୍ୟାର ନାମ କ'ଣ ମଣିଷ ଗଢ଼ିବା, ହରେନ୍ଦ୍ର ବାବୁ ? ଏମାନେ ସମସ୍ତେ ବୋଧହୁଏ ବ୍ରହ୍ମଚାରୀ ? ଏମାନଙ୍କୁ ମଣିଷ କରିବା ପାଇଁ ଚାହାନ୍ତି ତ ତେବେ ସହଜ ସାଧାରଣ ପନ୍ଥା ଧରନ୍ତୁ । ମିଛଟାରେ ଦୁଃଖର ବୋଝ ସେମାନଙ୍କ ମୁଣ୍ଡରେ ଲଦି ଦେଇ ଅସମୟରେ କୁଜା କରି ଦିଅନ୍ତୁ ନାହିଁ ।

ତା କଥାର କଠୋରତାରେ ହରେନ୍ଦ୍ର ବିବ୍ରତ ହୋଇ ଉଠିଲା । ଅକ୍ଷୟ ବାବୁ କହିଲେ—କମଳଙ୍କୁ ଡାକି ଆଣିବା ତୋର ଠିକ୍ ହୋଇ ନାହିଁ । ହରେନ୍ଦ୍ର ।

କମଳ ଲଜ୍ଜିତ ହୋଇ କହିଲା—ପ୍ରକୃତରେ ମୋତେ କାହାର ଡାକିବା ଉଚିତ ନୁହେଁ ।

ନୀଳିମା କହିଲା—ସେହି କାହାର ଭିତରେ କିନ୍ତୁ ମୁଁ ନାହିଁ କମଳ । ମୋ ଘରେ କଦାପି ତୁମର ଅନାଦର ହେବ ନାହିଁ । ଚାଲ, ଆମେ ଉପରକୁ ଯାଇ କଥା ହେବା । ଦେଖିବା, ଆମ ଦିଅରଙ୍କ ଆଶ୍ରମରେ କଉଣ ଆତସବାଜି ଫୁଟି ପାରୁଛି । ଏହା କହି ସେ ମଧୁର ହସର ଆବରଣ ଦ୍ୱାରା କମଳର ଲାଜକୁ ଘୋଡ଼ାଇ ଦେଲା ।

ଦ୍ୱିତଳ ଆଶ୍ରମରେ ବୈଠକ ଘରଟି ଯଥେଷ୍ଟ ପ୍ରଶସ୍ତ । ସାହେବ ଯୁଗର କାରୁକାର୍ଯ୍ୟ ଛାତତଳେ ଏବଂ କାନ୍ଥ ଦେହରେ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ । ବସିବା ପାଇଁ ଖଣ୍ଡିଏ ବେଞ୍ଚ ଏବଂ ଚାରିଟା ଚୌକି ପଡ଼ିଛି । କିନ୍ତୁ ସାଧାରଣତଃ କେହି ତହିଁରେ ବସନ୍ତି ନାହିଁ । ତଳେ ସତରଞ୍ଜି ବିଛା ହୋଇଥାଏ । ଆଜି ବିଶେଷ ଉତ୍ସବ ଉପଲକ୍ଷରେ ସାଦା ଚାଦର ବିଛାଇ ଦିଆଯାଇ ପ୍ରତିବେଶୀଙ୍କ ଘରୁ କେତୋଟା ମୋଟା ଗୋଲ ତକିଆ ଅଣାଯାଇ ଥୁଆ ଯାଇଛି । ଘର ମଝିରେ ଲତା, ପତ୍ର, ଅଙ୍କିତ ଶେଯ ପଡ଼ିଥାଏ । ଘରେ ସବୁଜ ରଙ୍ଗର ଫ୍ୟାନୁସରେ ଢଙ୍କା ହୋଇଥିବା ବତୀଟିଏ ଜଳୁଥାଏ । ତଳର ଅନ୍ଧକାର ଏବଂ ଆନନ୍ଦହୀନ ଆବହାଓ୍ୱା ମଧ୍ୟରୁ ଆସି ଏଠାରେ ସମସ୍ତେ ଏକଜୁଟ ହୋଇଥିବା ହେତୁ ଆନନ୍ଦିତ ହୋଇ ଉଠିଥିଲେ ।

ଅବିନାଶ ବାବୁ ଗୋଟିଏ ତକିଆକୁ ଆଉଜି ପଡ଼ି ଆଗକୁ ପାଦ ଦୁଇଟା ପ୍ରସାରିତ କରିଦେଇ ତୃପ୍ତିର ନିଃଶ୍ୱାସ ଛାଡ଼ି କହିଲେ—ଆଃ ! ମଣିଷ ବଞ୍ଚିଗଲା ।

ହରେନ୍ଦ୍ର ମନେ ମନେ ପୁଲକିତ ହୋଇ ଉଠି କହିଲା—ଆମ ଆଶ୍ରମ ଭିତରେ ଏ ଘରଟି କିପରି ଲାଗୁଛି, ଭାଇ ?

ଅବିନାଶ ବାବୁ କହିଲେ—ଏଭଳି ତୁ ମୋତେ ଅନ୍ଧାରରେ ପକାଇଲୁଣି । କମଳ ଉପସ୍ଥିତ ରହିଛନ୍ତି । ତାଙ୍କ ସମ୍ମୁଖରେ କାହାକୁ ଭଲ ବୋଲି କହିବା ପାଇଁ ସାହସ ହୁଏ ନାହିଁ । କାରଣ ସୁତୀକ୍ଷଣ ପ୍ରତିବାଦ ବଳରେ ସେ ବର୍ତ୍ତମାନ ପ୍ରମାଣ କରିଦେବେ ଯେ ଏହି ଗ୍ଲାସର ନକ୍ସାଠାରୁ ମଝିରେ ପଡ଼ିଥିବା ଗାଳିଚା ପର୍ଯ୍ୟନ୍ତ ସବୁଗୁଡ଼ିକ ଖରାପ । ଏତିକି କହିସାରି ସେ ତା ମୁହଁକୁ ଚାହିଁ ଟିକିଏ ହସିଦେଇ ପୁଣି କହିଲେ—ମୋର ଆଉ କୌଣସି ସମ୍ବଳ ନ ଥିଲେ ନ ଥାଉ ପଛକେ କମଳ, କିନ୍ତୁ ମୁଁ ଯେ ବୟସର ପୁଞ୍ଜି ଜମାଇ କରି ରଖିପାରିଛି ଏହା ତୁମେ ନିଶ୍ଚୟ ମାନିବ । ତାହାରି ବଳରେ ତୁମକୁ ଗୋଟାଏ କଥା କହି ରଖୁଛି—ସତ୍ୟ କଥା ଅନେକ କ୍ଷେତ୍ରରେ ଅପ୍ରିୟ ହୁଏ ତାହା ମୁଁ ଅସ୍ୱୀକାର କରୁନାହିଁ, କିନ୍ତୁ ଏହା ବୋଲି ଯେତେ ଅପ୍ରିୟ ବାକ୍ୟ ସବୁ ସତ ନୁହେଁ କମଳ । ତୁମକୁ ଅନେକ କଥା ଶିବନାଥ ଶିଖାଇଛି । ଦେଖୁଛି କେବଳ ଏତିକି ମାତ୍ର ତାକୁ ଶିଖାଇବା ପାଇଁ ବାକି ରହିଯାଇଛି ।

କମଳ ମୁହଁ ନାଲି ପଡ଼ିଗଲା । କିନ୍ତୁ ଏହାର ଜବାବ ଦେଲେ ନୀଳିମା । କହିଲେ—ଶିବନାଥର ଭୁଲ ହୋଇଛି ମୁଖାର୍ଜୀ ମହାଶୟ, ମୁଁ ମାନୁଛି । ତାଙ୍କୁ କୋଣମାନା କରି ମୁଁ ଏହାର ଶାସ୍ତି ଦେବି । କିନ୍ତୁ ଗୁରୁଗିରି କରିବାରେ କେଉଁ ପୁରୁଷ ତ କମ୍ ନୁହଁନ୍ତି । ସେଥିପାଇଁ ପ୍ରାର୍ଥନା କରି କହୁଛି—ତୁମର ବୟସ ପୁଞ୍ଜିରୁ ଆଉ ଗୋଟାଏ ଦୁଇଟା ପ୍ରିୟ ବାକ୍ୟ ବାହାର କର, ଯାହାକୁ ଶୁଣି ଆମେମାନେ ଧନ୍ୟ ହେବୁ ।

ଅବିନାଶ ବାବୁ ଭିତରେ ଭିତରେ ଜଳି ଉଠିଲେ । ଏକେଇଗୁଡ଼ିଏ ଲୋକଙ୍କ ଭିତରେ କେବଳ ଉପହାସ ପାଇଁ ନୁହେଁ, ଏହି ବକ୍ରୋକ୍ତି ଅନ୍ତରାଳରେ ଯେଉଁ ସୁତୀକ୍ଷ୍ଣ ବର୍ଚ୍ଛିଟି ଲୁକ୍କାୟିତ ହୋଇଥିଲା ତାହା କେବଳ ତାଙ୍କୁ ବିଦ୍ଧ କଲା ନାହିଁ ଅପମାନିତ ବି କଲା । କିଛି ସମୟ ହେଲା କେଉଁଠାରୁ କିଭଳି ଏକ ଅସନ୍ତୋଷର ତପ୍ତ ବତାସ ବହି ଆସି ଦୁହିଁଙ୍କ ଭିତରେ ପହଞ୍ଚି ଯାଇଥିଲା । ଝଡ଼ ଭଲ ଜିନିଷ କିଛିଟା ନୁହେଁ, କିନ୍ତୁ ଝଡ଼ରେ ଉଡ଼ିଆସୁଥିବା ଧୂଳି, ବାଲି, କୁଟା ପ୍ରଭୃତି ମଝିରେ ମଝିରେ ଆସି ମୁହଁରେ ଏବଂ ଆଖିରେ ବାଜୁଥିଲା ପରି । ଅବିନାଶ ବାବୁ ହରେନ୍ଦ୍ରକୁ ଉଦ୍ଦେଶ୍ୟ କରି କହିଲେ—ସହିପାରୁ ନାହିଁ ହରେନ୍, ତୁମ ନୂଆ'ଉ ନିହାତି ମିଛ କଥା କହି ନାହାଁନ୍ତି । ମୋତେ ଚିହ୍ନିବା ପାଇଁ ତ ଆଉ ତାଙ୍କର ବାକି ନାହିଁ, ସେ ଠିକ୍ କରି ଜାଣନ୍ତି ମୋର ପୁଞ୍ଜି ସେଇ ପୁରୁଣା କାଳର । ତହିଁରେ ବସ୍ତୁ ଥିଲେ ମଧ୍ୟ ରସ ମଧ୍ୟ କମ୍ ନ ଥାଏ ।

ହରେନ୍ଦ୍ର ପ୍ରଶ୍ନ କଲା—ଏ କଥାର ମାନେ କ'ଣ ଭାଇ ?

: ତୁ ଯେହେତୁ ସନ୍ନ୍ୟାସୀ ମଣିଷ, କେଣ୍ଟ ମାନେଟା ଠିକ୍ ବୁଝି ପାରିବୁ ନାହିଁ । କିନ୍ତୁ ମୋ ଶ୍ରେଷ୍ଠ ଘରଣୀ ଯେଉଁଭଳି ସ୍ୱଚ୍ଛରେ କମଳର ଭକ୍ତ ହୋଇ ପଡ଼ିଛନ୍ତି, ସେଥିପାଇଁ ଆଶା କରୁଛି ତାଙ୍କ ଅଭିଜ୍ଞତା କାର୍ଯ୍ୟରେ ଲାଗି ପାରିଲେ ଧନ୍ୟ ହେବାର ପଥ ଆପଣା ଛାଏଁ ତାଙ୍କର ପରିଷ୍କାର ହୋଇଯିବ ।

ଏହି ଉର୍ଦ୍ଦିଭର ବଉକ୍ଷତା ଅବିନାଶବାବୁଙ୍କ କାନକୁ ମଧ୍ୟ ଶୁଣା ଯାଇଥିଲା । କିନ୍ତୁ ଦୁର୍ବିନୟ ସ୍ପର୍ଦ୍ଧା ହେତୁ ଆଉ କିଛି କହିବା ପାଇଁ ଯାଉଥିଲା ବେଳେ ହରେନ୍ଦ୍ର ଦବାଇ ଦେଲା । ସେ କ୍ଷୁର୍ତ୍ତି କଣ୍ଠରେ କହିଲା—ଭାଇ ଆପଣମାନେ ସମସ୍ତେ ମୋର ଆଜ ଅତିଥି । କମଲଙ୍କୁ ଯେ ଆଶ୍ରମ ପକ୍ଷରୁ ସମ୍ମାନର ସହିତ ଆମନ୍ତ୍ରଣ କରାହୋଇଛି । ଏକଥା ଯଦି ଭୁଲିଯାଏ ତେବେ ମୁଁ ବିରାଟ ଏକ ଭୁଲ କରିବସିବି ।

ନୀଳିମା ହସିକହିଲା—ତାହାହେଲେ ମୋ ପକ୍ଷରୁ ତୁମ ଭାଇଙ୍କୁ ମନେ ପକାଇ ଦିଅ ଯେ କାହାକୁ ମୁହଁରେ ଯାନ ଘରଣୀ ବୋଲି ଡାକଲେ ସେ ପ୍ରକୃତରେ କିନ୍ତୁ ଘରଣୀ ହୋଇଯାଏ ନାହିଁ । ତାକୁ ଶାସନ କରିବା ପାଇଁ ମାଝା ଜ୍ଞାନ ରହିବା ଆବଶ୍ୟକ । ମୋ ଦିଗରୁ ମୁଖାର୍ଜୀ ମହାଶୟଙ୍କ ଅଭିଜ୍ଞତା ଭଣ୍ଡାର ଘରେ ଆଜ ଏତିକି ସଞ୍ଚିତ ହୋଇ ରହୁ, ଯାହାକି ଭବିଷ୍ୟତରେ ତାଙ୍କ କାର୍ଯ୍ୟରେ ଲାଗି ପାରିବ ।

ହରେନ୍ଦ୍ର ହାତଯୋଡ଼ି କହିଲା—ରକ୍ଷା କରନ୍ତୁ ନ,ଆ'ଉ । ଯେତେ ଅଭିଜ୍ଞତାର ଲଢ଼ାଇ ତାହା କ'ଣ ମୋ ବସାକୁ ଆସି ହେବାର ଥିଲା ? ଯାହା ବାକୀ ରହିଗଲା, ସେତକ ଥାଉ । ଘରକୁ ଫେରି ଯାଇ ଶେଷ କରିବେ । ନଚେତ୍ ଆମେ ସମସ୍ତେ ଏଇ ଲଢ଼ାଇରେ ମରିଯିବୁ । ଯେଉଁ ଭୟରେ ଅକ୍ଷୟଙ୍କୁ ଡାକିଲି ନାହିଁ ତାହା କ'ଣ ଶେଷରେ ମୋ ଭାଗ୍ୟରେ ଲେଖାଥିଲା କି ?

ଏହାଶୁଣି ଅଜିତ ଓ କମଲ ଉଭୟେ ହସି ଉଠିଲେ ।

ହରେନ୍ଦ୍ର ପ୍ରଶ୍ନ କଲା—ଅଜିତବାବୁ ଶୁଣିଲି ଆପଣ କୁଆଡ଼େ କାଲି ଘରକୁ ଫେରି ଯାଉଛନ୍ତି ?

: କିନ୍ତୁ ଆପଣ ଶୁଣିଲେ କାହାଠାରୁ ?

: ଆଶୁବାବୁଙ୍କୁ ଆଣିବା ପାଇଁ ଯାଇଥିଲି । ସେ କହିଲେ । କାଲି ବୋଧହୁଏ ଆପଣ ଘରକୁ ଚାଲିଯିବେ ?

: ବୋଧହୁଏ । କିନ୍ତୁ କାଲି ନୁହେଁ, ପରଦିନ । ଘରକୁ କିମ୍ବା ଆଉ କେଉଁଠାକୁ ତାହା ଏପର୍ଯ୍ୟନ୍ତ ନିଶ୍ଚିନ୍ତ କରି ପାରିନାହିଁ । ହୁଏତ ଉପଘଓଳ ଆଗରୁ ଷ୍ଟେସନରେ ପହଞ୍ଚିବି । ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ଯେ କୌଣସି ଦିଗର ଗାଡ଼ି ପାଇବି ତହିଁରେ ଏଥରର ଯାତ୍ରା ଆରମ୍ଭ କରିଦେବି ।

ହରେନ୍ଦ୍ର ହସି ହସି କହିଲା—ଅନେକାଂଶରେ ବୈରାଗୀଙ୍କ ଭଳି । ଅର୍ଥାତ୍ ଗନ୍ତବ୍ୟ ସ୍ଥାନର ଠିକଣା ନାହିଁ ।

: ନା ।

: କିନ୍ତୁ ଫେରି ଆସିବାଟା କେବେ ?

: ନା, ତାହାର ମଧ୍ୟ ଆପାତତଃ କୌଣସି ଜନ୍ଦ ସ୍ପନ୍ଦନ ନାହିଁ ।

: ଅଜିତ ବାବୁ, ଆପଣ ହେଉଛନ୍ତି ଭାଗ୍ୟବାନ ଲୋକ । କିନ୍ତୁ ବୋଝ ବୋହିବା ପାଇଁ ଯଦି ଲୋକର ଆବଶ୍ୟକ ପଡ଼େ ତେବେ ମୁଁ ଜଣକୁ ଦେଇପାରେ । ବିଦେଶରେ ଏପରି ବନ୍ଧୁ କିନ୍ତୁ ଆଉ ପାଇ ପାରିବେ ନାହିଁ ।

କମଳ କହିଲା—ଆଉ ରାନ୍ଧିବା ପାଇଁ ଲୋକର ଦରକାର ପଡ଼ିଲେ ମୁଁ ଜଣକୁ ଦେଇପାରେ ଯାହାକୁ ରାନ୍ଧିବାରେ କେହି ବଳି ଯିବେ ନାହିଁ । ଆପଣ ମଧ୍ୟ ମାନିବାକୁ ବାଧ୍ୟ ହେବେ । ହଁ, ତା ପାଇଁ ମଧ୍ୟ ଗର୍ବ କରି ପାରିବେ ।

ଅବିନାଶ ବାବୁଙ୍କୁ 'ଆଉ କିଛି' ଭଲ ଲାଗୁ ନ ଥିଲା । ସେ କହିଲେ—ହରେନ ଆଉ ବିଳମ୍ବ କାହିଁକି ? ଏଥର ଫେରିବା ପାଇଁ ଆୟୋଜନ କରହେଉ । କ'ଣ କହୁଛ ?

ହରେନ୍ଦ୍ର ବିନୟର ସହିତ କହିଲା—ପିଲାମାନଙ୍କ ସହି ଟିକିଏ ଆଲାପ ପରିଚୟ କରିବେ ନାହିଁ ? ଦୁଇଟା ଉପଦେଶ ସେମାନଙ୍କୁ ଦେଇଯିବେ ନାହିଁ, ଭାଇ ?

: ଉପଦେଶ ଦେବାପାଇଁ ତ ମୁଁ ଆସି ନ ଥିଲି । ଆସିଥିଲି କେବଳ ସେମାନଙ୍କର ସଙ୍ଗୀ ହିସାବରେ । ବୋଧହୁଏ ତାହାର ଆଉ ମଧ୍ୟ ଆବଶ୍ୟକତା ନାହିଁ ।

ସତୀଶ ଅନେକ ଗୁଡ଼ିଏ ପିଲାଙ୍କୁ ସଙ୍ଗରେ ଧରି ଆସି ପହଞ୍ଚିଲା । ଦଶ-ବାର ବର୍ଷର ବାଳକଙ୍କଠାରୁ ଉନେଇଶି କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଯୁବକମାନେ ମଧ୍ୟ ତହିଁରେ ଅଛନ୍ତି । ଶୀତ ଦିନ । ଦେହରେ କେବଳ ଖଣ୍ଡିଏ ଲେଖାଏଁ କୁରୁତା । କାହା ପାଦରେ ଯୋତା ନାହିଁ (ବୋଧହୁଏ ଜୀବନ ଧାରଣ ପକ୍ଷରେ ପ୍ରୟୋଜନୀୟ ନୁହେଁ ବୋଲି) । ଆହାରର ବ୍ୟବସ୍ଥା ତ ଆଗରୁ ଦେଖାଇ ଦିଆ ସରିଛି । ବ୍ରହ୍ମଚର୍ଯ୍ୟାଶ୍ରମରେ ଏ ସକଳ ବୋଧହୁଏ ଶିକ୍ଷାର ଅଙ୍ଗୀଭୂତ । ହରେନ୍ଦ୍ର ଆଜି ପାଇଁ ଗୋଟିଏ ସୁନ୍ଦର ବକ୍ତୃତା ଲେଖି ରଖିଥିଲା । ତାହାକୁ ମନେ ମନେ ଆବୃତ୍ତି କରି ଯଥା ସମ୍ଭବ ଗାମ୍ଭୀର୍ଯ୍ୟର ସହିତ କହିଲା—ଏହି ପିଲା ଗୁଡ଼ିକ ସ୍ୱଦେଶ କାର୍ଯ୍ୟରେ ଆପଣଙ୍କୁ ଉତ୍ସର୍ଗ କରିଛନ୍ତି । ଆଶ୍ରମର ଏହି ମହତ ଆଦର୍ଶକୁ ଯେପରି ସେମାନେ ନଗରେ, ନଗରେ, ଗ୍ରାମେ ଗ୍ରାମେ, ପ୍ରଚାର କରିବା ପାଇଁ ଯୋଗ୍ୟ ହୋଇ ପାରିବେ । ଆପଣମାନେ ସେହି ଆଶୀର୍ବାଦ କରନ୍ତୁ ।

ସମସ୍ତେ ମୁକ୍ତ କଣ୍ଠରେ ଆଶୀର୍ବାଦ କରିଲେ ।

ହରେନ୍ଦ୍ର କହିଲା—ଯଦି ସମସ୍ତ ହୁଏ ତେବେ ପରେ ମୁଁ ମୋର ବକ୍ତବ୍ୟ ପ୍ରଦାନ କରିବି । ତାପରେ ସେ କମଳକୁ ଉଦ୍ଦେଶ୍ୟ କରି କହିଲା—ଆପଣଙ୍କୁ ମୁଁ ବିଶେଷ ଭାବରେ ଆମନ୍ତ୍ରଣ କରି ଆଣିଛି କିନ୍ତୁ ଶୁଣିବା ପାଇଁ । ପିଲାମାନେ ଆଶା କରିଛନ୍ତି ଆପଣଙ୍କ ମୁହଁରୁ ଆଜି ଏପରି କିଛି ଶୁଣିପାରିବେ ଯାହା ଦ୍ୱାରା କି ସେମାନଙ୍କର ଜୀବନର ବ୍ରତ ଅଧିକତର ଉଜ୍ଜ୍ୱଳ ହୋଇ ଉଠିବ ।

କମଳ ମୁହଁ ଲଜରେ ଏବଂ ଦ୍ୱିଧାରେ ଆରକ୍ତ ହୋଇ ଉଠିଲା । କହିଲା—ମୁଁ ତ ବକ୍ତୃତା ଦେଇ ଜାଣେ ନାହିଁ ହରେନ୍ଦ୍ର ବାବୁ ।

ଉତ୍ତର ଦେଲା ସନ୍ତୋଷ । କହିଲା—ବକ୍ତୃତା ନୁହେଁ, ଉପଦେଶ । ଦେଶ ସେବା-ପାଇଁ ଯାହା ସେମାନଙ୍କର ଅଧିକ କାର୍ଯ୍ୟରେ ଲଗି ପାରିବ କେବଳ ସେତକ ମାତ୍ର ।

କମଳ ତାକୁ ହିଁ ପ୍ରଶ୍ନ କଲା—ଦେଶର କାର୍ଯ୍ୟ କହିଲେ ଆପଣ କ'ଣ ବୁଝନ୍ତି ? ଆଗେ ତାହା ହିଁ କହନ୍ତୁ ।

: ଯାହା ଦ୍ୱାରା ଦେଶର ସର୍ବାଙ୍ଗୀନ କଲ୍ୟାଣ ସାଧିତ ହୋଇଥାଏ, ତାହା ହିଁ ତ ଦେଶର କାର୍ଯ୍ୟ ।

: କିନ୍ତୁ କଲ୍ୟାଣର ଧାରଣା ତ ସମସ୍ତଙ୍କର ଏକ ନୁହେଁ । ଆପଣଙ୍କ ସଙ୍ଗେ ମୋ ମତ ଯଦି ନମିଳେ ତେବେ ଆପଣଙ୍କ ଉପଦେଶ ତ ମୋ କାର୍ଯ୍ୟରେ ଲଗି ପାରିବ ନାହିଁ ।

ସନ୍ତୋଷ ବଡ଼ ଅଡ଼ୁଆରେ ପଡ଼ିଲା । ଏହି କଥାର ଠିକ୍ ଉତ୍ତର ସେ ଖୋଜି ପାଇ ପାରିଲା ନାହିଁ । ତାହାକୁ ଏହି ବିପଦରୁ ଉଦ୍ଧାର କରିବା ପାଇଁ ହରେନ୍ଦ୍ର କହିଲା—ଦେଶର ମୁକ୍ତି କେଉଁ ପ୍ରକାରରେ ଆସିପାରିବ ତାହା ହିଁ ହେଉଛି ଏକ ମାତ୍ର କଲ୍ୟାଣକର କାର୍ଯ୍ୟ । ଦେଶରେ ଏପରି କିଏ ଅଛି ? ଯିଏ କି ଏପରି ସତ୍ୟକୁ ଅସ୍ୱୀକାର କରିପାରିବ ?

କମଳ କହିଲା—କହିବା ପାଇଁ ଭୟ ହୁଏ ହରେନ୍ ବାବୁ । ସମସ୍ତେ ବର୍ତ୍ତମାନ ରାଗି ଉଠିବେ । ନ ହେଲେ ମୁଁ କହିବି ଏହି 'ମୁକ୍ତି' ଶବ୍ଦଟା ଭଳି ଭୁଲେଇବାର ଏବଂ ଭୁଲି ଯିବାର ଏତେ ବଡ଼ ଛଳନା ବୋଧହୁଏ ଆଉ ନାହିଁ । ମୁକ୍ତି କାହାଠାରୁ ହରେନ୍ ବାବୁ ? ତ୍ରିବିଧ ଦୁଃଖରୁ ନା ଭବ ବନ୍ଧନରୁ ? କେଉଁଟାକୁ ଦେଶର ଏକମାତ୍ର କଲ୍ୟାଣକର କାର୍ଯ୍ୟ ଭାବି ସ୍ଥିର କରି ଆଶ୍ରମ ପ୍ରତିଷ୍ଠା କରିଛନ୍ତି କହନ୍ତୁ ତ । ଏହା କ'ଣ ଆପଣଙ୍କର ସ୍ୱ-ଦେଶ ସେବାର ଆଦର୍ଶ ?

ହରେନ୍ଦ୍ର ବ୍ୟସ୍ତ ହୋଇ କହି ଉଠିଲା—ନା, ନା ଏସବୁ ନୁହେଁ, ଏ ସବୁ ନୁହେଁ । ଏହା ଆମମାନଙ୍କର କାମ୍ୟ ନୁହେଁ ।

କମଳ କହିଲା—ତାହା ହିଁ କହନ୍ତୁ ଏହା ଆମର କାମ୍ୟ ନୁହେଁ, କହନ୍ତୁ ଆମ-ମାନଙ୍କର ଆଦର୍ଶ ସ୍ୱତନ୍ତ୍ର । କହନ୍ତୁ ସଂସାର ତ୍ୟାଗ ଓ ବୈରାଗ୍ୟ ସାଧନା ଆମର ନୁହେଁ, ଆମର ସାଧନା ପୃଥିବୀର ସମସ୍ତ ଐଶ୍ୱର୍ଯ୍ୟ, ସମସ୍ତ ସୌନ୍ଦର୍ଯ୍ୟ, ସମସ୍ତ ପ୍ରାଣକୁ ନେଇ ବଞ୍ଚି ରହିବା । କିନ୍ତୁ ସେହି ଶିକ୍ଷା କ'ଣ ପିଲମାନଙ୍କ ପ୍ରତି ଏଇଆ ? ଦେହରେ ଖଣ୍ଡିଏ ମୋଟା କୁରୁତା ନାହିଁ, ପାଦରେ ଯୋତା ନାହିଁ, ପିନ୍ଧିଛନ୍ତି ଚଟ୍ଟଲୁଗା, ମୁଣ୍ଡରେ ରୁକ୍ଷ କେଶ, ଗୋଟିଏ ବେଳା ଅଧା ପେଟ ଭୋଜନ କରି ଯେଉଁମାନେ କେବଳ ଅଭାବ ଭିତରେ ବଢ଼ୁଛନ୍ତି, ପାଳବାତ ଆନନ୍ଦ ଯେଉଁମାନଙ୍କର ମନ ଭିତରୁ ନିର୍ବିନ୍ନ ହୋଇ ଯାଇଛି,

ଦେଶର ଲକ୍ଷ୍ମୀ କ'ଣ ଶେଷରେ ତାଙ୍କ ଭଣ୍ଡାର ଚାବି ଏଇମାନଙ୍କ ହାତରେ ଦେଇ-ଦେବେ ? ହରେନ୍ ବାବୁ ଥରକ ପାଇଁ ପୃଥିବୀ ଆଡ଼େ ଆଖି ପକାଇ ଦେଖନ୍ତୁ । ଯେଉଁମାନେ ଅନେକ କିଛି ପାଇଛନ୍ତି, ସେହିମାନେ ହିଁ ସହଜରେ ଦେଇ ପାରିଛନ୍ତି । ଦାରିଦ୍ର୍ୟର ବିଦ୍ୟାଳୟ ପ୍ରତିଷ୍ଠା କରି ସେମାନଙ୍କୁ ତ୍ୟାଗରେ ଗ୍ରାଜୁଏଟ କରି କିଛି ଫଳ ପାଇ ପାରିବେ ନାହିଁ ।

ସତୀଶ କ୍ରୁଦ୍ଧ ହୋଇ ପ୍ରଶ୍ନ କଲା—ଦେଶର ମୁକ୍ତି ସଂଗ୍ରାମରେ କ'ଣ ଧର୍ମର ସାଧନା, ତ୍ୟାଗର ଦୀକ୍ଷା ପ୍ରୟୋଜନୀୟ ନୁହେଁ ବୋଲି ଆପଣ କହୁଛନ୍ତି ?

କମଳ କହିଲା—ମୁକ୍ତି ସଂଗ୍ରାମର କଥାଟା ଆଗେ ପରିଷ୍କାର ହୋଇଯାଉ ।

ସତୀଶ ଇତଃସ୍ତତ ହେବାକୁ ଲାଗିଲା । କମଳ ହସି ଦେଇ କହିଲା—ଖୁବ୍ ସମ୍ଭବ ବୋଧହୁଏ ଆପଣ ବିଦେଶୀ ରାଜଶକ୍ତିର ବନ୍ଧନ ମୋଚନକୁ ଦେଶର ମୁକ୍ତି ସଂଗ୍ରାମ କହୁଛନ୍ତି । ତା ଯଦି ହୋଇଥାଏ ସତୀଶ ବାବୁ, ମୁଁ ନିଜେ ତ ଧର୍ମର ସାଧନା କରିନାହିଁ । ତ୍ୟାଗର ଦୀକ୍ଷା ମଧ୍ୟ ନେଇ ନାହିଁ, ତଥାପି ମୋତେ ଠିକ୍ ଆଗ ଧାଡ଼ିରେ ଥିବା ଦଳରେ ଦେଖିବାକୁ ପାଇବେ, ଏକଥା ମୁଁ ଆପଣଙ୍କୁ କହି ରଖୁଛି । କିନ୍ତୁ ଆପଣଙ୍କୁ ସେଠାରେ ଖୋଜି ପାଇ ପାରିବି ତ ?

ସତୀଶ କିଛି କହିଲା ନାହିଁ । କିପରି ଏକ ପ୍ରକାର ବିବ୍ରତ ହୋଇ ପଡ଼ିଲା ଏବଂ ତାହାର ଚଞ୍ଚଳ ଦୃଷ୍ଟିକୁ ଅନୁସରଣ କରିବାକୁ ଯାଇ କମଳ କିଛି ସମୟ ପାଇଁ ଆଖି ଫେରାଇ ପାରିଲା ନାହିଁ । ରାଜେନ୍ଦ୍ର କେତେବେଳେ ଚୁପ୍‌ଚାପ୍ ଆସି ଦ୍ୱାର ନିକଟରେ ଠିଆ ହୋଇଥିଲା, ସତୀଶ ଭିନ୍ନ ଆଉ କେହି ତାହା ଲକ୍ଷ୍ୟ କରି ନ ଥିଲେ । ସେ ଏକ ଦୃଷ୍ଟିରେ ତାହାକୁ ଏତେ ସମୟ ଧରି ଚାହିଁ ରହିଥିଲା ଏବଂ ବର୍ତ୍ତମାନ ମଧ୍ୟ ଠିକ୍ ସେହିପରି ଭାବରେ ଚାହିଁ ରହିଲା । ତା ଚେହେରାକୁ ଥରକ ପାଇଁ ଦେଖିଲେ ଭୁଲି ଯିବା ବଡ଼ କଠିନ । ବୟସ ବୋଧହୁଏ ପଚିଶ, କି ଛବିଶ ହେବ । ରଙ୍ଗ ଅତ୍ୟନ୍ତ ସଫା । ହଠାତ୍ ଦେଖିଦେଲେ ଅସ୍ୱାଭାବିକ ପରି ଜଣା ପଡ଼େ । ପ୍ରଶସ୍ତ କପାଳ । ଆଗ ଅଂଶଟା ଏହି ବୟସରେ ଚନ୍ଦା ହେଉ ବହୁତ ବଡ଼ ଦେଖାଯାଉଛି । ଆଖି ଗମ୍ଭୀର ଏବଂ ଅତିଶୟ କ୍ଷୁଦ୍ର । ଅନ୍ଧାରୁଆ ଗାତ ଭିତରେ ମୂଷା ଆଖି ପରି ଜକ୍ ଜକ୍ କରୁଛି । ମୋଟା ଓଠଟା ଆଗକୁ ଟିକିଏ ବାହାରି ପଡ଼ି ମନେ କରାଇ ଦେଉଛି ଯେତେ ଯେପରି ଅନ୍ତରର କଠୋର ସଂକଳ୍ପକୁ କୌଣସି ମତେ ଚାପା ଦିଆ ହୋଇ ରଖାଯାଇଛି । ହଠାତ୍ ଦେଖିଦେଲେ ଭୟ ହୁଏ । ମନରେ ଆସେ ଏହି ମନୁଷ୍ୟଟାକୁ ଏଡ଼ାଇ ଚାଲିବା ଭଲ ।

ହରେନ୍ଦ୍ର ରାଜେନ୍ଦ୍ରକୁ ଇଙ୍ଗିତ କରି କହିଲା—ଏ ମଧ୍ୟ ମୋର ବନ୍ଧୁ । କେବଳ ବନ୍ଧୁ କହିଲେ ଚଳିବ ନାହିଁ ବରଂ ସାନ ଭାଇ ଭଳି । ତା ନାମ ରାଜେନ୍ଦ୍ର । ଏତେ ବଡ଼ କର୍ମୀ, ଏତେ ବଡ଼ ସ୍ୱଦେଶ ଭକ୍ତ, ଏତେ ବଡ଼ ଭୟଶୂନ୍ୟ ସାମ୍ପ୍ରତିକ ପୁରୁଷ ତା ବ୍ୟକ୍ତିତ

ମୁଁ ଆଉ କାହାକୁ ଦେଖି ନାହିଁ । ନୂଆ'ଉ ସେଦିନ ଏହାର କଥା ହିଁ ଆପଣଙ୍କୁ କହୁଥିଲେ । ସେ ଯେପରି ଅବଲୀଳା କ୍ରମେ ମିଳିପାରେ ସେହିପରି ମଧ୍ୟ ଅବହେଳାରେ ଠେଲି ଦେଇ ଚାଲି ଯାଇପାରେ । ଆଶ୍ଚର୍ଯ୍ୟ ପ୍ରକାରର ମଣିଷ । ଅଜିତ ବାବୁ ଏହାକୁ ହିଁ ଆପଣଙ୍କ ବୋଝ ବୋହିବା ପାଇଁ କହୁଥିଲେ ।

ଅଜିତ କ'ଣ ଗୋଟାଏ କଥା କହିବା ପାଇଁ ଯାଉଥିଲା, ଗୋଟିଏ ପିଲା ଆସି ଖବର ଦେଲା ଯେ ଅକ୍ଷୟ ବାବୁ ଆସିଲେଣି ।

ହରେନ୍ଦ୍ର ବିସ୍ମିତ ହୋଇ କହି ଉଠିଲା, ଅକ୍ଷୟ ବାବୁ !

ଅକ୍ଷୟ ଘର ଭିତରକୁ ପଶି ଆସୁ ଆସୁ କହିଲା—ହଁ, ହଁ ତୁମର ପରମବନ୍ଧୁ ଅକ୍ଷୟ କୁମାର । ହଠାତ୍ ଚମକି ପଡ଼ି କହିଲା—ଏଁ ! ଘଟଣା କ'ଣ ଆଜି ? ସମସ୍ତେ ଉପସ୍ଥିତ ଯେ ! ଆଶୁବାବୁଙ୍କ ସହିତ ଗାଡ଼ିରେ ବୁଲି ଯାଇଥିଲି । ବାଟରେ ସେ ମୋତେ ଓହ୍ଲାଇ ଦେଲେ । ଚାଲି ଯାଉଥିଲି, ହଠାତ୍ ମନେ ହେଲା, ହରଘୋଷର ଗୁହାଳଟା ଟିକିଏ ବୁଲିଦେଇ ଯାଏ । ସେଥିପାଇଁ ଚାଲି ଆସିଲି ।

ଏହି ସମସ୍ତ କଥାର କେହି ଉତ୍ତର ଦେଲେ ନାହିଁ । କାରଣ ଏଥିରେ ଉତ୍ତର ଦେବା ପାଇଁ କିଛି ନ ଥିଲା । ବିଶ୍ୱାସ ମଧ୍ୟ କେହି କଲେ ନାହିଁ ଯେ ଅକ୍ଷୟର ଏଇଟା ବାଟ ନୁହେଁ ଏବଂ ସେ ସହଜରେ ଏ ବସାକୁ ମଧ୍ୟ ଆସେ ନାହିଁ ବୋଲି ।

ଅକ୍ଷୟ କମଳ ଆଡ଼କୁ ଚାହିଁ କହିଲା—ମୁଁ ଭାବିଥିଲି କାଲି ସକାଳୁ ତୁମ ସେଠାକୁ ଯାଇଥାନ୍ତି । ବସାଟା ତ ଚିହ୍ନି ନାହିଁ, ଯାହାହେଉ ଭଲ ହେଲା ଦେଖା ହୋଇଗଲା । ଗୋଟାଏ ସୁସମ୍ବାଦ ଅଛି ।

କମଳ ନୀରବରେ ଚାହିଁ ରହିଲା । ହରେନ୍ଦ୍ର ପଚାରିଲା—ସୁସମ୍ବାଦଟା କ'ଣ ଟିକିଏ ଶୁଣିବା ? ଖବରଟା ଯେତେବେଳେ ଶୁଭ ସେତେବେଳେ ଗୋପନୀୟ ନୁହେଁ ନିଶ୍ଚୟ ?

ଅକ୍ଷୟ କହିଲା—ନା, ଗୋପନ କରିବାର ଆଉ କ'ଣ ଅଛି ? ବାଟ ମଝିରେ ଆଜି ସେହି ସିଲାଇ କଲ ବିକିବାଲା ପାର୍ସି ଟୋକାଟା ସଙ୍ଗେ ଦେଖା ହେଲା । ସେହି ସେଦିନ ପିଏ କମଳ ତରଫରୁ ଟଙ୍କା ଧାର ମାଗିବାକୁ ଆସିଥିଲା । ଗାଡ଼ି ଅଟକାଇ ଘଟଣାଟା ତାଠାରୁ ଶୁଣାଗଲା । ତାପରେ ସେ କମଳକୁ ଅଙ୍ଗୁଳିଦ୍ୱାରା ଇଙ୍ଗିତ କରି କହିଲା—ସେ ଧାର କରି ଗୋଟାଏ କଲ କିଣି ଫତେଇ ପ୍ରଭୃତି ତିଆରି କରି ଖର୍ଚ୍ଚ ତୁଲାଉଥିଲେ । ଶିବନାଥ ତ ସୁନ୍ଦର ଭାବରେ ଆତ୍ମ ଗୋପନ କରି ରହିଛି । କିନ୍ତୁ ସିଲାଇ କଳର ଦାମ୍ ତ ଦେବା ଆବଶ୍ୟକ । ସେଥିପାଇଁ ସେ କଳଟା ନେଇ ଚାଲି ଯାଉଥିଲା, ଆଉ ଆଶୁବାବୁ ଆଜି ପୂରା ଦାମ୍ ଦେଇ ସେଇଟାକୁ କିଣି ନେଲେ । କମଳ, କାଲି ଲୋକ ପଠାଇ କଳଟାକୁ ଆଶୁବାବୁଙ୍କଠାରୁ ଆଦାୟ କରି ଆଣ । ଖାଇବା ପିଇବାକୁ ଯଦି ଅସୁବିଧା ହେଉଥିଲା, ସେ କଥା ତ ଆମକୁ ଜଣାଇଥିଲେ ଚଳିଥାନ୍ତା ।

ତା କହିବାର ନିଷ୍ଠୁରତା ଭଙ୍ଗୀରେ ସମସ୍ତେ ମର୍ମାହତ ହୋଇ ଉଠିଲେ । କମଳର ଲବଣ୍ୟୋଜ୍ଜ୍ୱଳ ଶୀର୍ଣ୍ଣ ମୁହଁର କାରଣ ଜାଣିପାରି ଲଜ୍ଜାରେ ଅବିନାଶବାବୁଙ୍କ ମୁହଁ ପର୍ଯ୍ୟନ୍ତ ନାଲି ପଡ଼ିଗଲା ।

କମଳ ମୃଦୁ କଣ୍ଠରେ କହିଲା—ମୋର କୃତଜ୍ଞତା ତାଙ୍କୁ ଜଣାଇ ଦେଇ ସେଇଟା ତାଙ୍କୁ ଫେରାଇ ଦେବାପାଇଁ କହିବେ । ମୋର ଆଉ ସିଲାଇ କଳରେ ପ୍ରୟୋଜନ ନାହିଁ ।

: କାହିଁକି ? କାହିଁକି ?

ହରେନ୍ଦ୍ର କହିଲା—ଅକ୍ଷୟ ବାବୁ, ଆପଣ ଏ ଘରୁ ବାହାରି ଯାଆନ୍ତୁ । ଆପଣଙ୍କୁ ମୁଁ ଡାକି ନାହିଁ । ଇଚ୍ଛା ମଧ୍ୟ କରି ନାହିଁ ଆପଣ ଆସନ୍ତୁ ବୋଲି । ତଥାପି ଆପଣ ଆସିଛନ୍ତି । ତୁମ ପଶୁତ୍ୱର କ'ଣ ଗୋଟାଏ କିଛି ସୀମା ନାହିଁ ?

କମଳ ହଠାତ୍ ମୁହଁ ଟେକି ଦେଖିବାକୁ ପାଇଲା—ଅଜିତର ଦୁଇ ଆଖି ଉପରି ଲୁହରେ ଛଳ ଛଳ ହୋଇ ଉଠିଛି । କହିଲା—ଅଜିତ ବାବୁ ଆପଣଙ୍କ ଗାଡ଼ି ତ ସଙ୍ଗରେ ଅଛି, ଦୟାକରି ମୋତେ ଛାଡ଼ିଦେଇ ଆସିପାରିବେ ।

ଅଜିତ କଥା କହିଲା ନାହିଁ । କେବଳ ମୁଣ୍ଡ ହଲାଇ ଯାହା ଉତ୍ତର ଦେଲା ।

କମଳ ନୀଲିମାକୁ ନମସ୍କାର କରି କହିଲା—ଆଉ ବୋଧହୁଏ ଶୀଘ୍ର ଦେଖା ହୋଇ ପାରିବ ନାହିଁ । ମୁଁ ଏଠାରୁ ଚାଲିଯାଉଛି ।

କେହିଁଠାରୁ ଏକଥା କେହି ପଚାରିବା ପାଇଁ ସାହାସ କରି ପାରିଲେ ନାହିଁ । ନୀଲିମା କେବଳ ତା ହାତଟିକୁ ଆପଣା ହାତରେ ଧରି ଟିକିଏ ଚାପ ଦେଲା ଏବଂ ପରକ୍ଷଣରେ ସେ ହରେନ୍ଦ୍ରକୁ ନମସ୍କାର କରି ଅଜିତର ପଛେ ପଛେ ଘରୁ ବାହାରି ଚାଲିଗଲା ।

ମଟର କାର୍ ଭିତରେ ବସି କମଳ ଆକାଶ ଆଡ଼କୁ ଚାହିଁ ଅନ୍ୟମନସ୍କ ହୋଇ ପଡ଼ିଥିଲା, ଗାଡ଼ି ଅଟକିବା କ୍ଷଣି ଏଣେତେଣେ ଆଖି ପକାଇ କହିଲା—ଏଣେ କୁଆଡ଼େ ଆଣିଲେ ଅଜିତ୍ ବାବୁ ? ଏହା ତ ମୋ ବସାକୁ ବାଟ ନୁହେଁ ?

: ନା, ଏ ବାଟଟା ନୁହେଁ ।

: ନୁହେଁ ! ତେବେ ବୋଧହୁଏ ଫେରିବାକୁ ପଡ଼ିବ ?

: ସେ କଥା ଆପଣ ଜାଣନ୍ତି । ମୋତେ ହୁକୁମ କଲେ ଫେରିବି ।

ଏକଥା ଶୁଣି କମଳ ବିସ୍ମିତ ହୋଇ ଉଠିଲା । ଏହି ଅଦ୍ଭୁତ ଉତ୍ତରଟା ପାଇଁ ଯେତେଦୂର ନୁହେଁ, ତାହାର କଣ୍ଠର ଅସ୍ୱାଭାବିକତା ତାକୁ ବିଚଳିତା କରି ପକାଇଲା । କିଛି କ୍ଷଣ ନୀରବ ରହି ତାପରେ ସେ ଆପଣାକୁ ଦୃଢ଼ କରି ହସି ଦେଇ କହିଲା—ବାଟ ଭୁଲିବା ପାଇଁ ମୁଁ ତ ଅନୁରୋଧ କରି ନ ଥିଲି ଯେ ମୋତେ ସଂଶୋଧନ କରିବା ପାଇଁ ହୁକୁମ ଦେବାକୁ ପଡ଼ିବ, ଅଜିତ ବାବୁ । ଠିକ୍ ଯାଗାରେ ପହଞ୍ଚାଇ ଦେବାର ଦାୟିତ୍ୱ ଆପଣଙ୍କର । ମୋର କର୍ତ୍ତବ୍ୟ କେବଳ ଆପଣଙ୍କୁ ବିଶ୍ୱାସ କରି ବସି ରହିବା ।

: କିନ୍ତୁ ଦାୟିତ୍ୱବୋଧ ଧାରଣାରେ ଯଦି ଭୁଲ କରିପକାଏ କମଳ ?

: ଯଦି ଉପରେ ତ ଆଉ ବିଗ୍ଭର କରି ହେବନାହିଁ, ଅଜିତ ବାବୁ । ଭୁଲ ସମ୍ବନ୍ଧରେ ଆଗ ନିଃସଂଶୟ ହୁଏ । ତାପରେ ଏହାର ବିଗ୍ଭର କରିବ ।

ଅଜିତ ଅସ୍ପଷ୍ଟ ଭାବରେ କହିଲା—ତାହାହେଲେ ବିଗ୍ଭର କରନ୍ତୁ, ମୁଁ ଅପେକ୍ଷା କରି ରହିଲି । ତାପରେ ସେ କ୍ଷଣକ ପାଇଁ ସ୍ତବ୍ଧ ହୋଇ ରହି ହଠାତ୍ କହି ଉଠିଲା—କମଳ, ଆଉ ଦିନକର କଥା ତୁମର ମନେ ଅଛି ? ସେଦିନ ତ ଠିକ୍ ଏଇମିତି ଅନ୍ଧକାର ଥିଲା ।

: ହଁ, ଏଇମିତି ଅନ୍ଧକାର ଥିଲା । ଏହା କହି ସେ ଗାଡ଼ିର ଦରଜା ଖୋଲି ଓହ୍ଲାଇ ପଡ଼ି ଆଗରେ ଯାଇ ଅଜିତ ପାଖରେ ବସିଲା । ଜନହୀନ ଅନ୍ଧକାର ରାତ୍ରି ଏକାନ୍ତ ଭାବରେ ନୀରବ । କିଛି ସମୟ ପର୍ଯ୍ୟନ୍ତ କେହି କିଛି କଥା କହିଲେ ନାହିଁ ।

: ଅଜିତ ବାବୁ !

: ହୁଁ ।

ଅଜିତ ବୁକୁତଳେ ଝଡ଼ ବୋହି ଗ୍ଭଲିଥିଲା । ଉତ୍ତର ଦେବା ପାଇଁ ତା ତୁଣ୍ଡ ଫିଟିଲା ନାହିଁ ।

କମଳ ପୁଣି ପ୍ରଶ୍ନ କଲା—କ'ଣ ଭାବୁଛନ୍ତି କହନ୍ତୁ ନା ଟିକିଏ ଶୁଣେ ।

ଅଜିତର ଗଳା କମ୍ପିବାକୁ ଲାଗିଲା । କହିଲା—ସେଦିନ ଆଶୁବାବୁଙ୍କ ଘରେ ତୁମ ଆଚରଣ ମନେ ପଡ଼ୁଛି ତ ? ସେପର୍ଯ୍ୟନ୍ତ ବୁଝି ପାରିଥିଲି ଯେ ତୁମର ଅତୀତଟା ହେଉଛି ବଡ଼ ଅଂଶ, ତାହା ସହିତ ମୁଁ କମିତି ଅବା ସାଲସ କରି ପାରିବ ? ଅତୀତର ଗ୍ଭଇଟା ବଢ଼ିଯାଇ ତୁମର ମୁହଁକୁ ଢାଙ୍କି ପକାଇଥିଲା । କିନ୍ତୁ ସେହି ଗ୍ଭୟା ଭିତରେ ଯେ ସୂର୍ଯ୍ୟ ଅଛି ସେ କଥା ମୁଁ ଭୁଲି ଯାଇଥିଲି । କିନ୍ତୁ...ଥାଉ, କିନ୍ତୁ ମୁଁ ଆଜି କ'ଣ ଭାବୁଛି ତୁମେ ବୁଝି ପାରୁନାହଁ ?

: ଝିଅ ପିଲାଟିଏ ହୋଇ ମୁଁ ଏହା ପରେ ଯେ ବୁଝି ପାରିବି ନାହିଁ, ତାହା ଅର୍ଥ କ'ଣ ମୁଁ ଏତେ ନିର୍ବୋଧ ? ବାଟ ଯେତେବେଳେ ଆପଣ ଭୁଲିଛନ୍ତି ମୁଁ ସେତିକବେଳୁ ବୁଝି ପାରିଛି ?

ଅଜନ୍ତ ଧୀରେ ଧୀରେ ତା ଦାମ କାନ୍ଧ ଉପରେ ହାତଟି ରଖି ଚୁପ୍ ହୋଇ ରହିଲା । କିଛି ସମୟ ପରେ କହିଲା—କମଳ ମନେ ହେଉଛି ଆଜି ବୋଧହୁଏ ଆଉ ମୁଁ ନିଜକୁ ସମ୍ଭାଳି ରଖି ପାରିବି ନାହିଁ ।

କମଳ ପୂର୍ବପରି କହିଲା—ନା । ତା ବ୍ୟବହାରରେ ବିସ୍ମୟ ବା ବିହ୍ୱଳତାର ଚିହ୍ନ ଲେଶ ମାତ୍ର ନ ଥିଲା । ସହଜ ଶାନ୍ତ କଣ୍ଠରେ ସେ କହିଲା—ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଅଜନ୍ତ ବାବୁ । ଏଇମିତ ହୋଇଥାଏ । ଆପଣ ତ କେବଳ ପୁରୁଷ ନୁହଁନ୍ତି, ଜଣେ ନ୍ୟାୟନିଷ୍ଠ ଭଦ୍ରବ୍ୟକ୍ତି ମଧ୍ୟ । ଏହାପରେ ମୋତେ ଆପଣଙ୍କ ମୁଣ୍ଡରୁ ଓହ୍ଲାଇ ଦେବେ କିପରି ? ଏତେ ବଡ଼ ନୀଚ କାର୍ଯ୍ୟରେ ତ ଆପଣ ପାରି ଉଠିବେ ନାହିଁ ।

ଅଜିତ ଗାଢ଼ କଣ୍ଠରେ କହିଲା—ପାରି ଉଠିବି ବୋଲି ଆଶଙ୍କା ତୁମେ କିପରି କରି ପାରୁଛ କମଳ ?

କମଳ ହସିଲା, କହିଲା ଆଶଙ୍କା ମୋ ନିଜ ପାଇଁ କରୁନାହିଁ ଅଜିତ ବାବୁ, କରୁଛି କେବଳ ଆପଣଙ୍କ ପାଇଁ । ପାରିଲେ ଭୟ ନ ଥିଲା, ପାରିବେ ନାହିଁ ବୋଲି ମୋର ଭାବନା । କେବଳ ଗୋଟାଏ ରାତିର ଭୁଲ ପାଇଁ ଏତେ ଏତେ ବଡ଼ ଶାସ୍ତି ଆପଣଙ୍କ ମୁଣ୍ଡରେ ଲଦିଦେବା ପାଇଁ ମୋର ମାୟା ହୁଏ । ଆଉ ନୁହେଁ, ଚାଲନ୍ତୁ ଫେରିଯିବା ।

କଥା ଗୁଡ଼ାକ ଅଜିତର କାନକୁ ଗଲା କିନ୍ତୁ ଅନ୍ତରକୁ ସ୍ପର୍ଶ କଲା ନାହିଁ । ଚକ୍ଷୁପଲକ ମାତ୍ରେ ତା ଶିରାର ରକ୍ତ କଣିକା ସବୁ ପାଗଳ ହୋଇ ଉଠିଲେ । ଲୁବ୍ଧ ନିକଟକୁ ତାକୁ ଆକର୍ଷଣ କରିନେଇ ମୁକ୍ତ କଣ୍ଠରେ ସେ କହି ଉଠିଲା—ମୋତେ କ'ଣ ବିଶ୍ୱାସ କରି ପାରୁନ କମଳ ?

ମୁହୂର୍ତ୍ତକ ପାଇଁ କମଳର ନିଃଶ୍ୱାସ ରୁଦ୍ଧ ହୋଇ ଆସିଲା । ସେ କହିଲା କରେ ।

: ତେବେ ଫେରିଯିବା କେଉଁଥିପାଇଁ ? ଚାଲ ଆମେ ଆହୁରି ଆଗକୁ ଯିବା ।

: ଚାଲନ୍ତୁ ।

ଗାଡ଼ି ଚଳାଇବାକୁ ଯାଇ ଅଜିତ ହଠାତ୍ ଅଟକି ଯାଇ ପ୍ରଶ୍ନ କଲା—ବସାରୁ କ'ଣ ତୁମର କିଛି ନେବାର ନାହିଁ ?

: ନା, କିନ୍ତୁ ଆପଣଙ୍କର ?

ଅଜିତକୁ ଚିନ୍ତା କରିବାକୁ ପଡ଼ିଲା । ପକେଟରେ ହାତ ପୁରାଇ କହିଲା—ଟଙ୍କା, ପଇସା କିଛି ପାଖରେ ନାହିଁ । ତାହା ତ ଦରକାର ।

କମଳ କହିଲା—ଗାଡ଼ିଟାକୁ ବିକି ଦେଲେ ତ ଟଙ୍କା ପାଇ ପାରିବା ।

ଅଜିତ ବିସ୍ମିତ ହୋଇ କହି ଉଠିଲା—ଗାଡ଼ି ବିକିଦେବ ?

କିନ୍ତୁ ଗାଡ଼ି ତ ମୋର ନୁହେଁ । ଆଶୁବାବୁଙ୍କର ।

କମଳ କହିଲା—ସେଥିରେ କ'ଣ ଅଛି ? ଅଶୁବାବୁ ଲଜ୍ଜ୍ୟାରେ ଓ ଘୃଣାରେ ମୁହଁ ବେ କଦାପି ଗାଡ଼ି ନାଆଁ ଧରିବେ ନାହିଁ । କୌଣସି ଚିନ୍ତା ନାହିଁ—ଚାଲନ୍ତୁ ।

ଏହା ଶୁଣି ଅଜିତ ସ୍ତବ୍ଧ ହୋଇ ରହିଲା । ତା ବାଆଁ ହାତ ଯେ ପର୍ଯ୍ୟନ୍ତ କମଳ କାନ୍ଧ ଉପରେ ରହିଥିଲା । ତାହା ପରେ ତାହା ତଳକୁ ଆପେ ଆପେ ଖସି ପଡ଼ିଲା । ବହୁକ୍ଷଣ ନୀରବ ରହିବା ପରେ କହିଲା—ତୁମେ ମୋତେ ଉପହାସ କରୁନ ତ ?

: ନା, ସତ କହୁଛି ।

: ସତ କହୁଛ ଏବଂ ପ୍ରକୃତରେ ହିଁ ଭାବୁଛ ଯେ ମୁଁ ପରର ଜିନିଷ ମଧ୍ୟ ଚୋରି କରି ପାରେ ? ଏଭଳି କାର୍ଯ୍ୟ କ'ଣ ତୁମେ ନିଜେ କରିପାରିବ ?

: ମୋ ପାରିବା ନ ପାରିବା ଉପରେ ଯେତେବେଳେ ନିର୍ଭର କରିବେ ଅଜିତବାବୁ ସେତେବେଳେ ଏହାର ଉତ୍ତର ଦେବ । ପରର ଜିନିଷ ଆତ୍ମସାତ୍ କରିବାର ସାହସ ଆପଣଙ୍କର ନାହିଁ । ଚାଲନ୍ତୁ ଗାଡ଼ି ଫେରାଇ ନେଇ ମୋ ବସାରେ ମୋତେ ଛାଡ଼ି ଦେଇ ଆସିବେ ।

ଫେରିବା ବାଟରେ ଅଜିତ ଧୀରେ ଧୀରେ ପ୍ରଶ୍ନ କରିଲା, ପରର ଜିନିଷ, ଆତ୍ମସାତ୍ କରିବା ସାହସଟା କ'ଣ ଖୁବ୍ ବଡ଼ ଜିନିଷ ବୋଲି ତୁମର ଧାରଣା ?

: ବଡ଼ ଶ୍ରେଷ୍ଠ କଥା କହି ନାହିଁ । ଏ ସାହସ ଆପଣଙ୍କର ନାହିଁ କେବଳ ମାତ୍ର ଏତିକି କହୁଛି ।

: ନା, ନାହିଁ—ସେଥିପାଇଁ ଲଜ୍ଜ୍ୟାବୋଧ କରୁ ନାହିଁ । କହି ଅଜିତ ବାବୁ ଟିକିଏ ଅଟକି ଯାଇ କହିଲେ—ନା ଥିଲେ ବରଂ ଲଜ୍ଜ୍ୟାବୋଧ କରିଥାନ୍ତି । ଆଉ ମୋର ବିଶ୍ୱାସ, ପ୍ରତ୍ୟେକ ଭଦ୍ରବ୍ୟକ୍ତି ମୋ କଥାରେ ନିଶ୍ଚୟ ସମ୍ମତ ହେବେ ।

: ସମ୍ମତ ହେବା ସହଜ । ଭିଡ଼ରେ ବାହବା ମିଳିଥାଏ ।

: କେବଳ କ'ଣ ବାହବା ? ତାହାଠାରୁ ଆଉ ଅଧିକା କିଛି ନୁହେଁ ? ଶିକ୍ଷିତ ଭଦ୍ର-ମନ ବୋଲି କେବେ କିଛି ଦେଖିନାହିଁ ?

: ଯଦି ଦେଖିଥାଏ, ସମୟ ଆସିଲେ ସେହି ଆଲୋଚନା ଆଉ ଦିନେ କରିବି । ଆଜି ନୁହେଁ । କହି କମଳ ମୁହୂର୍ତ୍ତିକ ପାଇଁ ନୀରବ ରହି କହିଲା—ଆପଣଙ୍କ ଯୁକ୍ତିର ଉତ୍ତରରେ ଆଉ କେହି ହୋଇଥିଲେ ବିଦ୍ରୂପ କରି କହନ୍ତା ଯେ, କମଳକୁ ଆତ୍ମସାତ୍ କରିବା ପାଇଁ ସେହି ଶିକ୍ଷିତ-ଭଦ୍ର-ମନକୁ କଷ୍ଟ ହୁଏ ନାହିଁ ? ମୁଁ କିନ୍ତୁ ତାହା କହି ପାରିବି ନାହିଁ । କାରଣ କମଳ କାହାର ସମ୍ପତ୍ତି ନୁହେଁ । ସେ କେବଳ ତା ନିଜର ହିଁ—ଆଉ କାହାର ନୁହେଁ ।

: ଭବିଷ୍ୟତରେ କ'ଣ କାହାର ହୋଇ ପାରିବ ନାହିଁ ?

: ତାହା ତ ଭବିଷ୍ୟତର କଥା, ଅଜିତ ବାବୁ । ଆଜି କିପରି ଆପଣଙ୍କ ପ୍ରଶ୍ନର ଉତ୍ତର ଦେଇ ପାରିବ ?

: ଉତ୍ତର ବୋଧହୁଏ କୌଣସି ଦିନ ଦେଇ ପାରିବ ନାହିଁ । ମନେହୁଏ ଏଇଥି-ପାଇଁ ଶିବନାଥବାବୁଙ୍କର ଏତେ ନିର୍ମମତା ତୁମକୁ ଆଘାତ ଦେଇ ପାରି ନାହିଁ । ଅତ୍ୟନ୍ତ ସହଜ ଭାବରେ ସେ ତୁମକୁ ଦୂରେଇ ଦେଇ ପାରିଛି । ଏହା କହି ସେ ନିଃଶ୍ୱାସ ମାରିଲା ।

ମଟର ଆଲୁଅରେ କେତେ ଖଣ୍ଡି ଗୋରୁ ଗାଡ଼ି ଦେଖାଗଲା । ପାଖରେ ବୋଧ-ହୁଏ ଗାଆଁ, କୃଷକମାନେ ଯେପରି-ସେପରି ଭାବରେ ଗାଡ଼ି ଗୁଡ଼ିକ ରାସ୍ତାରେ ରଖି ଦେଇ ବଳଦ ନେଇ ଘରକୁ ଚାଲି ଯାଇଛନ୍ତି । ଅଜିତ ଅତି ସାବଧାନରେ ଏହି ସ୍ଥାନଟା ପାର ହୋଇ କହିଲା ତୁମକୁ ବୁଝିବା ବଡ଼ ଶକ୍ତ ।

କମଳ ହସି ଦେଇ କହିଲା—ଶକ୍ତ କାହିଁକି ? ଠିକ୍ ତ ବୁଝି ପାରିଥିଲେ ସେ ବାଟ ଭୁଲିକି ମୋତେ ଭୁଲେଇ ନେଇ ଯାଇ ହୁଏ ।

: ହୁଏତ ସେହି ବୁଝିବାଟା ମୋର ଭୁଲ ।

କମଳ ପୁଣି ହସି କରି କହିଲା—ବାଟ ଭୁଲିବା ଭୁଲ । ମୋତେ ଭୁଲାଇବାର ଚେଷ୍ଟା ଭୁଲ, ଆଉ ପୁଣି ନିଜର ମଧ୍ୟ ଭୁଲ ? ଏତେ ଗୁଡ଼ିଏ ଭୁଲର ବୋଝ ଆପଣଙ୍କର ସଂଶୋଧନ ହେବ କେବେ ? ଅଜିତବାବୁ, ନିଜକୁ ଟିକିଏ ଶ୍ରଦ୍ଧା କରି ଶିଖନ୍ତୁ । ଏପରି ନିଜ ପାଖରେ ଆପଣାକୁ ଶ୍ରେଷ୍ଠ ମନେ କରିବେ ନାହିଁ ।

: କିନ୍ତୁ ନିଜର ଭୁଲକୁ ଅସ୍ୱୀକାର କରିଲେ କ'ଣ ଆପଣାକୁ ଶ୍ରଦ୍ଧା କରି ହୁଏ; କମଳ ?

: ନା, ତାହା ହୁଏ ନାହିଁ । କିନ୍ତୁ ଅସ୍ୱୀକାର କରିବାର ମଧ୍ୟ ରୀତି ରହିଛି । ସଂସାରଟି କେବଳ ନିଜକୁ ନେଇ ନୁହେଁ—ତାହା ହୋଇଥିଲେ ତ ସବୁ ଗୋଳ ହୋଇ ଯାଆନ୍ତା । ଏଠାରେ ଆପଣଙ୍କ ସହିତ ଆଉ ଦଶଜଣ ବାସ କରନ୍ତି । ସେମାନଙ୍କର ଇଚ୍ଛା, ଅନିଚ୍ଛା, ସେମାନଙ୍କ କାର୍ମର ଧାକ୍କା ମଧ୍ୟ ଆସି ଦେହରେ ଲାଗେ । ସେଥିପାଇଁ ଶେଷ ଫଳାଫଳ ଯଦି ନିଜର ମନୋମତ ନ ହୁଏ । ତାକୁ ଭୁଲ ବୋଲି ଧିକ୍କାର ଦେଇ ବସିଲେ ଆପଣାକୁ ଅପମାନିତ କରାହୁଏ । ନିଜ ପ୍ରତି ଏହାଠାରୁ ବଳି ଅଶ୍ରଦ୍ଧା ଆଉ କ'ଣ ଅଛି କହନ୍ତୁ ତ ?

ଅଜିତ କିଛି ସମୟ ଚୁପ୍ ରହିବା ପରେ ପ୍ରଶ୍ନ କଲା-- କିନ୍ତୁ ସେହିଠାରେ ପ୍ରକୃତ ଭୁଲ ହୁଏ କି ? ଶିବନାଥ ବାବୁଙ୍କ ସମ୍ପର୍କରେ କ'ଣ ତୁମର ଅନୁଶୋଚନା ହୋଇ ନାହିଁ, କମଳ ? ସେମିତିକା ତୁମେ ମୋତେ କ'ଣ ବିଶ୍ୱାସ କରିବା ପାଇଁ କହୁଛ ?

କମଳ ବୋଧହୁଏ ଏହି ପ୍ରଶ୍ନର ଠିକ୍ ଭାବରେ ଉତ୍ତର ଦେଇ ନାହିଁ । କହିଲା, ବିଶ୍ୱାସ କରିବା, ଓ ନ କରିବାଟା ଆପଣଙ୍କର ଗରଜ । କିନ୍ତୁ ତାଙ୍କ ବିରୁଦ୍ଧରେ ବାହାର ଆଗରେ ମୁଁ ତ କୌଣସି ଦିନ ଅଭିଯୋଗ କରିନାହିଁ ।

: ଅଭିଯୋଗ ଜଣାଇବା ଭଳି ଲୋକ ତୁମେ ନୁହଁ । କିନ୍ତୁ ଭୁଲ ପାଇଁ କ'ଣ ନିଜ ନିକଟରେ ଆପଣାକୁ କେବେ ଧିକ୍କାର କରି ନାହିଁ ?

: ନାହିଁ ।

: ତାହା ହେଲେ ଏତିକି ମାତ୍ର କହିପାରେ ଯେ, ତୁମେ ଅଦ୍ଭୁତ ଏବଂ ଅସାଧାରଣ ।

ଏହି ମନ୍ତବ୍ୟର କୌଣସି ଉତ୍ତର କମଳ ନ ଦେଇ ନୀରବ ରହିଲା ।

ଦଶମିନିଟ୍ ନୀରବରେ କଟିବା ପରେ, ଅଜିତ ହଠାତ୍ ପ୍ରଶ୍ନ କରି ଉଠିଲା— କ. ଲ, ଏପରି ଭୁଲ ଯଦି ମୁଁ କାଲି କରି ବସେ ତେବେ ସେତେବେଳେ କ'ଣ ତୁମର ଦେଖା ପାଇ ପାରିବି ?

: କିନ୍ତୁ ଓ ଯଦିର ଉତ୍ତର ଯଦିରେ ଦେବାକୁ ହୋଇଥାଏ ଅଜିତ୍ ବାବୁ, ଅନିଶ୍ଚିତ ପ୍ରସ୍ତାବରେ ନିଶ୍ଚିତ ମୀମାଂସା ଆଶା କରନ୍ତୁ ନାହିଁ ।

: ଅର୍ଥାତ୍ ଏ ମୋହ, ମୋର ଆସନ୍ତା କାଲି ପର୍ଯ୍ୟନ୍ତ ରହି ପାରିବ ନାହିଁ ବୋଲି ତୁମର କ'ଣ ବିଶ୍ୱାସ ?

: ଅନ୍ତତଃ ଅସମ୍ଭବ ନୁହେଁ, ଏହା ମୋର ମନେ ହୁଏ ।

ଅଜିତ ମନେ ମନେ ଆହତ ହୋଇ କହିଲା—ମୁଁ ହୁଏତ ଆଉ ଥରେ ତୁମ ବସାକୁ ଯାଇପାରେ । କାରଣ ଶିବନାଥବାବୁ ନାହାଁନ୍ତି ।

: ସେ କଥା ମୁଁ ଜାଣେ ଅଜିତବାବୁ ।

: ଜାଣିଥିଲେ କଦାପି ବିଶ୍ୱାସ କରି ନ ଥାନ୍ତ ଯେ, ମୁଁ ତୁମକୁ ଆଜି ମିଛ କହି ଭୁଲାଇବାକୁ ଯାଉଥିଲି । ଏହା ଭିତରେ ସତ୍ୟ କିଛି ନ ଥିଲା ବୋଲି ।

: ମିଛ କଥା ସମ୍ପର୍କରେ ଆଲୋଚନାତ କରିନାହେଁ । ମୋହ ସମ୍ପର୍କରେ ଆଲୋଚନା ହେଉଥିଲା । ମିଛ ଓ ମୋହ ଦୁଇଟା ବିଷୟ ଏକ ନୁହେଁ । ଆଉ ମୋହ ବଶରେ କାହାକୁ ଭୁଲାଇବା ପାଇଁ ଗୃହିଁ ଥାନ୍ତି ତ, ତେବେ ନିଜକୁ ଭୁଲାଇବା ପାଇଁ ଗୃହିଁଛନ୍ତି । ମୋତେ ଠକିବା ପାଇଁ ଇଚ୍ଛା କରି ନାହାନ୍ତି, ଏକଥା ମୁଁ ଭଲ ଭାବରେ ଜାଣେ ।

: କିନ୍ତୁ ଶେଷରେ ତୁମେ ତ ଠକି ହୋଇଯାଇଛ କମଳ । ସେଦିନର ମୋହ ଦିନ ଅଳ୍ପଅରେ ନିଶ୍ଚୟ ତୁଟିଯିବ ଏହା ନିଶ୍ଚିତ ବୋଲି ଜାଣି ପୁଣି ମୋ ସହିତ ଯିବା ପାଇଁ ଅସମ୍ମତ ହୋଇନାହଁ । ଏହା କ'ଣ ଉପହାସ ନୁହେଁ ?

କମଳ ସାମାନ୍ୟ ହସି ଦେଇ କହିଲା—ଚେଷ୍ଟା କରି ଦେଖିଲେ ନାହିଁ କାହିଁକି ? ରାସ୍ତା ତ ଖୋଲା ଥିଲା । ମୁଁ ତ ଆଦୌ ବାରଣ କରିନାହିଁ ।

ଅଜିତ ନିଃଶ୍ୱାସ ଛାଡ଼ି କହିଲା—ଯଦି ନ କରିଥାଅ ତେବେ କହିବି ଯେ ତୁମକୁ ବୁଝିବା ବଡ଼ କଠିନ । ତୁମକୁ ଗୋଟାଏ କଥା କହିବି କମଳ, ନାରୀର ଭଲପାଇବା ଯେପରି ହୃଦୟକୁ ଆଚ୍ଛନ୍ନ କରେ, ତା ରୂପର ମୋହ ସେହିପରି ବୁଦ୍ଧିକୁ ଅବଚେତନ କରିଥାଏ । କରୁ । କିନ୍ତୁ ତହିଁର ଗୋଟାଏ ଯେତିକି ସତ୍ୟ ଅନ୍ୟଟା ସେତିକି ମିଥ୍ୟା । ତୁମେ ତ ଜାଣ ତାହା ମୋର ଭଲ ପାଇବା ନ ଥିଲା । ଥିଲା ମୋର କ୍ଷଣିକର ମୋହ । କିଭଳି ସ୍ୱବରେ ତୁମେ ଏହାକୁ ପ୍ରଶସ୍ତ ଦେବା ପାଇଁ ଉଦ୍ୟତ ହୋଇଥିଲ ? କୁହୁଡ଼ି ଯେତେ ଘନୀଭୂତ ହୋଇ ସୂର୍ଯ୍ୟାଲୋକକୁ ଢାଙ୍କି ପକାଉ କାହିଁକି ନା, ତଥାପି ତାହା ମିଥ୍ୟା । ସୂର୍ଯ୍ୟ ହିଁ ସତ୍ୟ ।

ଅନ୍ଧକାରରେ କ୍ଷଣକ ପାଇଁ କମଳ ତାକୁ ନିର୍ନିମେଷ ନୟନରେ ଚାହିଁ ରହିଲା । ତାପରେ ଶାନ୍ତ କଣ୍ଠରେ କହିଲା—ଏଇଟା କବିର ଉପମା ଅଜିତ ବାବୁ, ଯୁକ୍ତି ନୁହଁ କିମ୍ବା ସତ୍ୟ ନୁହେଁ । ଆଦିମକାଳରୁ କୁହୁଡ଼ିର ସୃଷ୍ଟି । ଆଜି ମଧ୍ୟ ତାହା ସେହିପରି ରହିଛି । ସୂର୍ଯ୍ୟକୁ ସେ ବାରମ୍ବାର ଆବୃତ କରୁଛି ଏବଂ କରୁଥିବ । ସୂର୍ଯ୍ୟ ସତ୍ୟ ହୋଇପାରେ କିନ୍ତୁ କୁହୁଡ଼ି ଯେ ମିଛ ଏହାତ ପ୍ରମାଣିତ ହୋଇପାରି ନାହିଁ । ଏ ଦୁଇଟା ହିଁ ନଶ୍ୱର । ହୁଏତ ଏ ଦୁଇଟା ମଧ୍ୟ ନିତ୍ୟକାଳର । ସେହିପରି ହେଲେ କ୍ଷଣିକର, କିନ୍ତୁ କ୍ଷଣ ତ ମିଥ୍ୟା ନୁହେଁ । କ୍ଷଣକାଳର ସତ୍ୟକୁ ଧରି ସେ ବାରମ୍ବାର ଫେରି ଆସିଥାଏ । ମାଳତୀ ଫୁଲର ଆୟୁଷ ସୂର୍ଯ୍ୟମୁଖୀ ପରି ଦୀର୍ଘ ନୁହେଁ ବୋଲି ତାହାକୁ ମିଥ୍ୟା ବୋଲି କ'ଣ ଉଡ଼ାଇ ଦେଇ ହେବ ? ଆଜି ଗୋଟାଏ ରାତିର ମୋହକୁ ମୁଁ ପ୍ରଶ୍ରୟ ଦେବାପାଇଁ ଉଦ୍ୟତ ହୋଇଥିଲି । ଏହା ଯଦି ଆପଣଙ୍କର ଅଭିଯୋଗ ହୋଇଥାଏ ଅଜିତ୍ ବାବୁ, ଆୟୁଷର ଦୀର୍ଘତା ହିଁ କ'ଣ ଜୀବନ ପାଇଁ ଏକମାତ୍ର ସତ୍ୟ ?

କଥାଗୁଡ଼ିକ ଅଜିତ ବୁଝିପାରିଲା ନାହିଁ । ତାହା ଜାଣିପାରି କମଳ କହିବାକୁ ଲାଗିଲା—ମୋ କଥା ବୁଝିବା ଭଳି ବୟସ ତୁମର ଆଜି ପର୍ଯ୍ୟନ୍ତ ଆସିନାହିଁ । ସେଥିପାଇଁ ଶିବନାଥ ବାବୁଙ୍କ ପ୍ରତି ଆପଣଙ୍କର କ୍ରୋଧର ସୀମା ନାହିଁ । କିନ୍ତୁ ମୁଁ ତାଙ୍କୁ କ୍ଷମା କରିଛି । ଯାହା ପାଇଛି ତାହାଠାରୁ ଅଧିକା କାହିଁକି ପାଇ ପାରିଲି ନାହିଁ ସେଥିପାଇଁ ମୋର ଏତେ ଟିକିଏ ଅଭିଯୋଗ ନାହିଁ ।

ଅଜିତ କହିଲା—ମନଟାକୁ ଏପରି ନିର୍ବିକାର କରି ଗଢ଼ିପାରିଛ ? ଆଚ୍ଛା, ସଂସାରରେ କ'ଣ କାହା ବିରୁଦ୍ଧରେ ତୁମର କୌଣସି ଅଭିଯୋଗ ନାହିଁ ?

କମଳ ତା ମୁହଁକୁ ଚାହିଁ କହିଲା—ଅଛି, କେବଳ ଜଣକେ ବିରୁଦ୍ଧରେ ।

: କାହା ବିରୁଦ୍ଧରେ ?

: ଅପରର କଥା ଶୁଣି କ'ଣ ଅବା ଆପଣଙ୍କର ଲାଭ ହେବ ?

: ଅପରର କଥା ! ଯାହା ହେଉ ତଥାପି ତ ନିଶ୍ଚିତ ହୋଇ ପାରିବ ଯେ ଅନ୍ତତଃ ମୋ ବିରୁଦ୍ଧରେ ତୁମର ଅଭିଯୋଗ ନାହିଁ ।

: ନିଶ୍ଚିତ ହେଲେ କ'ଣ ଖୁସି ହେବେ ? କିନ୍ତୁ ବର୍ତ୍ତମାନ ଆଉ ସମୟ ନାହିଁ, ଆମେ ଆସି ପହଞ୍ଚି ଗଲେଣି । ଗାଡ଼ି ଅଟକାନ୍ତୁ, ମୁଁ ଓହ୍ଲାଇଯିବି ।

ଗାଡ଼ି ଅଟକିଲା । ଅନ୍ଧକାର ରାସ୍ତା କଡ଼ରେ କିଏ ଜଣେ ଠିଆ ହୋଇଥିଲା, ପାଖକୁ ଆସିବାକ୍ଷଣି ଉଭୟେ ଚମକି ଉଠିଲେ । ଅଜିତ ଡରିଯାଇ ପ୍ରଶ୍ନ କଲା—କିଏ ?

: ମୁଁ ରାଜେନ୍ । ଆଜି ହରେନ୍ ଭାଇ ଆଶ୍ରମରେ ମୋତେ ଦେଖିଛନ୍ତି ।

: ଓହୋ ! ରାଜେନ୍ । ଏତେ ରାତିରେ ଏଠାରେ କାହିଁକି ?

: ଆପଣଙ୍କ ପାଇଁ ଅପେକ୍ଷା କରି ରହିଛି । ଆପଣମାନେ ଆସିବା ପରେ ପରେ ଆଶୁବାବୁଙ୍କ ପାଖରୁ ଲୋକ ଆସିଥିଲା ଆପଣଙ୍କୁ ଖୋଜିବା ପାଇଁ । ଏହା କହି ସେ କମଳକୁ ଚାହିଁଲା ।

କମଳ କହିଲା—ମୋତେ ଖୋଜି ଆସିବାର କାରଣ ?

: ଲୋକଟି କହିଲା, ଆପଣ ବୋଧହୁଏ ଜାଣିଛନ୍ତି ଆଜିକାଲି ସହରଆଡ଼େ ଇନ୍‌ଫ୍ଲୁଏଞ୍ଜା ହୋଇଛି, ଏବଂ ଅନେକ ସ୍ଥାନରେ ରୋଗୀମାନେ ମଧ୍ୟ ମରିଯାଉଛନ୍ତି । ଶିବନାଥ ବାବୁ ଅତିଶୟ ପୀଡ଼ିତ । ହଠାତ୍ ସକାଳରେ ଧରି ତାଙ୍କୁ ଆଶୁବାବୁଙ୍କ ଘରକୁ ନେଇ ଆସିଛନ୍ତି । ଆଶୁବାବୁ ଭାବିଥିଲେ ଆପଣ ହରେନ୍ଦ୍ର ବାବୁଙ୍କ ଆଶ୍ରମରେ ଅଛନ୍ତି, ସେଥିପାଇଁ ଡକାଇ ପଠାଇଥିଲେ ।

: ବର୍ତ୍ତମାନ ରାତି କେତେ ହେଲା ?

: ବୋଧହୁଏ ବାରଟା ବାଜି ଯାଇଛି ।

କମଳ ହାତ ବଢ଼ାଇ ଗାଡ଼ିର ଦରଜା ଖୋଲିଦେଇ କହିଲା—ଭିତରକୁ ଆସନ୍ତୁ । ବାଟରେ ଆପଣଙ୍କୁ ଆଶ୍ରମରେ ଛାଡ଼ିଦେଇ ଯିବି ।

ଅଜିତ ପଦେ କଥା ପୁଣି କହିଲା ନାହିଁ । କାଠ ପିତୁଳା ଭଳି ନୀରବରେ ଗାଡ଼ି ଚଲାଇ ହରେନ୍ଦ୍ର ବସା ଆଗରେ ଅଟକାଇଲା । ରାଜେନ୍ ଓହ୍ଲାଇ ପଡ଼ିଲାବେଳେ କମଳ କହିଲା—ଆପଙ୍କୁ ଧନ୍ୟବାଦ । ମୋତେ ଖବର ଦେବାପାଇଁ ଆପଣଙ୍କୁ ଆଜି ବହୁତ କଷ୍ଟ ଭୋଗିବାକୁ ହେଲା ।

: ଏହା ମୋର କର୍ତ୍ତବ୍ୟ । ପ୍ରୟୋଜନ ମନେକଲେ ପୁଣି ଖବର ଦେବେ, କହି ଚାଲିଗଲା । ଭୂମିକା ନାହିଁ, ଆଡ଼ମ୍ବର ନାହିଁ, ସରଳ କଥାରେ ଜଣାଇ ଦେଇଗଲା ଯେ ଏହା ତାର କର୍ତ୍ତବ୍ୟ । ଆଜି ସନ୍ଧ୍ୟାବେଳେ ଏଇ ପିଲାଟି ସମ୍ପର୍କରେ ହରେନ୍ଦ୍ର ମୁହଁରୁ ଯେତେ ଯାହା ଶୁଣିଥିଲା ସବୁ ତାର ମନେ ପଡ଼ିଗଲା । ଗୋଟିଏ ଦଗରେ ପରୀକ୍ଷାରେ

ପାପ୍ କରିବା ପାଇଁ ତାର ଅସାଧାରଣ ଦକ୍ଷତା, ଆଉ ଅନ୍ୟ ଦିଗରେ ସଫଳତା ଦିଗରେ ତାର ତ୍ୟାଗ କରିବାର ଅପରିସୀମ ଔଦାସିନ୍ୟ । ବୟସ ତାର ଅଳ୍ପ, ଏଇ ମାତ୍ର ଯୌବନରେ ପାଦ ଦେଇଛି । ଏହି ବୟସରେ ନିଜର ବୋଲି କିଛି ହାତରେ ରଖିନାହିଁ । ପରଙ୍କ କାର୍ଯ୍ୟରେ ସବୁ ବାଣ୍ଟି ଦେଇଛି ।

ଅଜିତ୍ ସେ ପର୍ଯ୍ୟନ୍ତ ନୀରବ ହୋଇ ରହିଥିଲା । ସ୍ୱତ ଘଟଣା ବାଜି ଯାଇଛି ଶୁଣିବା ପରେ କୌଣସିଥିରେ ମନ ଦେବାପାଇଁ ଶକ୍ତି ଆଉ ତାର ନ ଥିଲା । କେବଳ ଗୋଟାଏ କାଳ୍ପନିକ, ଅସଲଗ୍ନ ପ୍ରଶ୍ନୋତ୍ତର ମାଳା ଭିତରେ ଏହି ନିଶୀଥ ଅଭିଯାନର ନିରବଚ୍ଛିନ୍ନ, କ୍ରିଣ୍ଣତାରେ ଅନ୍ତର ତାହାର କଳା ପଡ଼ିଯାଇଥିଲା । ଖୁବ୍ ସମ୍ଭବ କେହି କିଛି ପଚାରିବେ ନାହିଁ; ହୁଏତ ପଚାରିବାକୁ କେହି ସାହସ କରି ପାରିବେ ନାହିଁ । କେବଳ ଆପଣା ଆପଣା ଇଚ୍ଛା ଅଭିରୁଚି ଓ ବିଦ୍ୱେଷର ତୂଳୀଦ୍ୱାରା ଅଙ୍କିତ ଘଟଣାର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କାହାଣୀ ବର୍ଣ୍ଣେ ବର୍ଣ୍ଣେ ସୃଜନ କରି ବସିବେ । ଏହାଠାରୁ ଢେର୍ ଅଧିକ ବେଶୀ ତାକୁ ବ୍ୟାକୁଳ କରିପକାଇ ଥିଲା ଏହି ଲଜ୍ଜାହୀନା ଝିଅଟାର ନିର୍ଭୀକ ସତ୍ୟବାଦୀତା । ଏ ଜଗତରେ ମିଛ କହିବାର ପ୍ରୟୋଜନୀୟତା ତା ପାଖରେ ନାହିଁ, ଯେଣେ ଯେପରି ସାରା ପୃଥିବୀର ଲୋକଙ୍କୁ ବିବ୍ରତ ଓ ଜବତ କରିବା ପାଇଁ ସେ ଜନ୍ମ ହୋଇଛି ।

ଏଣେ ଶିବନାଥର ବେମାରି ଉପଲକ୍ଷରେ କିଏ ସବୁ ଆସି ପହଞ୍ଚିଛନ୍ତି ସେ କଥା ତାକୁ ଜଣା ନାହିଁ । ସେହି ଝିଅଟିକୁ ସେମାନେ ପ୍ରଶ୍ନ କରିବାରେ ଲାଗିଛନ୍ତି ଭାବି ଅଜିତ ଶରୀର ରକ୍ତ ଶୀତଳ ହୋଇ ଆସିଲା । ହଠାତ୍ ତାର ମନେହେଲା ସେ କମଳକୁ ଘୃଣା କରେ ଏବଂ ତାହାର ରୂପରେ ପାଗଳ ହୋଇ ସେ ଆତ୍ମ ବିସ୍ମୃତ ହୋଇ ପଡ଼ିଥିବାରୁ ଆପଣାକୁ ଧିକ୍କାର କରିବାକୁ ଲାଗିଲା ।

ଗେଟ ଭିତରକୁ ପ୍ରବେଶ କରିବାକ୍ଷଣି ତା ଆଖିରେ ପଡ଼ିଲା, ଆଗ ଝରକା ପାଖରେ ଠିଆ ହୋଇଛନ୍ତି ଆଶୁବାବୁ ସ୍ୱୟଂ । ବୋଧହୁଏ ତାର ଅପେକ୍ଷାରେ ଉଦ୍‌ଗ୍ରୀବ ହୋଇ ଉଠିଛନ୍ତି । ଗାଡ଼ି ଶବ୍ଦ ଶୁଣି ତଳକୁ ଚାହିଁ କହିଲେ—କ'ଣ ଅଜିତ ଆସିଲ ? ସଙ୍ଗରେ କିଏ କମଳ ?

: ହଁ ।

: ଯଦୁ । କମଳକୁ ଶିବନାଥ ଘରକୁ ନେଇ ଯାଅ । ବୋଧହୁଏ ତାର ଅସୁସ୍ଥତା ଖବର ଶୁଣିଥିବ ? କହୁ କହୁ ସେ ନିଜେ ତଳକୁ ଓହ୍ଲାଇ ଆସିଲେ । କହିଲେ—ଏଇ ଋତୁ ପରିବର୍ତ୍ତନ ସମୟଟା ଖରାପ, ତହିଁ ସଙ୍ଗେ ସଙ୍ଗେ ଏଇ ଯେଉଁ ବେମାରି ଲାଗିଯାଇଛି ସେଥିରେ ବହୁତ ଲୋକ ମରିଯାଉଛନ୍ତି । ମୋ ନିଜ ଦେହଟା ମଧ୍ୟ ସକାଳ ପହରରୁ ଭଲ ନାହିଁ । କପର ଜରୁଆ ଜରୁଆ ଲାଗୁଛି ।

କମଳ ଉଦ୍‌ଗ୍ରୀବ ହୋଇ କହିଲା—ତେବେ ଆପଣ କାହିଁକି ବୁଲି ବସିଛନ୍ତି ? ଏଠାରେ ଦେଖା ଶୁଣା କରିବା ପାଇଁ ତ ଲୋକଙ୍କର ଅଭାବ ନାହିଁ ।

: କଣ, ଆଉ ଅଛୁ କହିଲୁ ? ଡାକ୍ତର ଆସି ଦେଖି ଯାଇଛନ୍ତି । ମୋତେ ଶୋଇବାକୁ ପଠାଇ ଦେଇ ମଣି ନିଜେ ଶିବନାଥ ପାଖରେ ବସି ରହିଛି । ମୁଁ କିନ୍ତୁ ଶୋଇ ପାରିଲି ନାହିଁ । ତୋ ଆସିବାକୁ କ୍ରମଶଃ ଡେରି ହେବାକୁ ଲାଗିଲା—ମଣିଷର ଅସୁସ୍ଥତା ସମୟରେ କ'ଣ ଅଭିମାନ ରଖାଯାଏ ? ସ୍ୱାମୀ, ସ୍ତ୍ରୀ ଭିତରେ କଳି ଝଗଡ଼ା ଯେ କାହାର ନ ହୁଏ ତାହା ନୁହେଁ କିନ୍ତୁ କେଉଁଠାରେ ଯାଇ-ସେ କିଏ ଘରରେ ପଡ଼ିଛି ସେ ଖବର ମଧ୍ୟ ତୁ ରଖି ପାରିଲୁ ନାହିଁ । ଛିଃ—ଛିଃ—ଏ କାମ ଭଲ ହେଲା ନାହିଁ । ବର୍ତ୍ତମାନ ସିନା ତୋତେ ହିଁ ଏକାକୀ କଷ୍ଟ ଭୋଗିବାକୁ ପଡ଼ିବ ।

ଏକଥା ଶୁଣି କମଳ ବିସ୍ମିତ ହୋଇ ଉଠିଲା । ବୁଝି ପାରିଲା ଏହି ସରଳ ଚିତ୍ତ ବ୍ୟକ୍ତିଟି ଭିତରର କଥା କିଛି ଜାଣନ୍ତି ନାହିଁ । ସେ ଚୁପ୍ ହୋଇ ରହିଲା । ଆଶୁବାବୁ ତା ଅଭିମାନକୁ ଶାନ୍ତ କରିବା ଉଦ୍ଦେଶ୍ୟରେ କହିବାକୁ ଲାଗିଲେ—ହରେନ୍ ବାବୁଙ୍କ ମୁହଁରୁ ଶୁଣିବାକୁ ପାଇଲି ତୁ ଘରେ ନାହୁଁ । ଅଜିତ୍ ତୋତେ ଘରେ ଛାଡ଼ି ଦେଇ ନାହିଁ । ସେ ନିଜେ ବୁଲିବା ପାଇଁ ବିଶେଷ ଭଲପାଏ । ତୋତେ ସଙ୍ଗରେ ଧରି ବୁଲାଇ ନେଇ ଯାଇଛି । କିନ୍ତୁ ଭାବିଲୁ ଯଦି ଅନ୍ଧାରରେ ହଠାତ୍ ଗୋଟାଏ ଦୁର୍ଘଟଣା ହୋଇଥାନ୍ତା ତେବେ କି ବିପଦରେ ପଡ଼ି ନଥାନ୍ତୁ !

ଅଜିତ୍ ଘରରୁ ଯେପରି ପଥରଟା ଓହ୍ଲାଇଗଲା । କୌଣସି ଜିନିଷର ମନ୍ଦ ଦିଗଟା ଏହି ମନୁଷ୍ୟଟି ଭିତରେ ଆଦୌ ପ୍ରବେଶ କରେ ନାହିଁ । ନିଷ୍କଳଙ୍କ ଅନ୍ତର ତାଙ୍କର ଅନୁକ୍ଷଣ ଅକଳଙ୍କ ଶୁଭ୍ରତାରେ ଦପ୍ ଦପ୍ ହୋଇ ଜଳୁଛି । ସ୍ନେହ ଓ ଶ୍ରଦ୍ଧାରେ ସେ ତାଙ୍କୁ ମନେ ମନେ ନମସ୍କାର ଜଣାଇଲା । କିନ୍ତୁ କମଳ ତାଙ୍କର ଏସବୁ କଥାରେ କାନ ଦେଲା ନାହିଁ । ହୁଏତ ପ୍ରୟୋଜନ ବୋଧ କଲାନାହିଁ । ପ୍ରଶ୍ନ କଲା—ସେ ଡାକ୍ତରଖାନାକୁ ନ ଯାଇ ଏଠାକୁ କାହିଁକି ଆସିଲେ ?

ଆଶୁବାବୁ ବିସ୍ମିତ ହୋଇ କହିଲେ—ଡାକ୍ତରଖାନାକୁ ! ଦେଖୁଛି ତୋ ରାଗ ଏ ପର୍ଯ୍ୟନ୍ତ କମିନାହିଁ ।

: ରାଗ ପାଇଁ କହୁନାହିଁ ଆଶୁବାବୁ, ଯେଉଁଟା ସଙ୍ଗତ ଏବଂ ସ୍ୱାଭାବିକ ହୋଇଥାନ୍ତା ତାହାହିଁ କେବଳ କହୁଛି ।

: ତାହା ସ୍ୱାଭାବିକ ନୁହେଁ ଏବଂ ସଙ୍ଗତ ମଧ୍ୟ ନୁହେଁ । ମୁଁ ମାନୁଛି ତାକୁ ଏଠାକୁ ନ ଆଣି ତୋ ପାଖକୁ ପଠାଇ ଦେବାଟା ମଣିଷ ପକ୍ଷରେ ଉଚିତ ହୋଇଥାନ୍ତା ।

: ନା ଉଚିତ ହୋଇ ନଥାନ୍ତା । ମଣି ଜାଣନ୍ତି ଚିକିତ୍ସା କରାଇବାର ସାଧ୍ୟ ମୋର ନାହିଁ ।

ଏହି କଥା ସଙ୍ଗେ ସଙ୍ଗେ ତାଙ୍କର ଆଉ ଗୋଟିଏ କଥା ମନେ ପଡ଼ିବାରୁ ସେ ନିତାନ୍ତ ଅପ୍ରତିଭ ହୋଇ ଉଠିଲେ । କମଳ କହିବାକୁ ଲାଗିଲା—କେବଳ ମନୋରମା

ନୁହଁନ୍ତି । ଶିବନାଥ ବାବୁଙ୍କ ଜନେ ମଧ୍ୟ ଜାଣନ୍ତି ସେବା ଦ୍ୱାରା ରୋଗ କମେ ନାହିଁ, ସେଥିପାଇଁ ଔଷଧ ଏବଂ ପଥ୍ୟର ପ୍ରୟୋଜନ । ହୁଏତ ଭଲ ହୋଇଛ ଯେ ଖବର ମୋ ନିକଟରେ ନ ପହଞ୍ଚି ମଣିଙ୍କ ପାଖରେ ପହଞ୍ଚି ପାରିଛି । ତାଙ୍କର ପରମାୟୁର ଜୋର ଅଛି ।

ଆଶୁବାବୁ ଲଜ୍ଜାରେ ମଳିନ ପଡ଼ିଯାଇ ମୁଣ୍ଡ ହଲାଇ ବାରମ୍ବାର କହିବାକୁ ଲାଗିଲେ ଯେ, ଏକଥା ନୁହେଁ, ସେବା ହିଁ ହେଉଛି ଅସଲ କଥା । ଯତ୍ନ ହେଉଛି ସବୁଠାରୁ ବଡ଼ ଔଷଧ । ଡାକ୍ତର, ବୈଦ୍ୟ ଏମାନେ କେବଳ ଉପଲକ୍ଷ୍ୟ ମାତ୍ର । ତାଙ୍କର ପରଲୋକଗତା ପତ୍ନୀଙ୍କୁ ମନେ ପକାଇ କହିଲେ—ମୁଁ ଯେ ଏ ବିଷୟରେ ଭୁକ୍ତଭୋଗୀ କମଳ । ରୋଗ ଭୋଗି ଭୋଗି ସେହି ଶିକ୍ଷା ମୋର ହୋଇ ଯାଇଛି । ଘର ଭିତରକୁ ଚାଲ, ତୋ ଜନପଦକୁ ନେଇ ତୁ ଯାହା ଭଲ ମନେ କରିବୁ ତାହା ହିଁ କରିବୁ । ମୁଁ ଥିବା ପର୍ଯ୍ୟନ୍ତ ଔଷଧ ଓ ପଥ୍ୟରେ ତ୍ରୁଟି ହେବ ନାହିଁ । ଏହା କହି ତାକୁ ବାଟ ଦେଖାଇ ଭିତରକୁ ନେଇ ଗଲେ । ଅଜିତ କ'ଣ କରିବ ବୁଝି ନପାରି ସେମାନଙ୍କ ସହିତ ଆଗେଇ ଚାଲିଲା । କାଲେ ବିଶ୍ରାମରେ ବିଘ୍ନ ଉପୁଜି ଯିବ ଏହି ଆଶଙ୍କାରେ ସମସ୍ତେ ରୋଗୀ ରହିଥିବା ଘରେ ପାଦ ଚପି ଚପି ପ୍ରବେଶ କଲେ । ଶଯ୍ୟା ପାଖ ଚୌକିରେ ମନୋରମା ରାତି ଜାଗରଣ କ୍ଳାନ୍ତ ହେଉ ବସି ବସି ରୋଗୀର ଅବସନ୍ନ ଗୋଡ ଉପରେ ମଥାଟି ରଖି ଏଇମାତ୍ର ବୋଧ ହୁଏ ଶୋଇ ପଡ଼ିଛି । ତା ବେକରେ ଦୁଇ ହାତକୁ ଗୁଡ଼େଇ ଶିବନାଥ ମଧ୍ୟ ଗଭୀର ନିଦରେ ଶୋଇ ଯାଇଛି । ସ୍ୱପ୍ନାତୀତ ଏହି ଦୃଶ୍ୟ ସମ୍ମୁଖରେ ହଠାତ୍ କମଳର ଦୁଇ ଚକ୍ଷୁରେ ଯେପରି ଅନ୍ଧକାରର କଳା ଜାଲ ଘେରି ଉଠିଲା । କିନ୍ତୁ ତାହା ମୁହୂର୍ତ୍ତିକ ପାଇଁ । ମୁହୂର୍ତ୍ତିକ ପରେ ସେ ସେଠାରୁ ଚାଲିଗଲେ । ଅଜିତ ଓ କମଳ ଉଭୟେ ଉଭୟଙ୍କୁ ଚାହିଁ ରହିଲେ । ତାପରେ ଯେପରି ଭାବରେ ଆସିଥିଲେ ସେହିପରି ଭାବରେ ଫେରିଗଲେ ।

ଯିବା ଆସିବା ରାସ୍ତା ପାଖରେ ଗୋଟିଏ ବାରଣ୍ଡା । ରୋଗୀ ରହିଥିବା ଘରୁ ବାହାରି ଆସି ଅଜିତ ଓ କମଳ ସେହିଠାରେ ଅଟକି ଗଲେ । ଗୋଟିଏ ଗ୍ଲୋବ ଲଣ୍ଠନ ଜଳୁଥିଲା । ତାହାର ଅସ୍ପଷ୍ଟ ଆଲୋକରେ ଅଜିତର ସାଦା ମୁହଁଟା ସ୍ପଷ୍ଟ ଦେଖାଗଲା । ଆଶ୍ଚର୍ଯ୍ୟଜନକ ଭାବରେ ଧକ୍କା ଖାଇ ଯେପରି ତା ଦେହରୁ ସମସ୍ତ ରକ୍ତ ଶୁଖି ଯାଇଛି । ସେଠାରେ ଆଉ ତୃତୀୟ ବ୍ୟକ୍ତି କେହି ନ ଥିଲେ । ତଥାପି ସେ ଅନାତ୍ମୀୟା ଭଦ୍ର ମହିଳାଙ୍କୁ

ସଭ୍ରମର ସହିତ ପ୍ରଶ୍ନ କଲି—ଆପଣ କ'ଣ ବର୍ତ୍ତମାନ ଫେରି ଯିବାକୁ ଚାହାଁନ୍ତି ? ଚାହୁଁଥିଲେ ମୁଁ ସେଥିପାଇଁ ବ୍ୟବସ୍ଥା କରି ଦେଇ ପାରିବି ।

କମଳା ତା ମୁହଁକୁ ଚାହିଁ ଦେଇ ନୀରବ ରହିଲା । ଅଜିତ କହିଲା—ଏ ଘରେ ତ ଗୋଟିଏ ମୁହୂର୍ତ୍ତି ରହିବା ଆପଣଙ୍କର ଉଚିତ ନୁହେଁ ।

: ଆପଣଙ୍କର କ'ଣ ରହିବା ଉଚିତ ?

: ନା, ମୋର ମଧ୍ୟ ନୁହେ । କାଲି ସକାଳେ ମୁଁ ଅନ୍ୟତ୍ର ଚାଲିଯିବି ।

କମଳ କହିଲା—ଭଲ ହେବ । ମୁଁ ମଧ୍ୟ ସେତିକିବେଳେ ଯିବି । ଆପାତତଃ ବାକି ରାତିଟା ଏଇ ଚୌକିରେ ବସି କଟାଇ ଦେବି । ଆପଣ ଯାନ୍ତୁ ବିଶ୍ରାମ କରିବେ ।

ସେହି କ୍ଷୁଦ୍ରାସ୍ୱତନ ଚୌକିଟାକୁ ଚାହିଁ ଅଜିତ ଇତସ୍ତତଃ ହୋଇ କହିଲା - କିନ୍ତୁ···

: କିନ୍ତୁର କୌଣସି ଆବଶ୍ୟକତା ନାହିଁ ଅଜିତ ବାବୁ । ଏଥିରେ ବହୁତ ହିଂସ୍ୟୁଟ । ବର୍ତ୍ତମାନ ବସାକୁ ଫେରିଯିବା ଏବଂ ଆପଣଙ୍କର ମଧ୍ୟ ଘରକୁ ଫେରିଯିବା ସମ୍ଭବପର ନୁହେଁ । ଆପଣ ଯାନ୍ତୁ । ଡେରି କରନ୍ତୁ ନାହିଁ ।

ସକାଳେ ଚାକର ଆସି ଅଜିତକୁ ଆଶୁବାବୁଙ୍କ ଶୋଇବା ଘରକୁ ଡାକି ନେଇ ଗଲା । ସେ ପର୍ଯ୍ୟନ୍ତ ସେ ବିଛଣା ଛାଡ଼ି ଉଠି ନ ଥିଲେ । ଆଗ ଚୌକିରେ କମଳ ବସିଥାଏ । ବୋଧହୁଏ ଏହା ପୂର୍ବରୁ ତାକୁ ଡକାଇ ଅଣା ହୋଇଛି ।

ଆଶୁବାବୁ କହିଲେ—ଦେହଟା କାଲିଠାରୁ ଭଲ ନ ଥିଲା । ଆଜି ମନେ ହେଉଛି ଯେପରି···ଆଚ୍ଛା···ବସ । ବସ ଅଜିତ ।

ସେ ଆସନ ଗ୍ରହଣ କରିବା ପରେ ଆଶୁବାବୁ କହିଲେ—ଶୁଣିଲି କାଲି କୁଆଡ଼େ ତୁମେ ଚାଲିଯିବ । ତୁମକୁ ରହିବା ପାଇଁ କହି ପାରୁ ନାହିଁ । ସେଥିପାଇଁ ଦୁଃଖବାସ୍ତୁ ଜଣାଉଛି । ଆଉ ଯଦି କେବେ ଦେଖା ନ ହୁଏ ତେବେ ଭଲ କରି ଜାଣ, ତୁମକୁ ମୁଁ ସର୍ବାନ୍ତକରଣରେ ଆଶୀର୍ବାଦ କରୁଛି—ଯେପରି ଆମକୁ କ୍ଷମା କରି ତୁମେ ଜୀବନରେ ସୁଖୀ ହୋଇ ପାର ।

ଅଜିତ ସେ ପର୍ଯ୍ୟନ୍ତ ତାଙ୍କ ମୁହଁକୁ ଚାହିଁ ଦେଖି ନ ଥିଲା । ଏଥର ଉତ୍ତର ଦେବା ପାଇଁ ଯାଇ ନିର୍ବାକ ହୋଇ ଉଠିଲା । ନିର୍ବାକ ବୋଲି କହିବା ଠିକ୍ ହେବ ନାହିଁ, ସେ ଯେପରି କ'ଣ କହିବ ତାହା ଭୁଲିଗଲା । ଗୋଟିଏ ରାତିର କେତେ ଘଣ୍ଟା ମାତ୍ର ସମୟ ଭିତରେ କାହାର ଏତେ ବଡ଼ ପରିବର୍ତ୍ତନ ହୋଇ ଯାଇପାରେ ତାହା ସେ କଳ୍ପନା କରି ପାରିଲା ନାହିଁ ।

ଆଶୁବାବୁ ନିଜେ ମଧ୍ୟ ଦୁଇ ତିନି ମିନିଟ ଧରି ନୀରବ ରହିବା ପରେ କମଳକୁ ଉଦ୍ଦେଶ୍ୟ କରି କହିଲେ—ତୋତେ ଡକାଇ ଆଣିଛି, କିନ୍ତୁ ତୋ ସହିତ ମୁହାଁମୁହିଁ ହେବା

ପାଇଁ ମୋ ମୁହଁକୁ ଉପରକୁ ଉଠାଇ ପାରୁ ନାହିଁ । ସାରା ରାତ ମନ ଭିତରେ କ'ଣ ଯେ ହୋଇଛି, ଏବଂ କେତେ କ'ଣ ଯେ ଭାବିଛି, ତାହା ମୁଁ ଆଜି କାହାକୁ ଅବା ଜଣାଇବି ?

ସାମାନ୍ୟ ଅଟକି ଯାଇ କହିଲେ—ଅକ୍ଷୟ ଦିନେ କହିଥିଲା—ଶିବନାଥ 'କୁଆଡ଼େ ତୋ ପାଖରେ ରହୁ ନାହିଁ । କଥାଟାରେ କାନ ଦେଇ ନ ଥିଲି । ଭାବିଥିଲି ଏହା ବୋଧ-ହୁଏ ତାର ଅତ୍ୟୁକ୍ତି । ତାର ବିଦ୍ୱେଷର ଆଚରଣ । ତୁ ଅର୍ଥ ଅଭାବରୁ କଷ୍ଟରେ ପଡ଼ିଥିଲୁ । ସେତେବେଳେ ତାହାର କାରଣ ବୁଝି ନ ଥିଲି କିନ୍ତୁ ଆଜି ସବୁ କଥା ପରିଷ୍କାର ହୋଇ ଯାଇଛି । ମୋର ଆଉ କୌଣସିଠାରେ କିଛି ସନ୍ଦେହ ନାହିଁ ।

ଉଭୟେ ନୀରବ ରହିଲେ । ସେ କହିବାକୁ ଲାଗିଲେ—ତୋ ପ୍ରତି ଅନେକ ଅର ବ୍ୟବହାରରେ ମୁଁ ତ୍ରୁଟି କରିଛି, କିନ୍ତୁ ସେହି ପ୍ରଥମ ଦିନର ସାକ୍ଷାତରେ ମୁଁ ତୋତେ ଭଲ ପାଇଛି କମଳ । ସେଥିପାଇଁ ମୁଁ ଭାବୁଛି ଯଦି ଆଗ୍ରାକୁ ମୁଁ ଆସି ନ ଥାନ୍ତି···କହୁ କହୁ ତାଙ୍କ ଆଖି କୋଣରେ ଲୁହ ଛଳ ଛଳ ହୋଇ ଉଠିଲା । ହାତରେ ତାକୁ ପୋଛି ପକାଇ କହିଲେ—ହେ ଜଗଦୀଶ୍ୱର !

କମଳ ଉଠି ଆସି ତାଙ୍କ ମୁଣ୍ଡ ପାଖରେ ବସିଲା । କପାଳରେ ହାତ ମାରି କହିଲା—ଆପଣଙ୍କୁ ଯେ ଜର ହୋଇଛି ଆଶୁବାବୁ !

ଆଶୁବାବୁ ତା ହାତକୁ ନିଜ ପାପୁଲି ଭିତରେ ଧରି କରି କହିଲେ - ହୋଇଥାଉ । କମଳ, ମୁଁ ଜାଣେ ତୁ ଅତ୍ୟନ୍ତ ବୁଦ୍ଧିମତୀ, ମୋ ପାଇଁ ଗୋଟାଏ କିଛି ବ୍ୟବସ୍ଥା କରି ଦେ । ମୋ ଘରେ ଏହି ଲୋକଟାର ଅସ୍ତିତ୍ୱରେ ଯେପରି ମୋ ଦେହରେ ନିଆଁ ଲାଗି ଯାଉଛି ।

କମଳ ଚାହିଁ ଦେଖିଲା—ଅଜିତ ବାବୁ ମଧ୍ୟ ମୁହଁ ତଳକୁ କରି ବସି ରହିଛନ୍ତି । ତାଙ୍କ ଠାରୁ କୌଣସି ପ୍ରକାର ଇଙ୍ଗିତ ନ ପାଇବା ପରେ ସେ ମୁହୂର୍ତ୍ତକ ପାଇଁ ନୀରବ ରହିବା ପରେ କହିଲା—ମୋତେ ଆପଣ କ'ଣ କରିବା ପାଇଁ କହୁଛନ୍ତି କହନ୍ତୁ । ଉତ୍ତର ନ ପାଇ ସେ ମଧ୍ୟ ପୁଣି କିଛି ସମୟ ନୀରବରେ ବସି ରହିଲା । ତା ପରେ କହିଲା—ଶିବନାଥଙ୍କୁ ଆପଣ ରଖିବାକୁ ଚାହାନ୍ତି ନାହିଁ । ସତ କଥା, କିନ୍ତୁ ସେ ଯେ ବର୍ତ୍ତମାନ ପୀଡ଼ିତ । ଏପରି ଅବସ୍ଥାରେ ହୁଏତ ତାଙ୍କୁ ଡାକ୍ତରଖାନାକୁ ପଠାଇ ଦିଅନ୍ତୁ ନଚେତ୍ ତାଙ୍କ ନିଜ ବସା ଠିକଣାଟା ଯଦି ଜାଣନ୍ତି ସେହିଠାକୁ ପଠାଇ ଦେଇ ପାରନ୍ତି । ଆଉ ଯଦି ମନେ କରନ୍ତି ତେବେ ମୋ ବସାକୁ ମଧ୍ୟ ପଠାଇ ଦେଲେ ଭଲ ହେବ । ତାହା ମଧ୍ୟ କରି ପାରନ୍ତି । ମୋର ଆପତ୍ତି ନାହିଁ । କିନ୍ତୁ ଜାଣନ୍ତି ତ ଚିକିତ୍ସା କରିବାର ଶକ୍ତି ମୋର ନାହିଁ । ମୁଁ କେବଳ ପ୍ରାଣପଣେ ସେବା କରିପାରେ କିନ୍ତୁ ତାହାଠାରୁ ଅଧିକା କିଛି କରିପାରିବି ନାହିଁ ।

କମଳର ଆଚରଣରେ ଏବଂ କଥାବାର୍ତ୍ତାରେ ଆଶୁବାବୁ ମନେ ମନେ ରାଗି ଉଠି କହିଲେ—ଏହା ତୋର ସୀମାତିରକ୍ତ ସ୍ପର୍ଦ୍ଧା । ଉଭୟଙ୍କର କଲ୍ୟାଣ ପାଇଁ ମୁଁ ଯେଉଁ କାମ କରିବା ପାଇଁ ଯାଉଛି ତୁ ତାକୁ ବିକୃତ ରୂପ ଦେଉଛୁ । ଗୋଟିଏ ଦିଗରେ ମୋର ଲଜ୍ୟାର ସୀମା ନାହିଁ ଏବଂ ଏହି କଦର୍ଯ୍ୟ ଆଚରଣକୁ ଶୀଘ୍ର ବିନାଶ କରି ନ ପାରିଲେ ଯେ ମୋର ଗ୍ଲାନିର ସୀମା ରହିବ ନାହିଁ, ତାହା ମୁଁ ଜାଣେ । କିନ୍ତୁ ମୋ କନ୍ୟା ଏଥିରେ ସଶ୍ଳିଷ୍ଟ ବୋଲି ମୁଁ ଯେ ଗୋଟାଏ ପଥ ଖୋଜି ବାହାର କରୁଛି ତାହା ମଧ୍ୟ ସତ୍ୟ ନୁହେଁ । ଶିବନାଥକୁ ମୁଁ ଯେକୌଣସି ଉପାୟରେ ବଞ୍ଚାଇ ପାରିବି । କିନ୍ତୁ ମୁଁ ଚାହେଁ ସେ ତୋର ଆନ୍ତରିକ ସେବା ପାଇ ଯେପରି ଆରୋଗ୍ୟ ହୋଇ ଉଠେ ଏବଂ ତୁ ତାକୁ ପୁଣି ଫେରିପାଉ । ସେହି କାମନା କରି ଏହି ପ୍ରକାର ପ୍ରସ୍ତାବ ଦେଇଛି । ନିଚ୍ଛକ ସ୍ୱାର୍ଥପରତା ବଶତଃ କରିନାହିଁ ।

କଥାଗୁଡ଼ିକ ସତ୍ୟ, ସକରୁଣ, ଏବଂ ଆନ୍ତରିକତା ପୂର୍ଣ୍ଣ । କିନ୍ତୁ କମଳ ମନ ଉପରେ ତାହା କୌଣସି ରେଖା କାଟି ପାରିଲା ନାହିଁ । ସେ ପ୍ରତ୍ୟୁତ୍ତର ଦେବାକୁ ଯାଇ କହିଲା—ଠିକ୍ ଏହି କଥା ହିଁ ମୁଁ ଆପଣଙ୍କୁ ବୁଝାଇବା ପାଇଁ ଇଚ୍ଛା କରିଥିଲି ଆଶୁବାବୁ । ସେବା କରିବା ପାଇଁ ମୁଁ ଅସମ୍ମତ ନୁହେଁ, ସ୍ୱାହା ବଗିଚ୍ରେ ଥିବାବେଳେ ଅନେକ ଲୋକଙ୍କର ଅନେକ ପ୍ରକାର ସେବା କରିଛି । ସେ ଅଭ୍ୟାସ ମୋର ଅଛି । କିନ୍ତୁ ତାଙ୍କୁ ଫେରିବାପାଇଁ ମୁଁ ଇଚ୍ଛା କରେ ନାହିଁ । ସେବା କଲେ ନୁହେଁ କିମ୍ବା ସେବା ନ କଲେ ମଧ୍ୟ ନୁହେଁ । ଏହା ମୋର ଅଭିମାନର ଜ୍ୱାଳା ନୁହେଁ, କିମ୍ବା ବୃଥା ଦାମ୍ଭିକତା ନୁହେଁ । ସମ୍ବନ୍ଧ ଆମର ଛିଣ୍ଡି ଯାଇଛି । ତାହାକୁ ମୁଁ ପୁଣି ଯୋଡ଼ି ପାରିବି ନାହିଁ ।

ତା କହିବା ଭଙ୍ଗିରେ ଉତ୍ତପ୍ତତା ନ ଥିଲା, ଉଚ୍ଛ୍ୱାସ ନ ଥିଲା, ନିହାତି ସାଦାସିଧା କଥା । ଏହାହିଁ ଆଶୁବାବୁଙ୍କୁ ବର୍ତ୍ତମାନ ଏପରି ସ୍ତବ୍ଧ କରି ପକାଇଲା । କିନ୍ତୁ ମୁହୂର୍ତ୍ତିକ ପରେ ସେ କହିଲେ—ଏ କି କଥା କହୁଛୁ କମଳ ? ଏହି ସାମାନ୍ୟ କାରଣ ହେତୁ ସ୍ୱାମୀଙ୍କୁ ତ୍ୟାଗ କରିବା ପାଇଁ ଚାହୁଁଛୁ ? ଏହି ଭଳି ଶିକ୍ଷା ତୋତେ କିଏ ଦେଲା ?

କମଳ ନୀରବ ହୋଇ ରହିଲା ।

ଆଶୁବାବୁ କହିବାକୁ ଲଗିଲେ—ପିଲାବେଳେ ତୋତେ ଏ ଶିକ୍ଷା ସିଏ ଦେଇଥାନ୍ତି ନା କାହିଁକି କିନ୍ତୁ ଭୁଲ ଶିକ୍ଷା ଦେଇଛନ୍ତି । ଏହା ଅନ୍ୟାୟ, ଅସଙ୍ଗତ ଏବଂ ଗଭୀର ଅପରାଧର କଥା । ଯେଉଁ ଘରେ ହିଁ ତୁ ଜନ୍ମ ହୋଇଥାଉ ନା କାହିଁକି, ତୁ ହେଉଛୁ ବଙ୍ଗାଳୀ ଘରର ଝିଅ । ଏ ପଥ ତୋର । ମୋର ନୁହେଁ । ଏକଥା ତୋତେ ଭୁଲି ଯିବାକୁ ପଡ଼ିବ । ଜାଣୁ କମଳ, ଗୋଟିଏ ଦେଶର ଧର୍ମ ଅନ୍ୟ ଦେଶ ପାଇଁ ଅଧର୍ମରେ ଗଣା ହୋଇ-ଥାଏ । ସେଥିପାଇଁ ସ୍ୱ ଧର୍ମରେ ମୃତ୍ୟୁ ଶ୍ରେୟସ୍କର । କହୁ କହୁ ତାଙ୍କର ଆଖି ଦୁଇଟା ଜଳି ଉଠିଲା । ଏବଂ କଥା ଶେଷ କରି ସେ ଯେପରି ଅଶାନ୍ତଃଶ୍ୱାସି ହୋଇ ପଡ଼ିଲେ । କିନ୍ତୁ ଯାହା

ଉଦ୍ଦେଶ୍ୟରେ ଉପଦେଶ ଦିଆ ହୋଇ ଗୁହାରିଗଲା ଯେ ଉଲେ ମାତ୍ର ବିଚଳିତ ହେଲେ ନାହିଁ ।

ଆଶୁବାବୁ କହିବାକୁ ଲାଗିଲେ—ଏହି ମୋହ ହିଁ ଦିନେ ଆମକୁ ରସାତଳ ଆଡ଼କୁ ଟାଣି ନେଇ ଯାଉଥିଲା । ହଠାତ୍ କେତେ ଜଣ ମନୀଷୀଙ୍କ ଆଖିରେ ଭୁଲଟା ଧରା ପଡ଼ିଗଲା । ଦେଶବାସୀଙ୍କୁ ଡାକି ସେମାନେ ବାରମ୍ବାର ଏହି କଥା କହି ବୁଲିଲେ ଯେ, ତୁମେମାନେ ପାଗଳ ଭଳି କେଉଁ ଆଡ଼େ ଯାଉଛ ? ତୁମମାନଙ୍କର କୌଣସି ଦୈନ୍ୟ ନାହିଁ, କୌଣସି ଅଭାବ ନାହିଁ, କାହା ନିକଟରେ ତୁମକୁ ହାତ ପାତିବାକୁ ପଡ଼ିବ ନାହିଁ, କେବଳ ଘର ଆଡ଼କୁ ଥରେ ଫେରି ଚାହଁ । ପୂର୍ବ ପୁରୁଷମାନେ ସବୁ ସାଇତି ରଖି ଯାଇଛନ୍ତି । କେବଳ ଥରେ ହାତ ବଢ଼ାଇ ତୋଳି ନିଅ । ବିଲାତରେ ସବୁ ତ ସ୍ୱଚକ୍ଷୁରେ ଦେଖି ଆସିଛୁ, ବର୍ତ୍ତମାନ ଶୁଣୁଛୁ ଠିକ୍ ସମୟରେ ଯଦି ସେମାନେ ସେହି ସତର୍କ ବାଣୀ ଉଚ୍ଚାରଣ କରି ନ ଯାଇଥାନ୍ତେ ତେବେ ଆଜି ଦେଶର ଅବସ୍ଥା କ'ଣ ହୋଇଥାନ୍ତା ? କିଏ କହି ପାରିବ ? ପିଲାବେଳ କଥା ସବୁ ମନେ ଅଛି ତ ? ଉଃ । ଶିକ୍ଷିତ ଲୋକମାନଙ୍କର ସେ କି ଅବସ୍ଥା ! ଏହା କହି ସେ ସ୍ୱର୍ଗତଃ ମନୀଷୀଗଣଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ନମସ୍କାର ଜଣାଇଲେ ।

କମଳ ମୁହଁ ଟେକି ଦେଖିଲା ଅଜିତ ମୁଗ୍ଧ ନେତ୍ରରେ ତାଙ୍କୁ ଚାହିଁ ରହିଛି । କଳ୍ପନା ଆବେଗରେ ଯେପରି ତାର ସଂଜ୍ଞା ନାହିଁ—ଏପରି ଅବସ୍ଥା ।

ଆଶୁବାବୁଙ୍କର ଭାବାବେଗ ସେ ପର୍ଯ୍ୟନ୍ତ ସୁଦ୍ଧା କମି ନ ଥାଏ । କହିଲେ, କମଳ ସେମାନେ ଆଉ ଯଦି ଅଧିକ କିଛି କରି ଯାଇ ନ ଥାନ୍ତେ ତେବେ କେବଳ ଏଇଥିପାଇଁ ହିଁ ଦେଶବାସୀଙ୍କ ନିକଟରେ ପ୍ରାତଃସ୍ମରଣୀୟ ହୋଇ ରହିଥାନ୍ତେ ।

: କେବଳ କ'ଣ ଏଇଥିପାଇଁ ସେମାନେ ପ୍ରାତଃସ୍ମରଣୀୟ ?

: ହଁ । କେବଳ ଏଇଥିପାଇଁ ସେମାନେ ଦେଶବାସୀଙ୍କୁ ବାହାର ଦିଗରୁ ଘର ଆଡ଼କୁ ମୁହଁ ଫେରାଇବାପାଇଁ କହିଥିଲେ ।

: ବାହାରେ ଯଦି ଆଲୋକ ଜଳେ, ଯଦି ପୂର୍ବ ଦିଗରେ ସୂର୍ଯ୍ୟ ଉଦୟ ହୁଏ, ତଥାପି ପଛକୁ ଫେରି ପଶ୍ଚିମ ଦିଗକୁ ଚାହିଁବାକୁ ପଡ଼ିବ । ତାହା ହିଁ କ'ଣ ହେବ ସ୍ୱଦେଶ ପ୍ରୀତି ?

କିନ୍ତୁ ଏ ପ୍ରଶ୍ନ ବୋଧହୁଏ ଆଶୁବାବୁଙ୍କ କାନରେ ବାଜିଲା ନାହିଁ । ସେ ଝୁଙ୍କରେ ପୁଣି କହିବାକୁ ଲାଗିଲେ—ଆଜି ଦେଶର ଧର୍ମ, ପୁରାଣ, ଇତିହାସ, ଆଚାର-ବିଚାର, ରୀତି ନୀତି ଯାହାସବୁ ବିଦେଶୀ ରୂପରେ ଲୋପ ହେବାପାଇଁ ବସିଥିଲା ତାହା ପ୍ରତି ଯେଉଁ ଶ୍ରଦ୍ଧା ଓ ବିଶ୍ୱାସ ଫେରି ଆସିପାରିଛି—ଏହା କେବଳ ସେମାନଙ୍କର ଦୂର ଦୃଷ୍ଟିର ଫଳ । ଜାତି ହିସାବରେ ଆମେମାନେ ଧ୍ୱଂସ ପଥରେ ଚାଲିଥିଲେ କମଳ, ଏହି ରକ୍ଷା ପାଇବାଟା କ'ଣ ସହଜ କଥା ? ପୁଣି ସମସ୍ତ ଫେରାଇ ନ ଆଣି ପାରିଲେ ଆମେମାନେ ଯେ କୌଣସିମତେ ରକ୍ଷା ପାଇ ପାରିବା ନାହିଁ । ଏହି ବୋଧଶକ୍ତି ଆମମାନଙ୍କୁ ଦେଲା କିଏ କୁହତ ?

ଅଜିତ ଉତ୍ତେଜନାରେ ହଠାତ୍ ଉଠିପଡ଼ି ଠିଆ ହୋଇ କହିଲା—ଏସବୁ ଚିନ୍ତା ଯେ ଆପଣଙ୍କ ମନରେ ସ୍ଥାନ ପାଇପାରେ ଏହା ମୁଁ କେତେବେଳେ କଳ୍ପନା କରିପାରି ନ ଥିଲି । ମୋର ଭାରି ଦୁଃଖ ଯେ ମୁଁ ଆପଣଙ୍କୁ ଏ ପର୍ଯ୍ୟନ୍ତ ଚିହ୍ନିପାରି ନ ଥିଲି । ଆପଣଙ୍କ ପାଦତଳେ ବସି ଉପଦେଶ ଗ୍ରହଣ କରିପାରି ନାହିଁ । ସେ ଆଉ ଏହିପରି କେତେ କ'ଣ କହିବାକୁ ଯାଉଥିଲା, କିନ୍ତୁ ବାଧା ପଡ଼ିଲା । ଚାକର ଘର ଭିତରେ ପ୍ରବେଶ କରି ଜଣାଇଲା ଯେ ହରେନ୍ଦ୍ର ବାବୁ ପ୍ରଭୃତି ଦେଖା କରିବା ପାଇଁ ଆସିଛନ୍ତି ଏବଂ ପରକ୍ଷଣରେ ସତୀଶ ରାଜେନ୍‌କୁ ଧରି ପ୍ରବେଶ କଲି । କହିଲି – ଖବର ନେଇ ଜାଣିପାରିଲି ଯେ ଶିବନାଥ ବାବୁ ବର୍ତ୍ତମାନ ଶୋଇଛନ୍ତି । ଆସିବାବେଳେ ଡାକ୍ତରଙ୍କ ଘରେ ଏଇମିତି ବୁଲିଦେଇ ଆସିଲି । ତାଙ୍କର ବିଶ୍ୱାସ ଏ ଅସୁଖ ସେପରି ସିରିଅସ୍ ନୁହେଁ, ଶୀଘ୍ର ଭଲ ହୋଇଯିବେ । ଏହା କହି ସେ ସମସ୍ତଙ୍କୁ ନମସ୍କାର ଜଣାଇ ସଙ୍ଗୀମାନଙ୍କୁ ଧରି ଆସନ ଗ୍ରହଣ କଲି ।

ଆଶୁବାବୁ ମୃଦୁ ହସିଲି ନମସ୍କାର ଗ୍ରହଣ କଲେ । ସେତେବେଳେ ତାଙ୍କର ଦୃଷ୍ଟି ଥିଲି ଅଜିତ ଉପରେ । ସେ ତାକୁ ଉଦ୍ଦେଶ୍ୟ କରି କହିଲେ –ମୋର ସାରା ଯୌବନ କାଳଟା ଯେ ବିଦେଶରେ କଟିଛି ଏକଥା ତୁମେ ଭୁଲିଯାଉଛ କାହିଁକି ? ଏପରି ବସ୍ତୁ ଅଛି ଯାହା ନିକଟରେ ଠିଆ ହେଲେ ସୁଦ୍ଧା ତାହା ଦେଖାଯାଏ ନାହିଁ ଅଥଚ ଦୂରରେ ଥାଇ ଦେଖିହୁଏ । ମୁଁ ସ୍ପଷ୍ଟ ଦେଖିପାରୁଛି ଶିକ୍ଷିତମାନଙ୍କର ପରିବର୍ତ୍ତନ । ଏଇ ଯେ ହରେନ୍ଦ୍ରର ଆଶ୍ରମ । ଏଇ ଯେ ନଗରେ ନଗରେ ତାହାର ଶାଖା ବିସ୍ତାର କରିବାର ଆୟୋଜନ ଚାଲିଛି; ଏହା ସବୁ କ'ଣ ଏଇଥିପାଇଁ ନୁହେଁ ? ବିଶ୍ୱାସ ଯଦି ନ ହେଉଥାଏ ତେବେ ସେମାନଙ୍କୁ ପଚାରି ବୁଝିପାର । ସେହି ବ୍ରହ୍ମଚର୍ଯ୍ୟ, ସେହି ସଂଯମ ସାଧନା, ସେହି ପୁରୁଣା ରୀତିନୀତିର ପ୍ରବର୍ତ୍ତନ, ଏହା କ'ଣ ଆମର ସେହି ଅତୀତ ଦିନଗୁଡ଼ିକର ପୁନଃ ପ୍ରତିଷ୍ଠା ପାଇଁ ଉଦ୍ୟମ ନୁହେଁ ? ତାହା ଯଦି ଭୁଲିଯାଉ, ତାହାପ୍ରତି ଯଦି ଆସ୍ଥା ହରାଉ, ଆଉ ଆଶା କରିବା ପାଇଁ ଆମର ବାକି ରହିଲି କ'ଣ ? ତପୋବନରେ ସେହି ଆଦର୍ଶ କେବଳ ଆମମାନଙ୍କର ଥିଲା । ପୃଥିବୀ ସାରା ଖୋଜିଲେ ଏହାର ସମତୁଲ କିଛି ମିଳିପାରିବ କି ଅଜିତ ? ଆମ ସମାଜକୁ ଯେଉଁମାନେ ଦିନେ ଗଢ଼ିଥିଲେ, ଆମର ସେହି ପ୍ରାଚୀନ ଶାସ୍ତ୍ର-କର୍ତ୍ତାମାନେ ବ୍ୟବସାୟୀ ନ ଥିଲେ, ଥିଲେ ପରମ ସନ୍ନ୍ୟାସୀ । ସେମାନଙ୍କର ଦାନ ଦୀନହୀନସ୍ୱରେ ନତଶିରରେ ଗ୍ରହଣ କରି ପାରିଲେ ତାହାହିଁ ହେବ ଆମ ପକ୍ଷରେ ଚରମ ସାର୍ଥକତା । ଏହାହିଁ ଆମମାନଙ୍କର କଲ୍ୟାଣର ପଥ, କମଳ, ଏହା ବ୍ୟତୀତ ଆଉ ଅନ୍ୟ ପନ୍ଥା ନାହିଁ ।

ଅଜିତ ସ୍ତବ୍ଧ ହୋଇ ରହିଲା । ସତୀଶ ଓ ହରେନ୍ଦ୍ରଙ୍କର ବିସ୍ମୟର ସୀମା ରହିଲା ନାହିଁ । ଏହି ସାହେବୀ କାଏଦାରେ ଚାଲିଚଳଣ କରୁଥିବା ଲୋକଟି ଆଜି କହୁଛି କ'ଣ ? ହରେନ୍ଦ୍ର ମଧ୍ୟ ଭାବି ପାରିଲା ନାହିଁ ଅକସ୍ମାତ୍ କେଉଁଥିପାଇଁ ଆଜି ଏହି ପ୍ରସଙ୍ଗର

ଅବତାରଣା ? ସମସ୍ତଙ୍କ ମୁହଁରେ ଗୋଟିଏ ଅକପଟ ଶ୍ରଦ୍ଧାର ଭାବ ଫୁଟି ଉଠିଲା ।

ବକ୍ତାଙ୍କର ମଧ ବାଗ୍ମିତାର ସୀମା କମ୍ ନ ଥିଲା । କେବଳ କହି ପାରିବାର ଶକ୍ତି ପାଇଁ ନୁହେଁ, ଏପରି କହିପାରିବା ପାଇଁ ସୁଯୋଗ ସେ ପୂର୍ବରୁ ପାଇ ନ ଥିଲେ ବୋଲି । ତାଙ୍କ ମନ ଭିତରେ ଅନିର୍ବାଚନୀୟ ପରିତୃପ୍ତିର ହିଲ୍ଲୋଳ ବହିବାକୁ ଲାଗିଲା । କ୍ଷଣକ ପାଇଁ କ୍ଷଣକପୂର୍ବର ଦୁଃଖକୁ ସେ ଯେପରି ଭୁଲିଗଲେ । କହିଲେ—ବୁଝିଲୁ କମଳ, ତୋତେ କାହିଁକି ଏପରି ଅନୁରୋଧ କରିଥିଲି ?

କମଳ ମୁଣ୍ଡ ହଲାଇ କହିଲା—ନା ।

: ନା ? ନାହିଁ କାହିଁକି ?

: ବିଦେଶୀ ଶିକ୍ଷାର ପ୍ରଭାବକୁ ଛିନ୍ନ କରି ପୁଣି ପୁରାତନ ବ୍ୟବସ୍ଥାକୁ ଫେରିଯିବା ପାଇଁ ଚେଷ୍ଟା ଶିକ୍ଷିତମାନଙ୍କ ଭିତରେ ପୁଣି ପ୍ରଚଳିତ ହେଉଛି, ଏହି ଖବରଟା ହିଁ ଆପଣ ପରମ ଆନନ୍ଦରେ ଶୁଣାଇ ଚାଲିଥିଲେ । ଆପଣଙ୍କର ବିଶ୍ୱାସ, ଏହାଦ୍ୱାରା ଦେଶର କଲ୍ୟାଣ ହେବ । କିନ୍ତୁ କାରଣ କିଛି ଦର୍ଶାଇପାରି ନାହାଁନ୍ତି । ଅନେକ ପ୍ରାଚୀନ ରୀତିନୀତି ଲୋପ ପାଇଯାଇଛି ବୋଲି କହିଲେ ଏବଂ ସେସବୁର ପୁନରୁଦ୍ଧାର ପାଇଁ ଯତ୍ନ କରା ହେଉଛି । ଏହା ହୁଏତ ସତ୍ୟ ହୋଇପାରେ କିନ୍ତୁ ତାହାଦ୍ୱାରା ଯେ ଭଲ ହେବ ତାହାର ପ୍ରମାଣ କ’ଣ ଅଛି ଆଶୁବାବୁ ? କାହିଁ ସେ କଥା ତ କହିଲେ ନାହିଁ ?

: କହି ନାହିଁ କିପରି ?

: ନା, କହି ନାହାନ୍ତି । ସଂସ୍କାର-ବିରୋଧୀ ଅଛି. ପ୍ରାବକମାନେ ପୁରାତନକୁ ଠିକ୍ ଏହିପରି ଭାବରେ ହିଁ କହିଲି ପରି କହିଛନ୍ତି । ଲୁପ୍ତ ବସ୍ତୁର ପୁନରୁଦ୍ଧାର ଯେ ଉତ୍ତମ କାର୍ଯ୍ୟ ଏହାର କିନ୍ତୁ ପ୍ରମାଣ ନାହିଁ । ମୋହ ବଶରେ କହାତ ମନ୍ଦ ବସ୍ତୁ ସଂସାରରେ ପୁନଃ ପ୍ରତିଷ୍ଠିତ ହେଉଥିବା ଦେଖାଯାଉଛି ।

ଆଶୁବାବୁ ଏଥିପାଇଁ ଉତ୍ତର ଖୋଜି ପାଇଲେ ନାହିଁ । କିନ୍ତୁ ଅଜିତ କହିଲା ମନ୍ଦ ଜିନିଷକୁ ପୁନରୁଦ୍ଧାର କରିବା ପାଇଁ କେହି ଶକ୍ତି ଅପଚୟ କରନ୍ତି ନାହିଁ ।

କମଳ କହିଲା—କରନ୍ତି । ମନ୍ଦ ବୋଲି ନୁହେ, ପୁରାତନ ମାତ୍ରେ ହିଁ ସ୍ୱଭାବିକ ଭଲ ମନେ କରନ୍ତି । ଗୋଟିଏ କଥା ପ୍ରଥମରୁ ଆପଙ୍କୁ କହିବା ପାଇଁ ଯାଉଥିଲି ଆଶୁବାବୁ, କିନ୍ତୁ ଆପଣ କାନ ଦେଲେ ନାହିଁ । ଲୌକିକ ଆଚରଣ—ଅନୁଷ୍ଠାନ ହିଁ ହେଉ ଅବା ପରଲୌକିକ କର୍ମାକର୍ମହିଁ ହେଉ, କେବଳ ମାତ୍ର ଦେଶର ବୋଲି ତାକୁ ଧରିବାରେ ସ୍ୱଦେଶ ପ୍ରୀତିର ବାହାଦୁରୀ ମିଳିପାରେ, କିନ୍ତୁ ସ୍ୱଦେଶର କଲ୍ୟାଣକାମୀ ଦେବତାଙ୍କୁ ଖୁସି କରାଯାଇ ପାରେ ନାହିଁ । ସେ ଏହା ଦ୍ୱାରା କ୍ଷୁଣ୍ଣ ହୋଇ ପଡ଼ନ୍ତି ।

ଅଣୁବାବୁ କହିଲେ—ତୁ କ'ଣ କହୁଛୁ କମଳ ! ଦେଶର ଧର୍ମ, ଦେଶର ଆଚାର— ବ୍ୟବହାରକୁ ତ୍ୟାଗ କରି ବାହାରୁ ଭିକ୍ଷା ମାଗି ଆଣିଲେ ନିଜର ବୋଲି ଆଉ କ'ଣ ବାକି ରହିଲା ? ଜଗତରେ ମଣିଷ ବୋଲି ଦାବୀ ଜଣାଇବା ପାଇଁ ସିଏ କେଉଁ ପରିଚୟରେ !

: ଧାବା ଆସି ଆପଣା ଛୁଏଁ ଘରେ ପହଞ୍ଚିବ । ପରିଚୟର ଆବଶ୍ୟକତା ପଡ଼ିବ ନାହିଁ । ବରଂ ଜଗତ ବିନା ପରିଚୟରେ ମନୁଷ୍ୟ ବୋଲି ଚିହ୍ନି ପାରିବ ।

ଆଶୁବାବୁ ଅବାକ୍ ହୋଇ କହିଲେ ତୋତେ ତ ବୁଝି ପାରିଲି ନାହିଁ କମଳ !

: ବୁଝି ପାରିବାର କଥା ମଧ୍ୟ ନୁହେଁ ଆଶୁବାବୁ । ଏପରି ହିଁ ହୋଇଥାଏ । ଏହି ଚଳମାନ ସଂସାରରେ ଗତିଶୀଳ, ମାନବ ଚିତ୍ତରେ ପଦେ ପଦେ ଯେଉଁ ସତ୍ୟ ନିତ୍ୟ ନୂତନ ରୂପରେ ଦେଖାଦିଏ, ତାହାକୁ ସମସ୍ତେ ଚିହ୍ନି ପାରିବେ ନାହିଁ । ସ୍ୱବନ୍ତ ଏହି ବିପଦ ପୁଣି କେଉଁଠାରୁ ଆଣିଲ ? ସେଦିନ ତାଜମହଲ ତଳେ ଦେଖିଥିବା ଶିବାନୀର କଥା ଆପଣଙ୍କର ମନେ ପଡ଼ୁଛି ? ଆଜି କମଳ ମଝିରେ ତାକୁ ଆଉ ଚିହ୍ନି ହେବ ନାହିଁ । ମନେ ହେବ ସେଇ ଯାହାକୁ ଦେଖିଥିଲେ ସେ ଗଲା କୁଆଡ଼େ ? କିନ୍ତୁ ଏହାହିଁ ମନୁଷ୍ୟର ପରିଚୟ ।

ସାମାନ୍ୟ ଟିକିଏ ଅଟକି ଯାଇ ପୁଣି କହିଲା—କିନ୍ତୁ ତର୍କ-ବିତର୍କର ଝଡ଼-ଝଞ୍ଜାରେ ଆମେମାନେ ଅସଲ କଥାର ଖିଅକୁ ଭୁଲି ଯାଉଛେଣି । ମୁଁ କିନ୍ତୁ ଅତ୍ୟନ୍ତ କ୍ଳାନ୍ତ, ବର୍ତ୍ତମାନ ଯାଉଛି ।

ଆଶୁବାବୁ ନିରୁତ୍ତର ହୋଇ ବିହ୍ୱଳ ଭାବରେ ଚୁହିଁ ରହିଲେ । ଏହି ଝିଅଟାକୁ ଅଳ୍ପ ଅଳ୍ପ ବୁଝି ପାରିଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ବୁଝି ପାରିଲେ ନାହିଁ । କେବଳ ଏତିକି ମାତ୍ର ମନେ ପଡ଼ିବାକୁ ଲାଗିଲା ଯେ ଏଇ ମାତ୍ର ଯେଉଁ ଝଡ-ଝଞ୍ଜା କଥା ସେ ଉଲ୍ଲେଖ କରିଥିଲା, ସେହି ପ୍ରଚଣ୍ଡ ଝଞ୍ଜା ମୁହଁରେ ତୃଣ ଖଣ୍ଡିଏ ଭଳି ତାଙ୍କର ସବୁ ଆବେଦନ —ନିବେଦନ ଭାସି ଭାସି ଯାଉଛି ।

କମଳ ଉଠି ଠିଆ ହେଲା । ଅଜିତକୁ ଇଙ୍ଗିତ କରି କହିଲା—ସଙ୍ଗରେ ଧରି ଆଣିଥିଲେ, ଚାଲନ୍ତୁ ନା ପହଞ୍ଚାଇ ଦେଇ ଆସିବେ ।

ସେ କିନ୍ତୁ ଆଜି ସଙ୍କୋଚରେ ମୁହଁ ଉପରକୁ ଟେକି ପାରିଲା ନାହିଁ । କମଳ ମନେ ମନେ ସାମାନ୍ୟ ହସି ଦେଇ ଟିକିଏ ଆଗେଇ ଆସି ହଠାତ୍ ରାଜେନ କାନ୍ଧ ଉପରେ ଗୋଟାଏ ହାତ ରଖି କହିଲା, ତୁମେ ଚାଲ ନା ରାଜେନବାବୁ, ମୋତେ ଟିକିଏ ଛାଡ଼ି ଦେଇ ଆସିବ ।

ଏହି ଆକସ୍ମିକ ଆତ୍ମୀୟ ସମ୍ବୋଧନରେ ରାଜେନ ବିସ୍ମିତ ହୋଇ ଥିରକ ପାଇଁ କମଳ ମୁହଁକୁ ଚାହିଁ ଦେଇ କହିଲା—ଚାଲନ୍ତୁ ।

ଦ୍ୱାର ପାଖକୁ ଆସି କମଳ ହଠାତ୍ ଫେରିପଡ଼ି ଠିଆ ହୋଇ କହିଲା—ଆଣ୍ଟୁବାବୁ, ମୁଁ କିନ୍ତୁ ମୋ ପ୍ରସ୍ତାବକୁ ପ୍ରତ୍ୟାହାର କରିନାହିଁ । ଏହି ସର୍ତ୍ତରେ ଇଚ୍ଛା ହେଲେ ପଠାଇ ଦେବେ । ମୁଁ ଯଥାସାଧ୍ୟ ଚେଷ୍ଟା କରିବି । ସେ ବଞ୍ଚିଲେ ଭଲ କଥା—ନ ବଞ୍ଚିଲେ ଅଦୃଷ୍ଟର ଦୋଷ । ଏତିକ କହି ସାରି ସେ ଚାଲିଗଲା । ଘର ଭିତରେ ବିଚଳିତ ହୋଇ ସମସ୍ତେ ବସି ରହିଲେ । ଅସୁସ୍ଥ ଗୃହସ୍ୱାମୀଙ୍କ ଆଖି ଆଗରେ ପ୍ରଭାତର ଆଲୋକଟା ବିବର୍ଣ୍ଣ ଓ ବିପର୍ଣ୍ଣ ହୋଇ ଉଠିଲା ।

ଅଧା ବାଟରେ ଶୁକେନ୍ ବିଦାୟ ନେଇ ଗଲା । ଗଲାବେଳେ କହିଗଲା ଅଳ୍ପ ସମୟ ଭିତରେ ସେ କାମ ସାରି ପୁଣି ଫେରି ଆସିବ । କମଳ ଅନ୍ୟମନସ୍କ ବଶତଃ ବୋଧହୁଏ ଆପତ୍ତି କରି ପାରିଲା ନାହିଁ କିମ୍ବା ହୁଏତ ଆଉ କୌଣସି କାରଣ ଥାଇପାରେ । ତରତର ହୋଇ ବସାକୁ ଫେରି ଯାଇ ଦେଖିଲା ସିଂହ କବାଟରେ ସେ ପର୍ଯ୍ୟନ୍ତ ତାଲା ଝୁଲୁଛି ଏବଂ ଘର ଖୋଲା ହୋଇ ନାହିଁ । ଯେଉଁ ଚାକରାଣୀଟି ତା କାମ ଦାମ କରିଦେଇ ଯାଏ, ସେ ମଧ୍ୟ ଆସି ନାହିଁ । ରାସ୍ତା କଡ଼ରେ ଥିବା ମୋଦି ଦୋକାନରେ ପଚାରି ଜାଣି ପାରିଲା—ଚାକରାଣୀଟି ଅସୁସ୍ଥା ଅଛି । ତା ଗ୍ରେଟ ନାତୁଣୀ ଆସି ସକାଳେ ଚାବିଟି ଦେଇ ଯାଇଛି । ଚାବିଟି ଆଣି ଘର ଖୋଲି କମଳ ଗୃହକର୍ମରେ ଲାଗି ପଡ଼ିଲା । ଏକ ପ୍ରକାର ସେ ଗତ କାଲିଠାରୁ ଅଭୁକ୍ତ । ଠିକ୍ କରି ଆସିଥିଲା ଶୀଘ୍ର କୌଣସି ମତେ କିଛି ରୋଷାଇ କରି ଖାଇ ନେଇ ଟିକିଏ ବିଶ୍ରାମ କରିବ । ବିଶ୍ରାମ ହିଁ ତାହାର ଏକାନ୍ତ ପ୍ରୟୋଜନ । କିନ୍ତୁ ଆଜ କୌଣସି ମତେ ସେ ଘରକାମ ସାରି ପାରୁ ନାହିଁ । ଚାରିଆଡ଼େ ଅନେକ ଆବର୍ଜ୍ଜନା ଜମା ହୋଇଥିଲା । ଏପରି ବିଶୃଙ୍ଖଳ ଭାବରେ ସେ ଏତେ ଦିନ ଧରି କିପରି ଦିନ କାଟି ଚାଲିଥିଲା, ତାହା ସେ ଲକ୍ଷ୍ୟକରି ପାରି ନଥିଲା । ଆଜ ଯେଉଁଠାରେ ତା ଆଖି ପଡ଼ିଲା, ସେମାନେ ପ୍ରତ୍ୟେକ ଯେପରି ତିରସ୍କାର କରି କହିବାକୁ ଲାଗିଲେ । ଛାତର ପୁରୁଣା ଚୂନବାଲି ଖସି ଖଟ ଉପରେ ଜମି ରହିଛି । ସେ ସବୁ ପରିଷ୍କାର କରିବା ଦରକାର । ଚଢ଼େଇ ତିଆରି କରିଥିବା ବସାର ଅତିରିକ୍ତ ମାଲ ମସଲା, ବିଛଣାରେ ପଡ଼ିଛି, ଚାଦର ବଦଳା-ବାକୁ ପଡ଼ିବ । ତକିଆର ଖୋଲ ନିହାତି ମଳିନ, ଖୋଲି ସଫା କରିବା ଆବଶ୍ୟକ । ଚୌକି, ଟେବୁଲ ସବୁ ସ୍ଥାନଭ୍ରଷ୍ଟ । ଦରଜା ପାଖରେ ପଡ଼ିଥିବା ପା, ପୋଛଟାରେ କାଦୁଅ ଜମି ଯାଇଛି । କାନ୍ଥରେ ଟଙ୍ଗା ହୋଇଥିବା ଦର୍ପଣର ଏପରି ଅବସ୍ଥା ଯେ ମଇଳା ସଫା କରିବା ପାଇଁ ଓଳିଏ ଲାଗିଯିବ । ଦୁଆତର କାଳି ଶୁଖିଯାଇଛି, କଲମ ଗୁଡ଼ାକ ଖୋଜିବାକୁ ପଡ଼ିବ, ପ୍ୟାଡ଼ର ବ୍ଲଟିଂ କାଗଜର ଚିହ୍ନ ବର୍ତ୍ତି ନାହିଁ । ଏପରି

ସ୍ୱଦରେ ଯେଉଁ ଢଗକୁ ଗ୍ରହିଲା, ଦେଖିବାକୁ ପାଇଲା, ଅପରିଚ୍ଛନ୍ନତାର ଆଢ଼ମ୍ବର । ତାକୁ ଯେପରି ଜଣାଗଲା କେତେଦିନ ଧରି ବୋଧହୁଏ ଏଠାରେ ମଣିଷ ବାସ କରି ନାହାଁନ୍ତି । ଗାଧୋଇବା, ଖାଇବା ପଡ଼ିରହିଲା । କେତେବେଳେ ବେଳ କଟିଗଲା ତାକୁ ଜଣା ପଡ଼ିଲା ନାହିଁ । ସବୁ ପରିଷ୍କାର ପରିଚ୍ଛନ୍ନ କରିସାରି ଯେତେବେଳେ ଆପଣା ଦେହର ମଇଳାକୁ ସଫା କରିବା ପାଇଁ ତଳକୁ ଗାଧୋଇବା ପାଇଁ ଆସିଲା ସେତେବେଳକୁ ସନ୍ଧ୍ୟା ହୋଇ ଯାଇଥାଏ । ଏତେଦିନ ପରେ ସେ ଭଲକରି ଜାଣିଲା ଯେ ଏଠାରେ ସେ ରହିବ ନାହିଁ । ରହିବା ଉଚିତ୍ ଏବଂ ସମ୍ଭବ ମଧ୍ୟ ନୁହେଁ । ମାସକୁ ମାସ ଭଡ଼ା ଆଣି କେଉଁଠାରୁ ଦେବ ? ଯିବାକୁ ପଡ଼ିବ । କେବଳ ଯିବା ଦିନଟି କେବେ ତାହା ସେ କପରି ଠିକ୍ କରି ପାରୁ ନାହିଁ । ରାତି ପରେ ପ୍ରଭାତ ଏବଂ ପ୍ରଭାତ ପରେ ରାତି ଆସି ତାକୁ ପାଦ ବଢ଼ାଇବାକୁ ଯାହା ଫୁରସତ୍ ଦେଉ ନାହାଁନ୍ତି ।

ଘର ପ୍ରତି ମମତା ନାହିଁ । ଅଥଚ କାହିଁକି ସେ ଆଜି ଏତେ ଖଟି ଖଟି ମଲା ? ହଠାତ୍ କ'ଣ ଏହାର ପ୍ରୟୋଜନ ଥିଲା ? ଏହିପରି ପ୍ରଶ୍ନ ଗୁଡ଼ାକ ତା ମନରେ ଉଦୟ ହୋଇ ଗୁଡ଼େଇ ଗୁଡ଼େଇ ହେବାକୁ ଲାଗିଲା । ଏହିପରି ଭାବି ଭାବି ସନ୍ଧ୍ୟା ପରେ ଗାଧୋଇ ଆସିସାରି ଆଲୁଅ ଜାଳି, ଚୁଲିରେ ଭାତ ବସାଇ କେବଳ ସମୟ କଟାଇବା ପାଇଁ ଚଉକିରେ ଆଉଜି ପଡ଼ି ବହି ଖଣ୍ଡିଏ ଧରି ପୃଷ୍ଠା ଲେଉଟାଇବାକୁ ଲାଗିଲା । କ୍ଳାନ୍ତିର ସୀମା ତାର ନଥିଲା । ତେଣୁ କେତେବେଳେ ଯେ ବହିର ପୃଷ୍ଠା ଏବଂ ଆପଣାର ଆଖି ପତା ଦୁଇଟି ବୁଜି ହୋଇ ଆସିଲା ତାକୁ ଜଣା ପଡ଼ିଲା ନାହିଁ । ଯେତେବେଳେ ତା ଆଖି ଖୋଲିଲା ସେତେବେଳେ ସେ ଦେଖିଲା ଘରର ଆଲୁଅ ଲିଭିଯାଇଛି ଏବଂ ଘର ସାରା ସକାଳର ସୂର୍ଯ୍ୟକିରଣ ଆସି ବିସ୍ତୃତ ହୋଇ ପଡ଼ିଛି । ବେଳ ହେଲା, କିନ୍ତୁ ଚାକରାଣୀଟି ଆସିଲା ନାହିଁ । ଅତଏବ ତା ବସା ଖୋଜି ତା ଅସୁସ୍ଥତାର ଖବର ନେବାଟା କର୍ତ୍ତବ୍ୟ ମନେକରି କମଳ ଲୁଗା ବଦଳାଇ ବାହାରିବାକୁ ଯାଉଥିଲା । ଏପରି ସମୟରେ ତଳୁ ସିଡ଼ିରେ ପାଦଶବ୍ଦ ଶୁଣିବାକ୍ଷଣି ତା ଛାତି ଧଡ଼୍ କରି ଉଠିଲା ।

ଡାକ ଶୁଣାଗଲା—ଘରେ ଅଛନ୍ତି ? ଯାଇ ପାରେ କି ?

: ଆସନ୍ତୁ ।

ଘର ଭିତରକୁ ଯିଏ ପ୍ରବେଶ କରିଲେ ସେ ହେଉଛନ୍ତି ହରେନ୍ଦ୍ର । ଚୌକିଟିଏ ଟାଣି ଆଣି ବସିପଡ଼ି କହିଲେ—କୁଆଡ଼େ ବାହାରୁଥିଲେ କି ?

: ହଁ । ଯେଉଁ ବୁଢ଼ୀ ଚାକରାଣୀଟି ମୋର କାମ କରେ ତା ଦେହ ଅସୁସ୍ଥ ଥିବାର ଖବର ପାଇଛି । ତାକୁ ଦେଖିବା ପାଇଁ ଯାଉଥିଲି ।

: ଏହା ଇନ୍‌ଫ୍ଲୁଏଞ୍ଜା ଛଡ଼ା ଆଉ କିଛି ନୁହେଁ । ଆଗାରେ ଏପିଡେମିକ୍ ଫର୍ମରେ ବୋଧହୁଏ ଆରମ୍ଭ ହୋଇଛି । ବସ୍ତି ଗୁଡ଼ିକରେ ଲୋକମାନେ ମରିବାକୁ ଆରମ୍ଭ କଲେଣି ।

ମଥୁରା, ବୃନ୍ଦାବନ ଭଳି ଅବସ୍ଥା ହେଲେ ହୁଏତ ପଳାଇବାକୁ ପଡ଼ିବ ନଚେତ୍ ମରିବାକୁ ହେବ । ଏ ବୁଢ଼ୀଟି ରହେ କେଉଁଠି ?

: ଠିକ୍ ଭାବରେ ଜାଣି ନାହିଁ । ଶୁଣିଛି ଏଇ ପାଖାପାଖି କେଉଁଠାରେ ରହେ । ଖୋଜି ନେବି ।

: ବଡ଼ ସଂକ୍ରାମକ ରୋଗ, ଟିକିଏ ସାବଧାନ ରହିବେ । ସିଆଡ଼ର ଖବର ପାଇଛନ୍ତି ବୋଧହୁଏ ?

କମଳ ମୁଣ୍ଡ ହଲାଇ ହଲାଇ କହିଲା—ନା ।

ହରେନ୍ଦ୍ର ତା ମୁହଁକୁ ଚାହିଁ ମୁହୂର୍ତ୍ତିଟିଏ ଚୁପ୍ ହୋଇ ରହିଲା । କହିଲା—ଭୟ କରିବେ ନାହିଁ । ଭୟ କରିବା ଭଳି କିଛି ନାହିଁ । କାଲି ଆସିଥାନ୍ତି । କିନ୍ତୁ ସମୟ ପାଇ ପାରିଲି ନାହିଁ । ଆମ ଅକ୍ଷୟ ବାବୁ କଲେଜକୁ ଆସି ନ ଥିଲେ । ଶୁଣିଲି ତାଙ୍କ ଦେହ ଖରାପ, ଆଶୁବାବୁ ବିଛଣା ଧରିଛନ୍ତି ତାହା ତ କାଲି ଦେଖି ଆସିଛନ୍ତି, ଏଣେ ଅବିନାଶ ବାବୁଙ୍କ କାଲି ଓପର ଓଳି ଠାରୁ ଜର । ନୂଆ'ଉଙ୍କ ମୁହଁଟି ମଧ୍ୟ ଦେଖିଲି କପରି ଶୁଖିଲି ଶୁଖିଲି ଦିଶୁଛି । ସେ ନିଜେ ରୋଗରେ ନ ପଡ଼ିଲେ ରକ୍ଷା ।

କମଳ ଚୁପ୍ ହୋଇ ରହିଲା । ଏ ସବୁ ଖବର ସେ ଯେପରି ଭଲ କରି ମନ ଦେଇ ଶୁଣି ପାରିଲା ନାହିଁ ।

ହରେନ୍ଦ୍ର କହିଲା —ଏହା ଛଡ଼ା ଶିବନାଥ ବାବୁ । ଇନ୍‌ଫ୍ଲୁଏଞ୍ଜା କଥା—କିଛି କହି ହେବ ନାହିଁ । ଅଥଚ ଡାକ୍ତର ଖାନାକୁ ଯିବାପାଇଁ ଚାହିଁଲେ ନାହିଁ । କାଲି ଓପର ଓଳି ତାଙ୍କ ବସାକୁ ଡାକ୍ତ୍ର ପଠାଇ ଦିଆଗଲା । ଆଜି ତାଙ୍କ ଖବରଟା ନେବାକୁ ହେବ ।

କମଳ ପ୍ରଶ୍ନ କଲା—ସେଠାରେ ଆଉ କିଏ ଅଛନ୍ତି ?

: ଜଣେ ଚାକର ଅଛି । ଉପର ମହଲା ଘରେ କେତେ ଜଣ ପଞ୍ଜାବୀ ଅଛନ୍ତି । ଠିକାଦାରୀ କରନ୍ତି । ଶୁଣିଲି ସେହି ଲୋକମାନେ ଭଲ ଲୋକ ।

କମଳ ନିଃଶ୍ୱାସ ଛାଡ଼ି ଚୁପ୍ ହୋଇ ରହିଲା । କିଛି ସମୟ ପରେ କହିଲା—ମୋ ପାଖକୁ ଟିକିଏ ରାଜେନ୍ ବାବୁଙ୍କୁ ପଠାଇ ଦେଇ ପାରିବେ ।

: ପାରିବି । କିନ୍ତୁ ତାକୁ ପାଇବି କେଉଁଠି ? ଆଜି ସକାଳୁ କୁଆଡ଼େ ବାହାରି ଚାଲି ଯାଇଛି । ଏଇ ଆଡ଼େ କେଉଁ ମୋଚି ସାହିରେ ବେମାରୀ ଲାଗିଛି । ବୋଧହୁଏ ସେବା କରିବା ପାଇଁ ଯାଇଛି । ଆଶ୍ରମକୁ ଯଦି ଖାଇବା ପାଇଁ ଆସେ ତେବେ କହିଦେବି ।

: ତାଙ୍କୁ ବସାକୁ ପଠାଇଲେ କିଏ ? ଆପଣ ?

: ନା, ରାଜେନ୍ । ତାର ମୁହଁରୁ ଜାଣି ପାରିଲି ଯେ ପଞ୍ଜାବୀମାନେ ତାଙ୍କର ଯତ୍ନ ନେଉଛନ୍ତି । ତେବେ ସେମାନେ ଯାହା କରନ୍ତୁ ନା କାହିଁକି ସେ ଯେତେବେଳେ ଠିକଣା ପାଇଛି ସେତେବେଳେ କୌଣସିଥିରେ ତ୍ରୁଟି ହେବ ନାହିଁ । ନଚେତ୍ ଆପେ ଲାଗି ପଡ଼ିବ ।

କେବଳ ଡର ଯେ ବେମାର ନ ପଡ଼ିଲେ ହେଲା । ପୋଲିସ ପୁଣି ନ ଧରି ପାରିଲେ ଯେ ଏକା ମାଧ୍ୟା ବାଇଣି ପଲ । ପାଖରେ ଶିବନାଥବାବୁ ଜବନ୍ତ । ନଚେତ୍ ତାଙ୍କୁ କାବୁ କରିବା ଲୋକ ଦୁନିଆଁରେ କାହାକୁ ଦେଖିଲି ନାହିଁ ।

: ପୋଲିସ ହାତରେ ଧରା ପଡ଼ିବାର ଆଶଙ୍କା ଅଛି କି ?

: ଆଶା ତ କରେ । ଅନ୍ତତଃ ଆଶ୍ରମଟା ହେଲେ ବଞ୍ଚି ଯାଇ ପାରିବ ।

: ତାହାଙ୍କୁ ଘୁଞ୍ଚ ଚାଲିଯିବା ପାଇଁ କହି ଦେଉ ନାହାନ୍ତି କାହିଁକି ?

: ଏହାହିଁ ହେଉଛି ଏକ କଠିନ କାର୍ଯ୍ୟ । କହିଦେଲେ ସେ ଏପରି ଭାବରେ ଚାଲି ଯିବ ଯେ ମୁଣ୍ଡ ପିଟି ହେଲେ ଆଉ ଫେରି ଆସିବ ନାହିଁ ।

: ନ ଫେରିଲେ କ୍ଷତିଟା ଅବା କ'ଣ ?

: କ୍ଷତି ? ତାକୁ ତ ଆପଣ ବୁଝି ନାହାଁନ୍ତି । ନ ଜାଣିଥିଲେ ସେହି କ୍ଷତିର ପରିମାଣ ବୁଝି ହେବ ନାହିଁ । ଆଶ୍ରମରେ ନ ଥିଲେ ମଧ୍ୟ ସହ୍ୟ କରିହେବ କିନ୍ତୁ ଏହି କ୍ଷତି ଆମମାନଙ୍କ ପକ୍ଷରେ ସହ୍ୟ କରିହେବ ନାହିଁ । ଏହା କହି ହରେନ୍ଦ୍ର କିଛି ସମୟ ଚୁପ୍ ରହିବା ପରେ ହଠାତ୍ ପ୍ରସଙ୍ଗଟା ବଦଳାଇ ଦେଲା । କହିଲା—ଗୋଟାଏ ମଜ୍ଜା ଘଟଣା ଘଟିଛି । କାହାର ସାଧ ନାହିଁ ତାକୁ କଳନା କରିପାରିବା । କାଲି ଅବିନାଶ ଭାଇଙ୍କ ପାଖରୁ ଅନେକ ଗ୍ରହରେ ଫେରି ଦେଖିଲି ଅଜିତ ବାବୁ ଆସି ପହଞ୍ଚିଛନ୍ତି । ଭୟ ପାଇଗଲି । ଭାବିଲି, ଘଟଣା କ'ଣ ? ଅସୁସ୍ଥତା ବଢ଼ିଗଲା କି ? କିନ୍ତୁ ସେ ସବୁ କିଛି ନୁହେଁ । ସେ ଆପଣାର ବାକ୍ସ, ବିଛଣା ପ୍ରଭୃତି ଧରି ଆସିଛନ୍ତି । ଏହା ମଧ୍ୟରେ ତାଙ୍କର ସତୀଶ ସହିତ କଥାବାର୍ତ୍ତା ପକ୍କା ହୋଇଯାଇଛି । ଆଶ୍ରମରେ ଜୀବନ କଟାଇବେ ବୋଲି ପଣ କରିଛନ୍ତି । ଏଥିରୁ ଏତେ ଠିକଏ ଏପଟ ସେପଟ ସେ ହେବେ ନାହିଁ । ବଡ଼ଲୋକଙ୍କୁ ପାଇଲେ ଅବଶ୍ୟ ଆମର ଉପକାର ହୁଅନ୍ତା, କିନ୍ତୁ ଆଶଙ୍କା ହେଲା ଭିତରେ ବୋଧହୁଏ କିଛି ଗୋଟାଏ ଗଣ୍ଡଗୋଳ ରହିଯାଇଛି । ସକାଳେ ଆଶ୍ୱବାବୁଙ୍କ ପାଖକୁ ଗଲି । ସେ ସବୁକଥା ଶୁଣିଲେ, କହିଲେ ଏପରି ସଙ୍କଳ୍ପ ଅତିଶୟ ସାଧୁ । କିନ୍ତୁ ଭାରତରେ ତ ଆଶ୍ରମର ଅଭାବ ନାହିଁ, ସେ ଆଗ୍ରା ବ୍ୟତୀତ ଅନ୍ୟ କେଉଁଠାରେ ରହିପାରିଲେ ମୁଁ ଅନ୍ତତଃ କେତେଟା ବର୍ଷ ବଞ୍ଚି ଯାଇ ପାରନ୍ତି । ଯାହା ଦେଖାଯାଉଛି ମୋତେ ବିଛଣାପତ୍ର ଏଠାରୁ ବାନ୍ଧିବାକୁ ପଡ଼ିବ ।

କମଲ କୌଣସି ପ୍ରକାର ବିସ୍ମୟ ପ୍ରକାଶ ନ କରି ନୀରବ ହୋଇ ରହିଲା ।

ହରେନ୍ଦ୍ର କହିଲା—ତାଙ୍କର ପାଖରୁ ହିଁ ଏଠାକୁ ଆସିଛି । ଭାବୁଛି ଫେରିଯାଇ ଅଜିତ ବାବୁଙ୍କୁ କ'ଣ କହିବ ?

କମଲ ବୁଝି ପାରିଲା—ଶିବନାଥଙ୍କୁ ସ୍ଥାନାନ୍ତରିତ କରିବା ସମ୍ପର୍କରେ ବୋଧହୁଏ ବହୁତ ବାଦାନୁବାଦ ହୋଇ ଯାଇଛି । ହୁଏତ ପ୍ରକାଶ୍ୟରେ କମ୍ପା ପରିଷ୍କାର ଭାବରେ ଯଦ

କୌଣସି ବିଷୟ ପ୍ରକାଶ ପାଇ ନାହିଁ କିନ୍ତୁ ଚୁପ୍‌ଚୁପ୍ ସବୁ ବିଷୟ ଘଟି ଯାଇଛି । ତଥାପି କଲହର ସମସ୍ତ କର୍କଶତାକୁ ଗୁପ୍ତ ରଖି ଦିଆଯାଇଛି । ଏଥିରେ ସନ୍ଦେହ କରିବାର କିଛି ନାହିଁ । କୌଣସି ଉତ୍ତର ନ ଦେଇ ସେ ସେହିପରି ନୀରବରେ ବସି ରହିଲା ।

ହରେନ୍ଦ୍ର କହିବାକୁ ଲାଗିଲା, ମନେହୁଏ ଆଶୁବାବୁ ସବୁ ଶୁଣିଛନ୍ତି । ଶିବନାଥର ଆପଣଙ୍କ ପ୍ରତି ବ୍ୟବହାରରେ ସେ ମର୍ମାହତ । ଏକ ପ୍ରକାର ଜୋର କରି ତାଙ୍କୁ ସେ ଘରୁ ବିଦାୟ କରି ଦେଇଛନ୍ତି । ମନୋରମାର ବୋଧହୁଏ ଇଚ୍ଛା ନ ଥିଲା କାରଣ ଶିବନାଥ ହେଉଛି ତାର ସଙ୍ଗୀତଶିକ୍ଷାର ଗୁରୁ । ପାଖରେ ରଖି ଚିକିତ୍ସା କରିବା ପାଇଁ ସେ ଚାହୁଁଥିଲା । କିନ୍ତୁ ତାହା ହୋଇ ପାରିଲା ନାହିଁ । ଅଜିତ ବାବୁ ବୋଧହୁଏ ଆଶୁବାବୁଙ୍କୁ ସମର୍ଥନ ଜଣାଇ ଝଗଡ଼ା ଆରମ୍ଭ କରି ଦେଇଛନ୍ତି ।

କମଳ ସାମାନ୍ୟ ହସିଲା, କହିଲା, ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଶୁଣିଲେ କାହା ପାଖରୁ ? କ'ଣ ରାଜେନ କହିଲା ?

: ସିଏ ? ସିଏ କିନ୍ତୁ ଏପରି ଲୋକ ନୁହେଁ । ଜାଣିଥିଲେ ପୁଚ୍ଛା କହିବ ନାହିଁ । ଏହା ହେଉଛି ମୋର ଅନୁମାନ । ଭାବୁଛି ମିଳାମିଶାଟା ନିଶ୍ଚୟ ହେବ କିନ୍ତୁ ମଝିରେ ଅଜିତ ଏପରି ରାଗି କରି ଲାଭ କ'ଣ ପାଇବ ? ଚୁପ୍‌ଚାପ୍ ରହିବା ଭଲ । ଯେତେଦିନ ସେ ଆଶ୍ରମରେ ରହିବେ ଅବଶ୍ୟ ତାଙ୍କର କିଛି ଅଣହେଲା ହେବ ନାହିଁ ।

: ନ ହେବା ହିଁ ଭଲ ।

: ବର୍ତ୍ତମାନ କିନ୍ତୁ ଯାଉଛି । କେବଳ ଅବିନାଶ ଭାଇଙ୍କ ପାଇଁ ଯାହା ଚିନ୍ତା । ଅଳ୍ପ କଷ୍ଟରେ ସେ ଅଧୀର ହୋଇ ପଡ଼ନ୍ତି । ସମୟ ମିଳିଲେ କାଲି ପୁଣି ଆସିବ ।

: ଆସିବେ । କହି କମଳ ନମସ୍କାର କରି ଠିଆ ହୋଇ ପଡ଼ିଲା । ପୁଣି କହିଲା— ରାଜେନକୁ ପଠାଇ ଦେବା ପାଇଁ ଯେପରି ଭୁଲି ନ ଯାଆନ୍ତି । କହିବେ ବଡ଼ ଅସୁବିଧାରେ ପଡ଼ି ତାକୁ ଡକାଇଛି ।

: ଅସୁବିଧାରେ ପଡ଼ି ଡାକିଛନ୍ତି ! ହରେନ୍ଦ୍ର ବିସ୍ମିତ ହୋଇ କହିଲା, ଦେଖା ପାଇଲେ ସଙ୍ଗେ ସଙ୍ଗେ ପଠାଇ ଦେବି । କିନ୍ତୁ ସେହି ଅସୁବିଧା କଥା କଣ ମୋତେ କୁହାଯାଇ ପାରିବ ନାହିଁ ? ମୋତେ ଆପଣଙ୍କର ଜଣେ ଏକପକ୍ଷୀ ବନ୍ଧୁ ବୋଲି କ'ଣ ଗ୍ରହଣ କରି ନେଇ ନାହାନ୍ତି ?

: ଗ୍ରହଣ କରି ନେଇଛି ତ । ତଥାପି ତାକୁ ହିଁ ପଠାଇ ଦେବେ ।

: ଦେବି, ନିଶ୍ଚୟ ପଠାଇ ଦେବି । କହି ହରେନ୍ଦ୍ର ଆଉ କଥା ନ ବଢ଼ାଇ ବାହାରି ଚାଲିଗଲା ।

ଓପରଓଳି ରାଜେନ ଆସି ପହଞ୍ଚିଲା ।

କମଳ କହିଲା—ରାଜେନ ମୋ ପାଇଁ ଗୋଟିଏ କାମ କରିଦେବାକୁ ପଡ଼ିବ ।

: ହଁ, କଣଦେବ । କିନ୍ତୁ ଗତ କାଲି ମୋ ନାଆଁ—ସାଙ୍ଗରେ "ବାବୁ" ଶବ୍ଦଟା ଥିଲି । ଆଜି କିନ୍ତୁ ତାହା କଟିଗଲି ।

: ବେଶ୍‌ତ ହାଲକା ହୋଇଗଲି । ଯଦି ନ ଚାହୁଁଛ ତେବେ ଯୋଡ଼ି ଦେବ ।

: ନା, ଦରକାର ନାହିଁ । କିନ୍ତୁ ମୁଁ ଆପଣଙ୍କୁ କ'ଣ ବୋଲି ଡାକିବ ?

: ସମସ୍ତେ ମୋତେ କମଳ ବୋଲି ଡାକନ୍ତି । ତହିଁରେ ମୋର ସମ୍ମାନ ହାନି ହୁଏ ନାହିଁ । ନାଆଁ ଆଗରେ ଜି ପଛରେ ଖାର ଲଦି ଆପଣାକୁ ଭାରି କରିବାକୁ ମୁଁ ଲଜ୍ଜା ବୋଧ କରେ । "ଆପଣ" ବୋଲି ଡାକିବାର ଦରକାର ନାହିଁ, ମୋତେ ମୋ ନାଆଁ ଧରି ଡାକିପାର ।

ଏହାର ସ୍ପଷ୍ଟ ଉତ୍ତରକୁ ଏଡ଼ାଇ ଦେଇ ରାଜେନ କହିଲି—ମୋତେ କ'ଣ କରିବାକୁ ପଡ଼ିବ ?

: ମୋର ବନ୍ଧୁ ହେବାକୁ ପଡ଼ିବ । ଲୋକେ କହନ୍ତି ତୁମେ କୁଆଡେ ବିପ୍ଳବୀ । ତାହା ଯଦି ସତ ହୋଇଥାଏ ତେବେ ମୋ ସହିତ ତୁମର ବନ୍ଧୁତ୍ୱ ଅକ୍ଷୟ ହୋଇ ଉଠିବ ।

: ଏହି ଅକ୍ଷୟ ବନ୍ଧୁତ୍ୱ ମୋର କି କାମରେ ଲାଗିବ ?

କମଳ ଏହା ଶୁଣି ଯେତିକି ବିସ୍ମିତ ହେଲା, ସେତିକି ବ୍ୟଥିତ ହେଲି । ଉପେକ୍ଷା ଏବଂ ସନ୍ଦେହର ସ୍ୱର ଯେପରି ତା କାନରେ ଶୁଭାଗଲି । କହିଲା, ଏପରି କଥା କହିବେ ନାହିଁ । ବନ୍ଧୁତ୍ୱ ବସ୍ତୁଟା ସଂସାରରେ ଦୁର୍ଲ୍ଲଭ । ଆଜି ଆମର ବନ୍ଧୁତ୍ୱ ହେବ ତାହାଠାରୁ ଦୁର୍ଲ୍ଲଭ । ଯାହାକୁ ଭଲ କରି ଚିହ୍ନି ନାହଁ ତାକୁ ଘୃଣା କରି ନିଜ ମନକୁ ବିଷାକ୍ତ କର ନାହିଁ ।

ଏହି ଅନୁଯୋଗ ଦ୍ୱାରା ଯୁବକ ଜଣକ ଲଜ୍ଜିତ ହେଲା ନାହିଁ ବରଂ ଅଳ୍ପ ହସି ହସି ସରଳ ଭାବରେ କହିଲା—ଘୃଣା ପାଇଁ ନୁହେଁ, ବନ୍ଧୁତ୍ୱର ଆବଶ୍ୟକତା ବୁଝି ପାରି ନାହିଁ ବୋଲି । ତାହାହିଁ କେବଳ ଜଣାଇ ଦେଇଥିଲି । ଆହି ଯଦି ମନେ କରନ୍ତି ଏହି ବନ୍ଧୁତ୍ୱ ମୋ କାମରେ ଲାଗି ପାରିବ, ତେବେ ମୁଁ ତାହାକୁ ସ୍ୱୀକାର କରି ପାରିବି ନାହିଁ । କିନ୍ତୁ ମୁଁ କେଉଁ କାମରେ ଆସି ପାରିବ ତାହା ହିଁ ଭାବୁଛି ।

କମଳର ମୁହଁ ଲାଲ ପଡ଼ିଗଲା । ରାଜେନ ଯେପରି ତାକୁ ଚାବୁକ୍‌ରେ ପ୍ରହାର କରି ଅପମାନିତା କରି ପକାଇଲା । ସେ ଅତି ଶିକ୍ଷିତା, ତାର ଧାରଣା ଥିଲା ସେ ଅତି ସୁନ୍ଦରୀ, ପ୍ରଖର ବୁଦ୍ଧି ଶାଳିନୀ ଏବଂ ପୁରୁଷ ମାନଙ୍କର କାମନାର ଧନ । ତାର ଦୃପ୍ତ ତେଜ ଅପରାଜେୟ । ଏହାହିଁ ଥିଲା ତାର ଅକପଟ ବିଶ୍ୱାସ । ସଂସାରରେ ନାରୀମାନେ ତାକୁ ଘୃଣା କରିଛନ୍ତି, ପୁରୁଷମାନେ ତାପାଇଁ ଆତଙ୍କ ନିଆଁରେ ଜଳି ଦଗ୍ଧ ହୋଇଛନ୍ତି । ଅବହେଳା କରିବାର ଛଳନା ଯେ କରି ନାହାନ୍ତି ତାହା ମଧ୍ୟ ନୁହେଁ । କିନ୍ତୁ ଏହି ଯୁବକ ଜଣକ

ସେପରି ନୁହନ୍ତି । ଆଜି ଏଇ ପୁରୁଷଟି ନିକଟରେ ସେ ଯେପରି ତୁଚ୍ଛ ହୋଇଗଲା । ଶିବନାଥ ତାହାକୁ ଠକିଛି, କିନ୍ତୁ ଏହା ଭଳି ହୀନତାର ଚୱାଳୁଗା ତା ଅଙ୍ଗରେ ଘୋଡାଇ ଦେଇନାହିଁ ।

କମଳ ମନରେ ଗୋଟାଏ ସନ୍ଦେହ ପ୍ରବଳ ହୋଇ ଉଠିଲା । ସେ ପଚାରିଲା ମୋ ସମ୍ବନ୍ଧରେ ବୋଧହୁଏ ତୁମେ ଅନେକ କିଛି ଶୁଣିଛ ?

: ହଁ, ସେମାନେ ପ୍ରାୟ ତାହାହିଁ କହୁଥାନ୍ତି ।

: କ'ଣ କହନ୍ତି ?

ସାମାନ୍ୟ ହସିବା ପାଇଁ ଚେଷ୍ଟା କରି ଗୁଜେନ୍ କହିଲା—ଦେଖନ୍ତୁ, ଏଇଭଳି ବ୍ୟାପାରରେ ମୋର ସ୍ମରଣ ଶକ୍ତି ନିହାତ ଖରାପ । କିଛି ପ୍ରାୟ ମନେ ନାହିଁ ।

: ସତ କହୁଛନ୍ତି ?

: ହଁ ।

କମଳ ଜେରା କରିଲା ନାହିଁ । ବିଶ୍ୱାସ କଲା । ବୁଝିପାରିଲା, ସ୍ତ୍ରୀଲୋକମାନଙ୍କର ଜୀବନଯାତ୍ରା ସମ୍ପର୍କରେ ଏହି ଲୋକଟିର ମନରେ ଆଜିସୁଦ୍ଧା କୌଣସି ପ୍ରକାର କୌତୂହଳ ଦେଖାଦେଇ ନାହିଁ । ସେ ଯେପରି ଶୁଣିଛି, ସେହିପରି ଭୁଲିଛି । ଆଉ ମଧ୍ୟ ଗୋଟାଏ ଜିନିଷ ବୁଝି ପାରିଲା—'ତୁମେ' କହିବାର ଅଧିକାର ଦେଇଥିଲେ ମଧ୍ୟ ସେ କିନ୍ତୁ ଗ୍ରହଣ ନ କରି "ଆପଣ" ବୋଲି ସମ୍ବୋଧନ କରି ଚାଲିଛି । ତାର ଅକଳଙ୍କ ପୁରୁଷ ଚରିତ୍ର ତଳେ ଆଜିସୁଦ୍ଧା ନାରୀମୂର୍ତ୍ତିର ଛାୟା ପଡ଼ି ନାହିଁ । 'ତୁମେ' କହି ଘନିଷ୍ଠ ହେବାର ଲୋଭ ବିଷୟରେ ମଧ୍ୟ ସେ ସଂପୂର୍ଣ୍ଣ ଅଜ୍ଞ । କମଳ ମନେ ମନେ ଗୋଟାଏ ଶାନ୍ତିର ନିଶ୍ୱାସ ମାରିଲା । କିଛିକ୍ଷଣ ପରେ କହିଲା—ଜାଣିଛନ୍ତି ଶିବନାଥ ବାବୁ ମୋତେ ପରିତ୍ୟାଗ କରିଛନ୍ତି ?

: ଜାଣେ ।

: ସେଦିନ ଆମର ବିବାହ ଅନୁଷ୍ଠାନରେ ଫାଙ୍କି ଥିଲା କିନ୍ତୁ ଆମ ଦୁହିଁଙ୍କ ମନ ଭିତରେ ଫାଙ୍କି ନ ଥିଲା । ସମସ୍ତେ ସନ୍ଦେହ କରି ନାନା କଥା କହିଲେ । ମନ୍ତବ୍ୟ ଦେଲେ ଏ ବିବାହ ପକ୍କା ହେଲା ନାହିଁ । ମୋ ମନରେ କିନ୍ତୁ ଭୟ ନ ଥିଲା । କହିଲି ନ ହେଉ ପକ୍କା, ମୋ ମନ ଯେତେବେଳେ ମାନିଛି, ସେତେବେଳେ ବାହାର ଲୋକଙ୍କ ମନ୍ତବ୍ୟରେ ମୋର ଯାଏ ଆସେ କେତେ ? ବରଂଚ ଏହା ଭଲ ହେଲା ଯେ ସ୍ୱାମୀ ବୋଲି ଯାହାକୁ ଗ୍ରହଣ କଲି ତାକୁ କାନ୍ଦରେ ବାନ୍ଧି ରଖିବି ନାହିଁ । ତାଙ୍କର ମୁକ୍ତିର ଅର୍ଗଳ ସଦ ଟିକିଏ ହୁଗୁଳା ରହିପାରିଲା, ରହୁ । ମନ ଯଦି ଦିଆନିଆ ନ ହୋଇପାରିଲା, ତେବେ ପୁରୋହିତର ମନ୍ତ୍ରକୁ ମହାଜନ ଭଳି ଠିଆ କରାଇ ସୁଧଟା ସିନା ଅଦାୟ କରାଯାଇ ପାରିବ, କିନ୍ତୁ ଅସଲଟା ଯେ ବୁଡ଼ିଯିବ । ଏସବୁ କିନ୍ତୁ ତୁମକୁ କହିବି ବୃଥା—କାରଣ ତୁମେ ବୁଝି ପାରିବ ନାହିଁ ।

ରାଜେନ୍ ନୀରବ ରହିଲା । କମଳ କହିଲା—ସେତେବେଳେ ଏଇ କଥାଟା ମାତ୍ର ଜାଣିପାରି ନ ଥିଲି ଯେ ତାଙ୍କର ଟଙ୍କା ପାଇଁ ଲୋଭ ଏତେ ପ୍ରବଳ ଥିଲା । ଜାଣିଥିଲେ ଲାଞ୍ଛନାର ଜ୍ୱାଳାରୁ ମୁଁ ମୁକ୍ତି ପାଇପାରି ଥାନ୍ତି ।

: ଏହାର ଅର୍ଥ ?

କମଳ ହଠାତ୍ ନିଜକୁ ସଂଯତ କରିନେଲି । କହିଲି, ଥାଉ ସେ ଅର୍ଥ । ତୁମର ତାହା ଶୁଣିବା ଦରକାର ନାହିଁ ।

କିଛି ସମୟ ହେବ ସୂର୍ଯ୍ୟ ଅସ୍ତ ହୋଇ ଯାଇଛନ୍ତି । ଘର ଭିତରେ ବାହାରର ସନ୍ଧ୍ୟା ଘନୀଭୂତ ହୋଇ ଉଠିଲି । କମଳ ଆଲୁଅ ଜାଳି ଟେବୁଲ ଉପରେ ରଖିଦେଇ, ଆପଣା ସ୍ଥାନକୁ ଫେରିଆସି କହିଲି, ଯାହା ହୋଇଥାଉ ପଛେ ମୋତେ ଟିକିଏ ତାଙ୍କ ପାଖକୁ ନେଇକରି ଚାଲ ।

: ସେଠାକୁ ଯାଇ କ'ଣ କରିବେ ?

: ନିଜ ଆଖିରେ ଥରେ ପାଇଁ ତାଙ୍କୁ ଦେଖିବାକୁ ଚାହେଁ । ଯଦି ଆବଶ୍ୟକ ହୁଏ ରହିବି, ନ ହେଲେ ତୁମ ଉପରେ ତାଙ୍କ ଦାୟିତ୍ୱ ଛାଡ଼ିଦେଇ ମୁଁ ନିଶ୍ଚିନ୍ତ ହେବି । ଏଇଥି-ପାଇଁ ହିଁ ତୁମକୁ ଡକେଇ ପଠାଇଥିଲି । ତୁମ ବ୍ୟତୀତ ଏ କାମ ଆଉ କେହି କରିପାରିବେ ନାହିଁ । ତାଙ୍କପ୍ରତି ଲୋକଙ୍କ ମନରେ ଘୃଣାର ସୀମା ନାହିଁ । କହୁ କହୁ ସେ ହଠାତ୍ ବତୀଟାକୁ ତେଜି ଦେବା ପାଇଁ ପଛକୁ ଫେରିପଡ଼ି ଉଠି ଠିଆ ହୋଇ ପଡ଼ିଲି ।

: ହଉ, ଚାଲନ୍ତୁ । ମୁଁ ଯାଉଛି ଗୋଟାଏ ଗାଡ଼ି ଡାକି ଆଣିବି । ଏହା କହି ରାଜେନ୍ ବାହାରି ଚାଲିଗଲା ।

ଗାଡ଼ିରେ ଉଠିପଡ଼ି ରାଜେନ୍ କହିଲି—ଶିବନାଥ ବାବୁଙ୍କ ସେବାର ଦାୟିତ୍ୱ ମୋତେ ଅର୍ପଣ କରି ଆପଣ ନିଶ୍ଚିନ୍ତ ହେବାପାଇଁ ଇଚ୍ଛା କରନ୍ତି । ମୁଁ ମଧ୍ୟ ସେହି ଦାୟିତ୍ୱ ନେଇ ପାରନ୍ତି । କିନ୍ତୁ ଏଠାରେ ମୁଁ ଆଉ ବେଶୀ ଦିନ ରହିପାରିବି ନାହିଁ । ଶୀଘ୍ର ମୋତେ ଚାଲିଯିବାକୁ ପଡ଼ିବ । ଆପଣ ଅନ୍ୟ କୌଣସି ବ୍ୟବସ୍ଥା ପାଇଁ ଚେଷ୍ଟା କରନ୍ତୁ ।

କମଳ ଉଦ୍‌ବିଗ୍ନ ହୋଇ ପଚାରିଲି, ପୋଲିସ ବୋଧହୁଏ ତୁମ ପଛରେ ଲାଗି ଅତିଷ୍ଠ କରି ପକାଇଲଣି ?

: ସେମାନଙ୍କର ବନ୍ଧୁତ୍ୱ ସହିତ ମୁଁ ଅଭ୍ୟସ୍ତ—ସେଥିପାଇଁ କିନ୍ତୁ ନୁହେଁ ।

କମଳ ହରେନ୍ଦ୍ରଙ୍କ କଥା ମନେପକାଇ କହିଲି—ଆଶ୍ରମରୁ ବୋଧହୁଏ ତୁମକୁ ସେମାନେ ଚାଲିଯିବା ପାଇଁ କହିଛନ୍ତି ? କିନ୍ତୁ ପୋଲିସ ଭୟରେ ଯେଉଁମାନେ ଏପରି ଭାବରେ ଆତଙ୍କିତ, ଛଳନା କରି ସେମାନଙ୍କର ଦେଶ କାମ ପାଇଁ ଆଗେଇ ଆସିବା ଉଚିତ୍ ନ ଥିଲି । ଏହା ବୋଲି ତୁମକୁ ଅବା ଚାଲିଯିବାକୁ ପଡ଼ିବ କାହିଁକି ? ଏଇ ଆଶ୍ରା

ସହରରେ ଏପରି ଲୋକ ଅଛନ୍ତି ଯେଉଁମାନେ ଏ ଦୃମକୁ ସ୍ଥାନ ଦେବାପାଇଁ ଭୟ କରିବେ ନାହିଁ ।

: ସେ ଜଣକ ବୋଧହୁଏ ଆପଣ ସ୍ୱୟଂ । ଯାହାହେଉ କଥାଟା ମନେ ରଖିଲି । ସହଜରେ ଭୁଲିବି ନାହିଁ । କିନ୍ତୁ ଏଭଳି ଦୌର୍ଭାଗ୍ୟ'ହେତୁ ଭୟ ପାଉ ନ ଥିବା ଲୋକଙ୍କର ସଂଖ୍ୟା ଭାରତବର୍ଷରେ ବୋଧହୁଏ ବିରଳ । ଅଧିକ ସଂଖ୍ୟାରେ ଥିଲେ ଦେଶର ସମସ୍ୟା ଢେର ସହଜରେ ସମାଧାନ ହୋଇ ପାରନ୍ତା ।

ଟିକିଏ ଅଟକି ଯାଇ ପୁଣି କହିଲି—ମୁଁ କିନ୍ତୁ ସେଥିପାଇଁ ଯାଉ ନାହିଁ । ଆଶ୍ରମକୁ ମଧ୍ୟ ଦୋଷ ଦେଇପାରୁ ନାହିଁ । ଆଉ ଯାହାହେଉ, ମୋତେ 'ଚାଲିଯାଅ' ବୋଲି କହିବା ପାଇଁ ହରେନ୍ ଭାଇଙ୍କ ତୁଣ୍ଡ କେବେ ଲେଉଟି ପାରିବ ନାହିଁ ।

: ତେବେ ଶିବ·ନାଥଙ୍କ ?

: ଶିବ ମୋ ନିଜ ପାଇଁ । ଦେଶ କାର୍ଯ୍ୟ ସତ । କିନ୍ତୁ ସେମାନଙ୍କ ସହିତ ମୋ ମତର ଅମେଳ । କାର୍ଯ୍ୟ କରିବାର ପ୍ରଣାଳୀରେ ମଧ୍ୟ ମେଳ ନାହିଁ, କେବଳ ମେଳ ଯାହା ଦେଖାଯାଇଥାଏ ତାହା ହେଉଛି ଭଲପାଇବାରେ । ହରେନ୍ ଭାଇଙ୍କର ମୁଁ ହେଉଛି ସହୋଦର ଠାରୁ ପ୍ରିୟ । ତାହାଠାରୁ ଅଧିକ ଆତ୍ମୀୟ ବୋଲି କହିବସିଲେ ଅତ୍ୟୁକ୍ତି ହେବ ନାହିଁ ।

କମଳର ଦୁର୍ଭାବନା କଟିଲା । କହିଲା, ଏହାଠାରୁ ଅଧିକ ଆଉ କ'ଣ ଅଛି ରାଜେନ୍ ? ମନ ଯେଉଁଠି ମିଳି ପାରୁଛି ଆଉ ନା ସେଠାରେ ମତର ଅମେଳ; ହେଉନା କାର୍ଯ୍ୟର ପ୍ରଣାଳୀ ଭିନ୍ନ, କ'ଣ ଯାଏ ଆସେ ତହିଁରେ ? ସମସ୍ତେ ଗୋଟିଏ କଥା ଭାବିବେ, ଏବଂ ଏକ ସଙ୍ଗରେ କାର୍ଯ୍ୟ କରିବେ, ଏହା ଅବା କିପରି ସମ୍ଭବ ହୋଇ ପାରିବ ? ଆଉ ପରର ମତକୁ ଯଦି ଶ୍ରଦ୍ଧା କରାଯାଇ ନ ପାରିଲା ତେବେ, ସେ ଶିକ୍ଷାର କି ଅବା ମୂଲ୍ୟ ? ମତ ଏବଂ କାର୍ଯ୍ୟ ଦୁଇଟା ହେଉଛନ୍ତି ବାହାରର ଲକ୍ଷଣ । ମନଟା ହିଁ ସତ୍ୟ । ଅଥଚ ମତ ଏବଂ କାର୍ଯ୍ୟକୁ ବଡ଼ ମନେ କରି ତୁମେ ଯଦି ଦୂରକୁ ଚାଲି ଯାଅ, ତୁମର ଭଲ ପାଇବାରେ ବ୍ୟତିକ୍ରମ ହେବ ନାହିଁ ବୋଲି ଯାହା କହୁଥିଲ, ତାହାକୁ ହିଁ ଅସ୍ୱୀକାର କରି ବସିବ ଏବଂ ଯେ ବହିରେ ଲେଖା ହୋଇଥିବା ଶାସ୍ତ୍ର ପାଇଁ ନିଜସ୍ୱ ତ୍ୟାଗ କରିବା ଭଳି ହେବ ।

ରାଜେନ୍ କଥା କହିଲା ନାହିଁ, କେବଳ ହସିଲା ।

: ହସିଲ ଯେ ?

: ହସିଲି, ସେତେବେଳେ ହସି ନ ଥିଲି ବୋଲି । ଆପଣଙ୍କ ନିଜ ବିବାହ ସମ୍ବନ୍ଧରେ ମନର ମିଳନଟାକୁ ଏକମାତ୍ର ସତ୍ୟ ବୋଲି ସ୍ଥିର କରି ନେଇ, ବାହ୍ୟିକ ଅନୁଷ୍ଠାନରେ ଅମେଳକୁ ତୁଚ୍ଛ ବୋଲି ଉଡ଼େଇ ଦେଇଥିଲେ ସେଇଟା ସତ୍ୟ ନୁହେଁ ବୋଲି, ଆଜି ଆପଣଙ୍କର ପ୍ରତ୍ୟେକ ଲକ୍ଷଣ ମିଥ୍ୟା ହୋଇଗଲା ।

: ମାନେ ?

: ମନର ମିଳନଟାକୁ ମୁଁ ତୁଚ୍ଛ ବୋଲି କହୁ ନାହିଁ । କିନ୍ତୁ ଏହାକୁ ଅଦ୍ୱିତୀୟ ବୋଲି ଉଚ୍ଚ ସ୍ୱରରେ ଘୋଷଣା କରିବାଟା ହେଉଛି ଆଜି କାଲିକାର ଗୋଟାଏ ଉଚ୍ଛାଙ୍ଗ ପଦ୍ଧତି । ଏଥିରେ ଔଦାର୍ଯ୍ୟ ଏବଂ ମହତ୍ତ୍ୱ ଦୁଇଟା ହିଁ ପ୍ରକାଶ ପାଇଥାଏ । କିନ୍ତୁ ଯାହା ସତ୍ୟ ତାହା ପ୍ରକାଶ ପାଇପାରେ ନାହିଁ । ସଂସାରରେ ଯେପରି କେବଳ ମନଟା ହିଁ ଅଛି, ଆଉ ତା ବାହାରେ ସବୁ ମାୟା, ସବୁ ଭ୍ରାନ୍ତି ବାଜି; ଏହା ଭାବିବା ହିଁ ଭୁଲ୍ ।

ସାମାନ୍ୟ ଅଟକି ଯାଇ ରାଜେନ୍ କହିଲା—ଆପଣ ବିଭିନ୍ନ ମତବାଦକୁ ଶ୍ରଦ୍ଧା କରି ପାରିବାଟାକୁ ବିରାଟ ଶିକ୍ଷା ବୋଲି କହିଥିଲେ । କିନ୍ତୁ ସବୁ ପ୍ରକାର ମତକୁ କିଏ ଶ୍ରଦ୍ଧା କରିପାରେ ଜାଣନ୍ତି ? ଯାହାର ନିଜର କୌଣସି ମତ ନାହିଁ । ଶିକ୍ଷା ଦ୍ୱାରା ବିରୁଦ୍ଧ ମତକୁ ନୀରବରେ ଉପେକ୍ଷା କରାଯାଇ ପାରେ ସିନା କିନ୍ତୁ ଶ୍ରଦ୍ଧା କରିହୁଏ ନାହିଁ ।

କମଳ ଅତ୍ୟନ୍ତ ବିସ୍ମିତ ହୋଇ ଚୁପ୍ ରହିଲା । ରାଜେନ୍ କହିବାକୁ ଲାଗିଲା । ମୋର କିନ୍ତୁ ନୀତି ତାହା ନୁହେଁ, ମୁଁ ମିଛରେ ଶ୍ରଦ୍ଧା ଦେଖାଇ ସଂସାରର ସର୍ବନାଶ କରେ ନାହିଁ । କଠିନ ହୋଇଥିଲେ ତାକୁ ଭାଙ୍ଗି ଚୂରମାର୍ କରିଦିଏ । ଏହାହିଁ ହେଲା ମୋର କାର୍ଯ୍ୟ ।

: ଏହାକୁ ତୁମର କାର୍ଯ୍ୟ ବୋଲି କହୁଛ ?

: କହେ ତ । କ'ଣ ହେବ ମୋର ସେହି ମନର ମିଳନ ନେଇ ଯଦି ମତର ଅମେଳ ମୋ କାର୍ଯ୍ୟର ପ୍ରଗତିରେ ବାଧା ଜନ୍ମାଉଥାଏ । ମୁଁ ଚାହେଁ ମତର ଐକ୍ୟ, ଏବଂ କାର୍ଯ୍ୟର ଐକ୍ୟ । ମୋ ନିକଟରେ ଏହି ଭାବବିଳାସର କିଛି ମୂଲ୍ୟ ନାହିଁ—ଶିବାନୀ ।

କମଳ ଆଶ୍ଚର୍ଯ୍ୟ ହୋଇ କହିଲା—ମୋର ଏହି ନାମଟା ମଧ୍ୟ ତୁମେ ଶୁଣିଛ ?

: ଶୁଣିଛି । କର୍ମର ଜଗତରେ, ମନୁଷ୍ୟ ପକ୍ଷରେ ବ୍ୟବହାରର ମିଳନଟା ହିଁ ବଡ଼, ହୃଦୟ ନୁହେଁ । ହୃଦୟ ଥିଲେ ଥାଉ । ଅନ୍ତରର ବିଚାର ଅନ୍ତର୍ଯ୍ୟାମୀ କରନ୍ତୁ । ଆମମାନଙ୍କର କିନ୍ତୁ ବ୍ୟବହାରିକ ଐକ୍ୟ ନ ରହିଲେ ଚଳେ ନାହିଁ । ଏହାହିଁ ମୋର କଷଟି ପଥର । ଏହାଦ୍ୱାରା ହିଁ ମୁଁ ପରୀକ୍ଷା କରିନେଇଥାଏ । କାହିଁ, ଦୁଇ ଜଣଙ୍କ ମନର ମିଳନ ଦ୍ୱାରା ତ ସଙ୍ଗୀତ ସୃଷ୍ଟି ହୋଇ ପାରେ ନାହିଁ । ବାହାରେ ଯଦି ସେମାନଙ୍କର ସୁର୍‌ର ମିଳନ ନ ଥାଏ । ତାହା କେବଳ କୋଳାହଳ ହୁଏ । ରାଜାର ଯେଉଁ ସୈନ୍ୟଦଳ ଯୁଦ୍ଧ କରନ୍ତି, ସେମାନଙ୍କର ବାହ୍ୟ ଶକ୍ତିଟା ହିଁ ରାଜାଙ୍କର ଶକ୍ତି । ହୃଦୟ ପାଇଁ ସେମାନଙ୍କର ଗରଜ ନଥାଏ । ନିୟମର ଶାସନ—ସଂଯମ—ଏହାହିଁ ମୋର ନୀତି । ଏଥିରେ ଛଳନା ଥିଲେ, ହୃଦୟକୁ ନିଶା ପାଇଁ ଖୋରାକ୍ ମିଳିଥାଏ । ତାହା ହିଁ ଉଚ୍ଛୃଙ୍ଖଳତାର ନାମାନ୍ତର । ଗାଡ଼୍ ଆନ୍ ରେକୋ, ରେକୋ—ଶିବାନୀ, ଏହିଟା ହିଁ ଶିବନାଥଙ୍କ ଦଶା ।

ସମ୍ମୁଖରେ ଜୀର୍ଣ୍ଣ ପ୍ରାଚୀନ ଗୃହ । ଉଭୟେ ନୀରବରେ ଚାଲିକୁ ଓହ୍ଲାଇ ପଛ ଗେଟ ଦେଇ ଘରେ ପ୍ରବେଶ କଲେ । ପଦପାତ ଶୁଣି ଶିବନାଥ ଆଖି ମେଲି ଚାହିଁଲେ—କିନ୍ତୁ ଦୀପର ସ୍ୱଳ୍ପାଲୋକରେ ବୋଧହୁଏ ଚିହ୍ନି ପାରିଲେ ନାହିଁ । ମୁହୂର୍ତ୍ତିକ ପରେ, ଆଖି ପୁଣି ତନ୍ଦ୍ରାଛନ୍ନ ହୋଇ ପଡ଼ିଲା ।

ଘରଆଡ଼କୁ ଚାହିଁ କମଳ ସ୍ତବଧ ହୋଇ ପଡ଼ିଲା । ଘରର ଏ'କି ଅବସ୍ଥା ! ଏଠାରେ ଯେ ମଣିଷ ବାସ କରିପାରେ ସହଜରେ ତାର ବିଶ୍ୱାସ ହେଲା ନାହିଁ । ଲୋକମାନଙ୍କର ସୋରଗବଦ ପାଇ ସତର, ଅଠର ବର୍ଷର ହିନ୍ଦୁସ୍ଥାନୀ ପିଲାଟିଏ ଆସି ଠିଆ ହେଲା । ରାଜେନ ପରିଚୟ କରାଇ ଦେଇ କହିଲା, ଏଇଟି ହେଉଛି ଶିବନାଥ ବାବୁଙ୍କ ଚାକର । ପଥ୍ୟ ତିଆରି କରାଇବା ଠାରୁ ଔଷଧ ଖୁଆଇବା ପର୍ଯ୍ୟନ୍ତ ତାର ହେଉଛି ଡ଼ିଉଟି । ସୂର୍ଯ୍ୟାସ୍ତ ହେଉ ହେଉ ବୋଧହୁଏ ଶୋଇବାକୁ ଯାଉଥିଲା । ବର୍ତ୍ତମାନ ଉଠିକରି ଆସିଛି । ରୋଗୀ ପାଇଁ କୌଣସି ଉପଦେଶ ଦେବାର ଥାଏ ତ ତାକୁ ଦିଅନ୍ତୁ । ବୁଝି ପାରିବ ବୋଲି ମନେ ହେଉଛି । ଦିହାତି ବୋକା ନୁହେଁ । ନାଆଁଟା କାଲି ଜାଣି ପାରିଥିଲି, ଆଜି କିନ୍ତୁ ଭୁଲି ଯାଇଛି । କ'ଣ ନାଆଁରେ ?

: ପାଂଓସ୍ୱା ।

: ଆଜି ଔଷଧ ଖୁଆଇଥିଲୁ ?

ପିଲାଟି ବାଆଁ ହାତରୁ ଦୁଇଟି ଆଙ୍ଗୁଳି ଦେଖାଇ କହିଲା —ଦୁଇଥର ଖୁଆଇଛି ।

: ଆଉ କିଛି ଖୁଆଇଥିଲୁ ?

: ହଁ, ଦୁଧ ବି ପିଆଇଥିଲି ।

: ବହୁତ ଭଲ କାମ କରିଛୁ । ଉପର ମହଲାକୁ କେହି ପଡ଼ାଶୀବାବୁ ଆସିଥିଲେ କି ?

କମଳ ପ୍ରଶ୍ନ କଲା—ପାଂଓସ୍ୱା, ତୋ ପାଖରେ ଝାଡ଼ୁ ଫାଡ଼ୁ କିଛି ଅଛି କି ?

ପାଂଓସ୍ୱା ମୁଣ୍ଡ ହଲାଇ ଝାଡ଼ୁ ଆଣିବା ପାଇଁ ଗଲା । ରାଜେନ କହିଲା ଝାଡ଼ୁ କ'ଣ କରିବେ ? ତାକୁ ପିଟିବେ ନା କ'ଣ ?

କମଳ ଗମ୍ଭୀର ହୋଇ କହିଲା—ଏହା କ'ଣ ଥଟ୍ଟା ତାମସାର ସମୟ ? ମାୟା-ମମତା କ'ଣ ତୁମ ଭିତରେ ନାହିଁ ?

: ଆଗେ ଥିଲା । ଫ୍ଲଡ୍ ଏବଂ ଫ୍ୟାମିନ୍ ରିଲିଫ୍ ସମୟରେ ସେଗୁଡ଼ାକୁ ବିସର୍ଜନ ଦେଇ ଆସିଛି ।

ପାଂଓସ୍କା ଝାଡ଼ୁ ଆଣି ପହଞ୍ଚିଲା । ରାଜେନ କହିଲା—ମୁଁ ଶୋକରେ ଆଉଟ୍ ଧାଉଟ୍ ହେଉଛି, ଯାହିଁ କେଉଁଠି ଦଉଡ଼ା ଖାଇକରି ଆସେ । ସେତେବେଳ ପର୍ଯ୍ୟନ୍ତ ଝାଡ଼ୁ ଓ ପିଲାଟାକୁ ଧରି ଯାହା ଇଚ୍ଛା ତାହା କରୁଥାନ୍ତୁ । ଫେରିଆସିଲେ ଆପଣଙ୍କୁ ନେଇ ବସାରେ ଛାଡ଼ି ଦେଇ ଆସିବ । ଭୟ ପାଇବେ ନାହିଁ । ମୁଁ ଦୁଇଘଣ୍ଟା ଭିତରେ ଫେରି ଆସିବ । ଏହା କହି ସେ ଉତ୍ତରକୁ ଅପେକ୍ଷା ନ କରି ବାହାରି ଚାଲିଗଲା ।

ସହରର ଗୋଟିଏ କଣରେ ଅବସ୍ଥିତ ଏହି ସ୍ଥାନଟା ଅଳ୍ପ ସମୟ ମଧ୍ୟରେ ନିଃଶବ୍ଦ ଓ ନିର୍ଜନ ହୋଇ ଉଠିଲା । ଯେଉଁମାନେ ଉପର ମହଲାରେ ବାସ କରନ୍ତି ସେମାନଙ୍କର ପାଦଶବ୍ଦ ଚଳାଚଳର ଶବ୍ଦ ବନ୍ଦ ହୋଇ ଆସିଲା । ବୁଝାଗଲା ସେମାନେ ଶଯ୍ୟାଶ୍ରୟ କରିଲେଣି । ଶିବନାଥର ଖବର ନେବା ପାଇଁ କେହି ଆସିଲେ ନାହିଁ । ବାହାରେ ରାତିର ଅନ୍ଧକାର ଗଭୀର ହୋଇ ଆସୁଥାଏ । ତଳେ କମ୍ବଳ ବିଛାଇ ପାଂଓସ୍କା ଘୁମାଇବାରେ ଲାଗିଲା । ସଦର ଦରଜା ବନ୍ଦ ହେବାର ସମୟ ହୋଇ ଆସିଲା । ଏପରି ସମୟରେ ରାସ୍ତାରେ ସାଇକେଲ ଘଣ୍ଟି ଶୁଣାଗଲା, ଏବଂ ପରକ୍ଷଣରେ ରାଜେନ କବାଟ ଠେଲି ପ୍ରବେଶ କଲା । ଏଣେ ତେଣେ ଦୃଷ୍ଟିପାତ କରି ଏହି ଅଳ୍ପ ସମୟ ଭିତରେ ଘରର ପରିବର୍ତ୍ତନ ଲକ୍ଷ୍ୟ କରି ସେ କିଛିକ୍ଷଣ ନୀରବ ରହିବା ପରେ, ହାତରେ ଧରିଥିବା ଛୋଟ ପୁଟୁଳିଟିକୁ ଟିପୟ ଉପରେ ରଖି ଦେଇ କହିଲା, ଅନ୍ୟ ଝିଅମାନଙ୍କ ଭଳି ଆପଣଙ୍କୁ ଯାହା ଭାବିଥିଲି ଆପଣ ତାହା ନୁହଁନ୍ତି । ଆପଣଙ୍କ ଉପରେ ନିର୍ଭର କରାଯାଇ ପାରେ ।

କମଳ ନୀରବରେ ଫେରି ଚାହିଁଲା । ରାଜେନ କହିଲା, ଦେଖୁଛି ଇତିମଧ୍ୟରେ ବିଛଣାଟା ମଧ୍ୟ ବଦଳାଇ ପକାଇଛନ୍ତି । ଖୋଜ କରି ହୁଏତ ବିଛଣା ଚଦରଟା ପାଇ ପାରିଛନ୍ତି କିନ୍ତୁ ଏଙ୍କୁ ଉଠାଇ ଶୁଆଇଲେ କପରି ?

କମଳ ଆସ୍ତେ ଆସ୍ତେ କହିଲା—ଜାଣିଥିଲେ କରିବା ପାଇଁ କଷ୍ଟ ମନେହୁଏ ନାହିଁ ।

: କିନ୍ତୁ ଜାଣିଲେ କପରି ? ଜାଣିବାର ତ କଥା ନୁହେଁ ?

: ଜାଣିବା କଥା କ'ଣ ତୁମର ? ପିଲାବେଳେ ମୁଁ ବାପା ବଗିଚାରେ ଅନେକ ରୋଗୀଙ୍କ ସେବା କରିଛି ।

: ସେଇଆ କହନ୍ତୁ । ଏହା କହି ସେ ଆଉଥରେ ପୁଣି ରୋଗୀଙ୍କୁ ଚାହିଁ ଦେଇ କହିଲା—ଆସିଲାବେଳେ କିଛି ଖାଇବା ଜିନିଷ ନେଇ ଆସିଛି । ମାଠିଆରେ ପାଣିଥିବାର ଦେଖି ଯାଇଥିଲି । ମୁଁ ବସିଛି, ଆପଣ ଖାଇ ନିଅନ୍ତୁ ।

କମଳ ତା ମୁହଁକୁ ଚାହିଁ ଟିକିଏ ହସି ପକାଇଲା କହିଲା!—ଖାଇବା କଥା ତ ତୁମକୁ କହି ନ ଥିଲି । ହଠାତ୍ ତୁମ ମନରେ ଏ ଖିଆଲ ଆସିଲା କପରି ?

: ଝିଅଟିଏ ଅବଶ୍ୟ ହଠାତ୍ ହେଲା ସତ । ନିଜ ପେଟ ଯେତେବେଳେ ଭରିଗଲା, ସେତେବେଳେ କଥାଟା କାହିଁକି ମନେହେଲା ଆପଣ ହୁଏତ ଭୋକରେ ଥିବେ । ସେଥିପାଇଁ ଫେରିବା ବାଟରେ କିଛି ଖାଇବା ଜିନିଷ କିଣି ଆଣିଲି । ଡେରି କରନ୍ତୁ ନାହିଁ, ବସିଯାନ୍ତୁ । ଏହା କହି ସେ ନିଜେ ଯାଇ ମାଠିଆରୁ ପାଣି ନେଇ ଆସିଲା । ପାଖରେ କଲେଇକରା ଗୋଟାଏ ଗ୍ଲାସ ଥିଲା । କହିଲା, ଅପେକ୍ଷା କରନ୍ତୁ । ବାହାରୁ ଗୋଟାଏ ମେଜ ନେଇ ଆସୁଛି । ଏହା କହି ସେଇଟାକୁ ଆଣି ଥୋଇ ଚାଲିଗଲା । ଏ ଘରେ କେଉଁଠାରେ କ'ଣ ଅଛି ସେ କାଲି ଆସି ଦେଖିଯାଇଛି । ଫେରିଆସି ଖୋଜାଖୋଜି ସାବୁନ ଖଣ୍ଡିଏ ବାହାର କରି ଆଣିଲା । କହିଲା—ଦିନସାରା ଘଣ୍ଟାଘଣ୍ଟି କରିଛନ୍ତି, ଟିକିଏ ସାବଧାନ ହେବା ଭଲ । ମୁଁ ପାଣି ଢାଳିଦେଉଛି । ଖାଇବା ଆଗରୁ ଟିକିଏ ହାତ ଧୋଇ ପକାନ୍ତୁ ।

କମଳର ତା ବାପାଙ୍କ କଥା ମନେପଡ଼ିଲା । ତାଙ୍କର ମଧ୍ୟ କଥାରେ ଏପରି ଚାତୁରୀ ନ ଥିଲା କିନ୍ତୁ ଆନ୍ତରିକତା ଭରି ରହିଥିଲା । କହିଲା, ହାତ ଧୋଇବା ପାଇଁ ଆପତ୍ତି ନାହିଁ । କିନ୍ତୁ ଖାଇ ପାରିବି ନାହିଁ ଭାଇ, ତୁମେ ହୁଏତ ଜାଣ ନାହିଁ ଯେ ମୁଁ ନିଜେ ରାନ୍ଧି ଖାଏ । ଆଉ ଏଇସବୁ ଦାମିକା ଦାମିକା ଭଲ ଭଲ ଖାଇବାର ଜିନିଷ ଖାଏ ନାହିଁ । ମୋ ପାଇଁ ବ୍ୟସ୍ତ ହେବାର ଆବଶ୍ୟକତା ନାହିଁ । ଅନ୍ୟାନ୍ୟ ଦିନ ଯେପରି ଖାଇଥାଏ, ସେହିପରି ଆଜି ବସାକୁ ଫେରିଗଲେ ଖାଇବି ।

: ତାହାହେଲେ ବେଶୀ ରାତି ନ କରି ବସାକୁ ଫେରି ଚାଲନ୍ତୁ । ଆପଣଙ୍କୁ ଛୁଟି ଦେଇ ଆସିବି ।

: ତୁମେ କ'ଣ ଏଠାକୁ ପୁଣି ଆସିବ ?

: ଆସିବି ।

: କେତେ ସମୟ ପର୍ଯ୍ୟନ୍ତ ରହିବ ?

: ଅନ୍ତତଃ କାଲି ସକାଳ ପର୍ଯ୍ୟନ୍ତ । ଉପର ପଣ୍ଡାମାନଙ୍କ ହାତରେ କିଛି ଟଙ୍କା ଦେଇଯାଇଛି । କିଛି ଗୋଟାଏ ନିଷ୍ପତ୍ତି ନ କଲା ପର୍ଯ୍ୟନ୍ତ ହଲିବି ନାହିଁ । ମୁଁ ସାମାନ୍ୟ କ୍ଲାନ୍ତ, ହେଲେ ହୋଇଥାଏ । ଅବଶ୍ୟ ଏତେଟା ଅସହ୍ୟ ହେବ ବୋଲି ଭାବୁ ନାହିଁ । ଉଠନ୍ତୁ । ବର୍ତ୍ତମାନ ଆଉ ଗାଡ଼ି ମିଳିବ ନାହିଁ । ଚାଲିକରି ଯିବାକୁ ପଡ଼ିବ । ଫେରିବା ବାଟରେ ମୋତେ ସାହିଟା ଟିକିଏ ବୁଲିଆସିବାକୁ ପଡ଼ିବ । ଦୁଇଟା ପିଲାଙ୍କର ମରମର ଅବସ୍ଥା ଥିଲା । ଦେଖେ ସେମାନଙ୍କର କ'ଣ ହେଲା ।

କମଳର ପୁଣି ସେଇ କଥା ମନେ ପଡ଼ିଲା । ଏହି ଲୋକଟାର ଅନୁଭୂତି ବୋଲି କିଛି ନାହିଁ । ଯନ୍ତ୍ର ଭଳି ସବୁ କାମ କରୁଛି । କେଉଁ ଗୋଟାଏ ଅଜଣା ପ୍ରେରଣା ଏହାକୁ ବାରମ୍ବାର କର୍ମରେ ନିଯୁକ୍ତ କରି କହୁଛି—କର୍ମ କରିଯାଅ···ନିଜ ପାଇଁ ନୁହେଁ, ହୁଏତ କିଛି ଫଳ ମଧ୍ୟ ଆଶା କରି ନାହିଁ । କର୍ମ ଏହାର ରକ୍ତ ମଧ୍ୟରେ, ସାରା ଦେହ ଭିତରେ

ଯେପରି ଜଳବାୟୁ ଭଲ ସହଜ ହୋଇ ଉଠିଛି । ଅଥଚ ଅନ୍ୟମାନଙ୍କର ଆଶ୍ଚର୍ଯ୍ୟର ସୀମା ରହେ ନାହିଁ । ଭବନ୍ତୁ କପରି ଭାବରେ ଏପରି ହୁଏ । ପଗ୍ରୁରିଲ—ଆଚ୍ଛା ରାଜେନ୍, ତୁମେ ନିଜେ ତ ଜଣେ ଡାକ୍ତର ?

: ଡାକ୍ତର ? ନା, ଡାକ୍ତରୀ ସ୍କୁଲରେ କିଛିଦିନ ପାଇଁ ପାଠ ପଢ଼ିଥିଲି ।

: ତାହାହେଲେ ରୋଗୀମାନଙ୍କୁ କିଏ ଚିକିତ୍ସା କରୁଛି ?

: ଯମ ।

: ତେବେ ତୁମେ କ'ଣ କର ?

: ମୁଁ ତାଙ୍କର ତଦ୍‌ବିର କରେ । ତାଙ୍କର ପରମ ଭକ୍ତ ମୁଁ, ଏହା କହି ସେ କମଳର ବିସ୍ମୟ-ଅଭିଭୂତ ମୁହଁକୁ ଚାହିଁ ଟିକିଏ ହସିଲା, କହିଲା—ଯମ ନୁହେଁ, ସେ ହେଉଛନ୍ତି ଯମ ମହାରାଜ । ବିଧାଇ ଜଣାଉଛି ତାଙ୍କର ପ୍ରତାପକୁ ଯିଏ ତାଙ୍କୁ ପ୍ରଥମେ ମହାରାଜା ବୋଲି ଅଭିବାଦନ ଜଣାଇଥିଲେ । ପ୍ରକୃତରେ ସେ ରାଜା । ଯେପରି ଦସ୍ତା, ସେହିପରି ସୁବିସ୍ତର । ବିଶ୍ୱର ସୃଷ୍ଟିକର୍ତ୍ତା ଯଦି କେହି ଥାନ୍ତି ତେବେ ଯମରାଜା ହିଁ ହେଉଛନ୍ତି ତାଙ୍କ ସୃଷ୍ଟିର ସର୍ବଶ୍ରେଷ୍ଠ କୃତି ବୋଲି ମୁଁ ବାଜି ରଖି କହିପାରିବି ।

କମଳ ଆସ୍ତେ ଆସ୍ତେ ପଗ୍ରୁରିଲ—ତୁମେ କ'ଣ ପରିହାସ କରୁଛ ?

: ଆଦୌ ନୁହେଁ । ଏକଥା ଶୁଣିଲେ ସତୀଶ ଭାଇ ମୁଖ ଗମ୍ଭୀର କରନ୍ତି । ହରେନ ଭାଇ ରାଗକରି ମୋତେ ସିନିକ୍ କୁହନ୍ତି । ତାଙ୍କ ଆଶ୍ରମରେ ସମସ୍ତେ ମିଶି ଭ୍ରହ୍ମଚର୍ଯ୍ୟ, ସଂଯମ, ତ୍ୟାଗ ଓ ନାନାବିଧ ଅଦ୍ଭୁତ କଠୋରତାର ଅସ୍ତ୍ରଶସ୍ତ୍ର ଶାଣକରି ଯମରାଜଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛନ୍ତି । ଅତଏବ ମନେକରନ୍ତୁ ମୁଁ ସେମାନଙ୍କୁ ଉପହାସ କରୁଛି । କିନ୍ତୁ ତାହା କରି ନାହିଁ । ଦୁଃଖୀମାନଙ୍କର ପଲ୍ଲୀକୁ ସେମାନେ ଯାନ୍ତି ନାହିଁ, ଯାଉଥିଲେ ମୋର ଧାରଣା,—ମୋ ଭଳି ସେମାନେ ପରମ ରାଜଭକ୍ତ ହୋଇ ଉଠନ୍ତେ । ଶୁଦ୍ଧା ଅବନତ ଚିତ୍ତରେ ମୃତ୍ୟୁ ରାଜାର ଗୁଣଗାନ କରନ୍ତେ ।

: ଏହା ଯଦି ପ୍ରକୃତରେ ତୁମର ମତ ହୋଇଥାଏ, ତୁମକୁ ସିନିକ୍ କହିବାଟା କ'ଣ ଦୋଷାବହ ?

: ଦୋଷର ବିଚାର ପରେ ହେବ । ଯିବ ଥରେ ମୋ ସଙ୍ଗରେ ମୋଟମାନଙ୍କ ପଲ୍ଲୀକୁ ? ଗଡ଼ଗଡ଼ା ପତ୍ରିଛନ୍ତି—ଆଜିକାଲିକାର କେବଳ ଇନ୍‌ଫ୍ଲୁଏଞ୍ଜା ବୋଲି ନୁହେଁ, ବସନ୍ତ, ପ୍ଲେଗ, ଯେ କୌଣସି ରୋଗାଏ ଉପଲକ୍ଷ ସେମାନଙ୍କର କୁଟିଗଲେ ଚଳିବ । ଔଷଧ ନାହିଁ । ପଥ୍ୟ ନାହିଁ । ଶୋଇବା ପାଇଁ ବିଛଣା ନାହିଁ । ଲଜ୍ଜା ଘୋଡ଼ାଇବା ପାଇଁ ବସନ ନାହିଁ, ମୁହଁରେ ପାଣି ଟୋପିଏ ଦେବାକୁ ଲୋକ ପର୍ଯ୍ୟନ୍ତ ନାହାଁନ୍ତି, ଦେଖିଲେ ହଠାତ୍ ଆଖିରେ ଲୁହ ଆସିଯିବାକୁ ପଡ଼େ ଯେ ଏସବୁର କିନାରା କେଉଁଠି ? ଯେତେବେଳେ କୂଳ ଦେଖିବାକୁ ପାଏ, ଚିନ୍ତା ଦୂରହୁଏ । ମନେ ମନେ କହି ହୁଏ ଭୟ ନାହିଁ, ଆରେ ଭୟ ନାହିଁ । ଯମରାଜା

ଯେତେ ଗୁରୁତର ହେଉ, ସମାଧାନ ଯାହା ହାତରେ ସେ ଆସିଗଲେ ବୋଲି ଜାଣ । ଅନ୍ୟାନ୍ୟ ଦେଶରେ ଅନ୍ୟାନ୍ୟ ବ୍ୟବସ୍ଥା, କିନ୍ତୁ ଆମର ଏହି ଦେବଭୂମିର ସମସ୍ତ ଦାୟିତ୍ୱ ନେଇଛନ୍ତି ଏକବାରେ ରାଜାର ରାଜା ଯିଏ ସେ ସ୍ୱୟଂ । ଗୋଟିଏ ହିସାବରେ ଆମେମାନେ ବେଶୀ ଭାଗ୍ୟବାନ । କିନ୍ତୁ କଥା ହେଉ ହେଉ କେଉଁଠୁ ଆସି କେଉଁଠି ପହଞ୍ଚି ଗଲେଣି । ଚାଲନ୍ତୁ, ରାତି ହୋଇଯାଉଛି । ଅନେକଗୁଡ଼ାଏ ବାଟ ଚାଲିବାକୁ ପଡ଼ିବ ।

: କିନ୍ତୁ ତୁମକୁ ତ ପୁଣି ଚାଲିଚାଲି ଫେରିବାକୁ ପଡ଼ିବ ?

: ହଁ, ପଡ଼ିବ ।

: ତୁମ ମୋଚିମାନଙ୍କ ପଲ୍ଲୀ କେତେ ଦୂର ?

: ଏଇ ନିକଟରେ ଅର୍ଥାତ୍ ଏଠାରୁ ମାଇଲିଏ ମଧ୍ୟରେ ।

: ତାହାହେଲେ ତୁମ ପାଦଗାଡ଼ିରେ ତୁମେ ଚାଲିଆସ । ସେ ପର୍ଯ୍ୟନ୍ତ ମୁଁ ଏଠାରେ ବସିରହୁଛି ।

ରାଜେନ୍ ଆଶ୍ଚର୍ଯ୍ୟ ହୋଇ କହିଲା—ସେ କି କଥା ! ଆପଣ ଯେ ଦିନସାରା କିଛି ଖାଇ ନାହାନ୍ତି ।

: କିଏ ତୁମକୁ ଏ ଖବର ଦେଲା ?

: ଏଇଯେ ଖିଆଲର କଥା କହୁଥିଲି, ତାହାହିଁ । କିନ୍ତୁ ଖବରଟା ମୁଁ ନିଜେ ହିଁ ସଂଗ୍ରହ କରିଛି ।

ଆସିଲାବେଳେ ଆପଣଙ୍କ ଷ୍ଟୋଭ୍ ଘରଟାକୁ ଟିକିଏ ଉଙ୍କିମାରି ଦେଖି ଆସିଥିଲି । ରନ୍ଧା ଭାତ ମହଜୁଦ ଅଛି । ହାଣ୍ଡିଟିର ଚେହେରା ଦେଖିଲେ ନିଃସନ୍ଦେହ ହେବାକୁ ପଡ଼େ ଯେ ସେ ସବୁ ଗତ ରାତିର ଷ୍ଟୋଭ୍ । ଅର୍ଥାତ ଦିନସାରା ହେଲା ତୁମର ନିର୍ଜଳ ଉପବାସ । ଅତଏବ ହିଏତ ଚାଲନ୍ତୁ, ନଚେତ୍ ଯାହା ଆଣିଛି ତାକୁ ଆହାର କରନ୍ତୁ । ଆଜି ନିଜେ ରାନ୍ଧିବାଟା ଅନ୍ୟାୟ ହେବ ।

: ଅନ୍ୟାୟ ? କମଲ ସାମାନ୍ୟ ହସି ଦେଇ କହିଲା—କିନ୍ତୁ ମୋ ପାଇଁ ତୁମର ଏତେ ମୁଣ୍ଡ ବ୍ୟଥା କାହିଁକି ?

: ତାହା ଜାଣିନି । କାରଣ ନିଜେ ତ ବର୍ତ୍ତମାନ ଅନୁସନ୍ଧାନ କରି ଚାଲିଛି । ବୁଝି ପାରିଲେ ଜଣାଇବି ।

କମଲ କିଛି ସମୟ ଧରି କ'ଣ ଭାବିଲା । ତାପରେ କହିଲା—ଜଣାଇବା ପାଇଁ ଲାଜ କରିବ ନାହିଁ । ପୁଣି କିଛିକ୍ଷଣ ନୀରବ ରହିବା ପରେ କହିଲା—ରାଜେନ୍, ତୁମ ଆଶ୍ରମର ଭାଇମାନେ ତୁମକୁ ଅଳ୍ପ ଚିହ୍ନିଛନ୍ତି, ସେଥିପାଇଁ ସେମାନେ ତୁମକୁ ଏତେ ବଡ଼ ବୋଲି ମନେ କରନ୍ତି । କିନ୍ତୁ ମୁଁ ତୁମକୁ ଚିହ୍ନିଛି । ସୁତରାଂ ମୋତେ ମଧ୍ୟ ଚିହ୍ନି ରଖିବା ତୁମର ଦରକାର । ଅଥଚ ସେଥିପାଇଁ ସମୟ ଅବଶ୍ୟକ । ସେ ପରିଚୟ କିନ୍ତୁ ଏପରି

ଯୁକ୍ତି ତର୍କରେ ପାରି ହେବ ନାହିଁ । ସାମାନ୍ୟ ସ୍ଥିର ରହି ପୁଣି କହିଲା, ମୁଁ ଦିନେ ରାନ୍ଧି ଖାଏ । ଗୋଟିଏ ବେଳା ଖାଏ । ଅତ୍ୟନ୍ତ ଦରିଦ୍ରର ଯାହା ଆହାର ସେହି ମୁଠାଏ—ଭାତ, ଡାଲି । କିନ୍ତୁ ଏହା ମୋର ବ୍ରତ ନୁହେଁ । ସେଥିପାଇଁ ଭଙ୍ଗ କରିପାରେ । ଯଦିଓ ଦୁଇ ଦିନ ଖାଇ ନାହିଁ ବୋଲି ମୁଁ ନିୟମ ଲଙ୍ଘନ କରିପାରିବ ନାହିଁ । ତଥାପି ତୁମର ସ୍ନେହ ଟିକକୁ ମୁଁ ଆଦୌ ଭୁଲି ପାରିବ ନାହିଁ । ତୁମ କଥା ରକ୍ଷା କରିପାରୁ ନାହିଁ, ରାଜେନ୍ । ସେଥିପାଇଁ ତୁମେ ଯେପରି ରାଗ ନ କର ।

: ନା ।

: କ'ଣ ଭାବୁଛ କୁହ ତ ?

: ଭାବୁଛି, ପରିଚର୍ଯ୍ୟା-ପର୍ବର ଭୂମିକା ଅଂଶ ଟିକକ ମନ୍ଦ ହେଲା ନାହିଁ ତ । ମୁଁ ଦେଖୁଛି ଆପଣଙ୍କୁ ସହଜରେ ଭୁଲିପାରିବ ନାହିଁ ।

: ସହଜରେ ଅବା ଭୁଲିଯିବାକୁ ମୁଁ ସୁଯୋଗ ଦେବ କାହିଁକି ? କହି ହଠାତ୍ କମଳ ହସି ଉଠିଲା । କହିଲା—କିନ୍ତୁ ଆଉ ଡେରି କର ନାହିଁ । ଯାଅ, ଯେତେ ଶୀଘ୍ର ପାର ଫେରି ଆସିବ । ଏଇ ବଡ଼ ଆରାମ ଚୌକି ଉପରେ ଗୋଟାଏ କମ୍ବଳ ପକାଇ ରଖିବ । ଦୁଇ ଚାରି ଘଣ୍ଟା ଘୁମେଇ ପଡ଼ିବା ପରେ ଯେତେବେଳେ ସକାଳ ହେବ ସେତେବେଳେ ଆମେ ବସାକୁ ଚାଲିଯିବା, କେମିତି ହେବ ?

ରାଜେନ୍ ମୁଣ୍ଡ ହଲାଇ କହିଲା—ଆଚ୍ଛା । ଭାବିଥିଲି ଆଜି ରାତିଟା ବୋଧହୁଏ ମୋତେ ଉଜାଗରରେ କଟାଇବାକୁ ପଡ଼ିବ । କିନ୍ତୁ ଛୁଟି ମଞ୍ଜୁର ହୋଇଗଲା । ସ୍ୱାମୀଙ୍କ ସେବା ଭାର ନିଜ ଦାୟିତ୍ୱକୁ ନେଇଗଲେ । ଭଲ ହେଲା । ଫେରିବା ପାଇଁ ବୋଧହୁଏ ମୋର ବିଳମ୍ବ ହେବ ନାହିଁ । କିନ୍ତୁ ଇତି ମଧ୍ୟରେ ଯେପରି ଆପଣ ଶୋଇ ନପଡ଼ନ୍ତି ?

: ନା, କିନ୍ତୁ ଏଇ ଲୋକଟି ଯେ ମୋ ସ୍ୱାମୀ, ତୁମକୁ ଏ ଖବର କିଏ ଦେଲା ? ଏଠିକାର ଭଦ୍ର ଲୋକମାନେ ବୋଧହୁଏ ? ସେ ଯିଏ ଦେଇ ଥାଉ ନା କାହିଁକି, ସେ କିନ୍ତୁ ତୁମ ସହିତ ଥଟ୍ଟା ଖେଳିଛି । ଯଦି ବିଶ୍ୱାସ ନ ହେଉଥାଏ, ଦିନେ ତାଙ୍କୁ ପଚାରିଲେ ସେ କହିଦେବେ ।

ରାଜେନ୍ କୌଣସି କଥା କହିଲା ନାହିଁ । ନୀରବରେ ବାହାରି ଚାଲିଗଲା ।

ଶିବନାଥ ଯେପରି ଏଥିପାଇଁ ଅପେକ୍ଷା କରି ରହିଥିଲା । କର ଲେଉଟାଇ, ଆଖି ମିଟାଇ ପ୍ରଶ୍ନ କଲା—ସେ ଲୋକଟି କିଏ ?

ଶୁଣି କରି କମଳା ଚମକି ଉଠିଲା । କଣ୍ଠସ୍ୱର ସ୍ପଷ୍ଟ । ଜଡ଼ତାର ଚିହ୍ନ ଆଦୌ ନାହିଁ । ଆଖିର ଚାହାଣୀରେ ସେ ପର୍ଯ୍ୟନ୍ତ ଟିକିଏ ତନ୍ଦ୍ରା ରହିଥିଲା ସତ, କିନ୍ତୁ ମୁହଁର ଚେହେରା ପ୍ରାୟ ସ୍ୱାଭାବିକ । ଅଧା ନିଦରୁ ଉଠିଲେ ଯେପରି ଟିକିଏ ତନ୍ଦ୍ରାଳ ଭାବ ରହିଥାଏ, ତାହାଠାରୁ ଅଧିକ କିଛି ନୁହେଁ । ଏତେ ବଡ଼ ବେମାରିରୁ ଯେ ଏତେ ଶୀଘ୍ର ଆରୋଗ୍ୟ

ମିଳିପାରିବ ହଠାତ୍ ତାହା କମଳ ବିଶ୍ୱାସ କରିପାରିଲା ନାହିଁ । ସେଥିପାଇଁ ତାର ଉତ୍ତର ଦେବା ପାଇଁ ବିଳମ୍ବ ହେଲା । ଶିବନାଥ ପୁଣି ପ୍ରଶ୍ନ କଲା । ସେ ଲୋକଟି କିଏ ଶିବାନି ? ସେ କ'ଣ ତୁମକୁ ସଙ୍ଗରେ ଆଣିଛନ୍ତି ?

: ହଁ । ମୋତେ ଆଣିଛନ୍ତି ଏବଂ ତୁମକୁ ମଧ୍ୟ କାଲି ଆଣି ଏଠାରେ ରଖାଇଛନ୍ତି ।

: ନାଆଁ ?

: ସୁରେନ୍ ।

: ତୁମେ ଦୁଇଜଣ କ'ଣ ବର୍ତ୍ତମାନ ଗୋଟିଏ ଘରେ ରହୁଛ ?

: ସେହି ଭଳି ଚେଷ୍ଟା ତ କରୁଛି । ଯଦି ରହି ପାରନ୍ତେ ତେବେ ମୋର ସୌଭାଗ୍ୟ ହୁଅନ୍ତା ବୋଲି ଭାବୁଛି ।

: ହୁଁ ! ତାକୁ ଏଠାକୁ ଆଣିଛ କାହିଁକି ?

କମଳ ଏ ପ୍ରଶ୍ନର ଉତ୍ତର ଦେଲା ନାହିଁ । ଶିବନାଥ ମଧ୍ୟ ଆଉ କୌଣସି ପ୍ରଶ୍ନ କଲା ନାହିଁ । ଆଖି ବୁଜି ପଡ଼ି ରହିଲା । କିଛି ସମୟ ନୀରବରେ କଟିବା ପରେ ଶିବନାଥ ପ୍ରଶ୍ନ କଲା—ମୋ ସହିତ ତୁମର କୌଣସି ସମ୍ବନ୍ଧ ନାହିଁ । ଏକଥା ତୁମେ କାହାଠାରୁ ଶୁଣିଲ ? ଲୋକମାନେ କ'ଣ କୁହା କୁହି ହେଉଛନ୍ତି କି ?

କମଳ ଏହାର ମଧ୍ୟ ଉତ୍ତର ଦେଲା ନାହିଁ । କିନ୍ତୁ ଏଥର ସେ ନିଜେ ପ୍ରଶ୍ନ କଲା । ମୋତେ ଯେ ତୁମେ ବିବାହ କରି ନାହଁ, ସେ କଥା ମୁଁ ବିଶ୍ୱାସ କରି ନ ଥାଏ କିନ୍ତୁ ତୁମେ ତ କର ? ଚାଲି ଆସିବା ବେଳେ ସେ କଥା କହି ଆସିଲ ନାହିଁ କାହିଁକି ? ତୁମକୁ ଜାଲେ ଅଟକାଇ ବସିବି, କାନ୍ଦି ବୋବାଇ ମୁଣ୍ଡ ବାଡ଼େଇ ଅନର୍ଥ ସୃଷ୍ଟି କରି ବସିବି, ଏଇଆ କ'ଣ ତୁମେ ଭାବିଥିଲ କି ? ଏହା ଯେ ମୋର ସ୍ୱଭାବ ନୁହେଁ, ସେ କଥା ତ ତୁମେ ଭଲ କରି ଜାଣ । ତେବେ କାହିଁକି କହି ଆସିଲ ନାହିଁ ?

ଶିବନାଥ କ୍ଷଣକ ପାଇଁ ନୀରବ ରହି କହିଲା, କାର୍ଯ୍ୟର ଜଞ୍ଜାଳ ହେତୁ । କମ୍ପାନୀ ବ୍ୟବସାୟ ଖାତିରରେ ଦିନ କେତେଟା ଅଲଗା ବସା ଭଡ଼ା ରହିଲେ କ'ଣ ତାକୁ ତ୍ୟାଗ କରିଗଲା ବୋଲି କୁହାଯାଇ ପାରିବ ? ମୁଁ ତ ଭାବିଥିଲି···

ଶିବନାଥ ମୁହଁର କଥା ଅସମାପ୍ତ ରହିଗଲା । କମଳ ଅଟକାଇ ଦେଇ କହିଲା—ଥାଉ, ଥାଉ, ମୁଁ ସେ ସବୁ ଜାଣିବା ପାଇଁ ଚାହେଁ ନାହିଁ । କହି ପକାଇ ସେ କିନ୍ତୁ ନିଜର ଉତ୍ତେଜନା ପାଇଁ ନିଜେ ଲଜ୍ଜିତା ହୋଇ ଉଠିଲା । କିଛିକ୍ଷଣ ନୀରବରେ ରହିବା ପରେ ଆପଣାକୁ ସଂଯତ କରି ନେଇ ଶେଷରେ ପ୍ରଶ୍ନ କଲା, ତୁମ ଦେହ କ'ଣ ସତରେ ଖରାପ ଥିଲା ?

: ସତ ନୁହେଁ ତ ଆଉ କ'ଣ ?

: ଯଦି ସତ ହୋଇଥାନ୍ତା, ତେବେ ଆମ ବସାକୁ ନ ଯାଇ ଆଶୁବାବୁଙ୍କ ବସାକୁ ଗଲ କାହିଁକି ? ତୁମର ଗୋଟାଏ କାର୍ଯ୍ୟ ମୋତେ କଷ୍ଟ ଦେଇଛି କିନ୍ତୁ ଅନ୍ୟଟା ମୋତେ ଅପମାନରେ ତଳତଳାନ୍ତ କରି ପକାଇଛି । ମୁଁ କଷ୍ଟ ପାଇଛି ଶୁଣି ତୁମେ ମନେ ମନେ ଖୁସି ହଉଥିବ ଜାଣେ, କିନ୍ତୁ ଏହି ଜାଣିବାଟା ହିଁ ମୋର ସାନ୍ତ୍ୱନା । ତୁମେ ଏତେ ନୀଚ ବୋଲି ହିଁ ମୁଁ କେବଳ ନିଜର ଦୁଃଖ ସହ୍ୟ କରିପାରିଲି ନଚେତ୍ କରି ପାରି ନ ଥାନ୍ତି ।

ଶିବନାଥ ନୀରବ ହୋଇ ରହିଲା । କମଳ ତା ମୁହଁକୁ ଅପଲକ ନେତ୍ରରେ ଚାହିଁ କହିଲି—ତୁମର ସବୁ କଥା ସହ୍ୟ କରି ପାରିଲି କିନ୍ତୁ ତୁମକୁ ସେମାନେ ଘରୁ ବାହାର କରି ଦେବାଟାକୁ ମୁଁ ସହ୍ୟ କରି ପାରିଲି ନାହିଁ । ସେଥିପାଇଁ ତୁମକୁ ସେବା କରିବା ପାଇଁ ଆସି ଥିଲି ସିନା କିନ୍ତୁ ମନ ଭୁଲାଇବା ପାଇଁ ନୁହେଁ ।

ଶିବନାଥ ଧୀରେ ଧୀରେ କହିଲା—ତୁମର ଏହି ଦୟା ପାଇଁ ମୁଁ କୃତଜ୍ଞ ଶିବାନୀ ।

: ତୁମେ ମୋତେ ଶିବାନୀ ବୋଲି ନ ଡାକି, କମଳ ବୋଲି ଡାକ ।

: କାହିଁକି ?

: ଶୁଣିଲେ ମୋର ଘୃଣା ଜାତ ହେଉଛି ।

: କିନ୍ତୁ ଦିନେ ତ ତୁମେ ଏହି ନାଆଁଟାକୁ ହିଁ ସବୁଠାରୁ ଭଲ ପାଉଥିଲ—କହି ସେ ଧୀରେ ଧୀରେ କମଳର ହାତଟିକୁ ନେଇ ନିଜ ହାତ ମୁଠାରେ ରଖିଲା । କମଳ ଚୁପ୍ ରହିଲା । ନିଜ ହାତକୁ ଟଣାଟଣି କରିବାକୁ କୁଣ୍ଠାବୋଧ କଲା ।

: ଚୁପ୍ ହୋଇ ରହିଲ ? ଉତ୍ତର ଦେଲ ନାହିଁ ଯେ ?

କମଳ ସେହିପରି ନିର୍ବାକ ହୋଇ ବସି ରହିଲା ।

: କ'ଣ ଭାବୁଚ କୁହତ ଶିବାନୀ ?

: କ'ଣ ଭାବୁଚ ଜାଣ ? ଭାବୁଛି, ମନୁଷ୍ୟ କେତେଦୂର ପାଷାଣ ହୋଇ ପାରିଲେ ଏପରି ଅତୀତର କଥାକୁ ମନେ ପକାଇ ଦେଇ ପାରେ ।

ଶିବନାଥର ଆଖି ଛଳ ଛଳେଇ ଉଠିଲା । କହିଲା—ପାଷାଣ, ମୁଁ ନୁହେଁ ଶିବାନୀ । ଦିନେ ତୁମର ଭୁଲ ତୁମେ ଜାଣି ପାରିବ । ସେଦିନ କିନ୍ତୁ ଅନୁତାପର ସୀମା ରହିବ ନାହିଁ । କାହିଁକି ଯେ ମୁଁ ଗୋଟାଏ ଅଲଗା ବସା ଭଡ଼ା ନେଇଛି··

: କିନ୍ତୁ ଅଲଗା ବସା ଭଡ଼ା କରିବାର କାରଣ ମୁଁ ତ ଆଦୌ ପଚ୍ଛୁରି ନାହିଁ ? ମୁଁ କେବଳ ଏତିକ ଜାଣିବା ପାଇଁ ଚାହିଁଥିଲି ଯେ, ତୁମେ ମୋତେ କାହିଁକି ଜଣାଇ କରି ଆସିଲ ନାହିଁ ? ମୁଁ ତ ତୁମକୁ ଦିନକ ପାଇଁ ସୁଦ୍ଧା ଧରି ରଖି ନଥାନ୍ତି ।

ଶିବନାଥ ଆଖିରୁ ଲୁହ ବହି ଚାଲିଲା । କହିଲା—ଜଣାଇବା ପାଇଁ ମୋର ସାହସ ହେଲା ନାହିଁ ଶିବାନୀ ।

: କାହିଁକି ?

ଶିବନାଥ କୁରୁଡା ଦେହରେ ଆଖି ପୋଛି କହିଲା—ଏକରେ ଟଙ୍କାର ଅନଟନ, ତାହା ସହିତ ପ୍ରତ୍ୟେକ ଦିନ ବାହାରକୁ ଯିବା ପାଇଁ ପଡ଼ିଲା—ପଥର କଟିବା ପାଇଁ, ଗୃହିଣୀ ଦେବା ପାଇଁ ଷ୍ଟେସନ ନିକଟରେ ଗୋଟାଏ କାଛି···

କମଳ ବଛଣାରୁ ଉଠି ଆସି ଦୂରରେ ଗୋଟିଏ ଚୌକିରେ ବସିଲା, କହିଲା—ମୋ ନିଜ ପାଇଁ ଆଉ ଦୁଃଖ ହେଉ ନାହିଁ । ହୁଏ ଆଉ ଜଣକ ପାଇଁ । କିନ୍ତୁ ଆଜି ତୁମ ପାଇଁ ହିଁ ଦୁଃଖ ହେଉଛି ଶିବନାଥ ବାବୁ ।

ଅନେକ ଦିନ ପରେ ପୁଣି ସେ ତାକୁ ନାଆଁ ଧରି ଡାକିଲା । କହିଲା ଦେଖ, ନିଜର କାମୀକୁ ମୂଳଧନ କରି ସଂସାରରେ ବାଣିଜ୍ୟ କରାଯାଏ ନାହିଁ । ମୋ ସଙ୍ଗରେ ହୁଏତ ତୁମର ଆଉ ଦେଖା ହୋଇ ନ ପାରେ କିନ୍ତୁ ମୁଁ ତୁମର ମନେ ପଡ଼ୁଥିବ । ଯାହା ହେବାର କଥା ତାହା ତ ହୋଇ ଯାଇଛି । ତାହା ଆଉ ତ ଫେରିବ ନାହିଁ । କିନ୍ତୁ ଭବିଷ୍ୟତରେ ଜୀବନକୁ ଆଉ ଗୋଟିଏ ଦିଗରୁ ଦେଖିବା ପାଇଁ ଚେଷ୍ଟା କରିବ ହୁଏତ ସୁଖୀ ହୋଇ ପାରିବ । ମୋ ସୁନ ଟା ପରି ଭୁଲିବ ନାହିଁ । ତୁମର ଭଲ ହେଉ, ତୁମେ ଭଲରେ ରହ, ଏକଥା ମୁଁ ପ୍ରକୃତରେ ଆଜି ମଧ୍ୟ ଚାହୁଁଛି ।

କମଳ କଷ୍ଟରେ ଅଶ୍ରୁ ସମ୍ବରଣ କଲା । ଆଶୁବାବୁ କାହିଁକି ଯେ ତାଙ୍କୁ ତଡ଼ି ଦେଲେ, କ'ଣ ଯେ ଏହାର ପ୍ରକୃତ କାରଣ ଏତେ କଥାବାର୍ତ୍ତା ପରେ ସୁଦ୍ଧା ସେହି କଥା ପର୍ଯ୍ୟନ୍ତ ସେ ଶିବନାଥକୁ ଆଘାତ ଦେଇ ପାରିଲା ନାହିଁ ।

ବାହାରେ ପାଦ-ଗାଡ଼ିର ଘଣ୍ଟି ଶବ୍ଦ ଶୁଣାଗଲା । ଶିବନାଥ କୌଣସି କଥା ନ କହି ପୁଣି କଡ଼ ଲେଉଟାଇ ଶୋଇଲା ।

ଘର ଭିତରେ ପଶି ରାଜେନ୍ ଚୁପ୍ ଗଳାରେ କହିଲା—ପ୍ରକୃତରେ ତ ଆପଣ ରାତିଜାଗର ହୋଇ ବସି ରହିଛନ୍ତି ଦେଖୁଛି । ରୋଗୀ କିପରି ? ଔଷଧ ପ୍ରଭୃତି କିଛି ଖାଇଲେଣି କି ?

କମଳ ମୁଣ୍ଡ ହଲାଇ କହିଲା—ନା, ଆଉ କିଛି ଖାଇ ନାହିଁ ।

ରାଜେନ ଅଙ୍ଗୁଳି ଦ୍ୱାରା ସଙ୍କେତ ଦେଇ ଧୀରେ ଧୀରେ କହିଲା—ନିଦ ଭାଙ୍ଗି-ଯିବ ।

: ନା, କିନ୍ତୁ ତୁମ ଲୋକମାନଙ୍କର କ'ଣ ଖବର ?

: ସେମାନେ ଭଲ ଲୋକ । କଥା ମାନିଛନ୍ତି । ମୋ ଯିବା ଆଗରୁ ଯମରାଜାଙ୍କ ମହିଷ ଆସି ଦୁଇଟା ଆତ୍ମାକୁ ନେଇ ଯାଇଛି । ସକାଳେ ମଡ଼ା ଦୁଇଟାକୁ ମୁନିସିପାଲିଟିର ମହିଷମାନଙ୍କୁ ଦେଇ ପାରିଲେ ନିସ୍ତାର ମିଳିବ । ଆହୁରି ଆଠଜଣ ପଡ଼ିଛନ୍ତି । କାଲି ସେମାନେ ଆପଣଙ୍କୁ ନେଇ ବୁଲାଇ ଆଣିବ । ଆଶାକରେ ପ୍ରଚୁର ଜ୍ଞାନ ଲାଭ କରିବେ । କିନ୍ତୁ ଆରାମ ଚୌକି ଉପରେ ମୋ ପାଇଁ କରିଥିବା ବିଛଣାଟି କାହିଁ ? କଣ ଭୁଲିଯାଇଛନ୍ତି ?

କମଳ ବହିଟା ପାଶଦେଲା । ଆଃ—ବଞ୍ଚିଗଲି କହି ଦୀର୍ଘନିଃଶ୍ୱାସ ଛାଡ଼ି, ଆରାମ ଚୌକିର ହାତ ଉପରେ ଦୁଇ ପାଦକୁ ମେଲାଇ ଦେଇ ରଞ୍ଜନ ଶୋଇ ପଡ଼ିଲା । କହିଲା, ଚାଲି ଚାଲି ଆସିବାରୁ ଝାଳ ବହୁଛି । ପଙ୍ଖା, ଫଙ୍ଖା କିଛି ଅଛିକି ?

କମଳ ହାତରେ ପଙ୍ଖାଟିଏ ଧରି ଚୌକିଟାକୁ ତା ମୁଣ୍ଡ ପାଖକୁ ଟାଣି ନେଇ କହିଲା, ମୁଁ ବିଞ୍ଚୁଛି । ତୁମେ ଶୋଇପଡ଼ । ରୋଗୀ ପାଇଁ ଚିନ୍ତିତ ହେବାର ଦରକାର ନାହିଁ । ସେ ଭଲ ଅଛନ୍ତି ।

: ବାଃ, ମନ୍ଦ ଉପରୁ ସୁ ଖବର । କହି ସେ ଆଖି ବୁଜିଲା ।

ଇନ୍‌ଫ୍ଲୁଏଞ୍ଜା ଏ ଦେଶରେ ନୂତନ ବ୍ୟାଧି ନୁହେଁ । 'ଡେଙ୍ଗୁ' ବୋଲି ମନୁଷ୍ୟମାନେ ତାକୁ କେତେକାଂଶରେ ଅବଜ୍ଞା ଓ ଉପହାସ କରିଥାନ୍ତି । ଦୁଇ ତିନିଦିନ ଦୁଃଖ ଦେବା ବ୍ୟତୀତ ତାହାର କୌଣସି ଗମ୍ଭୀର ଉଦ୍ଦେଶ୍ୟ ନ ଥାଏ । ଏହା ହିଁ ଥିଲା ଲୋକମାନଙ୍କର ଧାରଣା । କିନ୍ତୁ ହଠାତ୍ ଏପରି ଦୁର୍ନିବାର ମହାମାରୀ ରୂପେ ତାହା ଯେ ଦେଖା ଦେଇ ପାରେ ଏହା କେହି କଳ୍ପନା କରି ନ ଥିଲେ । ସୁତରାଂ ଏଥର ଅକସ୍ମାତ ଏହାର ଅପରିମେୟ ଶକ୍ତିର ସୁନିର୍ଦ୍ଦିଷ୍ଟ କଠୋରତା ଦ୍ୱାରା ପ୍ରଥମେ ଲୋକମାନେ ବୁଦ୍ଧି ଜ୍ଞାନ ହରାଇ ବସିଲେ, ତାପରେ ଯେ ଯୁଆଡ଼େ ପାଇଲେ ପଳାଇବାକୁ ଲାଗିଲେ । ପର-ଆପଣା କିଛି ପ୍ରଭେଦ ରହିଲା ନାହିଁ । ରୋଗ ସମୟରେ ସେବା କରିବା ପାଇଁ ଏବଂ ମୃତ୍ୟୁକାଳରେ ମୁହଁରେ ଟୋପିଏ ପାଣି ଦେବା ପାଇଁ ଲୋକଟିଏ ମଧ୍ୟ ଅନେକଙ୍କ ଭାଗ୍ୟରେ ଜୁଟିଲା ନାହିଁ । ସହର ଏବଂ ପଲ୍ଲୀ ସର୍ବତ୍ର ଏକ ଦଶା । ଅ:ଗ୍ରା ଅଦ୍ଧୁତ୍ରେ ମଧ୍ୟ ଏହା ଅନ୍ୟଥା ହେଲା ନାହିଁ । ଏହି ସମୃଦ୍ଧ ଜନବହୁଳ ପ୍ରାଚୀନ ନଗରୀର ମୂର୍ତ୍ତି ଯେପରି ଦିନ କେତୋଟା ଭିତରେ ସମ୍ପୂର୍ଣ୍ଣ ବଦଳି ଗଲା । ସ୍କୁଲ କଲେଜ ବନ୍ଦ । ହାଟ ବଜାରରେ ଦୋକାନ ସବୁ ବନ୍ଦ । ନଗରୀର ଶ୍ମଶାନ୍ । କେବଳ ହିନ୍ଦୁ ଏବଂ ମୁସଲମାନ ଶବବାହକମାନଙ୍କର ତ୍ରସ୍ତ ଶଙ୍କାକୁଳ ପଦପାତ ବ୍ୟତୀତ ରାଜପଥ ନିଃଶବ୍ଦ ଏବଂ ଜନଶୂନ୍ୟ । ଯେ କୌଣସି ଆଡ଼କୁ ଚାହିଁଲେ ମନେହୁଏ କେବଳ ମନୁଷ୍ୟ ନୁହଁନ୍ତି, ଗଛବୃଛ, ଘର-ଦୁଆରର ଚେହେରା ପର୍ଯ୍ୟନ୍ତ ଯେପରି ଭୟରେ ବିବର୍ଣ୍ଣ ହୋଇ ଉଠିଛି । ଏପରି ଯେତେବେଳେ ସହରର ଅବସ୍ଥା, ସେତେବେଳେ ଚିନ୍ତା, ଶୋକ, ଓ ଦୁଃଖର ଦହନରେ ଅନେକଙ୍କ ସହ ଅନେକଙ୍କର ପ୍ରାୟ ଏକ ପ୍ରକାର ରଫା ହୋଇ ଯାଇଛି । ଚେଷ୍ଟା କରି, ଆଲୋଚନା କରି, ମଧ୍ୟସ୍ଥ ଜରିଆରେ କଥାବାର୍ତ୍ତା ନ କରି ଯେପରି ଆପଣାର ହୋଇ

ମାଉଛନ୍ତି । ଆଜି ମଧ୍ୟ ଯେଉଁମାନେ ନଷ୍ଟ ରହିଛନ୍ତି, ବର୍ତ୍ତମାନ ଯୁଦ୍ଧ ଧ୍ୱଂସ ସ୍ତୂପରୁ ନିର୍ଲିପ୍ତ ହୋଇନାହାନ୍ତି ସେମାନେ ପ୍ରତ୍ୟେକର ପରମ ଆତ୍ମୀୟ । ବହୁଦିନ ଧରି ଯେଉଁଠାରେ ବାକ୍ୟାଳାପ ବନ୍ଦ ଥିଲା, ହଠାତ୍ ବାଟରେ ଦେଖାହେବା ମାତ୍ରେ ଉଭୟଙ୍କ ଆଖି ଲୁହରେ ଛଳଛଳ ହୋଇ ଉଠିଛି । କାହାର ଭାଇ, କାହାର ପୁଅ କନ୍ୟା, କାହାର ସ୍ତ୍ରୀ ଏହା ଭିତରେ ମରିଯାଇଛନ୍ତି । ରାଗିକରି ମୁହଁ ବୁଲାଇ ନେବାର ଶକ୍ତି ଆଉ ମନରେ ନାହିଁ । କେଉଁଠି କଥା ହୋଇଛନ୍ତି, କେଉଁଠାରେ ସେତକ ମଧ୍ୟ ହୋଇ ନାହାନ୍ତି—ନୀରବରେ ପରସ୍ପରର କଲ୍ୟାଣ କାମନା କରି ବିଦାୟ ନେଇଛନ୍ତି ।

ମୋଟ ପଡ଼ାରେ ଆଉ ବେଶୀ ଲୋକ ନାହାଁନ୍ତି । ଯେତେ ମରିଛନ୍ତି ସେତିକି ପଳାଇଛନ୍ତି । ଅବଶିଷ୍ଟ ମାନଙ୍କ ପାଇଁ ଏକା ରାଜେନ ହିଁ ଯଥେଷ୍ଟ । ସେମାନଙ୍କର ଗତି ମୁକ୍ତିର ଦାୟିତ୍ୱ ସେ ହିଁ ଗ୍ରହଣ କରିଛି । ସହକାରିଣୀ ଭାବରେ କମଳ ଯୋଗ ଦେବା ପାଇଁ ଆସିଥିଲା । ପିଲାବେଳେ ଗୁହ୍ଲା ଦୋକାନରେ ଯେ ପୀଡ଼ିତମାନଙ୍କର ସେବା କରିଥିଲା, ତାହା ହିଁ ଥିଲା ତାର ଭରସା । କିନ୍ତୁ ଦୁଇଦିନ ପରେ ସେ ଜାଣିପାରିଲା ସେହି ସମ୍ବଳ ଏଠାରେ କିଛି ଚଳିବ ନାହିଁ । ମୋଟମାନଙ୍କର ସେ କି ଅବସ୍ଥା ! ଭାଷାରେ ବର୍ଣ୍ଣନା କରି ବିବରଣ ଦେବାକୁ ଯିବା ବୃଥା । କୁଡ଼ିଆଗୁଡ଼ିକରେ ପାଦଦେବା ମାତ୍ରେ ସର୍ବାଙ୍ଗରେ ଯେପରି କଣ୍ଟା କିଏ ଫୋଡ଼ି ପକାଏ । କେଉଁଠାରେ ଠିଆ ହେବ ପାଇଁ କିମ୍ବା ବସିବା ପାଇଁ ସ୍ଥାନ ନାହିଁ । ଆବର୍ଜ୍ଜନା ଯେ କି ରୂପରେ ଉପ୍ଥାବନ୍ଧ ହୋଇପାରେ ଏଠାକୁ ଆସିବା ପୂର୍ବରୁ କମଳ ଜାଣି ନ ଥିଲା । ଅଥଚ ଏହି ସମସ୍ତଙ୍କ ମଝିରେ ଦିନରାତି ପଡ଼ିରହି କିଭଳି ଯେ ରୋଗୀମାନଙ୍କର ସେବା କରିବା ସମ୍ଭବପର ହୋଇପାରିବ, ସେହି କଳ୍ପନାକୁ ସେ ମନରେ ସ୍ଥାନ ଦେଇପାରିଲା ନାହିଁ । ବସ୍ତୁତ ବଡେଇ ଦେଖାଇ ସେ କହି ଆସିଥିଲା ଯେ, ଦୁଃସାହସିକତାରେ ସେ କାହା ତୁଳନାରେ ନ୍ୟୂନ ନୁହେଁ । ଜଗତରେ କାହାକୁ ସେ ଭୟ କରେ ନାହିଁ, ଏପରିକି ମୃତ୍ୟୁକୁ ମଧ୍ୟ ନୁହେଁ । ନିହାତି ମିଛକଥା ସେ କହେ ନାହିଁ । କିନ୍ତୁ ଏଠାକୁ ଆସି ବୁଝି ପାରିଲା ତାର ମଧ୍ୟ ସୀମା ଅଛି । ଦିନକେତେଟା ପରେ ଭୟରେ ତା ଦେହର ରକ୍ତ ଶୁଖିଯିବାକୁ ଆରମ୍ଭ କଲା । ତଥାପି ସମ୍ପୂର୍ଣ୍ଣ ଦିଆଲିଆ ହୋଇ ଘରକୁ ଫେରିବାର ପ୍ରାକ୍ କାଳରେ ରାଜେନ୍ ତାକୁ ଆଶ୍ୱାସନା ଦେଇ ବାରମ୍ବାର କହିବାକୁ ଲାଗିଲା ଏପରି ନିର୍ଭୀକତା ମୁଁ ଜନ୍ମ ହେଲା ଦିନରୁ କାହାଠାରେ ଦେଖି ନାହିଁ । ଅସଲ ଝିଅର ଆଳମ୍ଭଟାକୁ ଆପଣ ସମ୍ଭାଳି ଦେଇ ଚାଲିଗଲେ । କିନ୍ତୁ ଆଉ ଆବଶ୍ୟକ ନାହିଁ । ଆପଣ ବସାକୁ ଫେରିଯାଇ ଦିନକେତେଟା ବିଶ୍ରାମ କରନ୍ତୁ । ଆପଣ ଏମାନଙ୍କର ଯେଉଁ ସେବା କରି ଗଲେ ସେମାନେ ତାହାକୁ ଜୀବନସାରା ଭୁଲି ପାରିବେ ନାହିଁ ।

: ଆଉ ତୁମେ ?

: ଏଇ କେତେଟାଙ୍କୁ ପାର କରାଇ ଦେଇ ମୁଁ ମଧ୍ୟ ପଳାଇବି । ନ ହେଲେ କ'ଣ ମରିବି ବୋଲି ଭାବୁଛ ?

କମଳ ଉତ୍ତର ଖୋଜି ପାଇ ପାରିଲା ନାହିଁ । ମୁହୂର୍ତ୍ତକ ପାଇଁ ଚାହିଁ ରହି ନୀରବରେ ଚାଲି ଆସିଲା । କିନ୍ତୁ ତାହା ବୋଲି ଏପରି ନୁହେଁ ଯେ ସେ ଏଇ କେତେ-ଦିନ ବସାକୁ ଆସି ପାରିନାହିଁ । ରାନ୍ଧିକରି ସାଙ୍ଗ ହୋଇ ଖାଇବା ଧରି ଯିବା ପାଇଁ ପ୍ରତ୍ୟହ ଥରେ କରି ତାକୁ ବସାକୁ ଆସିବାକୁ ପଡ଼ୁଥାଏ । କିନ୍ତୁ ଆଜି ସେହି ଭୟଙ୍କର ସ୍ଥାନକୁ ଆଉ ଫେରି ଯିବାକୁ ପଡ଼ିବ ନାହିଁ ଭାବି କମଳ ଏକ ଦିଗରେ ଯେପରି ସ୍ୱସ୍ତି ଅନୁଭବ କଲା, ଅନ୍ୟ ଦିଗରେ ସେହିପରି ଅବ୍ୟକ୍ତ ଉଦ୍‌ବେଗରେ ତା ମନ ଭରି ଉଠିଲା । ଆସିବାବେଳେ ସେ ରାଜେନର କଥାଟା ପଚାରି ଆସିବା ପାଇଁ ଭୁଲି ଯାଇ ଥିଲା । କିନ୍ତୁ ଏହି ତ୍ରୁଟି ସେପଟେ ହେଉ ନା କାହିଁକି, ସେଇଁଠାରେ ସେ ତାକୁ ରଖି ଚାଲି ଆସିଲା ତାହାର ସମତୁଲ୍ୟ ବିପଦଜନକ ସ୍ଥାନ ଆଉ କିଛି ଅଛି କି ନାହିଁ ତାର ମନେ ପଡ଼ିଲା ନାହିଁ ।

ସ୍କୁଲ କଲେଜ ବନ୍ଦ ହେବାର ସମସ୍ତ ହେବା ଷଣି ହରେନ୍ଦ୍ରର ବ୍ରହ୍ମଚର୍ଯ୍ୟାଶ୍ରମ ମଧ୍ୟ ବନ୍ଦ ହୋଇ ଯାଇଛି ।

ବ୍ରହ୍ମଚାରୀ ବାଳକମାନଙ୍କୁ କୌଣସି ନିରାପଦ ସ୍ଥାନରେ ପହଞ୍ଚାଇ ଦେବା ପାଇଁ ଏବଂ ସେମାନଙ୍କର ତତ୍ତ୍ୱ ନେବା ପାଇଁ ସତୀଶ ସଙ୍ଗରେ ଯାଇଛି । ହରେନ୍ଦ୍ର ନିଜେ ଯାଇ ପାରି ନାହିଁ, ଅବିନାଶ ବାବୁଙ୍କର ଅସୁସ୍ଥତା ପାଇଁ । ଆଜି ସେ କମଳ ପାଖରେ ଉପସ୍ଥିତ ହେଲା । ନମସ୍କାର କରି କହିଲା—ପାଞ୍ଚ, ଛଅ ଦିନ ହେବ ରୋଜ ଆସୁଛି, ଆପଣଙ୍କ ସାକ୍ଷାତ୍ ପାଇ ପାରୁ ନାହିଁ । କେଉଁଠି ଥିଲେ ?

କମଳ ମୋଚୀମାନଙ୍କ ବସ୍ତିରେ ଥିଲା ବୋଲି କହିବାରୁ ହରେନ୍ଦ୍ର ଅତିଶୟ ବିସ୍ମିତ ହୋଇ କହିଲା—ସେଠାରେ ! ସେଠାରେ ତ ଅନେକ ଲୋକ ମରୁଛନ୍ତି ବୋଲି ଶୁଣୁଛି । ଆପଣଙ୍କୁ ଏ ଧନ୍ଦାରେ କିଏ ପୂରାଇଲା ? ସେ ଯାହା ହୋଇଥାଉ ପଛକେ ଆପଣ କିନ୍ତୁ ଭଲ କାମ କରୁ ନାହାନ୍ତି ।

: କାହିଁକି ?

: କାହିଁକି କ'ଣ ? ସେଠାକୁ ଯିବା ମାନେ ତ ପ୍ରାୟ ଆତ୍ମହତ୍ୟା କରିବା ସଙ୍ଗେ ସମାନ । ବରଞ୍ଚ ଆମେମାନେ ଭାବିଥିଲୁ ଶିବନାଥ ବାବୁ ଆଗ୍ରା ଛାଡ଼ି ଚାଲିଯିବା ପରେ ଆପଣ ବୋଧହୁଏ ଅନ୍ୟତ୍ର ଚାଲି ଯାଇଛନ୍ତି । ଅବଶ୍ୟ ଦିନ କେତୋଟା ପାଇଁ ନଚେତ୍ ବସାଟା ରଖି ଯାଇଥାନ୍ତେ କାହିଁକି ? ଆଚ୍ଛା, ରାଜେନ୍‌ର ଖବର କିଛି ଜାଣିଛନ୍ତି ? ସେ କ'ଣ ଏଇ ସହରରେ କେଉଁଠି ଅଛି ନା ଆଉ କୁଆଡ଼େ ଚାଲି ଯାଇଛି ? ହଠାତ୍ ଏପରି ଗୋଟାଏ ଡୁବ୍ ମାରିଛି ଯେ ଖୋଜି ଖୋଜି ତା ପତ୍ତା ମିଳୁ ନାହିଁ ।

: ତାଠାରେ କ'ଣ ଆପଣଙ୍କର ବିଶେଷ ପ୍ରୟୋଜନ ?

: ନା, ପ୍ରୟୋଜନ କହିଲେ ସଚରାଚର ଲୋକ ଯାହା ବୁଝିଥାନ୍ତି ତାହା ନୁହେଁ । ତଥାପି ମଧ୍ୟ ପ୍ରୟୋଜନ କହିଲେ ଚଳିବ, କାରଣ ମୁଁ ଯଦି ତାର ସନ୍ଧାନ ନେବା ବନ୍ଦ କରିଦିଏ ତେବେ ଏକା ପୁଲିସ ଛଡ଼ା ତାର ଆଉ ଆତ୍ମୀୟ ବୋଲି କେହି ନାହାଁନ୍ତି । ମୋର ବିଶ୍ୱାସ ଆପଣ ଜାଣନ୍ତି ସେ କେଉଁଠି ଅଛି ?

: ଜାଣେ । କିନ୍ତୁ ଆପଣଙ୍କୁ ଜଣାଇ ଲାଭ ନାହିଁ । ଘରୁ ଯାହାକୁ ତଡ଼ି ଦେଇଛନ୍ତି, ବାହାରେ ସେ ଯାଇ କେଉଁଠି ରହୁଛି ସେ ବିଷୟରେ ସନ୍ଧାନ ନେବାଟା କେବଳ ଅଯଥା କୌତୂହଳ ।

ହରେନ୍ଦ୍ର କିଛି ସମୟ ଚୁପ୍ ରହିବା ପରେ କହିଲା—କିନ୍ତୁ ସେଇଟା ମୋ ଘର ନୁହେଁ । ଆମମାନଙ୍କର ଆଶ୍ରୟ ସ୍ଥଳ । କିନ୍ତୁ ସେଠାରେ ତାକୁ ଯେ ସ୍ଥାନ ଦେଇ ପାରି ନାହିଁ ସେଥିପାଇଁ ଅନ୍ୟ ଲୋକଙ୍କଠୁ ଅଭିଯୋଗ ଶୁଣିବାଟାକୁ ମୁଁ ସହ୍ୟ କରିପାରେ ନା । ହଉ, ମୁଁ ଯାଉଛି । ଏହା ପୂର୍ବରୁ ଅନେକ ବାର ତାକୁ ଖୋଜି ଖୋଜି ବାହାର କରିଛି । ଏଥର ମଧ୍ୟ ବାହାର କରିପାରିବି । ଆପଣ ତାକୁ କିନ୍ତୁ ଲୁଚାଇ ରଖି ପାରିବେ ନାହିଁ ।

ତା କଥା ଶୁଣି କମଳ ହସି ପକାଇ କହିଲା—ତାକୁ କ'ଣ ଲୁଚାଇ ରଖି ପାରିବି ହରେନ୍ ବାବୁ ? ଆଉ ଲୁଚାଇ ରଖି ପାରିଲେ କ'ଣ ମୋ ଦୁଃଖ ଘୁଞ୍ଚିବ ବୋଲି ଆଶା ଆପଣ କରୁଛନ୍ତି ?

ହରେନ୍ ନିଜେ ମଧ୍ୟ ହସି ପକାଇଲା । କିନ୍ତୁ ସେ ହସର ଚାରି ପାଖରେ ଅନେକ କିଛି ଫାଙ୍କ ରହିଗଲା । କହିଲା—ମୋ ଛଡ଼ା ଏ ପ୍ରଶ୍ନର ଉତ୍ତର ଦେବାଭଳି ଲୋକ ଏଇ ଆଗ୍ରାରେ ଅନେକ ଅଛନ୍ତି । ସେମାନେ କ'ଣ କହିବେ ଜାଣନ୍ତି ? କହିବେ—କମଳ ଭଳି ମଣିଷର ଦୁଃଖ ତ ଗୋଟାଏ ନୁହେଁ ଅନେକ । ତାର ପ୍ରକୃତି ମଧ୍ୟ ଅଲଗା, ଏବଂ ସେହି ଦୁଃଖକୁ ଘୁଞ୍ଚାଇବାର ପନ୍ଥା ମଧ୍ୟ ବିଭିନ୍ନ । ସୁତରାଂ ତା ସହିତ ଯଦି ସାକ୍ଷାତ ହୁଏ ତେବେ ଆଲୋଚନା ଦ୍ୱାରା ସେ ଗୋଟାଏ କିଛି ମାର୍ଗ ବତାଇ ଦେଇଥାଏ । ଏତିକି କହି ସେ ଟିକଏ ଅଟକି ଯାଇ କହିଲା—କିନ୍ତୁ ପ୍ରକୃତରେ ଆପଣଙ୍କର ଭୁଲ ହୋଇଛି । ମୁଁ କିନ୍ତୁ ସେ ଦଳରେ ନାହିଁ । ଅଯଥା ଆପଣଙ୍କୁ ଉତ୍ୟକ୍ତ କରିବା ପାଇଁ ମୁଁ ଆସିନାହିଁ । କାରଣ ସଂସାରରେ ଯେତେ ଲୋକ ଆପଣଙ୍କୁ ଶ୍ରଦ୍ଧା କରନ୍ତି, ମୁଁ ହେଉଛି ସେମାନଙ୍କ ଭିତରୁ ଜଣେ ।

କମଳ ତା ମୁହଁକୁ ଚାହିଁ ଧୀରେ ଧୀରେ ପଚାରିଲା—ଆପଣ ମୋତେ ପ୍ରକୃତରେ ଶ୍ରଦ୍ଧା କରନ୍ତି କେଉଁ କାରଣରୁ ? ମୋର ମତ ଏବଂ ଆଚରଣ କେଉଁଟା ସହିତ ଆପଣଙ୍କର ତ ମେଳ ନାହିଁ ।

: ନା, ନାହିଁ । କିନ୍ତୁ ତଥାପି ମଧ୍ୟ ଗଭୀର ଶ୍ରଦ୍ଧା କରେ । ଆଉ ଏହି ଆଶ୍ଚର୍ଯ୍ୟ କଥାଟାକୁ ହିଁ ମୁଁ ଆପଣା ମନକୁ ମନ ବାରମ୍ବାର ପ୍ରଶ୍ନ କରେ ।

: କୌଣସି ଉତ୍ତର ଯାଇ ଧାର ନାହିଁ ?

: ନା, କିନ୍ତୁ ଭରସା ହୁଏ ବନେ ନିଶ୍ଚୟ ପାଇ ପାରିବ । ସାମାନ୍ୟ **ଅଟକି ଯାଇ ପୁଣି କହିଲା**—ଆପଣଙ୍କ ଇତିହାସରୁ କେତେକାଂଶ ଆପଣଙ୍କ ମୁହଁରୁ ଶୁଣିଛି । **କେତେକ** ଅଜିତ୍ ବାବୁଙ୍କ ନିକଟରୁ ଶୁଣିଛି । ଜାଣେନ୍ତି ବୋଧହୁଏ, ସେ ଆମ ଆଶ୍ରମରେ ଯାଇ ଅଛନ୍ତି ।

କମଳ ମୁଣ୍ଡ ହଲାଇ କହିଲା—ଏ ସମ୍ବାଦ ତ ଆଗରୁ ଦେଇଛନ୍ତି ।

: ଆପଣଙ୍କ ଜୀବନ ଇତିହାସର ବିଚିତ୍ର ଅଧ୍ୟାୟ ଗୁଡ଼ିକ ଏପରି ଅବସ୍ଥାରେ ଆସି ପହଞ୍ଚିଲାଣି ଯେ ତା ବିରୁଦ୍ଧରେ କିଛି ମନ୍ତବ୍ୟ ଦେବାକୁ ଭୟ ହୁଏ । ଏତେ ଦିନ ଧରି ଯାହା କିଛି ମନ୍ଦ ବୋଲି ବିଶ୍ୱାସ କରିବା ଶିଖିଛି, ଆପଣଙ୍କ ଜୀବନଟା ଯେପରି ତାହାର ପ୍ରତିବାଦ ପାଇଁ ମାମଲା ରୁଜୁ କରି ବସିଛି । ଏହାର ବିଚାରକ କେଉଁଠି ମିଳି ପାରିବେ, କେବେ ମିଳିବେ, ତାହାର ଫଳ ମଧ୍ୟ କ'ଣ ହେବ ଜାଣି ନାହିଁ । କିନ୍ତୁ ଏପରି ନିର୍ଭୟ ଭାବରେ ଯିଏ ଆସିପାରିଲା, ଏବଂ ଯାହା ପାଖରେ ଅବଗୁଣ୍ଠନର କୌଣସି ଆବଶ୍ୟକତା ନାହିଁ ତାକୁ ଶ୍ରଦ୍ଧା ନ କରି, ଆଉ କରିଯାଇ ପାରେ କାହାକୁ ?

: ନିର୍ଭୟ ଭାବରେ ଠିଆ ହୋଇ ପାରିବାଟା କ'ଣ ବଡ଼ କାମ କି ? ଦୁଇ କାନ କଟାର ଗପ ଶୁଣି ନାହଁ ? ସେମାନେ ସଂସାର ମଝିରେ ଚାଲନ୍ତି । ଆପଣ ଦେଖି ନାହାନ୍ତି କିନ୍ତୁ ମୁଁ ଗୁହା ବଗିଚାର ସାହେବ ମାନଙ୍କୁ ଦେଖିଛି । ସେମାନଙ୍କର ନିର୍ଭୟ, ନିଃସଙ୍କୋଚ ବେହିସାବୀ ପଣିଆଁ ଜଗତର କୌଣସି ଲଜ୍ୟାକୁ ବାଦ୍ ଦେଇ ପାରେ ନାହିଁ । ସେମାନଙ୍କର ଦୁଃସାହସର ସୀମା ନାହିଁ । କିନ୍ତୁ ସେମାନେ କ'ଣ ମନୁଷ୍ୟ ମାନଙ୍କର ଶ୍ରଦ୍ଧାର ବସ୍ତୁ ?

ହରେନ୍ଦ୍ର ଏପରି ଭାବରେ ପ୍ରତ୍ୟୁତ୍ତର ଆଉ ଯାହା ନିକଟରୁ ହେଉ ପଛକେ କିନ୍ତୁ ଏହି ସ୍ତ୍ରୀ ଲୋକଟି ନିକଟରୁ ଆଶା କରି ନ ଥିଲା । ହଠାତ୍ କହିବା ପାଇଁ ଉତ୍ତର ଖୋଜି ନ ପାଇ ସେ କହିଲା—ତାହା ହେଉଛି ଭିନ୍ନ କଥା ।

: କିପରି ଜାଣିଲେ ଭିନ୍ନ କଥା ? ବାହାରୁ ମୋ ବାପାଙ୍କୁ ମଧ୍ୟ ଲୋକମାନେ ସେମାନଙ୍କ ଭିତରୁ ଜଣେ ବୋଲି ଭାବନ୍ତି । ଅଥଚ ମୁଁ ଜାଣେ ତାହା ସତ ନୁହେଁ । କିନ୍ତୁ ସତ ତ ମୋ ଜାଣିବା ଉପରେ ନିର୍ଭର କରେ ନାହିଁ । ଜଗତର ଲୋକଙ୍କ ନିକଟରେ ତାହାର ପ୍ରମାଣ କାହିଁ ?

ହରେନ୍ଦ୍ର ଏ ପ୍ରଶ୍ନର ମଧ୍ୟ ଉତ୍ତର ଦେଇ ନ ପାରି ନୀରବ ରହିଲା ।

କମଳ କହିବାକୁ ଲାଗିଲା—ମୋ ଇତିହାସ ଆପଣମାନେ ସମସ୍ତେ ଶୁଣିଛନ୍ତି । ଖୁବ ସମ୍ଭବ ସେ କାହାଣୀକୁ ପରମ ଆନନ୍ଦରେ ଉପଭୋଗ କରିଛନ୍ତି । କାର୍ଯ୍ୟ ଗୁଡ଼ିକ ମୋର ଭଲ କି ମନ୍ଦ, ଜୀବନଟା ମୋର ପବିତ୍ର କି କଳୁଷିତ ସେ ବିଷୟରେ ଆପଣମାନେ ନୀରବ । କିନ୍ତୁ ତାହା ଯେ ଗୋପନ ନ ହୋଇ ଲୋକଙ୍କ ଆଖି ଆଗରେ ସମସ୍ତଙ୍କୁ ଉପେକ୍ଷା

କରି ଘଟି ଚାଲିଛି ଏହା ହିଁ ହେଉଛି ମୋର ପ୍ରତି ଆପଣଙ୍କର ଶ୍ରଦ୍ଧାର ଆକର୍ଷଣ । ହରେନ ବାବୁ ପୃଥିବୀରେ ମଣିଷର ଶ୍ରଦ୍ଧା ମୁଁ ଏତେ ପାଇ ନାହିଁ ଯେ, ଅବହେଳା କରି ନାହିଁ ବୋଲି କହି ଅପମାନିତ କରି ପାରିବି । କିନ୍ତୁ ମୋ ବିଷୟରେ ଯେପରି ଆପଣ ଅନେକ କିଛି ଜାଣିଛନ୍ତି, ସେହିପରି ଏଇଟା ମଧ୍ୟ ଜାଣି ରଖନ୍ତୁ ଯେ ଅକ୍ଷୟବାବୁ ପ୍ରଭୃତିଙ୍କ ଶ୍ରଦ୍ଧା ଅପେକ୍ଷା ଏହି ଶ୍ରଦ୍ଧା ମୋତେ ପୀଡ଼ା ଦିଏ । ତାହା ମୋର ସହ୍ୟ ହୁଏ କିନ୍ତୁ ଆପଣଙ୍କର ଏହି ବୋଝ ମୋ ପକ୍ଷରେ ଦୁଃସହ ।

ହରେନ୍ଦ୍ର ଆଘାତ ପାଇ କ୍ଷଣକାଳ ନୀରବ ରହିଲା । କମଳର ବାକ୍ୟ, ବିଶେଷତଃ ତା କଣ୍ଠସ୍ୱରର ଶାନ୍ତ ଓ କଠୋରତା ନେଇ ସେ ମନେ ମନେ ଅପମାନିତ ହୋଇ ଉଠିଲା । କିଛି ସମୟ ପରେ ପ୍ରଶ୍ନ କଲା—ମତ ଏବଂ ଆଚରଣର ଅନୈକ୍ୟ ସତ୍ତ୍ୱେ ମଧ୍ୟ ଯେ ଜଣକୁ ଶ୍ରଦ୍ଧା କରାଯାଇ ପାରେ, ଅନ୍ତତଃ ମୁଁ କରିପାରେ, ଏହା କ'ଣ ଆପଣଙ୍କର ବିଶ୍ୱାସ ହୁଏ ନାହିଁ ?

କମଳ ସେହିପରି ସହଜ ଭାବରେ ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲା—ବିଶ୍ୱାସ ହୁଏ ନାହିଁ ଏହା ତ ମୁଁ କହି ନାହିଁ ହରେନବାବୁ ! ମୁଁ କହୁଛି ଏ ଶ୍ରଦ୍ଧା ମୋତେ ପୀଡ଼ା ଦିଏ । ଏତିକି କହି ଟିକିଏ ଅଟକି ଯାଇ କହିବାକୁ ଲାଗିଲା —ମତ ଏବଂ ନୀତି ଦିଗରୁ ଅକ୍ଷୟ ବାବୁ ଓ ଆପଣଙ୍କ ଭିତରେ କୌଣସି ଫରକ ନାହିଁ । ତାଙ୍କର ବହୁ ସ୍ଥଳରେ ଅତ୍ୟଧିକ ରୂଢ଼ତା ନ ଥିଲେ ଆପଣମାନେ ସମସ୍ତେ ଏକ ଶ୍ରେଣୀର । ଅଶ୍ରଦ୍ଧା ଦିଗରୁ ମଧ୍ୟ ସମାନ । ମୁଁ ଯେ କେବଳ ମୋ ଲଜ୍ୟା ସଙ୍କୁଚିତ ହୋଇ ଘୂରି ବୁଲୁ ନାହିଁ ଏବଂ ମୋର ଏହି ସାହାସ ଟିକକ ଆପଣମାନଙ୍କର ସମାଜରୁ ଲାଭ କରି ପାରିଛି—ଏହାର ଦାମ୍ କେତେ ଅବା ହରେନବାବୁ ? ବରଞ୍ଚ ଭାବି ଦେଖିଲେ ମନରେ ବିତୃଷ୍ଣା ଆସେ ଯେ ଏଥି-ପାଇଁ ମୋତେ ଏତେଦିନ ଧରି ଆପଣ ବାହବା ଦେଇ ଆସିଥିଲେ ।

: ବାହାବା ଯଦି ଦେଇଥାଏ, ତେବେ ତାହା କ'ଣ ଅସଙ୍ଗତ ? ସାହସ ଜିନିଷଟା କ'ଣ ସଂସାରରେ କିଛି ନୁହେଁ ?

: ଆପଣଙ୍କ ସବୁ ପ୍ରଶ୍ନକୁ ଏକାଠି କରି ଏପରି ଏକାନ୍ତ କରି ପଚାରୁଛନ୍ତି କାହିଁକି ? କିଛି ନୁହେଁ ବୋଲି ତ କହି ନାହିଁ । ମୁଁ କହୁଛି—ଏ ବସ୍ତୁ ସଂସାରରେ ଦୁର୍ଲ୍ଲଭ ଏବଂ ଦୁର୍ଲ୍ଲଭ ବୋଲି ତ ଆଖିରେ କୁହୁକ ଲଗାଇ ଦିଏ । କିନ୍ତୁ ଏହାଠାରୁ ମଧ୍ୟ ବଡ଼ ବସ୍ତୁ ଅଛି । ତାହାକୁ ଦେଖିଲେ ହଠାତ୍ ତାକୁ ସାହସର ଅଭାବ ବୋଲି ଭାବିବାକୁ ପଡ଼େ ।

ହରେନ୍ଦ୍ର ମୁଣ୍ଡ ହଲାଇ କହିଲା—ବୁଝି ପାରିଲି ନାହିଁ । ଆପଣଙ୍କର ଅନେକ କଥା ଅନେକ ସମୟରେ ପିଲିକିଆ ଭଳି ଲାଗେ କିନ୍ତୁ ଆଜିକାଲି କଥାଗୁଡ଼ିକ ଯେପରି ସେସବୁକୁ ଟପି ଗଲାଣି । ମନେହେଉଛି ଆଜି ଯେପରି ଆପଣ ଅତ୍ୟନ୍ତ ବିମନା । କାହିଁ ଉତ୍ତର କାହାକୁ ଦେଇ ଚାଲିଛନ୍ତି ତାର ଖିଆଲ ବୋଧହୁଏ ଆପଣଙ୍କର ନାହିଁ ।

: ତାହା ତ ସତ । ଆଜିକାଲି ମନ ସ୍ଥିର କରି କହିବା ବଡ଼ କଷ୍ଟ । ପ୍ରକୃତ ଶ୍ରଦ୍ଧା ପାଇବା ଯେ କି ଜିନିଷ ତାହା ଏ ପର୍ଯ୍ୟନ୍ତ ଜାଣିପାରିଲି ନାହିଁ । ସେଦିନ ହଠାତ୍ ଯେପରି ଚମକି ଉଠିଲି । ହରେନ ବାବୁ ଆପଣ ଦୁଃଖ କରିବେ ନାହିଁ, କିନ୍ତୁ ତାର ସଙ୍ଗେ ତୁଳନା କଲେ ଆଜି ଆଉ ସବୁ ପରିହାସ ପରି ମନେହୁଏ । କହୁ କହୁ ତା ଆଖିର ପ୍ରଖର ଦୃଷ୍ଟି ଗ୍ଲାସ୍ପାଚ୍ଛନ୍ନ ହୋଇ ଉଠିଲା ଏବଂ ସମଗ୍ର ମୁଖମଣ୍ଡଳରେ ଏପରି ଗୋଟାଏ ସ୍ନିଗ୍ଧ ସଜଳତା ଖେଳି ଉଠିଲା ଯେ ଯେଉଁ ମୂର୍ତ୍ତିଟିକୁ ହରେନ୍ଦ୍ର ଆଗରୁ କେବେ ଦେଖି ନ ଥିଲା । ତାର ସଂଶୟ ମାତ୍ର ରହିଲା ନାହିଁ ଯେ, ଆଉ ଅନ୍ୟ କାହାକୁ ଉଦ୍ଦେଶ୍ୟ କରି କମଳ ଏହାସବୁ କହୁଛି । ସେ ହିଁ କେବଳ ଉପଲକ୍ଷ । ଏଥିପାଇଁ ତାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ କଥା ପିଲାଳିଆ ଭଳି ମନେହୋଇଛି ।

କମଳ କହିବାକୁ ଲାଗିଲା—ଆପଣ ଏଇମାତ୍ର ମୋର ଦୁର୍ମଦ ନାସ୍ତିକତାର ପ୍ରଶଂସା କରୁଥିଲେ—ଭଲକଥା, ଶୁଣିଛନ୍ତି ଶିବନାଥ ମୋତେ ଛାଡ଼ି ଚାଲି ଯାଇଛନ୍ତି ?

ହରେନ୍ଦ୍ର ଲଜ୍ଜାରେ ମଥା ଟେକି ଜବାବ ଦେଲା—ହଁ ।

: ମୋ ମନରେ ଗୋଟାଏ ସର୍ତ୍ତ ଥିଲା । ଛାଡ଼ିଯିବାର ଦିନ ଯଦି କେବେ ଆସେ ଯେପରି ମୁଁ ଖୁବ୍ ସହଜରେ ତାଙ୍କୁ ଛାଡ଼ି ଦେଇପାରେ । ଚୁକ୍ତିପତ୍ର, କିମ୍ବା ଲେଖାପଢ଼ା କରି ନୁହେଁ—ଏଇମିତ ।

: ବୁଝେ ।

: ବୁଝେ ହେଉଛନ୍ତି ଆପଣଙ୍କର ବନ୍ଧୁ ଅକ୍ଷୟ ବାବୁ । ଶିବନାଥ ଗୁଣୀ ମନୁଷ୍ୟ । ତାଙ୍କ ବିରୁଦ୍ଧରେ ମୋ ନିଜଆଡ଼ୁ ବିଶେଷ କିଛି ଅଭିଯୋଗ ନାହିଁ । ଅଭିଯୋଗ କରି ଅବା ଲାଭ କ'ଣ ? ହୃଦୟର ଅଦାଲତରେ ଏକତରଫା ବିଚାର ହିଁ ଏକମାତ୍ର ବିଚାର । ସେଥିପାଇଁ ତ ଅପିଲ କରିବା ଲାଗି ଆଉ କୋର୍ଟ ନାହିଁ ।

: ତା ମାନେ ଭଲପାଇବାଠାରୁ ଅଧିକ ଆଉ କୌଣସି ବନ୍ଧନକୁ ଆପଣ ସ୍ୱୀକାର କରନ୍ତି ନାହିଁ ?

: ଏକରେ ତ ଆମମାନଙ୍କ ବ୍ୟାପାରରେ ଅନ୍ୟ କୌଣସି ବନ୍ଧନ ନ ଥିଲା, ଆଉ ଥିଲେ ମଧ୍ୟ ତାହାକୁ ସ୍ୱୀକାର କରି ଅବା ଫଳ କ'ଣ ? ଦେହର ଯେଉଁ ଅଙ୍ଗ ପକ୍ଷାଘାତରେ ଅବଶ ହୋଇଯାଏ, ତାହା ଦେହ ପାଇଁ ବୋଝ ହୋଇ ଉଠେ । ତାକୁ ଧରି କାର୍ଯ୍ୟ କରିବାକୁ ଚିନ୍ତା ହେଉଛି ସବୁଠାରୁ ବାଜେ କଥା । ଏହା କହି ଏକ ମୁହୂର୍ତ୍ତିକ ପାଇଁ ନୀରବ ରହି ପୁଣି କହିବାକୁ ଲାଗିଲା—ଆପଣ ଭାବୁଛନ୍ତି ବୋଧହୁଏ ପ୍ରକୃତ ବିବାହ ହୋଇପାରି ନାହିଁ ବୋଲି ଏପରି କଥା ମୁଁ ତୁଣ୍ଡକୁ ଆଣୁଛି, ନ ହେଲେ ଆଣିପାରି ନ ଥାନ୍ତି । ବିକଳ ଅଙ୍ଗଟା ଏ ଦେହରେ ସଲଗ୍ନ ହୋଇ ରହିଥାନ୍ତା ଏବଂ ଅଧିକାଂଶ ସ୍ତ୍ରୀଲୋକଙ୍କର ଯେପରି ଘଟିଥାଏ, ଆମରଣ ଦୁଃଖର ବୋଝ ବହି ଏ ଜୀବନ କଟିଥାନ୍ତା । ମୁଁ ବଞ୍ଚିଯାଇଛି ହରେନ୍ ବାବୁ । ଦୈବାତ୍ ପଥ ଖୋଲି ଥିଲା ବୋଲି ମୁଁ ମୁକ୍ତି ପାଇ ପାରିଛି ।

: ଆପଣ ହୁଏତ ମୁକ୍ତି ପାଇ ପାରିଛନ୍ତି; କିନ୍ତୁ ଏଇପରି ଭାବରେ ଯଦି ସମସ୍ତେ ମୁକ୍ତିର ଦ୍ୱାର ଖୋଲି ରଖିବା ପାଇଁ ଇଚ୍ଛା କରିବେ ଜଗତରେ ସାମାଜିକ ବ୍ୟବସ୍ଥା ଆଉ କିଛି ରହିବ ନାହିଁ । ସମାଜରେ ଏଥିପାଇଁ ଯେଉଁ ଭୟଙ୍କର ଅବସ୍ଥା ସୃଷ୍ଟି ହେବ ତାହାର କଳ୍ପନା କେହି କରିପାରିବେ ନାହିଁ । ଏପରି ସମ୍ଭାବନାକୁ ମନରେ ଚିନ୍ତା ମଧ୍ୟ କରାଯାଇ ପାରେ ନାହିଁ ।

: କରାଯାଏ ଏବଂ ଯିବ ମଧ୍ୟ ଦିନେ । କାରଣ ମନୁଷ୍ୟର ଇତିହାସର ଶେଷ ଅଧ୍ୟାୟ ଲେଖା ଶେଷ ହୋଇ ଯାଇନାହିଁ । ଦିନକର ଉତ୍ସବ ଫଳରେ ଯଦି ତା ଅବ୍ୟାହତିର ପଥ ସାରା ଜୀବନ ପାଇଁ ଅବରୁଦ୍ଧ ହୋଇଯାଏ, ତାହାକୁ ଉତ୍ତମ ବ୍ୟବସ୍ଥା ବୋଲି ମାନିନେଇ ହୁଏ ନାହିଁ । ପୃଥିବୀରେ ସମସ୍ତ ଭୁଲଭାଲ ପାଇଁ ସଂଶୋଧନର ନିୟମ ଅଛି । କେହି ତାହାକୁ ମନ୍ଦ ବୋଲି କହନ୍ତି ନାହିଁ, କିନ୍ତୁ ଯେଉଁଠାରେ ଭ୍ରାନ୍ତିର ସମ୍ଭାବନା ଅଧିକ, ସେଠାରେ ନିରାକରଣର ପ୍ରୟୋଜନ ସେହିପରି ଅଧିକ । ଆଉ ସେଠାରେ ଲୋକେ ସ୍ୱେଚ୍ଛାରେ ଯଦି ସମସ୍ତ ଉପାୟକୁ ବନ୍ଦକରି ରହନ୍ତି, ତାହାକୁ ଭଲ ବୋଲି କିପରି ମାନିନେବ, କହନ୍ତୁ ?

ଏହି ଝିଅଟିର ନାନାବିଧ ଦୁର୍ଦ୍ଦଶା ହେତୁ ହରେନ୍ଦ୍ର ମନ ଭିତରେ ତା ପ୍ରତି ଗଭୀର ସମବେଦନା ଥିଲା । ସେଥିପାଇଁ ତା ବିରୁଦ୍ଧରେ ଆଲୋଚନା ହେବାବେଳେ ସହଜରେ ସେ ଯୋଗଦିଏ ନାହିଁ ବରଂ ବିପକ୍ଷଦଳ ଯେତେବେଳେ ନାନାବିଧ ସାକ୍ଷ୍ୟ ପ୍ରମାଣ ବଳରେ ତାହାକୁ ହୀନ ପ୍ରତିପାଦିତ କରିବା ପାଇଁ ଚେଷ୍ଟା କରନ୍ତି ସେତେବେଳେ ସେ ପ୍ରତିବାଦ କରିଥାଏ । ସେମାନେ କମଳର ପ୍ରକାଶ୍ୟ ଆଚରଣ ଓ ସେପରି ନିର୍ଲ୍ଲଜ ଉଚ୍ଛୃଙ୍ଖଳାର ନଜିର ଦେଖାଇ ଯେତେବେଳେ ଧିକ୍‌କାର କରିବାକୁ ଲାଗି ପଡ଼ନ୍ତି, ହରେନ୍ ତର୍କ ଯୁଦ୍ଧରେ ହାରିଯାଇ ମଧ୍ୟ ପ୍ରାଣପଣେ ବୁଝାଇବାକୁ ଚେଷ୍ଟା କରେ ଯେ କମଳ ଜୀବନରେ ଏସବୁ କୌଣସିମତେ ସତ ହୋଇ ନ ପାରେ । କେଉଁଠାରେ କିଛି ନିଗୂଢ଼ ରହସ୍ୟ ରହିଛି ଦିନେ ନା ଦିନେ ତାହା ପ୍ରକାଶ ପାଇବ ହିଁ ପାଇବ । ସେମାନେ ବିଦ୍ରୂପ କରି କହନ୍ତି, ଦୟାକରି ତାହା ବ୍ୟକ୍ତ କରିପାରିଲେ ପ୍ରବାସୀ ବଙ୍ଗାଳୀ ସମାଜରେ ଆମେମାନେ ରକ୍ଷା ପାଇଯାନ୍ତୁ । ଅକ୍ଷୟ ଉପସ୍ଥିତ ଥିଲେ କ୍ରୋଧରେ କ୍ଷିପ୍ତ ହୋଇ କହେ ଆପଣମାନେ ସମସ୍ତେ ସମାନ । ମୋ ଭଳି ଆପଣମାନଙ୍କ ଭିତରୁ କାହାର ଦୃଢ଼ ମନବଳ ନାହିଁ । ଆପଣମାନେ ନେଇ ପାରନ୍ତି ନାହିଁ କିମ୍ବା ଛାଡ଼ିବାକୁ ଇଚ୍ଛା କରନ୍ତି ନାହିଁ । ଆଧୁନିକ କାଳର କେତେଗୁଡ଼ିଏ ବିଲାତି ଦେଖାଶୁଣା ଚଳଣୀ ଯେପରି ଆପଣମାନଙ୍କୁ ଭୂତଗ୍ରସ୍ତ କରି ରଖିଛି ।

ଅବିନାଶ ବାବୁ କହନ୍ତି—ବିଲାତି ଚାଲିଚଳଣୀ ଯେ କମଳ ନିକଟରେ ନୂଆ ଦେଖି ପାରିଲୁ, ତାହା ନୁହେଁ ରେ ଅକ୍ଷୟ । ଆଗରୁ ସେ ସବୁ ଜାଣିଛନ୍ତି । ଆଜିକାଲି ଖଣ୍ଡେ ଦୁଇଖଣ୍ଡ ଇଂରାଜୀରୁ ଅନୁଦିତ ବହି ପଢ଼ିପାରିଲେ ହିଁ ସବ ଜାଣି ହୋଇଯାଏ । ଏହା ବିଲାତ ଯାଇ ଶିଖି ଆସିଥିବା ଚଳଣୀର ଔଜଲ୍ୟ ନୁହେଁ ।

: ତାହା ତ ସତ । ଆଜିକାଲି ମନ ସ୍ଥିର କରି କହିବା ବଡ଼ କଷ୍ଟ । ପ୍ରକୃତ ଶ୍ରଦ୍ଧା ପାଇବା ଯେ କି ଜିନିଷ ତାହା ଏ ପର୍ଯ୍ୟନ୍ତ ଜାଣିପାରିଲି ନାହିଁ । ସେଦିନ ହଠାତ୍ ଯେପରି ଚମକି ଉଠିଲି । ହରେନ ବାବୁ ଆପଣ ଦୁଃଖ କରିବେ ନାହିଁ, କିନ୍ତୁ ତାର ସଙ୍ଗେ ତୁଳନା କଲେ ଆଜି ଆଉ ସବୁ ପରିହାସ ପରି ମନେହୁଏ । କହୁ କହୁ ତା ଆଖିର ପ୍ରଖର ଦୃଷ୍ଟି ସ୍ୱପ୍ନାଚ୍ଛନ୍ନ ହୋଇ ଉଠିଲି ଏବଂ ସମଗ୍ର ମୁଖମଣ୍ଡଳରେ ଏପରି ଗୋଟାଏ ସ୍ନିଗ୍ଧ ସଜଳତା ଖେଳି ଉଠିଲି ଯେ ଯେଉଁ ମୂର୍ତ୍ତିଟିକୁ ହରେନ୍ଦ୍ର ଆଗରୁ କେବେ ଦେଖି ନ ଥିଲି । ତାର ସଂଶୟ ମାତ୍ର ରହିଲି ନାହିଁ ଯେ, ଆଉ ଅନ୍ୟ କାହାକୁ ଉଦ୍ଦେଶ୍ୟ କରି କମଳ ଏହାସବୁ କହୁଛି । ସେ ହିଁ କେବଳ ଉପଲକ୍ଷ । ଏଥିପାଇଁ ତାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ କଥା ପିଲାକଥା ଭଳି ମନେହୋଇଛି ।

କମଳ କହିବାକୁ ଲାଗିଲି—ଆପଣ ଏଇମାତ୍ର ମୋର ଦୁର୍ମଦ ନିର୍ଭୀକତାର ପ୍ରଶଂସା କରୁଥିଲେ—ଭଲକଥା, ଶୁଣିଛନ୍ତି ଶିବନାଥ ମୋତେ ଛାଡ଼ି ଚାଲି ଯାଇଛନ୍ତି ?

ହରେନ୍ଦ୍ର ଲଜ୍ଜାରେ ମଥା ଟେକି ଜବାବ ଦେଲା—ହଁ ।

: ମୋ ମନରେ ଗୋଟାଏ ସର୍ତ୍ତ ଥିଲି । ଛାଡ଼ିଯିବାର ଦିନ ଯଦି କେବେ ଆସେ ଯେପରି ମୁଁ ଖୁବ୍ ସହଜରେ ତାଙ୍କୁ ଛାଡ଼ି ଦେଇପାରେ । ଚୁକ୍ତିପତ୍ର, କିମ୍ବା ଲେଖାପଢ଼ା କରି ନୁହେଁ—ଏଇମିତି ।

: ବୁଝିଛି ।

: ବୁଝିଛି ହେଉଛନ୍ତି ଆପଣଙ୍କର ବନ୍ଧୁ ଅକ୍ଷୟ ବାବୁ । ଶିବନାଥ ଗୁଣୀ ମନୁଷ୍ୟ । ତାଙ୍କ ବିରୁଦ୍ଧରେ ମୋ ନିଜଆଡ଼ୁ ବିଶେଷ କିଛି ଅଭିଯୋଗ ନାହିଁ । ଅଭିଯୋଗ କରି ଅବା ଲାଭ କ'ଣ ? ହୃଦୟର ଅଦାଲତରେ ଏକତରଫା ବିଚାର ହିଁ ଏକମାତ୍ର ବିଚାର । ସେଥିପାଇଁ ତ ଅପିଲ କରିବା ଲାଗି ଆଉ କୋର୍ଟ ନାହିଁ ।

: ଭଲ ପାଇବାଠାରୁ ଅଧିକ ଆଉ କୌଣସି ବନ୍ଧନକୁ ଆପଣ ସ୍ୱୀକାର କରନ୍ତି ନାହିଁ ?

: ଏକରେ ତ ଆମମାନଙ୍କ ବ୍ୟାପାରରେ ଅନ୍ୟ କୌଣସି ବନ୍ଧନ ନ ଥିଲି, ଆଉ ଥିଲେ ମଧ୍ୟ ତାହାକୁ ସ୍ୱୀକାର କରି ଅବା ଫଳ କ'ଣ ? ଦେହର ଯେଉଁ ଅଙ୍ଗ ପକ୍ଷାଘାତରେ ଅବଶ ହୋଇଯାଏ, ତାହା ଦେହ ପାଇଁ ବୋଝ ହୋଇ ଉଠେ । ତାକୁ ଧରି କାର୍ଯ୍ୟ କରିବାକୁ ଯିବା ହେଉଛି ସବୁଠାରୁ ବାଜେ କଥା । ଏହା କହି ଏକ ମୁହୂର୍ତ୍ତିକ ପାଇଁ ନୀରବ ରହି ପୁଣି କହିବାକୁ ଲାଗିଲି—ଆପଣ ଭାବୁଛନ୍ତି ବୋଧହୁଏ ପ୍ରକୃତ ବିବାହ ହୋଇପାରି ନାହିଁ ବୋଲି ଏପରି କଥା ମୁଁ ତୁଣ୍ଡକୁ ଆଣୁ ଛି, ନ ହେଲେ ଆଣିପାରି ନ ଥାନ୍ତି । ବିକଳ ଅଙ୍ଗଟା ଏ ଦେହରେ ସଲଗ୍ନ ହୋଇ ରହିଥାନ୍ତା ଏବଂ ଅଧିକାଂଶ ସ୍ତ୍ରୀଲୋକଙ୍କର ଯେପରି ଘଟିଥାଏ, ଆମରଣ ଦୁଃଖର ବୋଝ ବହି ଏ ଜୀବନ କଟିଥାନ୍ତା । ମୁଁ ବଞ୍ଚିଯାଇଛି ହରେନ୍ ବାବୁ । ଯିବାକୁ ପଥ ଖୋଲା ଥିଲା ବୋଲି ମୁଁ ମୁକ୍ତି ପାଇ ପାରିଛି ।

: ଆପଣ ନିଶ୍ଚିତ ମୁକ୍ତି ପାଇ ଯାଉଛନ୍ତି; କିନ୍ତୁ ଏଇପରି ଭାବରେ ଯଦି ସମସ୍ତେ ମୁକ୍ତିର ଦ୍ୱାର ଖୋଲି ରଖିବା ପାଇଁ ଇଚ୍ଛା କରିବେ ଜଗତରେ ସାମାଜିକ ବ୍ୟବସ୍ଥା ଆଉ କିଛି ରହିବ ନାହିଁ । ସମାଜରେ ଏଥିପାଇଁ ଯେଉଁ ଭୟଙ୍କର ଅବସ୍ଥା ସୃଷ୍ଟି ହେବ ତାହାର କଳ୍ପନା କେହି କରିପାରିବେ ନାହିଁ । ଏପରି ସମ୍ଭାବନାକୁ ମନରେ ଚିନ୍ତା ମଧ୍ୟ କରିଯାଇ ପାରେ ନାହିଁ ।

: କରିଯାଏ ଏବଂ ଯିବ ମଧ୍ୟ ଦିନେ । କାରଣ ମନୁଷ୍ୟର ଇତିହାସର ଶେଷ ଅଧ୍ୟାୟ ଲେଖା ଶେଷ ହୋଇ ଯାଇନାହିଁ । ଦିନକର ଉତ୍ସବ ଫଳରେ ଯଦି ତା ଅବ୍ୟାହତର ପଥ ସାରା ଜୀବନ ପାଇଁ ଅବରୁଦ୍ଧ ହୋଇଯାଏ, ତାହାକୁ ଉତ୍ତମ ବ୍ୟବସ୍ଥା ବୋଲି ମାନିନେଇ ହୁଏ ନାହିଁ । ପୃଥିବୀରେ ସମସ୍ତ ଭୁଲଭାଲ ପାଇଁ ସଂଶୋଧନର ନିୟମ ଅଛି । କେହି ତାହାକୁ ମନ୍ଦ ବୋଲି କହନ୍ତି ନାହିଁ, କିନ୍ତୁ ଯେଉଁଠାରେ ଭ୍ରାନ୍ତିର ସମ୍ଭାବନା ଅଧିକ, ସେଠାରେ ନିରାକରଣର ପ୍ରୟୋଜନ ସେହିପରି ଅଧିକ । ଆଉ ସେଠାରେ ଲୋକେ ସ୍ୱେଚ୍ଛାରେ ଯଦି ସମସ୍ତ ଉପାୟକୁ ବନ୍ଦକରି ରହନ୍ତି, ତାହାକୁ ଭଲ ବୋଲି କିପରି ମାନିନେବି, କହନ୍ତୁ ?

ଏହି ଝିଅଟିର ନାନାବିଧ ଦୁର୍ଦ୍ଦଶା ହେତୁ ହରେନ୍ଦ୍ର ମନ ଭିତରେ ତା ପ୍ରତି ଗଭୀର ସମବେଦନା ଥିଲା । ସେଥିପାଇଁ ତା ବିରୁଦ୍ଧରେ ଆଲୋଚନା ହେବାବେଳେ ସହଜରେ ସେ ଯୋଗଦିଏ ନାହିଁ ବରଂ ବିପକ୍ଷଦଳ ଯେତେବେଳେ ନାନାବିଧ ସାକ୍ଷ୍ୟ ପ୍ରମାଣ ବଳରେ ତାହାକୁ ହୀନ ପ୍ରତିପାଦିତ କରିବା ପାଇଁ ଚେଷ୍ଟା କରନ୍ତି ସେତେବେଳେ ସେ ପ୍ରତିବାଦ କରିଥାଏ । ସେମାନେ କମଳର ପ୍ରକାଶ୍ୟ ଆଚରଣ ଓ ସେପରି ନିର୍ଲ୍ଲଜ ଉକ୍ତିଗୁଡ଼ାକର ନଜିର ଦେଖାଇ ଯେତେବେଳେ ଧିକ୍‌କାର କରିବାକୁ ଲାଗି ପଡ଼ନ୍ତି, ହରେନ୍ ତର୍କ ଯୁଦ୍ଧରେ ହାରିଯାଇ ମଧ୍ୟ ପ୍ରାଣପଣେ ବୁଝାଇବାକୁ ଚେଷ୍ଟା କରେ ଯେ କମଳ ଜୀବନରେ ଏସବୁ କୌଣସିମତେ ସତ ହୋଇ ନ ପାରେ । କେଉଁଠାରେ କିଛି ନିଗୂଢ଼ ରହସ୍ୟ ରହିଛି ଦିନେ ନା ଦିନେ ତାହା ପ୍ରକାଶ ପାଇବ ହିଁ ପାଇବ । ସେମାନେ ବିଦ୍ରୂପ କରି କହନ୍ତି, ଦୟାକରି ତାହା ବ୍ୟକ୍ତ କରିପାରିଲେ ପ୍ରବାସୀ ବଙ୍ଗାଳୀ ସମାଜରେ ଆମେମାନେ ରକ୍ଷା ପାଇଯାନ୍ତୁ । ଅକ୍ଷୟ ଉପସ୍ଥିତ ଥିଲେ କ୍ରୋଧରେ କ୍ଷିପ୍ତ ହୋଇ କହେ ଆପଣମାନେ ସମସ୍ତେ ସମାନ । ମୋ ଭଳି ଆପଣମାନଙ୍କ ଭିତରୁ କାହାର ଦୃଢ଼ ମନବଳ ନାହିଁ । ଆପଣମାନେ ନେଇ ପାରନ୍ତି ନାହିଁ କିମ୍ବା ଛାଡ଼ିବାକୁ ଇଚ୍ଛା କରନ୍ତି ନାହିଁ । ଆଧୁନିକ କାଳର କେତେଗୁଡ଼ିଏ ବିଳାତି ଦେଖାଶୁଣା ଚଳଣୀ ଯେପରି ଆପଣମାନଙ୍କୁ ଭୂତଗ୍ରସ୍ତ କରି ରଖିଛି ।

ଅବିନାଶ ବାବୁ କହନ୍ତି—ବିଳାତି ଚାଲିଚଳଣୀ ଯେ କମଳ ନିକଟରେ ନୂଆ ଦେଖି ପାରିଲୁ, ତାହା ନୁହେଁରେ ଅକ୍ଷୟ । ଆଗରୁ ସେ ସବୁ ଜାଣିଛନ୍ତି । ଆଜିକାଲି ଖଣ୍ଡେ ଦୁଇଖଣ୍ଡ ଇଂରାଜୀରୁ ଅନୁଦିତ ବହି ପଢ଼ିପାରିଲେ ହିଁ ସବୁ ଜାଣି ହୋଇଯାଏ । ଏହା ବିଳାତ ଯାଇ ଶିଖି ଆସିଥିବା ଚଳଣୀର ଔଜଲ୍ୟ ନୁହେଁ ।

ଅକ୍ଷୟ କଠିନ ହୋଇ ପ୍ରଶ୍ନ କରେ—ତେବେ କାହାର ଔଜ୍ଜ୍ୱଲ୍ୟ ? କମଳ ରୂପର ? ଅବନାଶ ବାବୁ, ହରେନ୍ ଅବବାହିତ, ଯୁବକ, ତାଙ୍କୁ କ୍ଷମା କର ଦିଆଯାଇ ପାରେ । କନ୍ତୁ ବୁଢ଼ା ବୟସରେ ଆପଣଙ୍କ ଆଖିରେ ମଧ୍ୟ ମାୟା ଲଗି ଯାଇଛି ଏହା ହିଁ ଆଶ୍ଚର୍ଯ୍ୟର ବିଷୟ । ଏତକ କହି ସେ କଟାକ୍ଷ ପାତରେ ଆଶୁବାବୁଙ୍କ ପ୍ରତ ଥରେ ଦୃଷ୍ଟି ନେଇ କହେ —ଏହା ହେଉଛି ତରୁଣୀ ଆଲୁଅ ଅବନାଶ ବାବୁ । ପଙ୍କ ପଙ୍କରୁ ହିଁ ତାର ଜନ୍ମ । ଦନେ ନା ଦନେ ସମସ୍ତଙ୍କୁ ପଙ୍କରେ ଟାଣି ନେଇ ପୂରାଇବ ତାହା ମୁଁ ସ୍ପଷ୍ଟ ଦେଖି ପାରୁଛି । କେବଳ ଅକ୍ଷୟଙ୍କୁ ସେ ଭୁଲାଇ ପାରବ ନାହିଁ ଯେହେତୁ ଅସଲ-ନକଲ ସେ ହିଁ ଚହ୍ନି ଜାଣେ ।

ଆଶୁବାବୁ ମୁହଁ ଚପି ହସନ୍ତି । କନ୍ତୁ ଅବନାଶ ବାବୁ କ୍ରୋଧରେ ଜଳ ଉଠନ୍ତି । ହରେନ୍ଦ୍ର କହେ—ଆପଣ ହେଉଛନ୍ତି ମସ୍ତ ବାହାଦୂର । ଆପଣଙ୍କର ଜୟ ହେଉ । ଆମେ ସମସ୍ତେ ମିଶି ପଙ୍କରେ ପଡ଼ି ଯେଉଁ ଦନ ଉବୁଟୁବୁ ହେବୁ, ଆପଣ ସେ ଦନ କୂଳରେ ଠିଆ ହୋଇ ନୃତ୍ୟ କରବେ ଆଉ ଆମେମାନେ କେହି ଆପଣଙ୍କର ନନ୍ଦା କରବୁ ନାହିଁ ।

ଅକ୍ଷୟ ଜବାବ ଦଏ—ମୁ ନନ୍ଦତ ହେଲ ଭଲ କାର୍ଯ୍ୟ କରେ ନାହିଁ ହରେନ୍ଦ୍ର । ଗୃହସ୍ଥ ମଣିଷ, ସରଳ ବୁଦ୍ଧିରେ ସମାଜକୁ ମାନ ଚଳେ । ବବାହର ନୂତନ ଅର୍ଥ କରବାକୁ ଇଚ୍ଛା କରେ ନାହିଁ କମ୍ବା ଗୁଡ଼ିଏ ପିଲା ଯୋଗାଡ଼ କର ଆଶ୍ରମଟିଏ କର ସେମାନଙ୍କୁ ବ୍ରହ୍ମଚର୍ଯ୍ୟର କରଏ ନାହିଁ । ଆଶ୍ରମରେ ପାଦ ଧୂଳର ପରମାଣଟା ଆଉ ଟିକଏ ବଢ଼ାଇ ନେବାର ବ୍ୟବସ୍ଥା କର ଦଅ, ସାଧନା-ଭଜନ ପାଇଁ ଚନ୍ତା କରବାକୁ ପଡ଼ବ ନାହିଁ । ଦେଖୁ ଦେଖୁ ସାରା ଆଶ୍ରମ ବଶ୍ବାମିତ୍ର ଋଷିର ତପୋବନ ହୋଇ ଉଠିବ ଏବଂ ହୁଏତ ଚରକାଳ ପାଇଁ ଯାହା ତୁମର ଗୋଟାଏ ଅକ୍ଷୟ କୀର୍ତ୍ତି ହୋଇ ରହିଯିବ ।

ଅବନାଶ ବାବୁ କ୍ରୋଧ ଭୁଲ ବଡ଼ ପାଟିରେ ହସି ଉଠନ୍ତି ଏବଂ ନର୍ମଳ ସ୍ନିଗ୍ଧ ହସରେ ଆଶୁବାବୁଙ୍କ ମୁହଁଟି ମଧ୍ୟ ଉଜ୍ଜ୍ୱଳ ଉଠେ । ହରେନ୍ଦ୍ରର ଆଶ୍ରମ ଉପରେ କାହାର ମଧ୍ୟ ଆସ୍ଥା ନ ଥିଲା । ଏହା ଜଣଙ୍କର ବ୍ୟକ୍ତିଗତ ଖିଆଲ ବୋଲ ସେମାନେ ଧର ନେଇ ଥାନ୍ତି ।

ପ୍ରତ୍ୟୁତ୍ତର ଦେବା ପାଇଁ ଯାଇ ହରେନ୍ଦ୍ର କ୍ରୋଧରେ ନାଲ ପଡ଼ିଯାଇ କହେ— ପଶୁମାନଙ୍କ ସହିତ ତ ଯୁକ୍ତି ତର୍କ କରାଯାଏ ନାହିଁ, ସେଥିପାଇଁ ଅନ୍ୟ ପ୍ରକାର ବ୍ୟବସ୍ଥା ଅଛି । କନ୍ତୁ ସେ ବ୍ୟବସ୍ଥା ହୋଇ ପାର ନାହିଁ ବୋଲ ଆପଣ ଯାହାକୁ ତାହାକୁ ସମାଲୋଚନା କର ପାରୁଛନ୍ତି । ଇତର, ଭଦ୍ର, ମହିଳା ଏବଂ ପୁରୁଷ କେହି ଆପଣଙ୍କ ସମାଲୋଚନାରୁ ବାଦ୍ ପଡ଼ୁ ନାହାନ୍ତି । ଏହା କହି ସେ ଅନ୍ୟ ଦୁଇଜଣଙ୍କୁ ଲକ୍ଷ୍ୟ କର କୁହେ— ଆପଣମାନେ ପ୍ରଶ୍ରୟ ଦେଉଛନ୍ତି କପର ? ଏତେ ବଡ଼ କୁତ୍ସିତ ଇଙ୍ଗିତଟା ଯେପର ଗୋଟାଏ ପରିହାସର ବ୍ୟାପାର ।

ଅବିନାଶ ବାବୁ ଅପ୍ରତିଭ ହୋଇ କହିଲେ—ନା, ନା, ପ୍ରଶଂସା ଦେବ କାହିଁକି ? ଜାଣି ତ ଅକ୍ଷରରେ କାଣ୍ଡଜ୍ଞାନ ନାହିଁ ବୋଲି ।

ହରେନ କହିଲେ—କାଣ୍ଡଜ୍ଞାନ ତା ଅପେକ୍ଷା ଆପଣଙ୍କର ଯଥେଷ୍ଟ କମ୍ । ମନୁଷ୍ୟ ମନର ଚେହେରା ତ ଦେଖି ହୁଏ ନାହିଁ ଭାଇ, ନ ହେଲେ ହୁଏ ଥିବ ଖୁବ୍ କମ୍ ଲୋକଙ୍କ ମୁହଁରେ ଶୋଭା ପାଇ ପାରନ୍ତା । ବିବାହିତ ଛଳନାରେ ଶିବନାଥ କମଳକୁ ଠକିଛନ୍ତି । କିନ୍ତୁ ମୋର ବିଶ୍ୱାସ ସେଇ ଠକାମିଟାକୁ କମଳ ସତ୍ୟ ବୋଲି ମାନି ନେଇଛନ୍ତି । ସଂସାରରେ ଦେଣା-ପାଉଣା, ଲାଭ କ୍ଷତିର ତୁଳନା କରିବସି ସେ ଲୋକଚକ୍ଷୁରେ ତାଙ୍କୁ ଶ୍ରେଷ୍ଠ କରିବା ପାଇଁ ଚାହିଁ ନାହାନ୍ତି । ସେ ନ ଚାହିଁଲେ ଆପଣମାନେ ଅବା ଚାହିଁବେ କାହିଁକି ? ଶିବନାଥ ବାବୁ ତାଙ୍କର ଭଲ ପାଇବାର ଧନ ହୋଇ ପାରନ୍ତି କିନ୍ତୁ ଆପଣ ମାନଙ୍କର ସେ କିଏ ? କ୍ଷମାର ଅପବ୍ୟବହାର ଆପଣମାନେ ସହ୍ୟ କରି ପାରିଲେ ନାହିଁ । ତାହା ହିଁ ତ ଆପଣମାନଙ୍କର ଘୃଣାର ମୂଳଧନ ! ଏହାକୁ ଧରି ଯେତେଦିନ ପାରୁଛନ୍ତି ଚଳନ୍ତୁ । ମୁଁ କିନ୍ତୁ ବିଦାୟ ନେଉଛି । ଏହା କହି ହରେନ୍ଦ୍ର ରାଗ କରି ଉଠି ଚାଲିଗଲେ । ତାର ଦୃଢ଼ ବିଶ୍ୱାସ ଥିଲା ଯେ କମଳ ଆପଣା ମୁହଁରେ ଦିନେ କହି ପକାଇବ ଯେ ଶୈବ-ବିବାହକୁ ପ୍ରକୃତ ବିବାହ ବୋଲି ଧରି ନେଇ ସେ ପ୍ରତାରିତା ହୋଇଛି । ସବୁ ଜାଣିଶୁଣି ସ୍ୱେଚ୍ଛାରେ ସେ ଗଣିକା ଭଳି ଶିବନାଥକୁ ଆଶ୍ରୟ କରି ନ ଥିଲା । ଆଜି କିନ୍ତୁ ବିଶ୍ୱାସର ଭିତ୍ତି ଭୂମିଟା ଧୂଳିସାତ୍ ହୋଇଗଲା । ହରେନ୍ଦ୍ରର ଅକ୍ଷୟ ବା ଅବିନାଶ ନୁହେଁ; ନରନାରୀ ନିର୍ବିଶେଷରେ ସମସ୍ତଙ୍କ ଉପରେ ଗଭୀର ବିଶ୍ୱାସ ଥିଲା । ଏଥିପାଇଁ ଦେଶ ଓ ଦଶର କଲ୍ୟାଣ ନିମିତ୍ତ ସମସ୍ତ ପ୍ରକାର ଶୁଭ କାର୍ଯ୍ୟରେ ସେ ପିଲାଟି ଦିନରୁ ଆପଣାକୁ ନିଯୁକ୍ତ କରି ଆସିଛି । ଏଇ ଯେଉଁ ତାର ବ୍ରହ୍ମଚର୍ଯ୍ୟ ଆଶ୍ରମ; ଏଇ ତାର ଯେଉଁ ଅକୃପଣ ଦାନ, ଏଇ ଯେଉଁ ସମସ୍ତଙ୍କ ସହିତ ସବୁ କାର୍ଯ୍ୟରେ ଅଂଶ ଗ୍ରହଣ କରିବା, ଏହି ସବୁ ମୂଳରେ ଥିଲା ମାତ୍ର ଏଇ ଗୋଟିଏ କଥା । ତାର ଏହି ପ୍ରବୃତ୍ତି ତାକୁ ପ୍ରାରମ୍ଭରୁ କମଳ ପ୍ରତି ଶ୍ରଦ୍ଧାନ୍ୱିତ କରାଇଥିଲା । କିନ୍ତୁ ସେ ଆଜି ତା ମୁହଁ ଉପରେ, ତା ପ୍ରଶ୍ନର ଉତ୍ତର ଏପରି ଭୟଙ୍କର ରୂପେ ଦେଖି ଦେବ ତାହା ସେ କଳ୍ପନା କରି ନ ଥିଲା । ଭାରତର ଧର୍ମ, ଆଚାର, ବିଚାର, ନୀତି, ନିୟମ ଏବଂ ତାହାର ସ୍ୱତନ୍ତ୍ରତା ପ୍ରତି ହରେନ୍‌ର ଅଚ୍ଛେଦ୍ୟ ସ୍ନେହ ଓ ଅପରିସୀମ ଭକ୍ତି ଥିଲା । ବ୍ୟକ୍ତିଗତ ଚାରିତ୍ରିକ ଦୁର୍ବଳତା ଫଳରେ ଏ ସବୁର ବ୍ୟତିକ୍ରମକୁ ସେ ସହ୍ୟ କରି ପାରେ ନାହିଁ । କିନ୍ତୁ ଆଜି ତ୍ରୁଟିହି ଅବଜ୍ଞା ଦ୍ୱାରା କମଳ ତା ନୀତିର ମୂଳ ସୂତ୍ରକୁ ଏପରି ଭାବରେ ଅସ୍ୱୀକାର କରିବା ହେତୁ ତାର ବେଦନାର ସୀମା ରହିଲ ନାହିଁ । କମଳର ପିତା ୟୁରୋପୀୟ, ମାତା କୁଳଟା, ତା ଶିରାରେ ବ୍ୟଭିଚାର ରକ୍ତ ପ୍ରବହମାନ, ଏକଥା ସ୍ମରଣ କରିବା କ୍ଷଣି ତା ମନ ଘୃଣାରେ କଳା ପଡ଼ିଗଲା । ଦୁଇ-ତିନି ମିନିଟ ନୀରବ ରହିବା ପରେ ସେ ଧୀରେ ଧୀରେ କହିଲା—ତାହାହେଲେ ଏଥର ମୁଁ ଯାଉଛି ।

କମଲ ହରେନ୍ଦ୍ର ମନର ଅବସ୍ଥା ଠିକ୍ ରୂପେ ଅନୁମାନ କରି ପାରିଲା ନାହିଁ । କେବଳ ଗୋଟାଏ ସ୍ପଷ୍ଟ ପରିବର୍ତ୍ତନ ଲକ୍ଷ୍ୟ କରି ପାରିଲା । ଆସ୍ତେ ଆସ୍ତେ ପ୍ରଶ୍ନ କଲା— କିନ୍ତୁ ଯେଉଁଥିପାଇଁ ଆସିଥିଲେ ସେ କଥା ତ କିଛି କହିଲେ ନାହିଁ ।

: କେଉଁଥି ପାଇଁ ?

: ରାଜେନ୍ ଖବର ଜାଣିବା ପାଇଁ ଆସିଥିଲେ ତ ? କିନ୍ତୁ ନ ଜାଣି ଚାଲି ଯାଉଛନ୍ତି ଯେ ! ଆଚ୍ଛା, ସେ ଏଠାରେ ରହିବା ହେତୁ ଆପଣମାନଙ୍କ ଭିତରେ ବୋଧହୁଏ ବେଶି ଆଲୋଚନା ହେଉଛି ? ସତ କହନ୍ତୁ ?

: ଯଦିଓ ହୁଏ, ମୁଁ କିନ୍ତୁ ତହିଁରେ ଆଦୌ ଯୋଗ ଦିଏ ନାହିଁ । ସେ ପୋଲିସ ଦାୟିତ୍ୱରେ ନଥିବା ଖବର ହିଁ ମୋ ପାଇଁ ଯଥେଷ୍ଟ । ତାକୁ ମୁଁ ଭଲ କରି ଚିହ୍ନେ ।

: ଆଉ ମୋତେ ?

: ଆପଣ ତ ସେ ସବୁ କିଛି ମାନନ୍ତି ନାହିଁ ।

: ଅନେକଟା ସେହିଭଳି । ମାନିବାକୁ ହେବ ଯେ ମୋର ସେପରି କୌଣସି କଠିନ ଶପଥ ନାହିଁ । କେବଳ ବନ୍ଧୁକୁ ଜାଣିଲେ ହେବ ନାହିଁ ହରେନ୍ ବାବୁ । ଆଉ ଜଣକୁ ମଧ୍ୟ ଜାଣିବା ଦରକାର ।

: ବାହୁଲ୍ୟ ମନେକରେ । ବହୁଦିନ ଧରି ଅନେକ କାର୍ଯ୍ୟରେ ଯାହାଙ୍କୁ ନିଃସନ୍ଦେହ ଭାବରେ ଚିହ୍ନିଛି ବୋଲି ଜାଣେ ତାଙ୍କ ସମ୍ପର୍କରେ ମୋ ମନରେ ଆଶଙ୍କା ନାହିଁ । ତାର ଯେଉଁଠାରେ ଇଚ୍ଛା ସେ ରହୁ । ମୁଁ କିନ୍ତୁ ନିଶ୍ଚିନ୍ତ ।

କମଲ ତା ମୁହଁକୁ ଚାହିଁରହି କ୍ଷଣକ ପାଇଁ ଚୁପ୍ ହୋଇ ରହି କହିଲା—ମଣିଷକୁ ଅନେକ ପରୀକ୍ଷା ଦେବାକୁ ହୋଇଥାଏ ହରେନ୍ ବାବୁ । ତା ପୂର୍ବ ଦିନର ପ୍ରଶ୍ନ ହୁଏତ ପର ଦିନର ଉତ୍ତର ସଙ୍ଗେ ମେଳ ନ ଖାଇପାରେ । ଏଥିପାଇଁ ତାକୁ ଏକା ଯିବାକୁ ପଡ଼ିଥାଏ ।

କଥାଗୁଡ଼ାକ ଯେ ତତ୍ତ୍ୱ ହିସାବରେ କମଲ କହି ନାହିଁ, କ'ଣ ଗୋଟାଏ ଇଙ୍ଗିତ କରିଛି ହରେନ୍ଦ୍ର, ତାହା ଅନୁମାନ କରି ପାରିଲା । କିନ୍ତୁ ଜିଜ୍ଞାସାବାଦ ଦ୍ୱାରା ଏହାକୁ ସ୍ପଷ୍ଟତର କରିବା ପାଇଁ ତାର ଭରସା ପାଇଲା ନାହିଁ । ରାଜେନ୍ ପ୍ରସଙ୍ଗଟା ସେଥିପାଇଁ ହଠାତ୍ ବନ୍ଦ କରିଦେଇ ସେ ଅନ୍ୟ କଥାର ଅବତାରଣା କଲା । କହିଲା—ଆମେ ସ୍ଥିର କରିଛୁ ଶିବନାଥଙ୍କୁ ଯଥୋଚିତ ଶାସ୍ତି ଦେବୁ ।

କମଲ ପ୍ରକୃତରେ ବିସ୍ମିତ ହେଲା । ପ୍ରଶ୍ନ କଲା—ଆମେମାନେ କହିଲେ କେଉଁମାନେ ?

: ଯେଉଁମାନେ ହୁଅନ୍ତୁ ନା କାହିଁକି ମୁଁ କିନ୍ତୁ ତହିଁରୁ ଜଣେ । ଆଶୁବାବୁ ଅସୁସ୍ଥ । ଭଲ ହେଲେ ସେ ଆମମାନଙ୍କୁ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।

: ସେ ଅସୁସ୍ଥ !

: ହଁ, ସାତ, ଆଠଦିନ ଧରି ଅସୁସ୍ଥ । ଏହା ପୂର୍ବରୁ ମନୋରମା ଚାଲି ଯାଇଛନ୍ତି । ଆଶୁବାବୁଙ୍କ କାଶୀବାସୀ କକେଇ ଆସି ତାଙ୍କୁ ନେଇ ଯାଇଛନ୍ତି ।

ଏହା ଶୁଣି କମଳ ନୀରବ ହୋଇ ରହିଲା ।

ହରେନ୍ଦ୍ର କହିବାକୁ ଲାଗିଲା । ଶିବନାଥ ଜାଣେ ଆଇନର ଦଉଡ଼ି ତା ସୀମା ଛୁଇଁ ପାରିବ ନାହିଁ । ଏହି ଜୋରରେ ସେ ତା ମୃତ ବନ୍ଧୁର ପତ୍ନୀକୁ ବଞ୍ଚିତ କରିଛି, ନିଜ ରୁଗ୍‌ଣା ସ୍ତ୍ରୀକୁ ପରିତ୍ୟାଗ କରିଛି ଏବଂ ନିର୍ଭୟରେ ଆପଣଙ୍କର ସର୍ବନାଶ କରିପାରିଛି । ଆଇନ୍ ସେ ଖୁବ୍ ଭଲ ଭାବରେ ଜାଣେ । କେବଳ ଜାଣେ ନାହିଁ ଯେ ଦୁନିଆରେ ଏହା ହିଁ ସବୁ ନୁହେଁ । ଏହାର ବାହାରେ ମଧ୍ୟ ଆଉ କିଛି ବିଦ୍ୟମାନ ରହିଛି ।

କମଳ ସହାସ୍ୟ କୌତୂହଳରେ ପ୍ରଶ୍ନ କଲା—କିନ୍ତୁ ତାଙ୍କ ପାଇଁ କି ପ୍ରକାର ଶାସ୍ତି ସ୍ଥିର କରିଛନ୍ତି ? ଧରି ଆଣି ଆଉ ଥରେ ମୋ ସହିତ ତାଙ୍କୁ ବାନ୍ଧିଦେବେ ? ଏହା କହି ସେ ସାମାନ୍ୟ ହସିଲା ।

ପ୍ରସ୍ତାବଟା ହରେନ୍ଦ୍ର ନିକଟରେ ଏପରି ହାସ୍ୟକର ହୋଇ ଉଠିଲା ଯେ ସେ ମଧ୍ୟ ନହସି ରହି ପାରିଲା ନାହିଁ । କହିଲା, କିନ୍ତୁ ଧାର୍ମିକତା ଯେ ଏଇପରି ଭାବରେ ନିଜର ଖିଆଲ ମତେ ନିର୍ବିଘ୍ନରେ ଏଡ଼ାଇ ଯିବେ, ତାହା ତ ହୋଇ ପାରିବ ନାହିଁ । ଆଉ ତାଙ୍କୁ ଯେ ଆପଣଙ୍କ ସହିତ ବାନ୍ଧି ଦେବାକୁ ପଡ଼ିବ ତାହାର ମଧ୍ୟ କୌଣସି ମାନେ ନାହିଁ ।

: ତା ହେଲେ ତାଙ୍କୁ ଫେରାଇ ଆଣିଲେ କ'ଣ ହେବ ? ମୋତେ ପହରା ଦେବା କାର୍ଯ୍ୟରେ ନିଯୁକ୍ତ କରିବେ ନା ମୁଣ୍ଡଧରି ଖେସାରତ ଆଦାୟ କରାଇ ମୋତେ ଦେଆଇ ଦେବେ ? ପ୍ରଥମତଃ ଟଙ୍କା ମୁଁ ନେବି ନାହିଁ । ଦ୍ୱିତୀୟତଃ ଟଙ୍କା ମଧ୍ୟ ତାଙ୍କର ନାହିଁ । ଶିବନାଥ ଯେ କେତେ ଗରିବ ତାହା ଆଉ କେହି ଜାଣୁ କି ନଜାଣୁ ମୁଁ ତ ଜାଣେ ।

: ତେବେ କ'ଣ ଏତେ ବଡ଼ ଅପରାଧର କୌଣସି ଦଣ୍ଡ ସେ ପାଇ ପାରିବ ନାହଁ ? ଆଉ କିଛି ନ ହେଉ ବଜାରରେ ତ ରାତିକ୍ କିଣିବାକୁ ମିଳିପାରିବ । ଏହି ଖବରଟା ଅନ୍ତତଃ ତାଙ୍କୁ ତ ଜଣାଇଦେବା ଦରକାର ।

କମଳ ବ୍ୟାକୁଳ ହୋଇ କହି ଉଠିଲା—ନା, ନା, ତାହା କରିବେ ନାହଁ । ଏହା ଦ୍ୱାରା ମୁଁ ଏତେ ଦୂର ଅପମାନିତା ହୋଇ ଉଠିବି ଯେ ହୁଏତ ତାହା ମୁଁ ସହ୍ୟ କରି ନପାରେ । କହିଲେ, ଏତେ ଦିନ ଧରି ମୁଁ କେବଳ ଏଇ ରାଗରେ ଜଳି ପୋଡ଼ି ମରୁଛି ଯେ ତାଙ୍କର ଏପରି ଚୋରି ଭଳି ପଳାଇବାରେ କ'ଣ ଅବା ପ୍ରୟୋଜନ ଥିଲା ? ସ୍ପଷ୍ଟ କରି ଜଣାଇ ଦେଇଥିଲେ ମୁଁ କ'ଣ ବାଧା ଦେଇଥାନ୍ତି ? ତାଙ୍କର ଏହି ଲୁଚକାଳି ଖେଳଟା ସେତେବେଳେ ମୋତେ ବିଶେଷ ଦୁଃଖ ଦେଇଥିଲା । ତାପରେ ହଠାତ୍ ଦିନେ ମୋତେ ମୃତ୍ୟୁର ପକ୍ଷୀରୁ ଆହ୍ୱାନ ଆସିଲା । ସେଠାରେ ପହଞ୍ଚି କେତେ ମରଣ ଯେ ଦେଖିଲି ତାର ଇୟତ୍ତା ନାହଁ । ତା ପରଠାରୁ ଭାବନାର ଧାରା ମୋହ ଗୋଟିଏ ପଥ ଦେଇ

ବନ୍ଧ ଯାଇଛି । ବର୍ତ୍ତମାନ ସ୍ୱଭାବେ, ତାଙ୍କର ସେହି ନ କହି ଯିବାଟା ହିଁ ତ ମୋର ସମ୍ମାନ । ଲୁଚକାଳି ଖେଳ, ଛଳନା, ତାଙ୍କର ସମସ୍ତ ମିଥ୍ୟାଚାର, ମୋତେ ଯେପରି ମର୍ଯ୍ୟାଦାବନ୍ତ କରିଯାଇଛି । ପାଇବା ଦିନ ସେ ମୋତେ ଫାଙ୍କି ଦେଇ ପାଇଥିଲେ, କିନ୍ତୁ ଯିବା ଦିନ ମୋତେ ସୁଧ ଅସଲ ପରିଶୋଧ କରି ଯାଇଛନ୍ତି । ଆଉ ମୋର ତାଙ୍କ ବିରୁଦ୍ଧରେ ନାଲିସ୍ ନାହିଁ । ଆଶୁବାବୁଙ୍କୁ ନମସ୍କାର ଜଣାଇ କହିବେ—ମୋର ଭଲ କରିବା ପାଇଁ ଯାଇ ଯେପରି ମୋର କ୍ଷତି କରି ନ ବସନ୍ତି ।

ହରେନ୍ଦ୍ର ଏଥିରୁ ପଦେ ହେଲେ ବୁଝି ପାରିଲା ନାହିଁ । ଅବାକ୍ ହୋଇ ଚାହିଁ ରହିଲା ।

କମଳ କହିଲା—ସଂସାରରେ ସବୁ ବିଷୟ ସମସ୍ତେ ବୁଝି ପାରିବା ଭଲ ନୁହେଁ ହରେନ ବାବୁ । ଆପଣ ଦୁଃଖିତ ହେବେ ନାହିଁ । କିନ୍ତୁ ମୋ କଥା ଆଉ ନୁହେଁ । ଦୁନିଆଁରେ କେବଳ ଶିବନାଥ ଏବଂ କମଳ ଅଛନ୍ତି ତାହା ନୁହେଁ, ଆଉ ମଧ୍ୟ ପାଞ୍ଚଜଣ ବାସ କରନ୍ତି, ସେମାନଙ୍କର ମଧ୍ୟ ସୁଖ-ଦୁଃଖ ରହିଛି । ଏହା କହି ସେ ନିର୍ମଳ ଏବଂ ପ୍ରଶାନ୍ତ ହସ ଦ୍ୱାରା ଯେପରି ଦୁଃଖ ଓ ବେଦନାର ଘନ ବାଷ୍ପକୁ ମୁହୂର୍ତ୍ତକ ଭିତରେ ଦୂର କରିଦେଲା । ପୁଣି କହିଲା—କିଏ କିପରି ଅଛନ୍ତି ଖବର କହିଲେ ?

: ପଚାରନ୍ତୁ ।

: ବେଶ୍ । ଆଗ କହନ୍ତୁ 'ଅବିନାଶ ବାବୁଙ୍କ କଥା । ସେ ଅସୁସ୍ଥ ଥିଲେ ବୋଲି ଶୁଣିଥିଲି, ସୁସ୍ଥ ହେଲେଣି ତ ?

: ହଁ, ସଂପୂର୍ଣ୍ଣ ନ ହେଲେ ମଧ୍ୟ ଅନେକଟା ଭଲ । ତାଙ୍କର ବଡ଼ବାପା ଲାହୋରରେ ରହନ୍ତି । ଭଲ କରାଇବା ପାଇଁ ପୁତ୍ରଙ୍କୁ ସେଠାକୁ ନେଇ ଯାଇଛନ୍ତି । ତାଙ୍କର ଫେରିବା ପାଇଁ ହୁଏତ ମାସେ, ଦୁଇମାସ ଡେରି ହୋଇପାରେ ।

: ଆଉ ନୀଳିମା ! ସେ ମଧ୍ୟ କ'ଣ ସଙ୍ଗରେ ଯାଇଛନ୍ତି ?

: ନା, ସେ ଏଇଠାରେ ହିଁ ରହିଛନ୍ତି ।

: ଏଠାରେ !! ଏକାକିନୀ ! ସେଇ ଖାଲି ବସାଟାରେ !

ହରେନ୍ଦ୍ର ପ୍ରଥମେ ଟିକିଏ ଇତସ୍ତତଃ ହୋଇ ପଡ଼ିଲା, ପରେ କହିଲା—ନିଆଁଙ୍କ ଅବସ୍ଥାଟା ପ୍ରକୃତରେ ବଡ଼ ଶୋଚନୀୟ ହୋଇ ଉଠିଥିଲା । କିନ୍ତୁ ଭଗବାନ ରକ୍ଷା କରିଛନ୍ତି; ଆଶୁବାବୁଙ୍କର ଶୁଶ୍ରୂଷା ପାଇଁ ଏଠାରେ ସେ ତାଙ୍କୁ ରଖିଯିବାର ସୁଯୋଗ ଦେଇଛନ୍ତି ।

ଏଇ ଖବରଟା ଏପରି ଖାପଛଡ଼ା ଯେ କମଳ ଆଉ ପ୍ରଶ୍ନ କରିଲା ନାହିଁ, କେବଳ ବିସ୍ତାରିତ ବିବରଣ ଆଶାରେ ପ୍ରଶ୍ନିଳ ଆଖିରେ ଚାହିଁ ରହିଲା । ହରେନ୍ଦ୍ରର ଦ୍ୱିଧା କଟିଗଲା ଏବଂ କହିବାକୁ ଯିବା ସମୟରେ କଣ୍ଠସ୍ୱରରେ ଦୃଢ଼ କ୍ରୋଧର ଚିହ୍ନ ପ୍ରକାଶ ପାଇଲା । କାରଣ

ଏହି ଘଟଣାରେ ଅବିନାଶ ବାବୁଙ୍କ ସହିତ ତାର ସାମାନ୍ୟ କଳହ ହୋଇଥିଲା। ହରେନ୍ଦ୍ର କହିଲା, ବିଦେଶରେ ନିଜ ବସାରେ ଯାହା ଇଚ୍ଛା ତାହା କରାଯାଇ ପାରେ, ତାହା ବୋଲି ବିସ୍ତୃତ ବିଧବା ଶାଳୀ ଧରି ତ ବଡ଼ବାପାଙ୍କ ଘରେ ପର୍ଯ୍ୟନ୍ତ ହେବ ନାହିଁ। କହିଲେ—ହରେନ୍, ତୁମେ ତ ମୋର ଆତ୍ମୀୟ ! ତୁମ ବସାରେ······ମୁଁ ଉତ୍ତର ଦେଲି ପ୍ରଥମତଃ ମୁଁ ତୁମର ଆତ୍ମୀୟ, ତାହା ମଧ୍ୟ ଅତ୍ୟନ୍ତ ଦୂର ସମ୍ପର୍କୀୟ। କିନ୍ତୁ ତାଙ୍କର କେହି ନୁହେଁ। ଦ୍ୱିତୀୟତଃ ସେଇଟା ମୋର ବସା ନୁହେଁ, ଆମମାନଙ୍କର ଆଶ୍ରମ। ସେଠାରେ ସ୍ତ୍ରୀଲୋକ ରହିବାର ବିଧି ନାହିଁ। ତୃତୀୟତଃ ପିଲାମାନେ ସମସ୍ତେ ଅନ୍ୟତ୍ର ଚାଲିଯାଇଛନ୍ତି। ମୁଁ ଏକାକୀ ରହିଛି। ଶୁଣିକର ଭାଇଙ୍କ ଭାବନାର ସୀମା ରହିଲା ନାହିଁ। ଆଗ୍ରାରେ ମଧ୍ୟ ରଖିହେବ ନାହିଁ କାରଣ ଲୋକମାନେ ଚତୁର୍ଦ୍ଦିଗରେ ମରିବାକୁ ଲାଗିଛନ୍ତି। ଘରୁ ବଡ଼-ବାପାଙ୍କଠାରୁ ଚିଠି ଏବଂ ଟେଲିଗ୍ରାମ୍‌ରେ ବାରମ୍ବାର ତାଗିଦା ଆସି ପହଞ୍ଚୁଛି—ଭାଇଙ୍କର ସେ ଯେ କି ଅବସ୍ଥା !

: କିନ୍ତୁ ମାଳମାର ବାପଘର ଅଛି ବୋଲି ତ ଶୁଣିଛି ?

ହରେନ୍ଦ୍ର ମୁଣ୍ଡ ହଲାଇ କହିଲା—ଅଛି। ଗୋଟାଏ ବଡ଼ ଧରଣର ଶଶୁର ଘର ମଧ୍ୟ ଅଛି ବୋଲି ଶୁଣିଛି। କିନ୍ତୁ ସେସବୁର କୌଣସି ଉଲ୍ଲେଖ ହେଲା ନାହିଁ। ହଠାତ୍ ଦିନେ ଅଦ୍ଭୁତ ଭାବରେ ସମାଧାନ ହୋଇଗଲା। ପ୍ରସ୍ତାବ କେଉଁପକ୍ଷରୁ ଉଠିଥିଲା ଜାଣେନା, କିନ୍ତୁ ପୀଡ଼ିତ ଆଶୁବାବୁଙ୍କର ଦେଖାଶୁଣା କରିବାର ଦାୟିତ୍ୱ ନେଲେ ନୂଆ'ଉ।

କମଳ ଚୁପ୍ ହୋଇ ରହିଲା।

ହରେନ୍ଦ୍ର ହସିଦେଇ କହିଲା—ତେବେ ଆଶା ଅଛି ନୂଆ'ଉଙ୍କର ସ୍ୱକେଶ୍ୱଟା ଚାଲିଯିବ ନାହିଁ। ସେମାନେ ଫେରି ଆସିଲେ ପୁଣି ଗୃହିଣୀ ପଦବୀଆର ସାବକ କାର୍ଯ୍ୟରେ ଲାଗି ଯାଇ ପାରିବେ।

କମଳ ଏହି ଅଛାର କୌଣସି ଉତ୍ତର ଦେଲା ନାହିଁ। ସେହିପରି ନୀରବ ହୋଇ ରହିଲା।

ହରେନ୍ଦ୍ର କହିବାକୁ ଲାଗିଲା—ମୁଁ ଜାଣେ ନୂଆ'ଉଙ୍କ ଚରିତ୍ର ସତ୍ତ୍ୱ। ଅବିନାଶ ଭାଇଙ୍କ ଦାରୁଣ ଦୁର୍ଦ୍ଦିନ ସମୟରେ ସେ ତାଙ୍କୁ ଛାଡ଼ି ଯାଇପାରି ନାହାଁନ୍ତି। ତାଙ୍କ ପାଖରେ ରହିବା ହେତୁ ହୁଏତ ସତ୍ତ୍ୱନଗରର ସକଳ ପଥ ଆଜି ତାଙ୍କପାଇଁ ବନ୍ଦ ହୋଇଯାଇଛି। ସେଥିପାଇଁ ଭାବେ ବିନାଦୋଷରେ ଏ ଦେଶର ସ୍ତ୍ରୀଅମାନେ କେତେଦୂର ନିରୁପାୟ······

କମଳ ସେହିପରି ନୀରବରେ ବସିରହିଲା—କିଛି ହିଁ କହିଲା ନାହିଁ।

ହରେନ୍ଦ୍ର କହିଲା—ଏସବୁ ଶୁଣି ବୋଧହୁଏ, ଆପଣ ମନେ ମନେ ହସୁଛନ୍ତି, ନୁହେଁ ?

କମଳ ମୁଣ୍ଡ ହଲାଇ ଜଣାଇଲା—ନା ।

: ମୁଁ ସ୍ୱାସ୍ଥ୍ୟ ଆଶୁବାବୁଙ୍କୁ ଦେଖିବା ପାଇଁ ଯାଏ । ସେ ଦୁଇଜଣ ଆପଣଙ୍କ ଖବର ଜାଣିବା ପାଇଁ ବ୍ୟସ୍ତ ଥିଲେ । ନା, ଆ'ଉଙ୍କର ଆଗ୍ରହର ସୀମା ନାହିଁ । ଦିନକ ପାଇଁ ଯିବେ କି ସେଠାକୁ ?

କମଳ ତତ୍‌କ୍ଷଣାତ୍ ସମ୍ମତ ହୋଇ କହିଲା—ଚାଲନ୍ତୁ ନା ଆଜି । ତାଙ୍କୁ ଯାଇ ଦେଖି ଆସିବା ହରେନ୍ ବାବୁ ।

: ଆଜି ଯିବେ ? ଚାଲନ୍ତୁ, ମୁଁ ଗୋଟାଏ ଗାଡ଼ି ନେଇ ଆସୁଛି । ଅବଶ୍ୟ ଯଦି ପାଇପାରେ । ଏହା କହି ହରେନ୍ଦ୍ର ଘରୁ ବାହାରି ଯାଉଥିଲା । କମଳ ତାଙ୍କୁ ପଛରୁ ଡାକି କହିଲା—ଗାଡ଼ିରେ ଦୁଇଜଣ ଏକ ସଙ୍ଗରେ ଗଲେ ଆଶ୍ରମର ବନ୍ଧୁମାନେ ହୁଏତ ଖରାପ ଭାବିପାରନ୍ତି, ଚାଲନ୍ତୁ ଚାଲିଚାଲି ଯିବା ।

ହରେନ୍ଦ୍ର ଫେରି ଠିଆ ହୋଇ କହିଲା—ଏହାର ମାନେ ?

: ମାନେ କିଛି ନାହିଁ, ଏମିତି । ଚାଲନ୍ତୁ; ଚାଲିକରି ଯିବା ।

ହରେନ୍ଦ୍ର ଓ କମଳ ଆଶୁବାବୁଙ୍କ ଘରେ ଯେତେବେଳେ ପହଞ୍ଚିଲେ ସେତେବେଳକୁ ବେଳ ଅପରାହ୍ଣ ପ୍ରାୟ । ଶଯ୍ୟା ଉପରେ ଅର୍ଦ୍ଧଶାୟିତ ଭାବେ ବସି ଅସୁସ୍ଥ ଗୃହକର୍ତ୍ତା ସେଦିନର ପାଇଓନିୟରର କାଗଜ ଖଣ୍ଡିକ ଦେଖୁଥିଲେ । କେତେଦିନ ହେବ ଜର ନ ଥିଲା । ଅନ୍ୟାନ୍ୟ ଉପସର୍ଗ ମଧ୍ୟ କମି ଆସିଥିଲା । କେବଳ ଶରୀର ଦୁର୍ବଳତା ଯାହା ଯାଉ ନ ଥାଏ । ଏମାନେ ଘର ଭିତରେ ପଶିବାକ୍ଷଣି ଆଶୁବାବୁ କାଗଜ ଖଣ୍ଡି ପକାଇ ଦେଇ ଉଠି ବସିଲେ ଏବଂ କେତେ ଯେ ଖୁସି ହୋଇ ଉଠିଲେ ତାହା ତାଙ୍କ ମୁହଁକୁ ଚାହିଁଲେ ଜଣା ପଡୁଥିଲା । ତାଙ୍କ ମନରେ ଭୟ ଥିଲା ହୁଏତ କମଳ ଆସିବ ନାହିଁ, ସେଥିପାଇଁ ତାକୁ ହାତ ବଢ଼ାଇ ସ୍ୱାଗତ ଜଣାଇ କହିଲେ—ଆସ, ମୋ ପାଖରେ ଆସି ବସ । ଏହା କହି ତାକୁ ଖଟ ପାଖରେ ଥିବା ଚୌକିରେ ବସାଇ ଦେଲେ । କହିଲେ—କିପରି ଅଛ କହିଲୁ ?

କମଳ ହସହସ ମୁହଁରେ ଉତ୍ତର ଦେଲା—ଭଲ ତ ଅଛି ।

: ତାହା କେବଳ ଭଗବାନଙ୍କର ଆଶୀର୍ବାଦ । ନ ହେଲେ ଯେଉଁ ଦୁର୍ଦ୍ଦିନରେ ପଡ଼ିଛ, ତହିଁରେ ତୁ ଭଲ ଅଛୁ ବୋଲି କେହି ଚିନ୍ତା କରିପାରିବେ ନାହିଁ । ଏତେଦିନ ଧରି କେଉଁଠି ଥିଲୁ କହିତ ? ହରେନ୍ଦ୍ରକୁ ପ୍ରତ୍ୟହ ପଚାରେ, ସେ ରୋଜ ଆସିଲେ

ସେହି ଗୋଟିଏ ଉତ୍ତର ଦିଏ, ବସାରେ ତାଲା ଝୁଲୁଛି । ତା ସନ୍ଧାନ ପାଉ ନାହିଁ । ମାଲିମା ସନ୍ଦେହ କରିଥିଲେ ହୁଏତ ବା ଏଇ କେତେ ଦିନ ଭିତରେ କୁଆଡ଼େ ଚାଲିଯାଇଛୁ ।

ହରେନ୍ଦ୍ର ଏହାର ଉତ୍ତର ଦେଇ କହିଲା—ଆଉ କେଉଁଠି ନୁହେଁ । ଏହି ଆହତ ମୋର୍ଚ୍ଚା ପଡ଼ାରେ ସେବା କାର୍ଯ୍ୟରେ ନିଯୁକ୍ତ ରହିଥିଲେ । ଆଜି ଦେଖା ପାଇ ଧରି ଆଣିଛି ।

ଆଶୁବାବୁ ଭୟ ବ୍ୟାକୁଳ କଣ୍ଠରେ କହିଲେ—ମୋଚିମାନଙ୍କ ପଲ୍ଲୀରେ ? କିନ୍ତୁ କାଗଜରେ ପଢ଼ିଲି ଯେ ସାରା ପଡ଼ାଟା ଉଜୁଡ଼ି ଯାଇଛି । ଏତେଦିନ ଧରି ସେମାନଙ୍କ ମେଳରେ ଥିଲ ? ଏକାକୀ ?

କମଳ ମୁଣ୍ଡ ହଲାଇ କହିଲା—ନା, ଏକାକୀ ନ ଥିଲି । ସଙ୍ଗରେ ରାଜେନ ଥିଲେ ।

ଶୁଣି ହରେନ୍ଦ୍ର ତା ମୁହଁକୁ ଚାହିଁଲା କିନ୍ତୁ କିଛି କହିଲା ନାହିଁ । ସେହି ଚାହାଣିର ତାତ୍ପର୍ଯ୍ୟ ହେଉଛି—ତୁମେ ନ କହିଲେ ସୁଦ୍ଧା ମୁଁ ସେଇଆ ହିଁ ଅନୁମାନ କରିଥିଲି । ଯେଉଁଠାରେ ଦୈବର ଏତେ ବଡ଼ ନିଗ୍ରହ ଆରମ୍ଭ ହୋଇଛି ସେହି ଦୁର୍ଭାଗା ମାନଙ୍କୁ ତ୍ୟାଗ କରି ସେ ପାଦେ ହେଲେ କୁଆଡ଼େ ଯିବ ନାହିଁ, ଏକଥା ମୁଁ ଜାଣିବି ନାହିଁ ତ ଆଉ କିଏ ଜାଣି ପାରିବ ?

ଆଶୁବାବୁ କହିଲେ—ସେ ପିଲାଟି ଅଦ୍ଭୁତ ଧରଣର ! ତାକୁ ଦୁଇ ତିନି ଦିନରୁ ଅଧିକା ଦେଖି ନାହିଁ । ତା ବିଷୟରେ କିଛି ମଧ୍ୟ ଜାଣି ନାହିଁ । ମନେହୁଏ ସେ ଯେପରି ସୃଷ୍ଟିଛଡ଼ା ଧାତୁରେ ତିଆରି । ତାକୁ ସଙ୍ଗରେ ନେଇ ଆସିଲ ନାହିଁ କାହିଁକି ? ଘଟଣା ସମ୍ପର୍କରେ ତାକୁ ପଚାରି ଥାନ୍ତି । ଖବର କାଗଜରୁ ତ ସବୁ ବୁଝା ପଡ଼େ ନାହିଁ ।

କମଳ କହିଲା—ନା, କିନ୍ତୁ ତାର ବର୍ତ୍ତମାନ ଫେରିବା ପାଇଁ ଡେରି ହେବ ।

: କାହିଁକି ?

: ପଡ଼ାଟା ଏପର୍ଯ୍ୟନ୍ତ ସୁଦ୍ଧା ଜନଶୂନ୍ୟ ହୋଇ ନାହିଁ । ଯେଉଁମାନେ ଅବଶିଷ୍ଟ ରହି ଯାଇଛନ୍ତି ସେମାନଙ୍କୁ ଅନ୍ୟତ୍ର ପଠାଇ ନ ଦେଲା ପର୍ଯ୍ୟନ୍ତ ସେ ଛୁଟି ପାଇ ପାରିବ ନାହିଁ । ଏହାହିଁ ତାର ପଣ ।

ଆଶୁବାବୁ ତା ମୁହଁକୁ ଚାହିଁ ପ୍ରଶ୍ନ କଲେ—ତାହାଲେ ତୋତେ ଅବା କିଭଳି ଛୁଟି ମିଳିଲା ? ଆଉ କ'ଣ ସେଠାକୁ ଫେରିବାକୁ ପଡ଼ିବ ? ମନା କରି ପାରୁନାହିଁ ଯଦିଓ ଏଥିପାଇଁ ମୋତେ ବିଶେଷ ଚିନ୍ତିତ ହେବାକୁ ପଡ଼ୁଛି, କମଳ ।

କମଳ ମୁଣ୍ଡ ହଲାଇ କହିଲା—ଚିନ୍ତା କରିବେ ନାହିଁ ଆଶୁବାବୁ । ଚିନ୍ତା ଅବା କେଉଁଠାରେ ନାହିଁ ? ମୋ ଭାଗରେ କିନ୍ତୁ ଯେତିକି ଦମ ଥିଲା ସବୁ ଶେଷ କରି ଦେଇ ଆସିଛି । ସେଠାକୁ ଫେରି ଯିବାର ସାଧ ମୋର ଆଉ ନାହିଁ । କେବଳ ରହିଗଲେ ରାଜେନ୍ ।

ଜଣ ଜଣଙ୍କର ଦେହ ଯନ୍ତ୍ରରେ ଭଗବାନ ଏପରି ଅଫୁରନ୍ତ ଦମ୍ ଦେଇ ପୃଥିବୀକୁ ପଠାଇ ଦିଅନ୍ତି ଯେ ତାହା କେବେ ନା ଶେଷ ହୁଏ ନା ବିଗିଡ଼ି ଯାଏ । ଏହି ଲୋକଟି ହେଉଛି ସେମାନଙ୍କ ଭିତରୁ ଜଣେ । ପ୍ରଥମେ ପ୍ରଥମେ ମନେ ହୋଇଥିଲା ଏମିତି ଭୟଙ୍କର ପଲ୍ଲୀ ଭିତରେ ସେ ବଞ୍ଚି ରହିବ କିପରି ? ସେଠାରୁ ଯେତେବେଳେ ଏକାକୀ ଚାଲି ଆସିଲି ସେତେବେଳେ ମନରୁ ଆଦୌ ଭାବନା ଛାଡ଼ିଲି ନାହିଁ କିନ୍ତୁ ଆଉ ମୋର ଭୟ ନାହିଁ । ବୁଝି ପାରିଛି ଯେ ଭଗବାନ ତାଙ୍କ ଗରଜ ପାଇଁ ତାକୁ ଯେପରି ହେଉ ବଞ୍ଚାଇ ରଖିବେ । ନ ହେଲେ ଦୁଃଖୀମାନଙ୍କ କୁଡ଼ିଆରେ ବନ୍ୟା ଭଳି ଯେତେବେଳେ ମୃତ୍ୟୁ ପଶିଥିଲା, ସେତେବେଳେ ସେହି ଧ୍ୱଂସଲୀଳାର ସାକ୍ଷୀ କିଏ ରହିପାରିବ ? ଆଜି ହରେନ୍ଦ୍ର, ବାବୁଙ୍କ ଆଗରେ ଏହି କଥା ହିଁ ମୁଁ କହୁଥିଲି । ଶିବନାଥ ବାବୁଙ୍କ ଘରୁ ଯେତେବେଳେ ରାତି ଶେଷ ହେବା ବେଳକୁ ଲଜ୍ୟାରେ ମୁଣ୍ଡ ତଳକୁ କରି ବାହାରି ପଡ଼ିଲି······

ଆଶୁବାବୁ ଏ ବୃତ୍ତାନ୍ତ ଶୁଣିଥିଲେ । କହିଲେ—ଏଠାରେ ତୋର ଲଜ୍ୟା କରିବାର କ'ଣ ଅଛି କମଳ ? ଶୁଣିଛି ତାକୁ ସେବା କରିବା ପାଇଁ ତୁ ଅଯାଚିତ ଭାବରେ ତା ବସାକୁ ଯାଇଥିଲୁ ।

: ଲଜ୍ୟା ସେଥିପାଇଁ ନୁହେଁ ଆଶୁବାବୁ । ସେଠାରେ ପହଞ୍ଚି ଦେଖିବାକୁ ପାଇଲି ସେ ଆଦୌ ଅସୁସ୍ଥ ନାହାନ୍ତି । ସମସ୍ତ ଅସୁଖ ହିଁ ତାଙ୍କର ଛଳନା । କୌଣସି ଗୋଟାଏ ଛଳନା ଆଳରେ ଆପଣଙ୍କର ଦୟା ପାଇବା ଥିଲା ତାଙ୍କର ଉଦ୍ଦେଶ୍ୟ । କିନ୍ତୁ ତାହା ଯେତେବେଳେ ସଫଳ ହୋଇ ପାରିଲା ନାହିଁ ଏବଂ ଆପଣ ବସାରୁ ବାହାରି ଚାଲିଗଲେ; ସେତେବେଳେ ମୋର ମନର ଅବସ୍ଥା କ'ଣ ଯେ ହେଲା ତାହା ଆପଣଙ୍କୁ ବୁଝାଇ ପାରିବି ନାହିଁ । ସିଏ ସଙ୍ଗରେ ଥିଲା ତାକୁ ମଧ୍ୟ ଏକଥା ଜଣାଇ ପାରିଲି ନାହିଁ । କେବଳ ରାତିର ଶେଷ ଆଡ଼କୁ ନୀରବରେ ବାହାରି ଚାଲି ଆସିଲି । ବାଟରେ ବାରମ୍ବାର ସେହି ଗୋଟାଏ କଥା ହିଁ ମନରେ ଜାଗିବାକୁ ଲାଗିଲା ଯେ ଏଭଳି ଅତି କ୍ଷୁଦ୍ର କାଙ୍ଗାଳ ଲୋକଟିକୁ ରାଗ କରି ଶାସ୍ତି ଦେଇ ବସିଲେ ନା ଅଛି ତହିଁରେ ଧର୍ମ, ନା ଅଛି ସମ୍ମାନ ।

ଆଶୁବାବୁ ବିସ୍ମିତ ହୋଇ ଉଠି କହିଲେ—କ'ଣ କହୁଛୁ କମଳ ! ଶିବନାଥର ଅସୁସ୍ଥତାଟା କ'ଣ କେବଳ ଛଳନା ଥିଲା ?

ଉତ୍ତର ଦେବା ପୂର୍ବରୁ କିନ୍ତୁ ଦ୍ୱାର ପାଖରେ କାହାର ପାଦ ଶବ୍ଦ ଶୁଣି ସମସ୍ତେ ଚାହିଁ ଦେଖିଲେ—ଘର ଭିତରକୁ ନୀଳିମା ପ୍ରବେଶ କରୁଛି । ତା ହାତରେ ଦୁଧ ଗିନା । କମଳ ହାତ ଟେକି ନମସ୍କାର କରିବା କ୍ଷଣି ସେ ପାତ୍ରଟାକୁ ଶଯ୍ୟାର ମୁଣ୍ଡ ଉପରେ ଥିବା ଟି-ପଏ ଉପରେ ରଖି ଦେଇ ପ୍ରତି ନମସ୍କାର କଲା । ଏବଂ ଅପରର କଥା ଭିତରେ ଆସି ପହଞ୍ଚି ଯାଇ ବାଧା ଜନ୍ମାଇଥିବାରୁ ନିଜକୁ ଅପରାଧୀ ଭାବି କୌଣସି କଥା ନ କହି ଅଦୂରରେ ଚୁପ୍ ହୋଇ ବସି ପଡ଼ିଲା ।

ଆଶୁବାବୁ କହିଲେ—ଏହାକୁ କହନ୍ତି ଦୁର୍ବଳତା । ତୋ ପକ୍ଷରେ ଏହା ଶୋଭା ପାଏ ନାହିଁ । ମୁଁ ଭଲ ଭାବରେ ଜାଣେ ତୁ ଅନ୍ୟାୟ ଓ ମିଥ୍ୟାଚାରକୁ ଆଦୌ କ୍ଷମା ଦେଉ ନାହିଁ ।

ହରେନ୍ଦ୍ର କହିଲା—ତାଙ୍କ ସ୍ୱଭାବ ବିଷୟରେ ମୁଁ କିଛି ଜାଣେ ନାହିଁ । କିନ୍ତୁ ମୋତ ସାହିରେ ମରଣ ଦେଖି ତାଙ୍କର ଧାରଣା ବଦଳି ଯାଇଛି ବୋଲି ତାଙ୍କର ଠାରୁ ହିଁ ଶୁଣିଲି । ପୂର୍ବରୁ ତାଙ୍କ ମନ ଭିତରେ ଯାହା ଥାଇପାରେ ବର୍ତ୍ତମାନ କିନ୍ତୁ ଶିବନାଥଙ୍କ ବିରୁଦ୍ଧରେ ନାଲିସ କରିବା ପାଇଁ ସେ ନାରାଜ ।

ଆଶୁବାବୁ କହିଲେ—ସେ ତୋ ପ୍ରତି ଏତେ ଦୂର ଅତ୍ୟାଚାର କରି ବସିଲା ଆଉ ସେଥିପାଇଁ କ'ଣ···

କମଲ ମୁହଁ ଉଠାଇବା କ୍ଷଣି ଦେଖିବାକୁ ପାଇଲା ନୀଳିମା ଏକ ଦୃଷ୍ଟିରେ ତାକୁ ଚାହିଁ ରହିଛି । ଉତ୍ତରଟା ଶୁଣିବା ପାଇଁ ସେ ଯେପରି ସମସ୍ତଙ୍କ ଅପେକ୍ଷା ବେଶୀ ଉତ୍ସୁକ । ନ ହେଲେ କମଲ ହୁଏତ ଚୁପ୍ ହୋଇ ରହିଥାନ୍ତା । ହରେନ୍ଦ୍ର ଯାହା କରିଛି ତାହାଠାରୁ ଅଧିକ ପଦଟିଏ ମୁଦ୍ଧା କରି ନ ଥାନ୍ତା । କହିଲା—ଏ ପ୍ରଶ୍ନ ମୋ ନିକଟରେ ବର୍ତ୍ତମାନ ଅବାନ୍ତର ହୋଇ ଉଠିଛି । ଯାହା ନାହିଁ ତାହା କାହିଁକି ନାହିଁ ବୋଲି ଆଜ ଆଖିରୁ ଲୁହ ଢାଳିବା ପାଇଁ ମୁଁ ଲଜ୍ଜ୍ୟାବୋଧ କରେ । ଯେତିକି ସେ କରିପାରିଛନ୍ତି, କାହିଁକି ତା ଠାରୁ ଅଧିକା କରି ପାରିଲେ ନାହିଁ ବୋଲି ଋଗାରଜି କରିବା ପାଇଁ ମୋ ମୁହଁ ତଳକୁ ହୋଇଯାଏ । ଆପଣଙ୍କ ନିକଟରେ ମୋର କେବଳ ଏତିକି କହିବାର କଥା ଯେ ମୋର ଦୁର୍ଭାଗ୍ୟ ପାଇଁ ତାଙ୍କୁ ଆଉ ଟଣାଟଣି କରିବେ ନାହିଁ । ଏତିକି କହି ସାରି ସେ ଯେପରି ହଠାତ୍ କ୍ଳାନ୍ତ ହୋଇ ପଡ଼ି ରହି ଚେୟାର ପଛରେ ମଥା ରଖି ଆଖି ବୁଜିଲା ।

ଘରର ନୀରବତାକୁ ନୀଳିମା ଭାଙ୍ଗିଲା । ସେ ଆଖିର ଇଙ୍ଗିତ ଦ୍ୱାରା ଦୁଧ ଗିନା ଆଡ଼କୁ ନିର୍ଦ୍ଦେଶ କରି ଧୀରେ ଧୀରେ କହିଲା—ଏଇଟା ଯେ ଏକବାର ଥଣ୍ଡା ହୋଇ ଗଲାଣି । ଦେଖନ୍ତୁ ତ ଖାଇ ପାରିବେ କି ନାହିଁ ନଚେତ୍ ପୁଣି ଥରେ ଗରମ କରି ଆଣିବି ।

ଆଶୁବାବୁ ଗିନାଟାକୁ ମୁହଁ ପାଖକୁ ନେଇ କିଛି ପିଇ ପାରି ରଖି ଦେଲେ । ନୀଳିମା ଅବଶିଷ୍ଟ କ୍ଷୀରକୁ ମୁହଁ ପାଖକୁ ଦେଇ କହିଲା—ପଡ଼ି ରହିଲେ ଚଳିବ ନାହିଁ । ଡାକ୍ତରଙ୍କ ପରାମର୍ଶ ଭାଙ୍ଗିବାକୁ ମୁଁ ଅନୁମତି ଦେଇ ପାରିବି ନାହିଁ ।

ଆଶୁବାବୁ ଅବସନ୍ନ ହୋଇ ମୋଟା ତକିଆରେ ଆଉଜି ପଡ଼ି କହିଲେ—ତାଙ୍କ ଅପେକ୍ଷା ବଡ଼ ପରାମର୍ଶଦାତା ହେଉଛି ନିଜର ଦେହ । ଏକଥା କିନ୍ତୁ ତୁମର ଭୁଲିଯିବା ଉଚିତ ନୁହେଁ ।

: ମୁଁ ଭୁଲି ନାହିଁ । ଭୁଲି ଯାଉଛନ୍ତି ଆପଣ ନିଜେ ।

: ଏଇଟା ବସ୍ତୁସର ଦୋଷ ମିଲମା । ମୋର ନୁହେଁ ।

ମିଲମା ହସି ଦେଇ କହିଲା—ସତେ ନା କ'ଣ ? ଦୋଷ ଚାପି ଦେବାଭଳି ବସ୍ତୁସ ପାଇବାକୁ ଆପଣଙ୍କର ଅନେକ···ଅନେକ ସମୟ ବାକି ଅଛି । ଆଚ୍ଛା, କମଲକୁ ନେଇ ମୁଁ ଟିକିଏ ସେ ଘରେ ଗପ କରୁଛି । ଆପଣ ଆଖି ବୁଜି ଟିକିଏ ବିଶ୍ରାମ କରନ୍ତୁ । କ'ଣ ଯିବିତ ?

ଆଶୁବାବୁଙ୍କର ବୋଧହୁଏ ଇଚ୍ଛା ନ ଥିଲା···ତଥାପି ରାଜି ହେଲେ । କହିଲେ— ଏକବାରେ କୁଆଡ଼େ ଚାଲିଯିବ ନାହିଁ—ଡାକିଲେ ଯେପରି ଶୁଣିପାରିବ ।

: ଆଚ୍ଛା, ଚାଲ ହରେନ୍ଦ୍ର । ଆମେ ପାଖ ଘରେ ଯାଇ ବସିବା । କହି ମିଲମା ସମସ୍ତଙ୍କୁ ଧରି ଚାଲିଗଲା । ମିଲମାର କଥାଗୁଡ଼ିକ ସ୍ୱଭାବତଃ ମଧୁର । କହିବାର ଭଙ୍ଗୀରେ ଏପରି ଏକ ବୈଶିଷ୍ଟ୍ୟ ଥାଏ ଯାହା କି ହଠାତ୍ ନଜରରେ ଧରା ପଡ଼ିଥାଏ । କିନ୍ତୁ ଆଜିକାର ଏଇ କେତେ ପଦ କଥାରେ ଯେପରି ତାହିର ବ୍ୟତିକ୍ରମ ପରିଲକ୍ଷିତ ହୋଇଥିଲା । ହରେନ୍ଦ୍ର ତାହା ଲକ୍ଷ୍ୟ କରି ପାରିଲା ନାହିଁ କିନ୍ତୁ ଲକ୍ଷ୍ୟ କରିପାରିଲା କମଲ । ପୁରୁଷ ଆଖି ଯାହାକୁ ଏଡ଼ାଇ ଗଲା ତାହା କିନ୍ତୁ ରମଣୀ ଆଖିରେ ଧରା ପଡ଼ିଗଲା । ମିଲମା ଶୁଶ୍ରୂଷା କରିବା ପାଇଁ ଆସିଥିଲା । ଏହି ପୀଡ଼ିତ ଲୋକଟିର ସ୍ୱାସ୍ଥ୍ୟ ପାଇଁ ସାବଧାନତା ଦରକାର ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସାଧାରଣ ଲୋକଙ୍କ ନିକଟରେ ଏକଥା କହି ହୋଇ ଦେବ । କିନ୍ତୁ ସେହି ସାଧାରଣ ଭିତରୁ କମଲ ଜଣେ ନୁହେଁ । ମିଲମାର ଏହି ଏକାନ୍ତ ସତର୍କତାର ଅପରୂପ ସ୍ନିଗ୍ଧତାରେ ସେ ଯେପରି ଏକ ଅଭାବିତ ବସ୍ତୁ ଦେଖି ପାରିଲା । ବସ୍ତୁ କେବଳ ଗୋଟିଏ ଦିଗରୁ ନୁହେଁ, ବସ୍ତୁ ବହୁ ଦିଗରୁ । ସମ୍ପଦର ମୋହ ଏଇ 'ବିଧବା ଝିଅଟିକୁ ମୁଗ୍ଧ କରି ପାରିଛି ଏପରି ସନ୍ଦେହ କମଲ ଚିନ୍ତାରେ ମଧ୍ୟ ସ୍ଥାନ ପାଇ ପାରିଲା ନାହିଁ । ମିଲମାର ଯେତିକି ପରିଚୟ ସେ ପାଇଛି, ତାହିରେ ଆଶୁବାବୁଙ୍କର ରୂପର ପ୍ରଶ୍ନ ଏବଂ ଯୌବନ ଏହି କ୍ଷେତ୍ରରେ କେବଳ ଅସଙ୍ଗତ ନୁହେଁ, ହାସ୍ୟକର ମଧ୍ୟ । ତେବେ କେଉଁଠାରେ ଯେ ଏହାର ସନ୍ଧାନ ମିଳି ପାରିବ, କମଲ ମନେ ମନେ ତାହା ଖୋଜିବାକୁ ଲାଗିଲା । ଏହା ଛଡ଼ା ଆଉ ଗୋଟାଏ ଦିଗ ଅଛି । ସେହି ଦିଗଟା ଆଶୁବାବୁଙ୍କ ନିଜର । ଏହି ସରଳ ସଦାଶିବ ମନୁଷ୍ୟଟିର ଗମ୍ଭୀର ଚିତ୍ତ ତଳେ ପତ୍ନୀ ପ୍ରେମର ଯେଉଁ ଆଦର୍ଶ ଅଚଞ୍ଚଳ ନିଷ୍ଠାଦ୍ୱାରା ନିତ୍ୟ ପୂଜିତ ହେଉଅଛି, ତାହିରେ କୌଣସି ଦିନ କୌଣସି ପ୍ରକାରର ପ୍ରଲୋଭନ ଦାଗ ପକାଇ ପାରିବ ନାହିଁ, ଏହା ହିଁ ଥିଲା ସମସ୍ତଙ୍କର ବିଶ୍ୱାସ । ମନୋରମାର ଜନନୀଙ୍କ ମୃତ୍ୟୁ କାଳରେ ଆଶୁବାବୁଙ୍କ ବୟସ ବେଶୀ ନଥିଲା । ସେତେବେଳକୁ ମଧ୍ୟ ଯୌବନ ଅତିକ୍ରାନ୍ତ ହୋଇ ନ ଥାଏ । କିନ୍ତୁ ସେହିଦିନଠାରୁ ସେହି ଲୋକାନ୍ତରିତ ପତ୍ନୀର ସ୍ମୃତିକୁ ବିସ୍ମରଣ କରାଇ ନୂତନର ପ୍ରତିଷ୍ଠା କରିବା ପାଇଁ ଆତ୍ମୀୟ, ଅନାତ୍ମୀୟମାନେ ସମସ୍ତ ପ୍ରକାର ଆୟୋଜନ କରିବାରେ ତ୍ରୁଟି କରି ନ ଥିଲେ । କିନ୍ତୁ ଦୁର୍ଭେଦ୍ୟ ଦୁର୍ଗର ଦୁଆର ଭାଙ୍ଗିବାର କୌଶଳ

ତାହାକୁ ଜଣା ନଥିଲା । ଏସବୁ କମଳର ଲୋକମୁହଁରୁ ଶୁଣା କାହାଣୀ । ସେଇ ଘରେ ଅନ୍ୟମନସ୍କ ଭାବରେ ଚୁପ୍ ହୋଇ ବସି ରହି ସେ କେବଳ ଏହାହିଁ ଭାବିବାକୁ ଲାଗିଲା ଯେ ନୀଳିମାର ମନୋଭାବର ଲେଶ ମାତ୍ର ଆଭାସ ଏହି ଲୋକଟିର ଆଖିରେ ପଡ଼ିଛି କି ନାହିଁ ? ଯଦି ପଡ଼ିଥାଏ, ଦାମ୍ପତ୍ୟର ଯେଉଁ ସୁକଠୋର ନୀତି ଅଲଙ୍ଘ୍ୟ ଧର୍ମ ଭଳି ଏକାନ୍ତ ସତର୍କତାର ସହିତ ସେ ଆଜୀବନ ରକ୍ଷା କରି ଆସିଛନ୍ତି, ଆସନ୍ତର ଏହି ନବଜାଗ୍ରତ ଚେତନା ଦ୍ୱାରା ତାହାର ଧର୍ମ ଲେଶମାତ୍ର ବିକ୍ଷୁବ୍ଧ ହୋଇ ପଡ଼ିଛି କି ନାହିଁ ?

ସ୍ନେହର ଚାହା, ରୁଟି, ଫଳ ପ୍ରଭୃତି ଦେଇଗଲା । ଅତିଥିମାନଙ୍କ ଆଗରେ ସେସବୁ ଜିନିଷ ରଖିଦେଇ ନୀଳିମା ନାନା କଥା କହିବାକୁ ଲାଗିଲା । ଆଶୁବାବୁଙ୍କର ଅସୁସ୍ଥତା, ତାଙ୍କ ସ୍ୱାସ୍ଥ୍ୟ, ତାଙ୍କର ଭଦ୍ରତା ଏବଂ ଶିଶୁଙ୍କ ଭଳି ସରଳତାର ଶ୍ରେଷ୍ଠ ମୋଟ ବିବରଣି ଯାହା ଏଇ କେତେ ଦିନ ଭିତରେ ତା ଆଖିରେ ପଡ଼ିଛି—ଏଇପରି ଅନେକ କିଛି । ଶ୍ରୋତା ହିସାବରେ ହରେନ୍ଦ୍ର ପ୍ରତ୍ୟେକ ସ୍ତ୍ରୀଲୋକଙ୍କର ଲୋଭନୀୟ ବ୍ୟକ୍ତି । ତାରି ସାଗ୍ରହ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ନୀଳିମାର ବାକ୍‌ଶକ୍ତି ଉଚ୍ଛ୍ୱସିତ ଆବେଗରେ ଶତମୁଖ ଦେଇ ଫୁଟି ବାହାରିବାକୁ ଲାଗିଲା । କହିବାର ଆନ୍ତରିକତାରେ ମୁଗ୍ଧ ହୋଇ ଉଠିଥିବା ହରେନ୍ଦ୍ର ଲକ୍ଷ୍ୟ କରିଲା ନାହିଁ ଯେ, ଯେଉଁ ନୂଆଁଉଙ୍କୁ ସେ ଏତେ ଦିନ ଧରି ଅବିନାଶ ବାବୁଙ୍କ ଘରେ ଦେଖି ଆସିଥିଲା ସେ ଏହି କି ନାହିଁ ? ଏହି ପରିଣତ ଯୌବନର ସ୍ନିଗ୍ଧ ଗାମ୍ଭୀର୍ଯ୍ୟ, ସେହି କୌତୁକ ରସୋଜ୍ଜ୍ୱଳ ପରିମିତ ପରିହାସ, ବୈଧବ୍ୟର ସୀମାବଦ୍ଧ ଆଳାପ—ଆଲୋଚନା, ସେହି ସୁପରିଚିତ ସମସ୍ତ କିଛିକୁ ହିଁ ଏଇ କେତେଦିନ ଭିତରେ ବିସର୍ଜ୍ଜନ ଦେଇ ଆକସ୍ମିକ ବାଚାଳତାରେ ବାଳିକା ଭଳି ଯିଏ ପ୍ରଗଲ୍‌ଭ ହୋଇ ଉଠିଛନ୍ତି ସେ ସେଇ କି ନା, ଆଉ କେହି ?

କହୁ କହୁ ନୀଳିମାର ହଠାତ୍ ଦୃଷ୍ଟି ପଡ଼ିଲା, ସ୍ନେହା କପ୍‌ରେ ଦୁଇ ତିନଥର ଚୁମୁକ ଦେବା ବ୍ୟତୀତ କମଳ ଆଉ କିଛି ଖାଇ ନାହିଁ । କ୍ଷୁଣ୍ଣ କଣ୍ଠରେ ସେ ଅନୁରୋଧ କରିବାରୁ କମଳ ହସିଦେଇ କହିଲା—ଏହା ଭିତରେ ଭୁଲିଗଲେଣି ?

: ଭୁଲି ଗଲିଣି ! ତା' ମାନେ ?

: ତା ମାନେ ଏଇ ଯେ ମୋ ଖାଇବା କଥାଟା ଆପଣଙ୍କର ସମ୍ପୂର୍ଣ୍ଣ ମନେ ନାହିଁ । ଅସମୟରେ ମୁଁ ତ କିଛି ଖାଏ ନାହିଁ ।

: ଏବଂ ସହସ୍ର ଅନୁରୋଧ ସତ୍ତ୍ୱେ ଏଥିରେ କୌଣସି ବ୍ୟତିକ୍ରମ ସମ୍ଭବ ହେବା ସହଜ ନୁହେଁ । ଏଇ କଥାଟା ହରେନ୍ଦ୍ର ଯୋଗ କରିଦେଲା ।

ପ୍ରତ୍ୟୁତ୍ତରରେ କମଳ ସେହିଭଳି ହସ ହସ ମୁହଁରେ କହିଲା—ଅର୍ଥାତ୍ ମୋର ଏହି ଜିଦ୍‌ରେ ପରିବର୍ତ୍ତନ ନାହିଁ ? କିନ୍ତୁ ଏତେ ଗର୍ବ ମୁଁ କରିନି ହରେନ୍ ବାବୁ । ତେବେ ସାଧାରଣତଃ ଏଇ ନିୟମଟା ମୋର ଅଭ୍ୟାସରେ ପଡ଼ିଯାଇଛି । ଏ କଥା ମୁଁ ମାନୁଛି ।

ବାଟରେ ଆସୁ ଆସୁ କମଳ ପ୍ରଶ୍ନ କଲା—ଆପଣ ବର୍ତ୍ତମାନ କୁଆଡ଼େ ଯାଉଛନ୍ତି କହନ୍ତୁ ତ ?

: ଭୟ ନାହିଁ, ଆପଣଙ୍କ ଘରେ ପଶିବ ନାହିଁ । କିନ୍ତୁ ଯେଉଁଠାରୁ ଆଣିଥିଲି, ସେହିଠାରେ ପହଞ୍ଚାଇ ନ ଦେଲେ ଅନ୍ୟାୟ ହେବ ।

ସେତେବେଳକୁ ରାତି ହୋଇ ଆସିଛି । ରାସ୍ତାରେ ଲୋକଚଳାଚଳ ବିରଳ ହୋଇ ଆସିଛି । ହଠାତ୍ ଅତି ଘନିଷ୍ଠ ଭଳି କମଳ ତାର ଗୋଟାଏ ହାତକୁ ନିଜ ହାତ ମୁଠାକୁ ଟାଣି ନେଇ କହିଲା—ଚାଲନ୍ତୁ ମୋ ସଙ୍ଗରେ । ନ୍ୟାୟ-ଅନ୍ୟାୟର ବିଚାର-ବୋଧ ଆପଣଙ୍କର କେତେ ଦୂର ସୂକ୍ଷ୍ମ ହୋଇ ପାରିଛି ତାର ପରୀକ୍ଷା ଦେବେ ।

ହରେନ୍ଦ୍ର ସଙ୍କୋଚରେ ବ୍ୟସ୍ତ ହୋଇ ଉଠିଲା । ଏହା ଯେ ଭଲ ହେଲା ନାହିଁ । ଏପରି ଭାବରେ ରାସ୍ତାରେ ଚାଲିବାରେ ଯେ ବିପଦ ଅଛି, ଏବଂ ପରିଚିତ କେଉଁଠାରୁ ଆସି ହଠାତ୍ ଦେଖା ହୋଇଗଲେ ଲଜ୍ଜାରେ ମରିଯିବାକୁ ଯେ ପଡ଼ିବ, ଏହା ସ୍ପଷ୍ଟ ଦେଖିପାରୁ ଥିଲେ ମଧ୍ୟ 'ନା' ବୋଲି କହି ହାତକୁ ଛଡ଼ାଇ ନେବାର ଅଶୋଭନୀୟ କଠୋରତାକୁ ସେ ମନରେ ସ୍ଥାନ ଦେଇ ପାରିଲା ନାହିଁ । ବ୍ୟାପାରଟା ତାକୁ ବିଶ୍ରୀ ଦେଖାଗଲା ଏବଂ ସଙ୍କଟାପନ୍ନ ଅବସ୍ଥା ବୋଲି ମାନି ନେଇ ସେ ତା ନିଜ ଦରଜା ନିକଟରେ ଆସି ପହଞ୍ଚିଲା । ବିଦାୟ ନେବାକୁ ଚାହିଁବାରୁ କମଳ କହିଲା ଏତେ ତରତର କେଉଁଥିପାଇଁ ? ଆଶ୍ରମରେ ଅଜିତ ବାବୁ ଛଡ଼ା ତ ଆଉ କେହି ନାହାନ୍ତି ।

: ନା । ଆଜି ସେ ମଧ୍ୟ ନାହାନ୍ତି । ସକାଳ ଗାଡ଼ିରେ ଦିଲ୍ଲୀ ଯାଇଛନ୍ତି । ସମ୍ଭବତଃ କାଲି ଫେରି ଆସିବେ ।

: ଗଲେ ,ଖାଇବେ କ'ଣ ? ଆଶ୍ରମରେ ତ ପୂଜାରୀ ରଖିବାର ବ୍ୟବସ୍ଥା ନାହିଁ ?

: ନା । ଆମେମାନେ ନିଜେ ରାନ୍ଧି ଖାଉ ।

: ଅର୍ଥାତ ଆପଣ ଆଉ ଅଜିତ୍ ବାବୁ ?

: ହଁ । କିନ୍ତୁ ହସୁଛନ୍ତି ଯେ ? ଆମେମାନେ ନିହାତି ଖରାପ ରାନ୍ଧୁ ନାହୁଁ ।

: ତାହା ତ ଜାଣେ । ପରକ୍ଷଣରେ କମଳ ଗମ୍ଭୀର ହୋଇ ପୁଣି କହିଲା ଅଜିତ୍ ବାବୁ ନାହାନ୍ତି । ସୁତରାଂ ଫେରି ଯାଇ ଆପଣଙ୍କୁ ନିଜେ ରାନ୍ଧି ଖାଇବାକୁ ପଡ଼ିବ ।

ମୋ ହାତରେ ଖାଇବା ପାଇଁ ଯଦି ଘୃଣାବୋଧ ନ କରନ୍ତି ତେବେ ମୋର ସ୍ୱର ଇଚ୍ଛା ଆପଣଙ୍କୁ ନିମନ୍ତ୍ରଣ କରିବା ପାଇଁ । ଖାଇବେ ମୋ ହାତରୁ ?

ହରେନ୍ଦ୍ର ଅତ୍ୟନ୍ତ କ୍ଷୁର୍ଣ୍ଣ ହୋଇ କହି ଉଠିଲା—ଏହାତ ବଡ଼ ଅନ୍ୟାୟ । ଆପଣ କ'ଣ ସତରେ ମନେ କରିପାରୁଛନ୍ତି ଯେ ମୁଁ ଘୃଣାରେ ନାହିଁ କରି ପାରିବି ? ଏତିକ କହି ସେ ମୁହୂର୍ତ୍ତିଟିଏ ଚୁପ୍ ହୋଇ ରହିବା ପରେ କହିଲା—ଆପଣଙ୍କୁ ଜଣାଇବାରେ ଛୁଟି କରି ନାହିଁ ଯେ ଯେଉଁମାନେ ବାସ୍ତବିକ ଆପଣଙ୍କୁ ଶ୍ରଦ୍ଧା କରନ୍ତି ମୁଁ ହେଉଛି ସେମାନଙ୍କ ଭିତରୁ ଜଣେ । ଅସମୟରେ ଆପଣଙ୍କୁ କଷ୍ଟ ନ ଦେବା ପାଇଁ ମୁଁ କେବଳ ଆପତ୍ତି କରୁଛି ।

: ମୁଁ ବିଶେଷ କଷ୍ଟ ପାଇବି ନାହିଁ । ତାହା ନିଜେ ଦେଖି ପାରିବେ । ଆସନ୍ତୁ ।

ଗୃହବାକୁ ବସିପଡ଼ି କମଳ କହିଲା—ମୋର ଆୟୋଜନ ସାମାନ୍ୟ । କିନ୍ତୁ ଆଶ୍ରମରେ ଆପଣଙ୍କର ଯାହାସବୁ ଦେଖି ଆସିଛି ତାହାକୁ ମଧ୍ୟ ପ୍ରଚୁର ବୋଲି କୁହା-ଯାଇ ପାରିବ ନାହିଁ । ସୁତରାଂ ଏଠାରେ ଖାଇବା ପାଇଁ କଷ୍ଟ ପଡ଼ିବା ହୁଏ, ଅନ୍ୟାୟ ଭଳି ଅସହ୍ୟ ହେବ ନାହିଁ; ଅନ୍ତତଃ ଏତିକ ଭରସା ମୋର ଅଛି ।

ହରେନ୍ଦ୍ର ଖୁସି ହୋଇ କହିଲା—ଆମର ଖାଇବା ବ୍ୟବସ୍ଥା ଯାହା ଦେଖି ଆସିଛନ୍ତି ତାହା ହିଁ ଆମର ସବୁ ଦିନର ଖାଦ୍ୟ । ପ୍ରକୃତରେ ଆମେମାନେ ବହୁତ କଷ୍ଟରେ ଅଛୁ ।

: କିନ୍ତୁ ରହନ୍ତି କାହିଁକି ? ଅଜିତ ବାବୁ ବଡ଼ ଲୋକ, ଆପଣଙ୍କ ନିଜ ଅବସ୍ଥା ମଧ୍ୟ ଅସ୍ୱଚ୍ଛଳ ନୁହେଁ । କଷ୍ଟ ପାଇବାର ତ କାରଣ ନାହିଁ ?

: କାରଣ ନ ଥାଇପାରେ କିନ୍ତୁ ପ୍ରୟୋଜନ ଅଛି । ମୋର ବିଶ୍ୱାସ ଏକଥା ଆପଣ ବୁଝି ପାରିଛନ୍ତି ବୋଲି ନିଜ ପାଇଁ ଏପରି ବ୍ୟବସ୍ଥା କରି ରଖିଛନ୍ତି ? ଅଥଚ ବାହାରୁ ଯଦି କେହି ଆଶ୍ଚର୍ଯ୍ୟ ହୋଇ ଏଥିପାଇଁ ପ୍ରଶ୍ନ କରି ବସେ ତାକୁ କ'ଣ କୈଫିୟତ ଦେଇ ପାରିବେ ?

: ବାହାର ଲୋକଙ୍କୁ ନ ଦେଇ ପାରିଲେ ଭିତରର ଲୋକଙ୍କୁ ତ ଦେଇ ପାରିବି ! ପ୍ରକୃତରେ ମୁଁ ବହୁତ ଦରିଦ୍ର । ନିଜକୁ ଭରଣ ପୋଷଣ କରିବା ପାଇଁ ଯେଉଁ ଟିକିଏ ଶକ୍ତି ତହିଁରେ ଏହାଠାରୁ ଅଧିକ କିଛି କରିହୁଏ ନାହିଁ । ବାବା ମୋତେ କିଛି ଦେଇ ଯାଇ ପାରି ନାହାନ୍ତି । କିନ୍ତୁ ପରର ଅନୁଗ୍ରହ ଠାରୁ ମୁକ୍ତି ପାଇବା ପାଇଁ ଏହି ବୀଜମନ୍ତ୍ର ଟିକିକ ଦାନ କରି ଯାଇଛନ୍ତି ।

ହରେନ୍ଦ୍ର ତା ମୁହଁକୁ ନୀରବରେ ଚାହିଁ ରହିଲା । ଏହି ବିଦେଶ ଜାଗାରେ କମଳ ଯେ କିଭଳି ନିରୁପାୟ ସେ ଜାଣେ । କେବଳ ଅର୍ଥ ପାଇଁ ନୁହେଁ, ସମାଜ, ସମ୍ମାନ, ସହାନୁଭୂତି କୌଣସି ଦିଗରୁ ଚାହିଁଲେ ତା ପାଇଁ କିଛି ନାହିଁ । ତଥାପି ଏତେ ଗୁଡ଼ିଏ ନିଃସହାୟତା ଏହି ରମଣୀକୁ ଲୋକମାନେ ଦୁର୍ବଳ କରି ମାରି ନାହାଁନ୍ତି । ଆଜି ମଧ୍ୟ ସେ

ଭିକ୍ଷା ଗ୍ରହେଁ ନାହିଁ ବରଂ ଭିକ୍ଷା ଦଏ । ସେଇଁ ଶିବନାଥ ତାର ଏତେ ବଡ଼ ଦୁର୍ଗତର ମୂଳ, ତାକୁ ମଧ୍ୟ ଦାନ କରିବା ପାଇଁ ତା ପାଖରୁ ସମ୍ବଳ ଶେଷ ହୋଇ ନାହିଁ । ତାକୁ ସାହାସ ଏବଂ ସାନ୍ତ୍ୱନା ଦେବାର ଅଭିପ୍ରାୟ ନେଇ ସେ କହିଲ—ଆପଣଙ୍କ ସହିତ ମୁଁ ତର୍କ କରିବା ପାଇଁ ଗ୍ରହେଁ ନାହିଁ କମଳ । କିନ୍ତୁ ଏହିଛଡ଼ା ଆଉ କିଛି ଭାବିପାରେ ନାହିଁ ଯେ, ଆପଣଙ୍କ ପରି ମୋ ଦାରିଦ୍ର୍ୟ ସତ୍ୟ ନୁହେଁ । ଥରେ ଇଚ୍ଛା କଲେ ମରିଚକା ଭଳି ଏ ଦୁଃଖ ମିଳାଇ ଯାଇ ପାରିବ । ସେ ଇଚ୍ଛା ଆପଣଙ୍କର ନାହିଁ । କାରଣ ଆପଣ ଜାଣନ୍ତି ସ୍ୱେଚ୍ଛାରେ ଗ୍ରହଣ କରିଥିବା ଦୁଃଖକୁ ଐଶ୍ୱର୍ଯ୍ୟ ଭଳି ଭୋଗ କରିଯାଇ ପାରେ ।

: ଯାଏ । କିନ୍ତୁ କାହିଁକି ଜାଣନ୍ତି ? ଏଇଟା ଅପ୍ରୟୋଜନର ଦୁଃଖ—ଦୁଃଖର ଅଭିନୟ ବୋଲି । ସକଳ ଅଭିନୟ ଭିତରେ କିଛିଟା କୌତୂହଳ ଥାଏ । ତାକୁ ଉପ-ଭୋଗ କରିବାରେ ବାଧା ନାହିଁ କହି ସେ ହଠାତ୍ ମଧ୍ୟ ହସି ପକାଇଲେ ।

ହଠାତ୍ କଥାଟା କପରି ବେସୁରା ଜଣାଗଲା । ଖୁଣ୍ଟା ଖାଇ ହରେନ୍ଦ୍ର ମୁହୂର୍ତ୍ତିକ ପାଇଁ ମୌନ ରହିବା ପରେ ଉତ୍ତର ଦେଲେ—କିନ୍ତୁ ଏଇଟା ତ ମାନନ୍ତି ଯେ, ପ୍ରାଚୁର୍ଯ୍ୟ ମଝିରେ ଜୀବନ ରୁକ୍ଷ ହୋଇ ଉଠେ । ଅଥଚ ଦୁଃଖ ଦୈନ୍ୟ ମଝିରେ ମଣିଷର ଚରିତ୍ର ମହତ୍ତ୍ୱ ଏବଂ ସତ୍ୟ ହୋଇ ଗଢ଼ି ଉଠେ ।

କମଳ ଷ୍ଟୋଭ ଉପରୁ କରେଇଟା ଓହ୍ଲାଇ ରଖିଲେ ଏବଂ ଆଉ ଗୋଟାଏ କ'ଣ ବସାଇ ଦେଇ କହିଲେ—ସତ୍ୟ ହୋଇ ଗଢ଼ି ଉଠିବା ପାଇଁ ଏ ଜଗତରେ ମଧ୍ୟ କିଛିଟା ସତ୍ୟ ଥିବା ଦରକାର ହରେନବାବୁ । ଆପଣ ବଡ଼ ଲୋକ । ବାସ୍ତବିକ ଅଭାବ ନାହିଁ । ତଥାପି ଛଦ୍ମ ଅଭାବର ଆୟୋଜନରେ ଆପଣ ବ୍ୟସ୍ତ । ପୁଣି ସଙ୍ଗରେ ଯୋଗ ଦେଇଛନ୍ତି ଅଜିତବାବୁ । ଆପଣଙ୍କ ଆଶ୍ରମର ଦର୍ଶନ ମୁଁ ବୁଝିନି ନାହିଁ, କିନ୍ତୁ ଏତକ ବୁଝି ପାରୁଛି ଯେ ଦୈନ୍ୟ ଓ ଭୋଗର ବଡ଼ମୂନାହାରୀ କଦାପି ମହତ୍ତ୍ୱ ପାଇ ହୁଏ ନାହିଁ । ବରଂ କିଛିଟା ଦମ୍ଭ ଆଉ ଅହ-ମିକା ମିଳିପାରିଥାଏ । ସଂସ୍କାରଦ୍ୱାରା ଅନ୍ଧ ନ ହୋଇ ସାମାନ୍ୟ ଚେଷ୍ଟା କଲେ ଏହି ସତ୍ୟକୁ ଦେଖି ପାରିବେ । ଦୃଷ୍ଟାନ୍ତ ପାଇଁ ଭାରତ ପର୍ଯ୍ୟଟନ କରି ବୁଲିବାକୁ ପଡ଼ିବ ନାହିଁ । କିନ୍ତୁ ବର୍ତ୍ତମାନ ସେସବୁ ଆଲୋଚନା ଥାଉ । ରୋଷାଇ ଶେଷ ହୋଇ ଆସିଲାଣି—ଏଥର ଖାଇବା ପାଇଁ ବସନ୍ତୁ ।

ହରେନ୍ଦ୍ର ହତାଶ ହୋଇ କହିଲେ—ମୁସ୍କିଲ । ଏଇ ଭାରତବର୍ଷର ଫିଲସଫି ବୁଝିବା ଆପଣଙ୍କର ସାଧ୍ୟ ନୁହେଁ । ଆପଣଙ୍କ ଶିରା ପ୍ରଶିରାରେ ମ୍ଳେଚ୍ଛ ରକ୍ତ ବହି ଚାଲିଛି—ହିନ୍ଦୁର ଆଦର୍ଶ ସେହି ଆଖିରେ ତାମସା ଭଳି ମନେ ହେବ । ଥାଉନ୍ତୁ; କ'ଣ ରୋଷାଇ ହୋଇଛି ଖାଇବାକୁ ଦିଅନ୍ତୁ ।

: ଏଇ ଯେ ଦେଲି, କହି କମଳ ଆସନ ପକାଇ ଠାଆ କରିଦେଲେ । ସାମାନ୍ୟ ଭାତ ମଧ୍ୟ କଲି ନାହିଁ ।

ହରେନ୍ଦ୍ର ସେହି ଢଙ୍ଗରେ ଗମ୍ଭୀର ସ୍ୱରରେ କହି ଉଠିଲେ—ଧରନ୍ତୁ ଯେଉଁ ଯାହା ସବୁ କିଛି ଦାନ କରି ଦେଇ ପ୍ରକୃତରେ ଅଭାବ ଓ ଦୈନ୍ୟ ମଝିକୁ ଓହ୍ଲାଇ ଆସେ ସେତେବେଳେ ତ ତାକୁ ଅଭିନନ୍ଦନ କରୁଛି କହି ଅଙ୍କା କରାଯାଇ ପାରିବ ନାହିଁ। ସେତେବେଳେ ତ···

କମଳ ବାଧା ଦେଇ କହିଲା—ନା, ସେତେବେଳେ ଆଉ ଅଙ୍କା ନୁହେଁ, ସେତେବେଳେ ପ୍ରକୃତ ପାଗଳ ବୋଲି ମୁଣ୍ଡ ବାଡ଼େଇ କାନ୍ଦିବାର ସମୟ ଆସିବ। ହରେନ୍ଦ୍ର ବାବୁ, କିଛି କାଳ ପୂର୍ବେ ମୁଁ ମଧ୍ୟ କେତେକଟା ଆପଣଙ୍କ ଭଳି ଭାବୁଥିଲି। ଉପବାସ ଦଶା ଭଳି ମୋତେ ମଧ୍ୟ ତାହା ମଝିରେ ମଝିରେ ଆଚ୍ଛନ୍ନ କରିଛି। କିନ୍ତୁ ବର୍ତ୍ତମାନ ସଂଶୟ ମୋର ଘୁଞ୍ଚିଛି। ଦୈନ୍ୟ ଏବଂ ଅଭାବ ଇଚ୍ଛାମତେ ଆସୁ ବା ନ ଆସୁ ଏହା ନେଇ ଗର୍ବ କରିବାର କିଛି ନାହିଁ। ଏହାର ମଝିରେ ଅଛି ଶୂନ୍ୟତା। ଏହାର ମଝିରେ ଅଛି ଦୁର୍ବଳତା। ଏହାର ମଝିରେ ଅଛି ପାପ। ଅଭାବ ଯେ ମଣିଷଙ୍କୁ କେତେ ହୀନ, କେତେ ଛୋଟ କରି ପକାଏ, ତାହାର ଦୃଷ୍ଟାନ୍ତ ହେଉଛନ୍ତି ଆପଣଙ୍କର ବନ୍ଧୁ ରାଜେନ୍ଦ୍ର। ତାଙ୍କ ନିକଟରୁ ତ କିଛି ମିଳି ପାରିବ ନାହିଁ, ସେଥିପାଇଁ ମୁଁ ଭାବେ। ଆପଣମାନେ ତାଙ୍କୁ ବିଦାୟ କରି ଦେଲେ। କଥାରେ ଅଛି ମଣିରୁ ଫିଙ୍ଗି କାଚକୁ ଆଦର କରିବା, ଆପଣମାନେ ଠିକ୍ ତାହା କରି ନାହାନ୍ତି? ତାଙ୍କୁ ବିଦାୟ କରି ଦେବାବେଳେ ଆଶ୍ରମ ଭିତରୁ କେହି ଜଣେ ଆପତ୍ତି କରିପାରିଲେ ନାହିଁ?

ଆଶ୍ଚର୍ଯ୍ୟ!

ହରେନ୍ଦ୍ର ଉତ୍ତର ଦେଲେ—ନା, ତାପରେ ଚୁପ୍ ହୋଇ ରହିଲେ।

ଆୟୋଜନ ସାମାନ୍ୟ, ତଥାପି କି ଯତ୍ନ ନ କରି କମଳ ଅତିଥିଙ୍କୁ ନ ଖୁଆଇଲା! ଖାଇ ବସିଲେ ବେଳେ ହରେନ୍ଦ୍ରର ବାରମ୍ବାର ନୀଳିମା କଥା ମନେ ପଡ଼ୁଥିଲା। କମଳ ବ୍ୟତୀତ ନାରୀଙ୍କର ଶାନ୍ତ ମାଧୁର୍ଯ୍ୟ ଏବଂ ଶୁଚିତାର ଆଦର୍ଶରେ ଆଉ କାହାକୁ ସେ ବଡ଼ ବୋଲି ଦେଖି ପାରୁ ନାହିଁ। ମନେ ମନେ କହିବାକୁ ଲାଗିଲେ, ଶିକ୍ଷା, ସଂସ୍କାର, ରୁଚି ଓ ପ୍ରବୃତ୍ତିରେ ପ୍ରଭେଦ ଏହା ଭିତରେ ଯେତେ ବେଶୀ ଥାଉ ନା କାହିଁକି ସେବା ଓ ମମତାରେ ସେ ହେଉଛି ଅନନ୍ୟା। ତାହା ସବୁ ବାହ୍ୟ ବସ୍ତୁ ବୋଲି ବୈପରୀତ୍ୟର ସୀମା ନାହିଁ। ଯୁକ୍ତିର ମଧ୍ୟ ଶେଷ ନାହିଁ। କିନ୍ତୁ ନାରୀର ଯେଉଁଟି ନିଜସ୍ୱ ଆପଣାର, ସମସ୍ତ ପ୍ରକାର ମତାମତର ଊର୍ଦ୍ଧ୍ୱରେ, ସେହି ଗୂଢ଼, ଅନ୍ତର୍ଦେଶର ରୂପଟି ଦେଖିଲେ ଆଖି ଏକ ପ୍ରକାରେ ଝଲସି ଉଠେ। ନାନା କାରଣରୁ ଆଜି ହରେନ୍ଦ୍ରର ଭୋକ ନ ଥିଲା। କେବଳ ଜଣକୁ ଖୁସି କରିବା ପାଇଁ ସେ ସାଧ୍ୟାତୀତ ଭୋଜନ କଲା। କ'ଣ ଗୋଟାଏ ତରକାରୀ ଭଲ ଲାଗୁଛି କହି ପାଞ୍ଚ ଖାଲି କରି ଭକ୍ଷଣ କଲା। କହିଲା, ଅନେକ ଅସମୟରେ ପହଞ୍ଚି ନ ଆବୋରଙ୍କୁ ଠିକ୍ ଏଇମିତି ଜବତ କରିଛି, କମଳ।

: କାହାଁକୁ ନିଜମାନଙ୍କୁ ?

: ହଁ ।

: ସେ କ'ଣ ଜବତ ହୋଇ ପାରନ୍ତି ?

: କହୁଛୁ । କେହୁ ମାନନ୍ତି ନାହିଁ ।

କମଳ ହସିଦେଇ କହିଲା—କେବଳ ଆପଣ ନୁହନ୍ତି । ଏଥି ପୁରୁଷମାନେ ଏପରି ମୋଟା ବୁଦ୍ଧିଆ ।

ହରେନ୍ଦ୍ର ଯୁକ୍ତି କରିବାକୁ ଯାଇ କହିଲା—ମୁଁ ଆଖିରେ ଦେଖୁଛି ଯେ ।

: ତାହା ତ ମୁଁ ଜାଣେ । ଆଉ ଏଇ ଆଖିରେ ଦେଖିଥିବା ଅହଂକାରରୁ ତ ଆପଣଙ୍କ କଥା ଜଣା ପଡୁଛି ।

: ଅହଙ୍କାର ଆପଣମାନଙ୍କର ତ କମ୍ ନୁହେଁ । ସେ ଓଳ ନୂଆ'ଉ ଖାଇ ପାରନ୍ତି ନାହିଁ । ଉପବାସ କରି କଟାନ୍ତି । ତଥାପି କେହୁ ହାର ମାନିବାକୁ ପ୍ରସ୍ତୁତ ନୁହନ୍ତି ।

କମଳ ଚୁପ୍ ହୋଇ ତା ମୁହଁକୁ ଚାହିଁ ରହିଲା ।

ହରେନ୍ଦ୍ର କହିଲା ଆପଣମାନଙ୍କ ଆଶୀର୍ବାଦରେ ଆମମାନଙ୍କ ମୋଟା ବୁଦ୍ଧି ଅକ୍ଷୟ ହୋଇଥାଉ । ଏଥିରେ ଲାଭ ବେଶୀ । ଆପଣଙ୍କର ସୂକ୍ଷ୍ମ ବୁଦ୍ଧି ଅଭିମାନରେ ଉପବାସ କରି ମରିବା ପାଇଁ ଆମେମାନେ ନାରାଜ ।

କମଳ ଏ କଥାରେ ଉତ୍ତର ଦେଲା ନାହିଁ ।

ହରେନ୍ଦ୍ର କହିଲା—ଏଣିକି ମଝିରେ ମଝିରେ ଆସି ଆପଣଙ୍କର ସୂକ୍ଷ୍ମ ବୁଦ୍ଧି ଟାକୁ ଆପଣାଛୁଏଁ ମାଗି ଦେଖିବ ।

: ତାହା ଆପଣ କରିପାରିବେ ନାହିଁ । ଗରୀବ ବୋଲି ଆପଣଙ୍କର ମୋ ଠାରେ ଦୟା ହେବ ।

ଏହା ଶୁଣି ହରେନ୍ଦ୍ର ଅପ୍ରତିଭ ହୋଇ ଉଠିଲା । ତାପରେ କହିଲା—ଦେଖନ୍ତୁ ଏ କଥାର ଉତ୍ତର ଦେବାକୁ କଷ୍ଟ ହୁଏ । କାହିଁକି ଜାଣନ୍ତି ? ମନେହୁଏ ରାଜାରାଣୀ ସାଜିବାକୁ ଯିଏ ଯୋଗ୍ୟା, କାଙ୍ଗାଳ ପଣିଆଁ ତାଠାରେ ଶୋଭା ପାଏନା । ମନେହୁଏ ଆପଣଙ୍କର ଦାରିଦ୍ର୍ୟ ଯେପରି ସକଳ ବଡ଼ଲୋକଙ୍କ ଝିଅମାନଙ୍କୁ ଉପହାସ କରି ଚାଲିଛି ।

କଥାଟା ତୀର ଭଳି ଯାଇ କମଳ ବୁକୁରେ ଭେଦିଲା ।

ହରେନ୍ଦ୍ର ପୁଣି କ'ଣ କହିବାକୁ ଯାଉଥିଲା, କମଳ ଅଟକାଇ ଦେଇ କହିଲା—ଆପଣ ତ ଖାଇ ସାରିଲେଣି, ଏଥର ଉଠନ୍ତୁ । ସେ ଘରେ ବସି ସାରା ରାତି ଗପ ଶୁଣିବ, ଆଉ ଏ ଘରର କାମଟା ସାରିନିଏ ।

କିଛିକ୍ଷଣ ପରେ ଶୋଇବା ଘରେ ଆସି କମଳ ବସିଲା । କହିଲା—ଆଜି ଆପଣଙ୍କ ନୂଆଁ'ଙ୍କର ସମସ୍ତ ଇତିହାସ ନ ଶୁଣି ଛାଡ଼ିବି ନାହିଁ । ଯେତେ ରାତି ହେଉ । କହନ୍ତୁ ।

ହରେନ୍, ବିପଦରେ ପଡ଼ିଲା । କହିଲା—ନୂଆଁ'ଙ୍କ ସମସ୍ତ କଥା ତ ମୁଁ ଜାଣିନି । ତାଙ୍କ ସହିତ ପ୍ରଥମ ପରିଚୟ ମୋର ହୁଏ ଆଗ୍ରାରେ, ଏଇ ଅବିନାଶ ଭାଇଙ୍କ ବସାରେ । ପ୍ରକୃତରେ ତାଙ୍କ ବିଷୟରେ ପ୍ରାୟ ମୁଁ କିଛି ଜାଣେନି । ଏଠାକାର ଲୋକେ ଯେତିକି ଜାଣନ୍ତି, ମୁଁ ସେତିକି ଜାଣେ । କେବଳ ଏତିକି କଥା ସଂସାରରେ ସମସ୍ତଙ୍କଠାରୁ ଅଧିକ ଜାଣେ ଯେ ସେ ନିଷ୍କଳଙ୍କ । ସ୍ୱାମୀ ତାଙ୍କର ଯେତେବେଳେ ମରିଯାନ୍ତି ସେତେବେଳେ ତାଙ୍କର ବୟସ ଥିଲା ଊଣେଇଶି କିମ୍ବା କୋଡ଼ିଏ । ତାଙ୍କୁ ସେ ହୃଦୟ ଦେଇ ଭଲ ପାଉଥିଲେ । ତାଙ୍କର ସେହି ସ୍ମୃତି ଲିଭିନାହିଁ କିମ୍ବା ଲିଭିବାର ନୁହେଁ । ଜୀବନର ଶେଷ ଦିନଟି ପର୍ଯ୍ୟନ୍ତ ସେ ସ୍ମୃତି ଅକ୍ଷୟ ହୋଇ ରହିବ । ପୁରୁଷ ମହଲରେ ଆଶୁବାବୁଙ୍କ କଥା ଯେତେବେଳେ ଆଲୋଚିତ ହୁଏ, ସେତେବେଳେ ତାଙ୍କର ନିଷ୍ଠା ଅନନ୍ୟସାଧାରଣ ବୋଲି ମୁଁ ଅସ୍ୱୀକାର କରି ପାରେ ନାହିଁ । କିନ୍ତୁ···

: ହରେନ ବାବୁ, ରାତି ଅନେକ ହେଲାଣି । ବର୍ତ୍ତମାନ ତ ଆଉ ବସାକୁ ଯିବା ସମ୍ଭବପର ନୁହେଁ । ମୁଁ ଏ ଘରେ ବିଛଣା କରି ଦେଉଛି ?

ହରେନ୍ଦ୍ର ବିସ୍ମିତ ହୋଇ ପ୍ରଶ୍ନ କଲା—ଏ ଘରେ ! ଆଉ ଆପଣ ?

: ମୁଁ ମଧ୍ୟ ଏହିଠାରେ ଶୋଇବି, ଆଉ ତ ଘର ନାହିଁ ।

ହରେନ ଲାଜରେ ଝାଉଁଳି ପଡ଼ିଲା । କମଳ ହସି ଉଠି କହିଲା—ଆପଣ ତ ବ୍ରହ୍ମଚାରୀ । ତେଣୁ ଭୟ କରିବାର କିଛି ନାହିଁ ।

ହରେନ୍ଦ୍ର ନିର୍ନିମେଷ ଆଖିରେ କେବଳ ଚାହିଁ ରହିଲା । ଏହା ଯେ କି ପ୍ରକାର ପ୍ରସ୍ତାବ ତାହା ସେ କଳ୍ପନା କରିପାରିଲା ନାହିଁ । ମନେ ମନେ ଭାବିବାକୁ ଲାଗିଲା ସ୍ତ୍ରୀ ଲୋକ ହୋଇ ଏପରି କଥା ସେ ଉଚ୍ଚାରଣ କରିପାରିଲେ କିପରି !

ହରେନ୍ଦ୍ରର ଅପରିସୀମ ବିହ୍ୱଳତା କମଳର ବିବେକକୁ ଧକ୍କା ଦେଲା । ସେ କିଛି ସମୟ ପାଇଁ ସ୍ଥିର ରହିବା ପରେ କହିଲା—ମୋର ଭୁଲ ହୋଇଛି ହରେନ୍ ବାବୁ; ଆପଣ ବସାକୁ ଯାଆନ୍ତୁ । ବୋଧହୁଏ ଏଥିପାଇଁ ଆପଣଙ୍କ ଅଶେଷ ଚିନ୍ତାର ପାପୀ ନାରୀମାନଙ୍କୁ ଆଶ୍ରମରେ ସ୍ଥାନ ମିଳି ପାରିନାହିଁ । ମିଳିଛି ଆଶୁବାବୁଙ୍କ ଘରେ । ନିର୍ଜନ ଗୃହ ଭିତରେ ଅନାତ୍ମୀୟ ନରନାରୀଙ୍କର ଗୋଟିଏ ବୋଲି ସମ୍ବନ୍ଧ ଆପଣଙ୍କୁ ଜଣା । ବ୍ରହ୍ମଚାରୀ ହେଲେ ମଧ୍ୟ ପୁରୁଷ ନିକଟରେ ସ୍ତ୍ରୀ ଲୋକ ଯେ କେବଳ ସ୍ତ୍ରୀ ଲୋକ ହୋଇପାରେ, ଏହାଠାରୁ ଅଧିକ କିଛି ଆପଣଙ୍କୁ ଜଣା ନାହିଁ । ଯାଆନ୍ତୁ—ଆଉ ବେଶୀ ବିଳମ୍ବ ନ କରି ଆଶ୍ରମକୁ ଫେରି ଯାଆନ୍ତୁ । କହି ସେ ନିଜେ ଅନ୍ଧକାର ବାରଣ୍ଡା ଦେଇ ବାହାରେ ଅଦୃଶ୍ୟ ହୋଇଗଲା ।

ହରେନ୍ଦ୍ର ମୂକଙ୍କ ଭଳି ଦୁଇ-ତିନି ମିନଟ୍ ଠିଆ ହେବା ପରେ ଧୀରେ ଧୀରେ ତଳକୁ ଓହ୍ଲାଇ ଆସିଲା ।

ପ୍ରାୟ ମାସକରୁ ଅଧିକ କାଳ ବିତି ଯାଇଛି । ଆଗ୍ରାରେ ଇନ୍‌ଫ୍ଲୁଏଞ୍ଜା ମହାମାରୀ ଶାନ୍ତ ହୋଇ ଯାଇଛି । ସ୍ଥାନେ ସ୍ଥାନେ ଗୋଟାଏ ଦୁଇଟା ନୂଆ ଆକ୍ରମଣ କଥା ଶୁଣାଯାଏ ସତ, ତେବେ ତାହା ସେତେ ମାରାତ୍ମକ ନୁହେଁ । ସେଦିନ କମଳ ଘରେ ବସି ନିବିଷ୍ଟ ଚିତ୍ତରେ ସିଲାଇ କରୁଥିଲା ବେଳେ ହରେନ୍ଦ୍ର ପ୍ରବେଶ କଲା । ହାତରେ ଧରିଥିବା ଗୋଟାଏ ପୁଟଳୀକୁ ମେଜ ଉପରେ ରଖିଦେଇ କହିଲା – ଆପଣ ଯେଉଁଭଳି ଖଟୁଛନ୍ତି ସେଥିରେ ତାଗିଦା କରିବା ପାଇଁ ଲାଜ ଲାଗେ । କିନ୍ତୁ ଲୋକଗୁଡ଼ାକ ଏପରି ବେହିଆ ଯେ ଦେଖା ହେଲେ ପ୍ରଶ୍ନ କରିବେ ହେଲା ? ମୁଁ କିନ୍ତୁ ସ୍ପଷ୍ଟ ଉତ୍ତର ଦିଏ—ବହୁତ ଡେରି ହେବ । ଜରୁରୀ ଅଛି ତ କହନ୍ତୁ କନା ଫେରାଇ ଦେବ । କିନ୍ତୁ ମଜା ଏଇ ଯେ ଆପଣଙ୍କ ହାତ ତିଆରି ଜିନିଷ ଥରେ ବ୍ୟବହାର କରିଛି ସେ ଆଉ କୁଆଡ଼େ ଯିବା ପାଇଁ ଇଚ୍ଛା କରେ ନାହିଁ । ଏଇ ଦେଖନ୍ତୁ ନାହିଁ ଲାଲାମାନେ ସେମାନଙ୍କ ଘରୁ ଆଉ ଗୋଟିଏ ଥାନ କପଡ଼ା । ଆଉ ନମୁନା ଜାମା ଦେଇଗଲେ···

କମଳ ସିଲାଇ ଉପରୁ ମୁହଁ ଉଠାଇ କହିଲା—ଆଣିଥିଲେ କାହିଁକି ?

: ଆଣିଥିଲି କି ? କହିଲି ଛଅମାସ ଆଗରୁ ହୋଇ ପାରିବ ନାହିଁ । ସେଥିରେ ରାଜି ତ ? କହିଲେ ଛଅ ମାସ ପରେ ବି ହୋଇ ପାରିବ, ତେବେ ଚଳିବ । ଏଇ ଦେଖନ୍ତୁ ନାହିଁ ମଜୁରୀ ଟଙ୍କା ପର୍ଯ୍ୟନ୍ତ ହାତରେ ଗୁଞ୍ଜିଦେଲେ । କହି ସେ ପକେଟରୁ କେତୋଟି ନୋଟ କାଢ଼ି କମଳ ଆଗରେ ଫିଙ୍ଗି ଦେଲା ।

: ଅର୍ଡ଼ର ଏତେ ବେଶୀ ଆସିଲେ ମୁଁ ଦେଖୁଛି ମୋତେ ଲୋକ ରଖିବାକୁ ପଡ଼ିବ । ଏହା କହି ସେ ପୁଟୁଳୀଟା ଖୋଲି ପକାଇ ପୁରୁଣା ପଞ୍ଜାବୀଟା ପିଟାଇ ଧରି ଝାଡ଼ିଝୁଡ଼ି ଦେଖି କହିଲା—ଏଇଟା କୌଣସି ବଡ଼ ଦୋକାନର ମିସ୍ତ୍ରୀଦ୍ୱାରା ତିଆରି । ମୁଁ ଏପରି ତିଆରି କରିପାରିବ ନାହିଁ । ଦାମୀ କପଡ଼ାଟା ଅଯଥା ନଷ୍ଟ ହୋଇଯିବ । ତାଙ୍କୁ ଫେରାଇ ଦେବେ ।

ହରେନ୍ଦ୍ର ବିସ୍ମିତ ହୋଇ କହି ଉଠିଲା—ଆପଣଙ୍କଠାରୁ ବଡ଼ କାରିଗର ଏଠାରେ ଆଉ କେହି ଅଛନ୍ତି କି !

: ଏଠାରେ ନ ଥାଇ ପାରନ୍ତି କିନ୍ତୁ କଲିକତାରେ ତ ଅଛନ୍ତି । ସେଇଠାକୁ ପଠାଇ ଦେବା ପାଇଁ କହିବେ ।

: ନା, ନା, ତାହା ହେବନାହିଁ । ଆପଣ ଯିମିତି ପାରନ୍ତି ସିମିତି କରିଦେବେ । ସେଥିରେ ହିଁ ଚଳିବ ।

: ହବ ନାହିଁ ହରେନ୍ ବାବୁ । ହୋଇଥିଲେ କରିଦେଇ ପାରିଥାନ୍ତି । ଏତକ କହି ସେ ହଠାତ୍ ହସିପକାଇ କହିଲା—ଅଜିତ ବାବୁ ବଡ଼ଲୋକ । ସଉକିନିଆ ମଣିଷ । ଯାହା ତାହା ତିଆରି କରିଦେଲେ ପିନ୍ଧି ପାରିବେ କିପରି ? କନାଟାକୁ ମିଛରେ ନଷ୍ଟ କରି ଲାଭ ନାହିଁ । ଆପଣ ଫେରାଇ ନେଇ ଯାନ୍ତୁ ।

ହରେନ୍ଦ୍ର ଅତିଶୟ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା—ଆପଣ କିପରି ଜାଣିଲେ ଏଇଟା ଅଜିତ୍ ବାବୁଙ୍କର ?

: ମୁଁ ହାତ ଦେଖିପାରେ । ଗରମ କନା, ଅଫ୍ସିମ ମଜବୁତ୍, ଅଥଚ ଛଅ ମାସ ତେଣିକି ହେଲେ ମଧ୍ୟ ଚଳିବ । ହିନ୍ଦୁସ୍ଥାନ ଲିଲିଙ୍ଗାମାନେ ଏତେ ନିର୍ବୋଧ ନୁହନ୍ତି ହରେନ୍ ବାବୁ । ତାଙ୍କୁ ଜଣାଇ ଦେବେ ତାଙ୍କ ଜାମା ତିଆରି କରିଦେବାର ଯୋଗ୍ୟତା ମୋର ନାହିଁ । ମୁଁ କେବଳ ଗରିବଙ୍କ ଶସ୍ତା କପଡ଼ା ସିଲାଇ କରି ଜାଣେ । ଏପରି ଜାମା ତିଆରି କରିପାରିବ ନାହିଁ ।

ହରେନ୍ଦ୍ର ବଡ଼ ବିପଦରେ ପଡ଼ିଲା । ଶେଷରେ କହିଲା—ସେ ସ୍ଥିର ମନ କରିଥିଲେ । କିନ୍ତୁ କାଲେ ଆପଣ ଜାଣି ପାରିବେ, ଏବଂ ମନେ କରିବେ ଆମେମାନେ ଆପଣଙ୍କୁ କିଛି ସାହାଯ୍ୟ କରିବା ପାଇଁ ଚେଷ୍ଟା କରୁଛୁ; ସେହି ଭୟରେ ଅନେକ ଦିନ ହେବ ମୁଁ ହିଁ କରିପାରି ନ ଥିଲି । ତାଙ୍କୁ କହିଥିଲି ଅଳ୍ପ ମୂଲ୍ୟରେ ସାଧାରଣ କୌଣସି କନା କିଣି ଆଣନ୍ତୁ । ସେ କିନ୍ତୁ ରାଜି ହେଲେ ନାହିଁ । କହିଲେ ଏହା ତ ମୋର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ହେବ ନାହିଁ । କମଳ ହାତରେ ତିଆରି ହେଲେ ଏ ଜାମା ବିଶେଷ ପର୍ବପର୍ବାଣୀରେ କେବଳ ମୁଁ ପିନ୍ଧିବା ପାଇଁ ସାଇତା ହୋଇ ରହିବ ଏବଂ ବିଶେଷ ପର୍ବ ପର୍ବାଣୀରେ ପିନ୍ଧିବା ଉପଲକ୍ଷରେ ଏ ଜଗତରେ ବୋଧହୁଏ ଆପଣଙ୍କୁ ତାଙ୍କଠାରୁ ଅଧିକ କେହି ଭଲ ପାନ୍ତି ନାହିଁ ।

: କିଛି ସମୟ ପୂର୍ବେ ଏପରି ଓଲଟା କଥା ହିଁ ତାଙ୍କ ମୁହଁରୁ ଅନେକ ଶୁଣିଥିଲେ । ନୁହେଁ କି ? ସାମାନ୍ୟ ଚେଷ୍ଟା କରି ପାରିଲେ ଆପଣଙ୍କର ମଧ୍ୟ ମନେ ପଡ଼ି ପାରିବ । ମନେ କରି ଦେଖନ୍ତୁ ତ ?

ଏଥର ସେଇଦିନର କଥା ହରେନ୍ଦ୍ରର ସବୁ ମନେ ଥିଲା । ସାମାନ୍ୟ ଲଜ୍ୟା ପାଇ କହିଲା—ମିଛ ନୁହେଁ । କିନ୍ତୁ ଏହି ଧାରଣା ତ ଅନେକ ଦିନ ଧରି ଅନେକଙ୍କର ଥିଲା । କେବଳ ବୋଧହୁଏ ଅଶୁବାବୁଙ୍କର ନ ଥିଲା । କିନ୍ତୁ ତାଙ୍କୁ ତ ଦିନେ ବିଚଳିତ ହେବାର

ଦେଖି ପାରୁଛ । ମୋ ନିଜ କଥାକୁ ଧରୁ ନାହାଁନ୍ତି ? ଅନ୍ତତଃ ଆଉ ସେଥିପାଇଁ ପ୍ରମାଣ ଦେବାକୁ ପଡ଼ିବ ନାହିଁ । କିନ୍ତୁ ସେଦିନର କପଟି ପଥରରେ ଶ୍ରଦ୍ଧା ଆଉ ଭକ୍ତିକୁ ଘଷି ବସିଲେ ମୋର ସ୍ଥାନ ଅବା କେଉଁଠି ?

: ଗୁରୁଜନର ଖବର କିଛି ପାଇ ପାରିଲେ ?

ହରେନ୍ଦ୍ର ବୁଝି ପାରିଲା, ଏହି ସକଳ ହୃଦୟ ସମ୍ପର୍କିତ ଆଲୋଚନା ଅନ୍ୟ ଦିନ ଭଳି ଆଜି ମଧ୍ୟ ସ୍ଥଗିତ ରହିଲା । କହିଲା—ନା, ବର୍ତ୍ତମାନ ସୁଦ୍ଧା ପାଇ ପାରି ନାହିଁ । ଭରସା ଅଛି ସେ ଦିନେ ନା ଦିନେ ଫେରି ଆସିବ ।

: ତାହା ମୁଁ ଜାଣିବାକୁ ଚାହୁଁ ନାହିଁ । ପୋଲିସ ହାତରେ ଧରା ପଡ଼ିଛି କି ନାହିଁ; ଏଇ ଖବରଟା ନେବା ପାଇଁ ମୁଁ ଆପଣଙ୍କୁ କହିଥିଲି ।

: ନେଇଛି । ଆପାତତଃ ସେମାନଙ୍କ ଆୟତ୍ତରେ ନାହିଁ ।

ଏହା ଶୁଣି କମଳ ନିଶ୍ଚିନ୍ତ ହୋଇ ପାରିଲା ନାହିଁ ସତ, କିନ୍ତୁ ସ୍ୱସ୍ତି ବୋଧ କଲା । ପଚାରିଲା—ସେ କୁଆଡ଼େ ଯାଇଛି ଏବଂ କେବେ ଯାଇଛି, ମୋତ ସାହିରେ ଚେଷ୍ଟା କରି ପଚାରିଥିଲେ କ'ଣ ଜଣାପଡ଼ି ପାରି ନ ଥାନ୍ତା ? ହରେନ ବାବୁ, ତା ପ୍ରତି ଆପଣଙ୍କର ସ୍ନେହ ଅତ୍ୟଧିକ ଏକଥା ମୁଁ ଜାଣେ । ତେଣୁ ସେପରି ପ୍ରଶ୍ନ କରିବା ହୁଏତ ବାହୁଲ୍ୟ ହୋଇ ପାରେ, କିନ୍ତୁ ମୋର ଏପରି ଦଶା ହୋଇଛି ଯେ କେତେଦିନ ହେବ ତାହା ବ୍ୟତୀତ ଆଉ କିଛି ମୁଁ ଭାବି ପାରି ନାହିଁ । ଏହା କହି ସେ ଏପରି ବ୍ୟାକୁଳ ଆଖିରେ ଚାହିଁ ରହିଲା ଯେ ହରେନ୍ଦ୍ର ଅତ୍ୟନ୍ତ ବିସ୍ମିତ ହୋଇ ଉଠିଲା । କିନ୍ତୁ ପରକ୍ଷଣରେ ସେ ମୁହଁ ତଳକୁ କରି ପୂର୍ବ ଭଳି ସିଲାଇ କାମରେ ମନ ଦେଲା ।

ହରେନ୍ଦ୍ର ନୀରବରେ ଠିଆ ହୋଇ ରହିଲା । ଏହି ସମୟରେ ତା ମନରେ ଗୋଟିଏ ପ୍ରଶ୍ନ ଦେଖା ଦେଲା । ତାର କୌତୂହଳର ସୀମା ନ ଥିଲା । ମୁହଁରୁ କଥାଟା ବାହାରି ପଡ଼ିବାକୁ ଚାହୁଁଥିଲା ବେଳେ ସେ କିନ୍ତୁ ନିଜକୁ ସମ୍ଭାଳି ନେଲା । ପାଞ୍ଚ ସାତ ମିନିଟ କାଟିଯିବା ପରେ କମଳ ପୁଣି କଥା କହିଲା । ସିଲାଇଟା ପାଖରେ ରଖି ଦେଇ ଗୋଟାଏ ସ୍ୱସ୍ତିର ନିଃଶ୍ୱାସ ମାରିଲା—ଆଉ, ଆଉ ଆଜି ନୁହେଁ । ଏହା କହି ମୁହଁ ଟେକି ଆଶ୍ଚର୍ଯ୍ୟ ହୋଇ କହି ଉଠିଲା—ଏ କ'ଣ ! ଠିଆ ହୋଇ ରହିଛନ୍ତି ଯେ ? ଚୌକିଟିଏ ଟାଣି ନେଇ କ'ଣ ବସି ପାରିଲେ ନାହିଁ ?

: ବସିବା ପାଇଁ ତ ଆପଣ କହି ନାହାନ୍ତି ।

: କହି ନାହିଁ ବୋଲି ବସିବେ ନାହିଁ ?

: ନା । ନ କହିଲେ ବସିବା ଉଚିତ ନୁହେଁ ।

: ଠିଆ ହୋଇ ରହିବା ପାଇଁ ତ କହି ନ ଥିଲି, ଠିଆ ହୋଇଛନ୍ତି ଅବା କାହିଁକି ?

: ମୋର ଠିଆ ହୋଇ ରହିବାଟା ଉଚିତ୍ ହୋଇନାହିଁ ବୋଲି ଯଦି କହୁଛନ୍ତି—ତେବେ ଦୋଷ ସ୍ୱୀକାର କରୁଛି ।

ଏକଥା ଶୁଣି କମଳ ହସିଲା । କହିଲା—ତାହାହେଲେ ମୁଁ ଦୋଷ ସ୍ୱୀକାର କରୁଛି । ଏତେ ସମୟ ଧରି ଅନ୍ୟମନସ୍କ ରହିବାଟା ମୋ ପକ୍ଷରେ ଉଚିତ ହୋଇନାହିଁ । ବର୍ତ୍ତମାନ ବସନ୍ତୁ ।

ହରେନ୍ଦ୍ର ଚୌକିଟା ଟାଣି ନେଇ ବସିବା ପରେ କମଳ ହଠାତ୍ ଗମ୍ଭୀର ହୋଇ ଉଠିଲା । କ'ଣ ଟିକଏ ଚିନ୍ତା କଲା । ତାପରେ କହିଲା—ଦେଖନ୍ତୁ ହରେନ୍ ବାବୁ, ପ୍ରକୃତରେ ଏହା ଭିତରେ ଯେ କିଛି ନାହିଁ ତାହା ମୁଁ ଜାଣେ । ଆପଣ ମଧ୍ୟ ଜାଣନ୍ତି । ତଥାପି ଲାଗୁଛି, ଏଇ ଯେ ବସିବା ପାଇଁ କହିବାକୁ ଭୁଲି ଯାଇଛି, ଯେଉଁ ଆଦର ଟିକକ ଅତିଥିଙ୍କୁ କରିବାର ଥିଲା, କରିପାରି ନାହିଁ, ଯାହାକି ହଜାର ଘନିଷ୍ଠତା ଭିତରେ ବି ଆପଣଙ୍କ ଆଖିରେ ପଡ଼ି ପାରିଛି । ନା, ନା, ରାଗ କରିଛନ୍ତି ବୋଲି କହୁ ନାହିଁ, ତଥାପି ମନ ଭିତରେ କମିତ କମିତ ଲାଗୁଛି । ଏହି ସଂସ୍କାରଟା ମନୁଷ୍ୟଠାରୁ ଚାଲିଯିବା ପାଇଁ ଚାହେଁ ନାହିଁ—କେଉଁଠାରେ ଅଟକି ରହିଯାଏ । ନା କ'ଣ କହୁଛନ୍ତି ?

ହରେନ୍ଦ୍ର ଏହାର ତାତ୍ପର୍ଯ୍ୟ ବୁଝି ପାରିଲା ନାହିଁ । ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା ।

କମଳ କହିବାକୁ ଲାଗିଲା—ଏଥିପାଇଁ ସଂସାରରେ କେତେ ନା କେତେ ଆଲୋଚନା ନ ହୋଇଛି ଅଥଚ ମଣିଷ ଏଇଟାକୁ ସବୁଠାରୁ ବେଶୀ ଭୁଲି ଯାଉଛି—ନୁହେଁ ?

ହରେନ୍ଦ୍ର ପ୍ରଶ୍ନ କଲା—ଏ ସବୁ ମୋତେ କହୁଛନ୍ତି—ନା ଆପଣାକୁ ଆପେ କହୁ ହେଉଛନ୍ତି ? ଯଦି ମୋ ପାଇଁ କହୁଥାନ୍ତି ତେବେ ଟିକଏ ପରିଷ୍କାର କରି କହନ୍ତୁ । ମୋ ମୁଣ୍ଡରେ ଏସବୁ ଜଟିଳ କଥା ପଶି ପାରୁନି ।

କମଳ ହସି ଦେଇ କହିଲା—ଜଟିଳ ସତ । ସହଜ ସରଳ ରାସ୍ତାରେ ମଧ୍ୟ ମନେ ହୁଏ ନାହିଁ ଯେ ବପଣି ଆଖି ନାଲି କରି ଚାହିଁ ରହିଛି ବୋଲି । ଚାଲୁ ଚାଲୁ ଝୁଣ୍ଟି ପଡ଼ି ଯେତେବେଳେ ଆଙ୍ଗୁଠିରୁ ରକ୍ତ ଝରି ପଡ଼େ ସେତେବେଳେ ଜାଣ ଚେତନା ଫେରେ ଯେ ଆଖି ଖୋଲି ଚାଲିବା ଉଚିତ ଥିଲା—ନୁହେଁ ?

ହରେନ୍ଦ୍ର କହିଲା—ରାସ୍ତା ସମ୍ବନ୍ଧରେ ଯାହା କହିଲ ସତ । ଅନ୍ତତଃ ଅନ୍ଧାର ରାସ୍ତାରେ ଟିକଏ ହୋସ ରଖି ଚାଲିବା ଉଚିତ । ଜଟିଳ ତ ଜଟିଳ ହୋଇ ରହିଗଲା । ମର୍ମାର୍ଥ ବୁଝି ହେଲା ନାହିଁ ।

: ସେଥିପାଇଁ ଉପାୟ ନାହିଁ ହରେନ୍ ବାବୁ । ସବୁ କଥାର ମର୍ମ ବୁଝା ପଡ଼େ ନାହିଁ । ଏଇ ଦେଖନ୍ତୁ ମୋତେ ତ କେହି ବୁଝାଇ ଦେଉ ନାହାନ୍ତି । କିନ୍ତୁ ଅର୍ଥ ବୁଝିବା ପାଇଁ ତ କଷ୍ଟ ହେଉ ନାହିଁ ।

: ତା ମାନେ ଆପଣ ଭାଗ୍ୟବନ୍ତ । ମୁଁ ଦୁର୍ଭାଗା । ହୁଏତ ସାଧାରଣ ମନୁଷ୍ୟ ମୁଣ୍ଡରେ ପଶି ପାରିବା ଭଳି ଭାଷାରେ କହନ୍ତୁ । ନଚେତ୍ ନ କହନ୍ତୁ । ଚୀନ ଦେଶର ଯାଦୁ ଖେଳ ଭଳି ମୁଁ ଯେତେ ବୁଝୁଁଛି ଏହାକୁ ଖୋଲିବା ପାଇଁ ତାହା ସେତିକି ଗୁଡ଼େଇ ହୋଇ ଯାଉଛି । ଅଜ୍ଞାତ ଏବଂ ଅଜ୍ଞେୟ ବାଧା ନିକଟରୁ ବକ୍ତବ୍ୟ ଆରମ୍ଭ ହୋଇ ଯେ ଏହା କେଉଁଠାରେ ଆସି ପହଞ୍ଚିଲଣି ତାହାର କୂଳ କିନାରା ପାଉ ନାହିଁ । ଏ ସବୁ କ'ଣ ଆପଣ ବ୍ରଜେନକୁ ମନେ ପକାଇ କହୁଛନ୍ତି ? ତାକୁ ମୁଁ ମଧ୍ୟ ଚହ୍ନେ । ସରଳ ଭାବରେ କହିଲେ ହୁଏତ କିଛି କିଛି ବୁଝି ବି ପାରିବି । ନଚେତ ଏହିପରି ଭାବରେ ସ୍ୱୟଂ ମନୁଷ୍ୟ ଠାରୁ ବକ୍ତୃତା ଶୁଣୁଥିଲେ ନିଜ ବୁଦ୍ଧି ଉପରେ ବି ଆସ୍ଥା ରହିବ ନାହିଁ ।

କମଳ ହସ ହସ ମୁହଁରେ ପଚାରିଲା—କାହା ବୁଦ୍ଧି ଉପରେ ? ମୋର ନା ନିଜର ?

: ଦୁଇ ଜଣଙ୍କର ।

: କେବଳ ବ୍ରଜେନ୍ ନୁହନ୍ତି, କେଜାଣି କାହିଁକି ଆଜି ସକାଳୁ ମୋର ସମସ୍ତେ ମନେ ପଡ଼ୁଛନ୍ତି । ଆଶୁବାବୁ, ମନୋରମା, ଅକ୍ଷୟ, ଅବିନାଶ, ନୀଳିମା, ଶିବନାଥ ଏପରିକି ମୋ ବାବା···

ହରେନ୍ଦ୍ର ବାଧା ଦେଇ କହିଲା—ନା, ଏପରି କହିଲେ ଚଳିବ ନାହିଁ । ଆପଣ ପୁଣି ଗମ୍ଭୀର ହୋଇ ଉଠିଲେଣି । ଆପଣଙ୍କ ବାପା-ମାଆ ସ୍ୱର୍ଗବାସୀ । ତାଙ୍କୁ ପୁଣି ଟଣା ଟଣି କରିବାଟା ଉଚିତ୍ ହେବ ନାହିଁ । ବରଞ୍ଚ ଯେଉଁମାନେ ବଞ୍ଚି ରହିଛନ୍ତି ସେମାନଙ୍କର କଥା, ଆପଣ ବ୍ରଜେନ କଥା କହିବାକୁ ଇଚ୍ଛା କରୁଥିଲେ ହୁଏତ ତାହା କହନ୍ତୁ ମୁଁ ଶୁଣିବି । ସେ ମୋର ବନ୍ଧୁ । ମୁଁ ତାକୁ ଚହ୍ନେ, ଜାଣେ, ଭଲପାଏ । ମୋତେ ବିଶ୍ୱାସ କରନ୍ତୁ ମୁଁ ଆଶ୍ରମ କରିଥାଏ ଅବା ଯାହା କିଛି କରିଥାଏ ଆପଣଙ୍କୁ କିନ୍ତୁ ଠକିବି ନାହିଁ । ସଂସାରରେ ଆଉ ପାଞ୍ଚ ଜଣଙ୍କ ଭଳି ଭଲ ପାଇବାର ଗପ ଶୁଣିବାକୁ ମୁଁ ମଧ୍ୟ ଭଲ ପାଏ ।

କମଳର ଗାମ୍ଭୀର୍ଯ୍ୟ ମୁହଁ ହଠାତ୍ ହସରେ ଭରି ଉଠିଲା । ସେ ପ୍ରଶ୍ନ କଲା—କେବଳ ପର କଥା ଶୁଣିବାକୁ ଭଲ ପାନ୍ତି ? ତାହାଠାରୁ ଅଧିକ କେଉଁଥିରେ ଲୋଭ ନାହିଁ ?

: ନା, ମୁଁ ହେଉଛି ବ୍ରହ୍ମଚାରୀମାନଙ୍କର ବଡପଣ୍ଡା । ଅକ୍ଷୟର ଦଳ ଏକଥା ଶୁଣି ପାରିଲେ ମୋତେ ଖାଇ ପକାଇବେ ।

ଏହା ଶୁଣି କମଳ ପୁଣି ହସି ଦେଇ କହିଲା—ନା, ସେମାନେ ଖାଇଯିବେ ନାହିଁ । ମୁଁ ସେଥିପାଇଁ ଉପାୟ ବତାଇ ଦେବି ।

ହରେନ୍ଦ୍ର ମୁଣ୍ଡ ହଲାଇ କହିଲ—ପାରିବେ ନାହିଁ । ଆଶ୍ରମ ଛାଡ଼ି ପଳାଇ ଗଲେ ମଧ୍ୟ ମୋର ନିସ୍ତାର ନାହିଁ । ଅକ୍ଷୟ ଯେତେବେଳେ ଥରେ ମୋତେ ଚିହ୍ନି ପାରିଛୁ, ମୁଁ ଯେଉଁଠାକୁ ଯିବି ସେ ମୋତେ ସତ୍ୟ ପଥରେ ହିଁ ରଖିବ । ବରଞ୍ଚ ଆପଣ ନିଜ କଥା କହନ୍ତୁ । ରାଜେନଙ୍କୁ ଯେ ଭୁଲରେ ରଖି ପାରିବ ନାହିଁ, ଆପଣ ସେହିଠାରୁ ପୁଣି ଆରମ୍ଭ କରନ୍ତୁ । କିପରି ସେହି ଲକ୍ଷ୍ମୀଛଡ଼ାଟାକୁ ଏତେ ଭଲ ପାଇ ପାରିଲେ, ମୋର ଶୁଣିବାକୁ ଇଚ୍ଛା ହେଉଛି ।

କମଳ କହିଲା—ଠିକ୍ ଏଇ ପ୍ରଶ୍ନଟା ହିଁ ବାରମ୍ବାର ମୁଁ ଆପଣାକୁ ଆପେ ପଚାରିଛି ।

: ଉତ୍ତର ପାଇଲେ ?

: ନା ।

: ପାଇବାର କଥା ମଧ୍ୟ ନୁହେଁ, ତାହା ସତ ବୋଲି ମୋର ବିଶ୍ୱାସ ହୁଏ ନାହିଁ ।

: ବିଶ୍ୱାସ କାହିଁକି ହୁଏ ନାହିଁ ?

: ସେ ଯାହା ହେଉ । ମନେ ହେଉଛି ବୋଧହୁଏ ଆଗରୁ ଥରେ କହିଛି ଆଉ ଜଣେ ଭଲ କ୍ୟାଣ୍ଡିଡେଟ୍ (ପାତ୍ର) ଅଛନ୍ତି । ନିଷ୍ପତ୍ତି ନେବା ଆଗରୁ ତାଙ୍କ କେସ୍‌କୁ ଟିକିଏ ଆଖି ପକାଇ ଦେଖିବେ । ଏତିକିମାତ୍ର ମୋର ନିବେଦନ ।

: କେଣ୍‌କୁ ତ ଅନୁମାନ କରି ବିଚାର କରାଯାଇ ପାରେ ନାହିଁ ହରେନ୍ ବାବୁ, ସେଥିପାଇଁ ରୀତିମତ ସାକ୍ଷ୍ୟ ପ୍ରମାଣ ହାଜର କରିବାକୁ ପଡ଼ିବ । ତାହା କିଏ କରିବ ?

: ସେ ନିଜେ କରିବେ । ସାକ୍ଷ୍ୟ ପ୍ରମାଣ ଧରି ପ୍ରସ୍ତୁତ ହୋଇ ରହିଛନ୍ତି । ଡାକିମାରିଲେ ଆସି ପହଞ୍ଚି ଯିବେ ।

କମଳ ଉତ୍ତର ଦେଲା ନାହିଁ । ମୁହଁ ଟେକି ଅଳ୍ପ କେବଳ ହସିଲା । ତାପରେ ଅସମାପ୍ତ ଓ ସମାପ୍ତ ସିଲାଇ ଗୁଡ଼ାକୁ ଗୋଟି ଗୋଟି ଚଢ଼ାଇ କରି ଗୋଟିଏ ବେତ ଝୁଡ଼ି ଭିତରେ ସଜାଡ଼ି ରଖି ଉଠି ଠିଆହେଲା । କହିଲା—ଆପଣଙ୍କର ବୋଧହୁଏ ଚାହା ଖାଇବାର ସମୟ ହୋଇ ଯାଇଛି ହରେନ ବାବୁ । ଅଳ୍ପ ଟିକିଏ ଚାହା ତିଆରି କରି ଆଣୁଛି । ଆପଣ ବସନ୍ତୁ ।

: ବସିଛି ତ । କିନ୍ତୁ ଜାଣିଛନ୍ତି ତ ଚା ଖାଇବା ପାଇଁ ମୋର ସମୟ, ଅସମୟ ନ ଥାଏ । ପାଇଲେ ଖାଇଥାଏ । ନ ପାଇଲେ ନାହିଁ । ତେଣୁ ଏଥିପାଇଁ କଷ୍ଟ ପାଇବାର ଆବଶ୍ୟକତା ନାହିଁ । ଗୋଟାଏ କଥା ପଚାରିବି ?

: ଖୁସିରେ ପଚାରିପାରନ୍ତି ।

: ଅନେକ ଦିନ ହେବ ଆପଣ କୁଆଡ଼େ ଯାଇ ନାହାଁନ୍ତି । ଏଇଟା କ'ଣ ଇଚ୍ଛା କରି ବନ୍ଦ କରିଛନ୍ତି ?

କମଳ ଆଶ୍ଚର୍ଯ୍ୟ ହୋଇ କହିଲା—ନା । ସେପରି ତ କିଛି ମୋର ମନେ ହେଉ ନାହିଁ ।

: ତାହା ହେଲେ ଚାଲନ୍ତୁ ନା ଆଜି ଯାଇ ଆଶୁବାବୁଙ୍କ ଘର ଆଡ଼େ ଟିକିଏ ବୁଲି ଆସିବା । ସେ ପ୍ରକୃତରେ ଭାରି ଖୁସି ହେବେ । ସେତେବେଳେ ସେଇ ଅସୁସ୍ଥତା ଭିତରେ ଥରଟିଏ ଯାଇଥିଲେ । ବର୍ତ୍ତମାନ ସେ ସୁସ୍ଥ ଅଛନ୍ତି । କେବଳ ଡାକ୍ତର ମନା କରିଛନ୍ତି ବୋଲି ବାହାରକୁ ଆସନ୍ତି ନାହିଁ । ନଚେତ୍ କେଉଁଦିନୁ ଆସି ପହଞ୍ଚି ସାରନ୍ତେଣି ।

: ତାଙ୍କ ପକ୍ଷରେ କିଛି ଆଶ୍ଚର୍ଯ୍ୟ ନୁହେଁ । ମୋର ଯିବାଟା ଉଚିତ୍ ଥିଲା । କିନ୍ତୁ ଜଞ୍ଜାଳରେ ପଡ଼ି ଯାଇ ପାରିନାହିଁ । ମୋର ଭୁଲ୍ ହୋଇଛି ।

: ତାହା ହେଲେ ଆଜି ହିଁ ଚାଲନ୍ତୁ ନା ।

: ଚାଲନ୍ତୁ । କିନ୍ତୁ ସନ୍ଧ୍ୟାଟା ହୋଇ ଯାଉ । ଆପଣ ବସନ୍ତୁ, ମୁଁ ଚଟ୍ କରି କପେ ଚାହା କରି ଆଣୁଛି । ଏତିକି କହି ସେ ବାହାରି ଚାଲିଗଲା ।

ସନ୍ଧ୍ୟାର ପ୍ରାକ୍ଅନ୍ଧକାରରେ ଉଭୟେ ରାସ୍ତାକୁ ବାହାରି ପଡ଼ିବା ପରେ ହରେନ୍ଦ୍ର କହିଲା—ଟିକିଏ ବେଳ ଥାଉ ଥାଉ ଯାଇଥିଲେ ଭଲ ହୋଇଥାନ୍ତା ।

: ହୋଇ ନଥାନ୍ତା । ଚହଟା ଲୋକ କେହି ହୁଏ ତ ଦେଖି ପକାଇଥାନ୍ତେ ।

: ଦେଖିଥିଲେ, କ'ଣ ହୋଇଯାଇଥାନ୍ତା ? ସେସବୁ ମୁଁ ବର୍ତ୍ତମାନ ଖାତିର କରୁ ନାହିଁ ।

: ମୁଁ କିନ୍ତୁ ବର୍ତ୍ତମାନ ଖାତିର କରୁଛି ।

ହରେନ୍ଦ୍ର ଏହାକୁ ଥଟ୍ଟା ବୋଲି ମନେ କଲା । କହିଲା—ଚହଟା ଲୋକମାନେ ଯଦି ଶୁଣିବେ ଯେ ଆଜିକାଲି ଆପଣ ମୋ ସାଙ୍ଗରେ ଏକାକୀ ଯିବା ପାଇଁ ସଙ୍କୋଚ ବୋଧ କରୁଛନ୍ତି, ସେମାନେ ସେତେବେଳେ କ'ଣ ଭାବିବେ ?

: ବୋଧ ହୁଏ ଭାବିବେ ଅଚ୍ଛା କରୁଛି ।

: କିନ୍ତୁ ଆପଣଙ୍କୁ ଯିଏ ଚିହ୍ନନ୍ତି, ସେମାନେ କ'ଣ ଅନ୍ୟ କିଛି ଭାବି ପାରନ୍ତି । କହନ୍ତୁ ? ଏଥର କମଳ ଚୁପ୍ ହୋଇ ରହିଲା ।

ଉତ୍ତର ନପାଇ ହରେନ୍ଦ୍ର କହିଲା—ଆଜି ଆପଣଙ୍କର କ'ଣ ହୋଇଛି ଜାଣି ପାରୁ ନାହିଁ । ସବୁ କଥା ମୋତେ ଦୁର୍ବୋଧ୍ୟ ମନେ ହେଉଛି ।

: ଯାହା ବୁଝିବା ଉଚିତ୍ ନୁହେଁ, ତାହା ନ ବୁଝିବା ହିଁ ଭଲ । ରାଜେନକୁ ଯେ ଭୁଲି ପାରୁ ନାହିଁ—ସମସ୍ତଙ୍କ ଅପେକ୍ଷା ଆପଣ ଏହା ଜାଣି ଆସି ପାରିଲେ । ତା ପାଇଁ ଆଶ୍ରମରେ ସ୍ଥାନ ହେଲା ନାହିଁ । ଗଛ ତଳକୁ ମଧ୍ୟ ସେ ରହିବାକୁ ଚାଲିଯାଇ ପାରେ । କେବଳ ମୁଁ ତାକୁ ରହିବାକୁ ଦେଲି ନାହିଁ । ଆଦର କରି ଡାକି ଆଣିଥିଲି । ମୋ ଘରକୁ

ଆସିଲା । କୌଣସି କାର୍ଯ୍ୟ ପାଇଁ ତାକୁ ବାରଣ କରାଗଲା ନାହିଁ । ଅଳ୍ପ ଓ ପଢ଼ନ ଭଲ ସବୁ ଦ୍ୱାର ତା ପାଇଁ ଖୋଲା ରହିଲା । ପୁରୁଷଜ୍ଞର ଯେପରି ସେ ଗୋଟାଏ ନୂତନ ସନ୍ଧାନ ପାଇଲା । ଏଇଟା ଭଲ କି ମନ୍ଦ, ଭାବି ଦେଖିବା ପାଇଁ ସମୟ ପାଉନାହିଁ—ହୁଏତ ବୁଝିବା ପାଇଁ ଡେରି ହେବ ।

: ଏହା ଏକ ବଡ଼ ସାନ୍ତ୍ୱନା ।

: ସାନ୍ତ୍ୱନା ? କାହିଁକି ?

: ତା ମୁଁ ଅବଶ୍ୟ ଜାଣିନାହିଁ ।

କେହି ଆଉ କଥା କହିଲେ ନାହିଁ । ଉଭୟେ କିପରି ଏକ ପ୍ରକାର ଅନ୍ୟମନସ୍କ ହୋଇ ଉଠିଲେ ।

ନରେନ୍ଦ୍ର ଇଚ୍ଛା କରି ଟିକିଏ ବୁଲାଣିଆ ରାସ୍ତାରେ ନେଉଥିଲା । ଆଶୁବାବୁଙ୍କ ଘରେ ଯେତେବେଳେ ସେ ଦୁହେଁ ଆସି ପହଞ୍ଚିଲେ ସନ୍ଧ୍ୟା ଅନେକ ବେଳୁ ହୋଇ ଯାଇଥିଲା । ଖବର ଜଣାଇ ଘର ଭିତରେ ପ୍ରବେଶ କରିବାର ଆବଶ୍ୟକତା ନଥିଲା, କିନ୍ତୁ ପାଞ୍ଚ ଛଅ ଦିନ ହେବ ନରେନ୍ଦ୍ର ଆସି ପାରି ନଥିଲା ବୋଲି ବେହେରାକୁ ଆଗରେ ପାଇ ପ୍ରଶ୍ନ କଲା—କ'ଣ ବାବୁ ଭଲ ଅଛନ୍ତି ?

ସେ ପ୍ରଣାମ କରି କହିଲା—ହଁ, ଭଲ ଅଛନ୍ତି ।

: ତାଙ୍କ ଘରେ ଅଛନ୍ତି ?

: ନା, ଉପରର ସାମ୍ନା ଘରେ ବସି ସମସ୍ତେ ଗଳ୍ପ କରୁଛନ୍ତି ।

ସିଡ଼ିରେ ଉଠୁ ଉଠୁ କମଳ ପ୍ରଶ୍ନ କଲା—ସମସ୍ତେ କହିଲେ ଆଉ କିଏ ସବୁ ?

: ନୂଆ ବୋଉ, ଆଉ ବୋଧହୁଏ କେହି ହୋଇଥିବେ—କିଏ ଜାଣେ ?

ପର୍ଦ୍ଦା ଘୁଞ୍ଚାଇ ଘର ଭିତରେ ପହଞ୍ଚି ଦୁଇ ଜଣ ଆଶ୍ଚର୍ଯ୍ୟ ହୋଇ ଉଠିଲେ । ଏସେନ୍‌ସ ଏବଂ ଚୁରୁଟର କଡ଼ା ଗନ୍ଧରେ ଘରର ବାୟୁମଣ୍ଡଳଟା ଭାରି ହୋଇ ଉଠିଛି । ମାଳିନୀ ଉପସ୍ଥିତ ନାହିଁ । ଆଶୁବାବୁ ଇଜି ଚେୟାରର ହାତରେ ଦୁଇ ଗୋଡ଼କୁ ଲମ୍ବାଇ ଚୁରୁଟ୍ ଟାଣିବାରେ ଲାଗିଛନ୍ତି ଏବଂ ଅଳ୍ପ ଦୂରରେ ସୋଫା ଉପରେ ସିଧା ହୋଇ ଜଣେ ଅପରିଚିତା ମହିଳା ବସି ରହିଛନ୍ତି । ଘରର ବାୟୁମଣ୍ଡଳ ଭଲ କଡ଼ା ଭାବ । ବଙ୍ଗାଳୀ ଝିଅ କିନ୍ତୁ ବଙ୍ଗାଳୀ କହିବା ପାଇଁ ଯେପରି ରୁଚି ନାହିଁ । ହୁଏତ ଅଭ୍ୟାସ ନାହିଁ । ନରେନ୍ଦ୍ର ଓ କମଳ ଘରେ ପାଦ ଦେଇ ଶୁଣିଥିଲେ ସେ ଅନର୍ଗଳ ଇଂରାଜୀ କହି ଚାଲିଛନ୍ତି ।

ଆଶୁବାବୁ ମୁହଁ ଫେରାଇ ଚାହିଁଲେ । କମଳ ଉପରେ ଆଖି ପଡ଼ିବା କ୍ଷଣି ତାଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ଉଠିଲା । ବୋଧହୁଏ ଥରେ ପାଇଁ ଉଠି ବସିବା ପାଇଁ ଚେଷ୍ଟା କରିଲେ । କିନ୍ତୁ ହଠାତ୍ ଉଠି ପାରିଲେ ନାହିଁ । ମୁହଁର ଚୁରୁଟଟାକୁ ଫିଙ୍ଗି ଦେଇ କହିଲେ, ଆସ କମଳ, ଆସ । ଅପରିଚିତା ରମଣୀଟିକୁ ନିର୍ଦ୍ଦେଶ କରି କହିଲେ—ସେ

ମୋର ଜଣେ ଆତ୍ମୀୟ । ଦୁଇ ଦିନ ହେବ ଆସିଛନ୍ତି । ଖୁବ୍ ସମ୍ଭବ ତାଙ୍କୁ ଏଠାରେ କିଛି ଦିନ ପାଇଁ ରଖି ପାରିବି । ଟିକିଏ ଆଉଜି ବସି କହିଲେ—ବେଲା, ଏ ହେଉଛି କମଳ, ମୋ ଝିଅ ଭଳି ।

ଉଭୟ ଉଭୟଙ୍କୁ ହାତ ଟେକି ନମସ୍କାର ଜଣାଇଲେ । ହରେନ୍ଦ୍ର କହିଲା—ଆଉ ମୁଁ ?

: ଓହୋ ! ପ୍ରକୃତରେ ତ । ଏ ହେଉଛନ୍ତି ହରେନ୍ଦ୍ର—ପ୍ରଫେସର ଅକ୍ଷୟର ପରମ ବନ୍ଧୁ । ବାକି ପରିଚୟ ଯଥା ସମୟରେ ହେବ । ଚିନ୍ତା କରିବାର କାରଣ ନାହିଁ ହରେନ୍ଦ୍ର । କମଳକୁ ଇଙ୍ଗିତ ଦ୍ୱାରା ଆହ୍ୱାନ ଜଣାଇ କହିଲେ—ପାଖକୁ ଆସ ତ କମଳ । ତୋ ହାତଟି ଧରି କିଛି ସମୟ ମୁଁ ଚୁପ୍ ହୋଇ ବସେ । ଏଥିପାଇଁ ଯେପରି କେତେଦିନ ହେବ ପ୍ରାଣଟା ମୋର ଛଟପଟ କରୁଥିଲା ।

କମଳ ହସ ହସ ମୁହଁରେ ତାଙ୍କ ପାଖରେ ଯାଇ ବସିଲା । ଏବଂ ଦୁଇ ହାତ ବଢ଼ାଇ ତାଙ୍କର ମୋଟା ହାତଟିକୁ କୋଳରେ ଧରି ବସିଲା ।

ଆଶୁବାବୁ ସ୍ନେହରେ ପଚାରିଲେ—ଖାଇକରି ଆସିଛୁ ତ ?

କମଳ ମୁଣ୍ଡ ହଲାଇ କହିଲା—ନା ।

ଆଶୁବାବୁ ଗୋଟିଏ ଛୋଟ ଦୀର୍ଘଶ୍ୱାସ ଛାଡ଼ି କହିଲେ—ଜାଣିକରି ଲାଭ କ'ଣ ? ଏ ଘରେ ତ ତୋତେ ଖୁଆଇ ପାରିବି ନାହିଁ ।

କମଳ ନୀରବ ହୋଇ ରହିଲା ।

ବେଲା ମୁହଁକୁ ଚାହିଁ ଆଶୁବାବୁ ସାମାନ୍ୟ ହସିଲେ । କହିଲେ—କ'ଣ ମୋ ବର୍ଣ୍ଣନା ମିଳିଲା ତ ? ବୃଦ୍ଧା ବୟସରେ ଏକ୍‌ସଟ୍ରାଭାଗେନସ୍ କହି ଉପହାସ କରିବାଟା ଯେ ଉଚିତ ହୋଇ ନାହିଁ, ମାନିଲୁ ତ ?

ମହିଳା ଜଣକ ନିର୍ବାକ୍ ହୋଇ ରହିଲେ । ଆଶୁବାବୁ କମଳର ହାତଟି କେତେ ଥର ଏପଟ ସେପଟ କରି କହିବାକୁ ଲାଗିଲେ—ଏହି ଝିଅଟାର ବାହାରଟାକୁ ଦେଖି ମଣିଷ ଯେପରି ବିସ୍ମିତ ହେବାକୁ ହୁଏ, ଭିତରଟା ଦେଖି ସେହିପରି ମଧ୍ୟ ଅବାକ୍ ହେବାକୁ ପଡ଼େ । କ'ଣ ହରେନ୍ଦ୍ର, ଠିକ୍ ନୁହେଁ ?

ହରେନ୍ଦ୍ର ଚୁପ୍ ହୋଇ ରହିଲା । କମଳ ହସି ଦେଇ ଉତ୍ତର ଦେଲା—ଏହା ଠିକ୍ ନା ନାହିଁ ତହିଁରେ ସନ୍ଦେହ ରହିଛି । କିନ୍ତୁ କେହି ଯଦି ଆପଣଙ୍କୁ ଏକ୍‌ସଟ୍ରାଭାଗାଣ୍ଟ

(Extravagant) କହି ଅନ୍ଧା କରିଥାଏ ସେ ଯେ ବେଠିକ୍ ନୁହେଁ ଏଥିରେ ସନ୍ଦେହ ନାହିଁ । ମାତ୍ରା ଜ୍ଞାନଟା ଆପଣଙ୍କର ଏ ସଂସାରରେ ଅଚଳ ।

: ଇସ୍—ସତେ ନା କ'ଣ ? କହି ଆଶୁବାବୁ ଗମ୍ଭୀର ସ୍ନେହ ମିଶ୍ରିତ କଣ୍ଠରେ କହିଲେ—ଏ ଘରେ ତୋତେ କୌଣସିମତେ ଖୁଆଇ ପାରିବ ନାହିଁ ଜାଣେ; ତଥାପି ଆଜି ନିଜ ଘରେ କ'ଣ ଖାଇଛୁ କହିଲୁ ?

: ପ୍ରତିଦିନ ଯାହା ଖାଇଥାଏ ।

: ତଥାପି ଟିକିଏ ଶୁଣିବା, ବେଳା ଖିବଥିବ, ମୁଁ ହୁଏତ ବଢ଼ାଇ କରି କହି-ଥିବ ।

: ଅର୍ଥାତ୍ ମୋ ସମ୍ପର୍କରେ ମୋ ଅନୁପସ୍ଥିତ ବେଳେ ଅନେକ ଆଲୋଚନା ତେବେ ହୋଇ ସାରିଛି ?

: ହଁ ହୋଇଛି, ତାହା ତ ଅସ୍ୱୀକାର କରିପାରିବ ନାହିଁ ।

ରୂପା ପାତ୍ରରେ ଖଣ୍ଡିଏ ଗ୍ଲେଟ କାର୍ଡ ଧରି ବେହେରା ଘର ଭିତରକୁ ପ୍ରବେଶ କଲା । ଲେଖାଟା ସମସ୍ତଙ୍କ ଆଖିରେ ପଡ଼ିଲା ଏବଂ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଉଠିଲେ । ଏ ଘରେ ଅଜିତ ଜଣେ ଘରର ପୁଅ ଭଳି ଥିଲା । କିନ୍ତୁ ଆଜିକାଲି ଆଗ୍ରାରେ ରହି ସୁଦ୍ଧା ସେ ଆସେ ନାହିଁ । ହୁଏତ ଏହା ହିଁ ସ୍ୱାଭାବିକ । ତଥାପି ଏଇ ନ ଆସିବାର ଲଜ୍ୟା ଓ ସଙ୍କୋଚ ଉଭୟଙ୍କ ଭିତରେ ଏପରି ଗୋଟାଏ ବ୍ୟବଧାନ ସୃଷ୍ଟି କରି ପକାଇଛି ଯେ, ତାର ଏହି ଅପ୍ରତ୍ୟାଶିତ ଆଗମନ ହେତୁ କେବଳ ଆଶୁବାବୁ ନୁହଁନ୍ତି ଉପସ୍ଥିତ ସମସ୍ତେ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ମୁହଁରେ ଉଦ୍‌ବେଗର ଛାୟା ଦେଖାଗଲା । ସେ କହିଲେ—ତାକୁ ଏଇ ଘରକୁ ଡାକି ଆଣ ।

କିଛି ସମୟ ପରେ ଅଜିତ ଆସି ଘରେ ପହଞ୍ଚିଲା । ପରିଚିତ ଏବଂ ଅପରିଚିତ ଏତେ ଗୁଡ଼ିଏ ଲୋକଙ୍କର ଉପସ୍ଥିତି ସେ ଆଶା କରି ପାରି ନ ଥିଲା ।

ଆଶୁବାବୁ କହିଲେ—ବସ ଅଜିତ । ଭଲ ଅଛ ?

ଅଜିତ ମୁଣ୍ଡ ହଲାଇ କହିଲା—ଆଜ୍ଞା ହଁ । ଆପଣଙ୍କ ସ୍ୱାସ୍ଥ୍ୟ ବର୍ତ୍ତମାନ କପରି ଅଛି ? ଭଲ ମନେ ହେଉଛି ତ ?

ଆଶୁବାବୁ କହିଲେ—କ୍ରମଶଃ ଆରୋଗ୍ୟ ହେଉଥିବାର ଭରସା ମିଳୁଛି ।

ପରସ୍ପରର କୁଶଳ ପ୍ରଶ୍ନୋତ୍ତର ଏହିଠାରେ ହିଁ ଅଟକି ରହିଲା । କମଳ ନ ଥିଲେ ହୁଏତ ଆଉ ଦୁଇ ଚାରି ପଦ କଥାବାର୍ତ୍ତା ଚାଲି ପାରିଥାନ୍ତା । କିନ୍ତୁ ସାମ୍ନାସାମ୍ନି ହେବା ଭୟରେ ଅଜିତ ସେ ଦିଗରେ ମୁହଁ ଉଠାଇବା ପାଇଁ ସାହାସ କରି ପାରିଲା ନାହିଁ । ଦୁଇ ତିନି ମିନିଟ ଧରି ସମସ୍ତେ ଚୁପ୍ ରହିବା ପରେ ହରେନ୍ଦ୍ର ପ୍ରଥମେ କଥା କହିଲା । ପ୍ରଶ୍ନ କଲା— ଆପଣ କ'ଣ ସିଧା ବସାରୁ ଏଠାକୁ ଆସିଛନ୍ତି ?

ଗୋଟାଏ କଥା କଲୁ କହ୍ନ ପକାଇ ଅଜିତ ରକ୍ଷା ପାଇଗଲା । କହିଲା—ନା ଠିକ ସିଧା ଆସିପାର ନାହିଁ । ଆପଣଙ୍କ ସାକ୍ଷାତ କରିବା ପାଇଁ ଟିକିଏ ଭୁଲ କରି ଆସିବାକୁ ହୋଇଛୁ ।

: ମୋତେ ଖୋଜ ଖୋଜ ? ପ୍ରୟୋଜନର କାରଣ ?

: ପ୍ରୟୋଜନ ମୋର ନୁହେଁ, ଆଉ ଜଣଙ୍କର । ସେ ସ୍ୱଜେନକୁ ଖୋଜିବାକୁ ଆସି ଦୁଇ ଘର ଫେର ଉର୍ଙ୍ଗେ ମାର ଗଲେଣି । ବସିବା ପାଇଁ କହିଲି—କିନ୍ତୁ ରାଜି ହେଲେ ନାହିଁ । ଧୈର୍ଯ୍ୟ ଧରି ବସି ଅପେକ୍ଷା କରିବାଟା ବୋଧହୁଏ ତାଙ୍କ ଧାତୁରେ ସହ୍ୟ ହୁଏ ନାହିଁ ।

ହରେନ୍ଦ୍ର ଶଙ୍କିତ ହୋଇ ପ୍ରଶ୍ନ କଲି—ଲୋକଟି କିଏ ? ଦେଖିବା ପାଇଁ କିପରି ? ସେ ଏଠାରେ ନାହିଁ ବୋଲି କହିଦେଲେ ନାହିଁ କାହିଁକି ?

: ସେ ଖବର ତାଙ୍କୁ ଦେଇଛୁ । ବୋଧହୁଏ ବିଶ୍ୱାସ କଲେ ନାହିଁ ।

ହରେନ୍ଦ ଉଦ୍‌ବିଗ୍ନ ହୋଇ ଉଠି ଠିଆ ହେଲ ଏବଂ କମଲକୁ ବସାରେ ପହଞ୍ଚାଇ ଦେବାର ଦାୟିତ୍ୱ ଆଶୁବାବୁଙ୍କ ଉପରେ ନ୍ୟସ୍ତ କରି ବିଦାୟ ନେଇ ଚାଲିଗଲା । ସେ ଚାଲିଯିବା ପରେ ଆଶୁବାବୁ କହିଲେ—ଏଇ ସ୍ୱଜେନ ପିଲାଟାକୁ କମଲ ଦୁଇଦିନ ଥରରୁ ଅଧିକା ଦେଖି ନାହିଁ, ବିପଦରେ ପଡ଼ିଲେ ତାର ସାକ୍ଷାତ୍ ମିଳେ ନାହିଁ । କିନ୍ତୁ ମନେହୁଏ କିପରି ତାକୁ ଭାରି ଭଲ ପାଏ । କ'ଣ ଗୋଟାଏ ମହାମୂଲ୍ୟ ସମ୍ପଦ ସଙ୍ଗରେ ଧରି ସତେ ଯେପରି ସେ ଘୂରି ବୁଲୁଥାଏ । ଅଥଚ ହରେନ୍ଦ୍ରର ମୁହଁରୁ ଶୁଣିଲି ସେ କୁଆଡ଼େ ଭାରି wild. ପୋଲିସ ତାକୁ ସନ୍ଦେହ ଆଖିରେ ଦେଖେ । ଭୟ ହୁଏ କେତେବେଳେ କେଉଁଠି କିଛି ବିଭ୍ରାଟ ଘଟାଇ ବସିବ । ହୁଏତ କିଛି ଖବର ବି ପାଇ ପାରିବା ନାହିଁ । ଏଇ ଦେଖୁନାହିଁ, ହଠାତ୍ କୁଆଡ଼େ ଯେ ଅନ୍ତର୍ଦ୍ଧାନ ହୋଇ ଯାଉଛି କେହି ଖୋଜି କରି ପାଉ ନାହାନ୍ତି ।

କମଲ ପ୍ରଶ୍ନ କଲି ହଠାତ୍ ଯଦି ଖବର ପାଆନ୍ତି ଯେ ସେ ବିପଦରେ ପଡ଼ିଛି, ତେବେ କ'ଣ କରନ୍ତେ ?

: କ'ଣ କରି ପାରିବ ସେହି ଉତ୍ତର ସେତିକବେଳେ ଦେଇ ହେବ—ବର୍ତ୍ତମାନ କିନ୍ତୁ ନୁହେଁ । ଦେହ ଖରାପ ଥିବା ସମୟରେ ହରେନ୍ଦ୍ର ନିକଟରୁ ନୀଳିମା ଓ ମୁଁ ଦୁହେଁ ତା ସମ୍ବନ୍ଧରେ ବହୁତ କାହାଣୀ ଶୁଣିଛୁ । ପର ପାଇଁ ନିଜକୁ ସମ୍ପୂର୍ଣ୍ଣ ଭାବରେ ବିନିଯୋଗ କରିବା କଥା ଶୁଣିଲି ବେଳେ ତା କଥା ଆଖିରେ ଭାସି ଉଠେ । ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି ତାର ଯେପରି କୌଣସି ବିପଦ ନ ଘଟେ ।

ପ୍ରକାଶ୍ୟରେ କେହି କିଛି କହିଲେ ନାହିଁ । କିନ୍ତୁ ମନେ ମନେ ସମସ୍ତେ ସେହି ପ୍ରାର୍ଥନା ସହିତ ଯୋଗ ଦେଲେ । କମଲ ପ୍ରଶ୍ନ କଲି—ନୀଳିମାଙ୍କୁ ତ କାହିଁ ଦେଖିବାକୁ ପାଉ ନାହିଁ ? ବୋଧହୁଏ କାର୍ଯ୍ୟବ୍ୟସ୍ତ ଅଛନ୍ତି ?

ଆଶୁବାବୁ କହିଲେ—ସେ ହେଉଛନ୍ତି କର୍ମ୍ମୀ ଲୋକ । ଦିନରାତି କାମରେ ବ୍ୟସ୍ତ ଥାନ୍ତି ସତ କିନ୍ତୁ ବର୍ତ୍ତମାନ ଶୁଣିଲି ତାଙ୍କ ମୁଣ୍ଡ ବିନ୍ଧୁଥିବା ହେତୁ ସେ ଶୋଇ-ପଡ଼ିଛନ୍ତି । ତାଙ୍କର ଦେହଟା ବୋଧହୁଏ ଟିକିଏ ବେଶୀ ଖରାପ ହୋଇଯାଇଛି । ନଚେତ ଏହା ତାଙ୍କର ସ୍ୱଭାବ ନୁହେଁ । ଜଣେ ଲୋକ ଯେ ଅବିଶ୍ରାନ୍ତ ଏତେ ସେବା, ଏତେ ପରିଶ୍ରମ କରିପାରେ, ତାହା ନିଜ ଆଖିରେ ନ ଦେଖିଲେ କେହି ବିଶ୍ୱାସ କରିପାରିବେ ନାହିଁ ।

କିଛି ସମୟ ଚୁପ୍ ରହିବା ପରେ କହିଲେ—ଅବିନାଶଙ୍କ ସହିତ ଆଳାପ ପରିଚୟ ଆଗ୍ରାରେ । ମଝିରେ ମଝିରେ ଆସେ—ଯାଏ । କେତେ ଅବା ପରିଚୟ ଅଥଚ ଆଜି ସ୍ୱଚ୍ଛ ସଂସାରରେ ଯେ ଆପଣା-ପର ବୋଲି ଯେଉଁ କଥାଟା ରହି ଆସିଛି ତାହା କେବଳ ଅର୍ଥ-ହୀନ । ଦୁନିଆରେ ପର-ଆପଣା କେହି ନାହିଁ କମଳ, ସ୍ରୋତର ମୁଖରେ କିଏ କେତେ-ବେଳେ ପାଖକୁ ଆସେ, ଆଉ କିଏ ଯେ ଭାସି ଭାସି ଦୂରକୁ ଚାଲିଯାଏ, ତାହାର କୌଣସି ହିସାବ କେହି ଜାଣନ୍ତି ନାହିଁ ।

କଥାଟା ଯେ କାହାକୁ ଉଦ୍ଦେଶ୍ୟ କରି କେଉଁ ଦୁଃଖ ପାଇଁ କୁହାଗଲା ତାହା କେବଳ ସେହି ଅପରିଚିତା ରମଣୀ ବେଳା ବ୍ୟତୀତ ଅପର ଦୁଇଜଣ ବୁଝି ପାରିଲେ । ଆଶୁବାବୁ ଯେପରି କେତେକଟା ମନକୁ ମନ କହିବାକୁ ଲାଗିଲେ ଏଇ ଭୋଗରେ ପଡ଼ି ଯେପରି ସଂସାରରେ ଅନେକ ଜିନିଷ ଆଖିରେ ଅନ୍ୟ ପ୍ରକାର ଦେଖି ପାରିଲେ । ମନେହୁଏ କେଉଁଥି ପାଇଁ ଅବା ଏତେ ଟଣାଟଣି, ଏତେ ଧନ୍ଦା ଧନ୍ଦ ଆଉ ଏତେ ଭଲ ମନ୍ଦର ବାଦାନୁବାଦ । ମଣିଷ ଅନେକ ଭୁଲ ଓ ଅନେକ ଫାଙ୍କି ନିଜ ଘରପାଖରେ ଜମା କରି ଯେପରି ଆପଣା ଇଚ୍ଛାରେ ବନ୍ଦୀ ହୋଇ ପଡ଼ିଛି । ଆଜି ମଧ୍ୟ ତାକୁ ବହୁ ଯୁଗର ଅନେକ ଅଜଣା ସତ୍ୟକୁ ଆବିଷ୍କାର କରିବାକୁ ପଡ଼ିବ । ତେବେ ଦିନେ ହୁଏତ ସେ ପ୍ରକୃତ ମଣିଷଟିଏ ହୋଇପାରେ । ଆନନ୍ଦ ତ ନୁହେଁ, ନିରାନନ୍ଦ ଯେପରି ତା ସଭ୍ୟତା ଓ ଭଦ୍ରତାର ଚରମ ଲକ୍ଷ୍ୟ ହୋଇଉଠିଛି ।

କମଳ ବିସ୍ମୟରେ ଚାହିଁ ରହିଲା । ତାଙ୍କ ବାକ୍ୟର ତାତ୍ପର୍ଯ୍ୟ ସେ ଯେ ନିଃସନ୍ଦେହରେ ବୁଝି ପାରିଛି ତାହା ନୁହେଁ, ଯେପରି କୁହୁଡ଼ି ଭିତରେ ଆଗନ୍ତୁକର ମୁହଁ ଦେଖି ପାରିଛି । କିନ୍ତୁ ପଦର ଚଳନ ଅତ୍ୟନ୍ତ ପରିଚିତ ।

ଆଶୁବାବୁ ଆପେ ଅଟକି ଗଲେ । ବୋଧହୁଏ କମଳର ବିସ୍ମିତ ଦୃଷ୍ଟି ତାଙ୍କୁ ସଚେତନ କରାଇଲା । କହିଲେ—ତୋ ସହିତ ମୋର ଅନେକ କଥା ହେବାକୁ ଅଛି କମଳ, ଆଉ ଦିନେ ଆସିବୁ ।

: ଆସିବି । ଆଜି ଯାଉଛି ।

: ହଉ । ଗାଡ଼ିଟା ତଳେ ଅଛି । ତୋତେ ପହଞ୍ଚାଇ ଦେଇ ଆସିବ ବୋଲି ଡ୍ରାଇଭରକୁ ଏପର୍ଯ୍ୟନ୍ତ ଛୁଟି ଦେଇ ନାହିଁ । ଅଜିତ୍ ତୁମେ କାହିଁକି ସଙ୍ଗରେ ଯାଉ ନାହଁ, ଫେରିବା ବାଟରେ ଗାଡ଼ି ତୁମକୁ ଆଶ୍ରମରେ ଓହ୍ଲାଇ ଦେଇ ଆସିବ ?

ଉଭୟେ ତାଙ୍କୁ ନମସ୍କାର କରି ବାହାରି ଆସିଲେ । ବେଲା ସାଙ୍ଗରେ ଗାଡ଼ି ପର୍ଯ୍ୟନ୍ତ ଆସି କହିଲା—ଆପଣଙ୍କ ସହିତ କଥା ହେବା ପାଇଁ ଆଜି ସମୟ ହେଲା ନାହିଁ । ଏଥର କିନ୍ତୁ ଯେଉଁଦିନ ଦେଖାହେବ ଆଉ ଛାଡ଼ିବି ନାହିଁ ।

କମଳ ହସି ହସି ମୁଣ୍ଡ ହଲାଇ କହିଲା—ସେଇଟା ମୋର ସୌଭାଗ୍ୟ । କିନ୍ତୁ ଭୟ ହୁଏ ହୁଏତ ମୋ ପରିଚୟ ପାଇ ପାରିଲା ପରେ ଆପଣ ମତ ବଦଳାଇ ପାରନ୍ତି ।

ଗାଡ଼ି ଭିତରେ ଦୁହେଁ ପାଖାପାଖି ବସିଲେ । ରାସ୍ତାର ମୋଡ଼ ବୁଲୁ ବୁଲୁ କମଳ କହିଲା—ସେଦିନର ରାତିଟା ମଧ୍ୟ ଏହିପରି ଅନ୍ଧକାର ଥିଲା—ମନେ ପଡ଼ୁଛି ତ ?

: ପଡ଼େ ।

: ସେଦିନକାର ପାଗଲାମି ?

: ତାହା ମଧ୍ୟ ମନେ ପଡ଼େ ।

: ମୁଁ ରାଜି ହୋଇଥିଲି ତାହା ମନେ ପଡ଼େ ?

ଅଜିତ ହସିଦେଇ କହିଲା—ନା । କିନ୍ତୁ ଆପଣ ଯେଉଁ ବିଦ୍ରୂପ କରିଥିଲେ ତାହା ମନେ ଅଛି ।

କମଳ ବିସ୍ମୟ ପ୍ରକାଶ କରି କହିଲା—ବିଦ୍ରୂପ କରିଥିଲି ! କାହିଁ ନାହିଁ ତ !

: ନିଶ୍ଚୟ କରିଥିଲେ ।

: ତାହା ହେଲେ ଆପଣ ବୁଝି ପାରିଛନ୍ତି । ସେ ଯାହା ହେଉ, ଆଜି ଆଉ ତ କରୁନି—ଚାଲନ୍ତୁନା ଆଜି ଦୁଇଜଣ ପଳାଇଯିବା ?

: ଧେତ୍, ଆପଣ ଭାରି ଦୁଷ୍ଟ ।

କମଳ ହସି ପକାଇ କହିଲା—ଦୁଷ୍ଟ କିପରି ? ମୋ ଭଳି ଏପରି ଶାନ୍ତ, ଏବଂ ସୁବୋଧ ଆଉ କିଏ ଅଛି କହିଲେ ? ହଠାତ୍ ହୁକୁମ କଲେ—କମଳ, ଚାଲ ପଳାଇବା । ମୁଁ ସଙ୍ଗେ ସଙ୍ଗେ ରାଜି ହୋଇ କହିଥିଲି—ଚାଲନ୍ତୁ ।

: କିନ୍ତୁ ତାହା ତ କେବଳ ପରିହାସ ଥିଲା ।

: ହଉ, ତାହା ପରିହାସ ହେଲେ ହୋଇଥାଉ । ହଠାତ୍ ଅପରାଧଟା କ'ଣ କରିଛି କହନ୍ତୁ ତ ? ଡାକିଛନ୍ତି ତୁମେ ବୋଲି, ଆରମ୍ଭ କରିଛନ୍ତି ଆପଣ ବୋଲି । କେତେ ଦୁଃଖ କଷ୍ଟରେ ଦିନ ବିତାଏ,—ଆପଣମାନଙ୍କର ଜାମା, କୁରୁତା ସିଲାଇ କରି

କିଛି ଖାଇବା ପାଇଁ ଯୋଗାଡ଼ କରିଥାଏ, ଅଥଚ ଆପଣଙ୍କର ଟଙ୍କାର ସୀମା ନାହିଁ—ଦିନକ ପାଇଁ କ'ଣ ମୋ ଖବର ରଖିଛନ୍ତି ? ମନୋରମା ଏପରି ଦୁଃଖରେ ପଡ଼ିଥିଲେ ଆପଣ କ'ଣ ସହ୍ୟ କରି ପାରନ୍ତେ ? ଦିନ ରାତି ଖଟି ଖଟି କେତେ ରୋଗିଣା ହୋଇଗଲଣି, ଦେଖନ୍ତୁ ତ ? ଏହା କହି ସେ ନିଜର ବାଆଁ ହାତଟି ଅଜିତ ଉପରେ ରଖିବାକ୍ଷଣି ଆଶ୍ଚର୍ଯ୍ୟ ଭାବରେ ତାର ସର୍ବାଙ୍ଗ ଶିହରି ଉଠିଲା । ଅସ୍ପଷ୍ଟ ସ୍ୱରରେ କ'ଣ କିଛି କହିବାକୁ ସେ ଯାଉଁଥିଲା; କିନ୍ତୁ କମଳ ହଠାତ୍ ହାତଟା ଉଠାଇ ନେଇ ଚିତ୍କାର କରି କହି ଉଠିଲା—ଡ୍ରାଇଭର, ରୋକୋ, ରୋକୋ । ବର୍ତ୍ତମାନ ସେ ପାଗଳ ଗାରଦ ସାମନାକୁ ଆସିଗଲେଣି—ଗାଡ଼ି ରୁନ୍ଧିଅ । ଅନ୍ଧାରରେ ଠିକ୍ ଠଉର କରି ପାରିଲି ନାହିଁ ।

ଅଜିତ କହିଲା—ହଁ, ଦୋଷ ଅନ୍ଧକାରର । କେବଳ ସାନ୍ତ୍ୱନା ଏତିକ ଯେ ହଜାର ଅବିଶ୍ୱାସ ମଧ୍ୟରେ ଏ ବିଶ୍ୱାସର ପ୍ରତିବାଦ କରିବା ପାଇଁ ଶକ୍ତି ନାହିଁ । ସେହି ଅଧିକାରରୁ ମଧ୍ୟ ବଞ୍ଚିତ । ଏହା କହି ସେ ଟିକିଏ ହସିଲା । ଶୁଣିକରି କମଳ ମଧ୍ୟ ହସିଲା । କହିଲା—ପ୍ରକୃତରେ । କିନ୍ତୁ ବିଶ୍ୱାସ ଜିନିଷଟା ତ ସଂସାରରେ ସବୁ କିଛି ନୁହେଁ । ଅବିଶ୍ୱାସର ସ୍ଥାନ ଅଛି ବୋଲି ଆଜି ମଧ୍ୟ ଦୁନିଆଁ ଚାଲିଛି । ନ ହେଲେ କେଉଁଦିନରୁ ଅଟକି ଯାଆନ୍ତାଣି । ଡ୍ରାଇଭର—ଗାଡ଼ି ବନ୍ଦ କର ।

ଅଜିତ କବାଟ ଖୋଲିଦେବାକ୍ଷଣି କମଳ ଓହ୍ଲାଇ ପଡ଼ି କହିଲା—ଅନ୍ଧକାରର ମଧ୍ୟ ଏହାଠାରୁ ବଡ଼ ଅପରାଧ ଅଛି—ତାହା ହେଉଛି ଲୋକେ ଏକାକୀ ଯିବା ପାଇଁ ଭୟ କରନ୍ତି ।

ଏହି ଇଙ୍ଗିତ ଫଳରେ ଅଜିତ ନୀରବରେ ଓହ୍ଲାଇ ପଡ଼ି କମଳ ପାଖରେ ଠିଆ ହେବାକ୍ଷଣି କମଳ କହିଲା—ଡ୍ରାଇଭର, ତୁମେ ଗାଡ଼ିନେଇ ଚାଲିଯାଅ । ତାଙ୍କର ଫେରିବାକୁ ବିଳମ୍ବ ହେବ ।

: ସେ କି କଥା ? ଏତେ ରାତିରେ ଏ ଅଞ୍ଚଳରେ ମୁଁ ପୁଣି ଗାଡ଼ି ପାଇବି କେଉଁଠୁ ?

: ତାହାର ବ୍ୟବସ୍ଥା ମୁଁ କରିଦେବି ।

ଗାଡ଼ି ଚାଲିଗଲା । ଅଜିତ କହିଲା—ମୁଁ ଜାଣେ ଆପଣ କୌଣସି ବ୍ୟବସ୍ଥା କରି ପାରିବେ ନାହିଁ । ଅନ୍ଧକାରରେ ତିନି ଚାରି ମାଇଲ ମୋତେ ଚାଲିକରି ଯିବାକୁ ପଡ଼ିବ । ଅଥଚ ଆପଣଙ୍କୁ ଛାଡ଼ି ଦେଇ ମୁଁ ଅନାୟାସରେ ଫେରିଯାଇ ପାରିଥାନ୍ତି ।

: ପାରି ନଥାନ୍ତେ । କାରଣ ଆପଣଙ୍କୁ ନ ଖୁଆଇ ଆହ୍ମର ଅନିଶ୍ଚିତତା ଭିତରକୁ ମୁଁ ଛାଡ଼ି ଦେଇ ନ ଥାନ୍ତି । ଆସନ୍ତୁ !

ବସାରେ ସ୍ବିକରଣୀ ଆଲୁଅ ଲଗାଇ ଅପେକ୍ଷା କରି ବସି ରହିଥିଲା । ଡାକବାକ୍ଷିଣି ଦ୍ୱାର ଫିଟାଇ ଦେଲା । ଉପରକୁ ଯାଇ କମଳ ସେହି ସୁନ୍ଦର ଆସନଟି ପକାଇ ଦେଇ ଅଜିତକୁ ବସିବା ପାଇଁ କହିଲା । ଖେଳାଇ ପାଇଁ ଆୟୋଜନ ପ୍ରସ୍ତୁତ ହୋଇଥିଲା । ଷ୍ଟୋଭ ଲଗାଇ କମଳ ଖେଳାଇ ବସାଇ ଦେଇ ଅଳ୍ପ ଦୂରରେ ବସିପଡ଼ି ପ୍ରଶ୍ନ କଲା— ଏଇମିତି ଆଉ ଦିନକର କଥା ମନେ ପଡ଼େ କି ?

: କିଛିମ୍ପ ପଡେ ।

: ଆଚ୍ଛା, ତାହା ସହିତ ଆଜି କେଉଁଠାରେ କିଛି ତଫାତ୍ ଦେଖି ପାରୁଛନ୍ତି ?

ଅଜିତ ଘର ଭିତରେ ଇତସ୍ତତଃ ଦୃଷ୍ଟି ନିକ୍ଷେପ କରି କୌଣସି ସ୍ଥାନରେ କ'ଣ ଥିଲା କି ନାହିଁ ମନେ କରିବା ପାଇଁ ଚେଷ୍ଟା କରିବାକୁ ଲାଗିଲା ।

କମଳ ହସି ହସି ମୁହଁରେ—ଏ ଦଗରେ ସାରିବିଠ ଖୋଜିଲେ ମଧ୍ୟ ପାଇ ପାରିବ ନାହିଁ । ଆଉ ଗୋଟିଏ ଦଗରେ ସନ୍ଧାନ କରିବାକୁ ପଡ଼ିବ ।

: କେଉଁ ଦଗରେ କହନ୍ତୁ ତ ?

: ମୋ ଆଡ଼େ ।

ଅଜିତ୍ ହଠାତ୍ ଲଜ୍ଜ୍ୟାରେ ସଙ୍କୁଚିତ ହୋଇ ପଡ଼ିଲା । ଆସ୍ତେ ଆସ୍ତେ କହିଲା— କୌଣସି ଦିନ ମୁଁ ଆପଣଙ୍କ ମୁହଁକୁ ବେଶୀ ସମୟ ଚାହିଁ ପାରିନାହିଁ । ଅନ୍ୟ ସବୁ କରି ପାରିଛି କିନ୍ତୁ କେବଳ ଏହି କାର୍ଯ୍ୟଟି କାହିଁକି କରି ପାରିନାହିଁ ।

କମଳ କହିଲା, ଅପର ସଙ୍ଗେ ଆପଣଙ୍କର ପ୍ରଭେଦ ଏଇଠାରେ । ସେମାନେ ଯେ ପାରନ୍ତି ତାର କାରଣ ସେହି ଦୃଷ୍ଟିରେ ସେମାନଙ୍କର ମୋ ପ୍ରତି ସମ୍ଭ୍ରମବୋଧ ନ ଥାଏ ।

ଅଜିତ ଚୁପ୍ ହୋଇ ରହିଲା । କମଳ କହିବାକୁ ଲାଗିଲା—ମୁଁ ସ୍ଥିର କରିଥିଲି ଯେଉଁପରି ହେଉ ଆପଣଙ୍କୁ ଖୋଜି ବାହାର କରିବି ବୋଲି । ଆଶୁବାବୁଙ୍କ ବସାରେ ଏପରି ଭାବରେ ସାକ୍ଷାତ୍ ହୋଇଯିବ ବୋଲି ଆଶା କରି ନ ଥିଲି । କିନ୍ତୁ ଦୈବାତ୍ ଯେତେବେଳେ ଦେଖା ହୋଇଗଲା, ସେତେବେଳେ ମୁଁ ଧରି ଆଣିଲି । ଖୁଆଇବାଟା ଗୋଟାଏ ସାମାନ୍ୟ ଉପଲକ୍ଷ୍ୟ ଥିଲା । ତେଣୁ ଖାଇବା ଶେଷ ହୋଇଗଲେ ମଧ୍ୟ ଛୁଟି ପାଇ ପାରିବେ ନାହିଁ । ଆଜି ରାତିରେ ଆପଣଙ୍କୁ ଅନ୍ୟ କୁଆଡ଼େ ଯିବା ପାଇଁ ଛାଡ଼ି ଦେବି ନାହିଁ । ଏହି ଘରେ ବନ୍ଦ କରି ରଖିବି ।

: କିନ୍ତୁ ତହିଁରେ ଆପଣଙ୍କର କ'ଣ ଲାଭ ହେବ ?

: ଲାଭ କଥା ପରେ କହିବି । କିନ୍ତୁ ମୋତେ 'ଆପଣ' ବୋଲି କହୁଥିବାରୁ ମୁଁ ପ୍ରକୃତରେ କଷ୍ଟ ପାଉଛି । ଦିନେ ତୁମେ ବୋଲି ଡାକିଥିଲ, ସେଦିନ କିନ୍ତୁ ମୁଁ ଅନୁରୋଧ

କରି ନ ଥିଲି । ନିଜ ଇଚ୍ଛାରେ ତାକଥିଲି । ଆଜି ସେହିଟାକୁ ବଦଳାଇ ଦେବା ପାଇଁ ମୁଁ ତ କୌଣସି ଅପରାଧ କରିନାହିଁ । ଅଭିମାନ କରି ଉତ୍ତର ଯଦି ନ ଦିଏ, ଆପଣ ନିଜେ ମଧ୍ୟ କଷ୍ଟ ପାଇବେ ।

ଅଜିତ ମୁଣ୍ଡ ହଲାଇ କହିଲା—ବୋଧହୁଏ ପାଇବି ।

: ବୋଧହୁଏ ନୁହେଁ, ନିଶ୍ଚୟ ପାଇବେ । ଆପଣ ଆଗ୍ରା ଆସିଥିଲେ ମନୋରମା ପାଇଁ । କିନ୍ତୁ ସେ ଯେତେବେଳେ ଏପରି ଭାବରେ ଚାଲିଗଲା, ସେତେବେଳେ ସମସ୍ତେ ଭାବିଥିଲେ ଆପଣ ବୋଧହୁଏ ଆଉ ଦଣ୍ଡେ ଏଠାରେ ରହିବେ ନାହିଁ । ଆଚ୍ଛା, ମୁଁ ମଧ୍ୟ ଆପଣଙ୍କୁ ଭଲ ପାଏ ଏକଥା ଆପଣ ବିଶ୍ୱାସ କରନ୍ତି ?

: ନା, କରେ ନାହିଁ ।

: ନିଶ୍ଚୟ କରନ୍ତି । ସେଥିପାଇଁ ଆପଣଙ୍କ ବିରୁଦ୍ଧରେ ମୋର ଅନେକ ଅଭିଯୋଗ ରହିଛି ।

ଅଜିତ କୌତୁହଳୀ ହୋଇ କହି ଉଠିଲା—ଅନେକ ଅଭିଯୋଗ ! ତହିଁରୁ ଗୋଟାଏ ହେଲେ ଶୁଣେ ?

: ଶୁଣାଇବି ବୋଲି ତ ଯିବାକୁ ଦେଇ ନାହିଁ । ପ୍ରଥମେ ନିଜ କଥାଟା କହେ । ଉପାୟ ନାହିଁ ବୋଲି ଦୁଃଖୀ, ଗରିବଙ୍କର ଲୁଗାପଟା ସିଲାଇ କରି ଖାଇବା-ପିନ୍ଧିବାଟା ଚଲାଇ ନିଏ । ଏଥିପାଇଁ ମୋର ଦୁଃଖ ନାହିଁ । କିନ୍ତୁ ଅଭାବରେ ପଡ଼ିଛି ବୋଲି ଆପଣଙ୍କର ଜାମା ସିଲାଇ କରି ପଇସା ରଖିବି, ଏହା କ'ଣ ମୋ ଦ୍ୱାରା ସମ୍ଭବପର ହୋଇ-ପାରିବ ?

: କିନ୍ତୁ ତୁମେ ତ କାହାଠାରୁ ଦାନ ନେଉ ନାହଁ ।

: ନା । ଦାନ ମୁଁ କାହାଠାରୁ ନେଇ ନାହିଁ । ଏପରିକି ଆପଣଙ୍କଠାରୁ ମଧ୍ୟ । କିନ୍ତୁ ଦାନ କରିବା ବ୍ୟତୀତ ଦେବା ପାଇଁ ସଂସାରରେ କ'ଣ ଆଉ କିଛି ରାସ୍ତା ଖୋଲା ନାହିଁ ? କାହିଁକି ଆସି କରି ଜୋର କରି କହିଲେ ନାହିଁ କମଳ, ଏ କାମ ତୋତେ ମୁଁ କରିବାକୁ ଦେବି ନାହିଁ । ମୁଁ ତାର କି ଜବାବ ଦେଇଥାନ୍ତି ? ଆଜି ଯଦି ଦୁର୍ବିପାକ ହେତୁ ମୋର ଖଟି ଖାଇବାର ଶକ୍ତି ଚାଲିଯାଏ. ଆପଣ ବଞ୍ଚି ଥାଉ ଥାଉ କ'ଣ ମୁଁ ରାସ୍ତାରେ ଭିକ ମାଗି ବୁଲିବି ?

କଥାଟାର ବ୍ୟାଖ୍ୟା ତାକୁ ବ୍ୟାକୁଳ କରିଦେଲା । ଅଜିତ କହିଲା—ତାହା ହୋଇ ପାରିବ ନାହିଁ କମଳ, ଅନ୍ତତଃ ମୁଁ ଯଦି ବଞ୍ଚିଥାଏ । ତୁମ ପାଇଁ ଗୋଟାଏ ଦିନ ମଧ୍ୟ ମୁଁ ଏପରି ଭାବରେ ଚିନ୍ତା କରିନାହିଁ । ବର୍ତ୍ତମାନ ଯେପରି ବିଶ୍ୱାସ କରିବା ପାଇଁ ଇଚ୍ଛା ହୁଏ ନାହିଁ ଯେ—ଯେଉଁ କମଳକୁ ଆମେ ସମସ୍ତେ ଜାଣୁ ସେ ହିଁ ତୁମେ ବୋଲି ।

: ସମସ୍ତେ ଯାହା ଇଚ୍ଛା ତାହା ଜାଣନ୍ତୁ ଆପଣ କ'ଣ କେବଳ ସେମାନଙ୍କ ଭିତରୁ ଜଣେ ? ଆଉ ଅଧିକା କିଛି ନୁହଁନ୍ତି ।

ବୋଧହୁଏ ଅତ୍ୟନ୍ତ କଠିନ ବୋଲି ଏ ପ୍ରଶ୍ନର ଉତ୍ତର ଆସି ପାରିଲା ନାହିଁ । ଏହାପରେ ଉଭୟେ ହିଁ ନୀରବ ରହିଲେ । ହୁଏତ ଅପରକୁ ପ୍ରଶ୍ନ କରିବା ଅପେକ୍ଷା ଆପଣା ଆପଣାକୁ ଜିଜ୍ଞାସା କରିବାର ପ୍ରୟୋଜନ ଦୁଇଜଣ ହିଁ ଅଧିକ ଅନୁଭବ କରିବାକୁ ଲାଗିଲେ ।

କି ଅଜା ଖେଳାଇ ! ଶେଷ ହେବା ପାଇଁ ବିଳମ୍ବ ହେଲା ନାହିଁ । ଖାଇବାକୁ ବସି ଅଚ୍ୟୁତ ଗମ୍ଭୀର ହୋଇ କହିଲା, ଅଥଚ ମଜ୍ଜା ଏଇଯେ, ଯାହାର ଯେତେ ଟଙ୍କା ପଇସା ଥାଇପାରେ କିନ୍ତୁ ତୁମ ଅର୍ଦ୍ଧ ନର ଅନ୍ନ ହାତ ପାତି ନ ଖାଇଲେ କାହାକୁ ମୁକ୍ତି ମିଳେ ନାହିଁ । ଅଥଚ ନିଜେ ତୁମେ କାହାଠାରୁ ନେବ ନାହିଁ କିମ୍ବା କାହାଠାରୁ ଖାଇବ ନାହିଁ; ଏପରିକି ମୂର୍ଚ୍ଛା ପିଟି ମରିଗଲେ ମଧ୍ୟ ନୁହେଁ ।

କମଳ ହସି ଦେଇ କହିଲା—ଆପଣମାନେ ଖାଆନ୍ତି କାହିଁକି ? ତା ଛଡ଼ା କେବେ ଅବା ଆପଣ ମୂର୍ଚ୍ଛା ପିଟିଛନ୍ତି ଯେ ?

: ମୂର୍ଚ୍ଛା ପିଟିବା ପାଇଁ ଇଚ୍ଛା ବାରମ୍ବାର ହୋଇଛି । ଆଉ ତୁମର ଖାଏ କେବଳ ତୁମ ଜବରଦସ୍ତିକୁ ଏଡ଼ାଇ ଦେଇ ପାରେ ନାହିଁ ବୋଲି । ଆଜି ଯଦି କହେ, କମଳ, ବର୍ତ୍ତମାନ ଠାରୁ ତୁମର ସମସ୍ତ ଦାୟିତ୍ୱ ଗ୍ରହଣ କଲି, ଏ ନୀଚ ବୃତ୍ତି ଆଉ କର ନାହିଁ, ତୁମେ ତତ୍‌କ୍ଷଣାତ୍ ଏପରି କଟୁ କଥା କହି ପକାଇବ ଯେ ମୋ ମୁହଁରୁ ଆଉ ଦ୍ୱିତୀୟ କଥା ବାହାରିବ ନାହିଁ ।

: ଏକଥା କ'ଣ କେବେ କହିଥିଲେ ?

: ମନେ ହେଉଛି ଯେପରି କହିଛି ।

: ଆଉ ମୁଁ କ'ଣ ଶୁଣି ପାରିନାହିଁ ?

: ନା ।

: ତାହା ହେଲେ ଶୁଣିଲି ଭଳି କହି ନ ଥିବେ । ହୁଏତ ମନ ଭିତରେ ଇଚ୍ଛା କେବଳ ହୋଇଥିବ, ତୁଣ୍ଡ ଫିଟି କଥା ବାହାରି ନ ଥିବ ।

: ଆଚ୍ଛା, ଧର ଆଜି ଯଦି କହେ ।

: ତାହାହେଲେ ମୁଁ ଯଦି କହେ—ନା ।

ହାତରେ ଧରିଥିବା ଗ୍ଲାସକୁ ଅଚ୍ୟୁତ ତଳେ ରଖି ଦେଇ କହିଲା—ଏଇତ । ତୁମକୁ ଚିନିବା ପାଇଁ ମୁଁ ବୁଝି ପାରିଲି ନାହିଁ । ଯେଉଁଦିନ ତାଜମହଲ ଆଗରେ ପ୍ରଥମେ ଦେଖି ଥିଲି ସେଦିନ ଯେପରି ବୁଝି ପାରି ନ ଥିଲି, ସେହିପରି ଆଜି ମଧ୍ୟ ଆମ ସମସ୍ତଙ୍କ ନିକଟରେ ତୁମେ ରହସ୍ୟମୟୀ ହୋଇ ରହିଯାଇଛ । ଏଇ ବର୍ତ୍ତମାନ କହିଲ—ମୋର ଦାୟିତ୍ୱ ନିଅ । ଆଉ ପୁଣି ସେତିକି ବେଳେ କହୁଛ—ନା ।

କମଳ ହସି ହସି କହିଲା—ଏହିପରି ପ୍ରକାରର ଗୋଟାଏ 'ନା' ଆପଣ ଦେଖି କହିନୁତ ? କହିନୁତ ଦେଖି ଆଉ କୌଣସି ଦିନ ମୋ ଘରେ ଖାଇବେ ନାହିଁ ? କ'ଣ ଯେପରି ଆପଣଙ୍କ କଥା ରହେ ।

: ରହିବ କିପରି ? କ ଖୁଆଇ ତୁମେ ତ ଆଦୌ ଛାଡ଼ି ଦେବ ନାହିଁ ।

ଏଥର କିନ୍ତୁ କମଳ ଆଉ ହସିଲା ନାହିଁ । ଶାନ୍ତ ସ୍ୱରରେ କହିଲା—ମୋ ଦାୟିତ୍ୱ ନେବାର ସମସ୍ତ ଆପଣଙ୍କର ଏ ପର୍ଯ୍ୟନ୍ତ ଆସି ନାହିଁ । ଯେଉଁଦିନ ଆସିବ ସେଦିନ ମୋ ମୁହଁରୁ ଆଉ "ନା" ଶବ୍ଦ ବାହାରି ପାରିବ ନାହିଁ । ସ୍ଥିର ହୋଇ ଯାଉଛି – ଆପଣ ଖାଆନ୍ତୁ ।

: ଖାଉଛି, କିନ୍ତୁ ସେଦିନ କେବେ ଆସିବ କି ନାହିଁ କହି ପାରିବ କି ?

କମଳ ମୁଣ୍ଡ ହଲାଇ କହିଲା—ତାହା ମୁଁ କହି ପାରିବ ନାହିଁ । ଉତ୍ତର ଦିନେ ଆପଣଙ୍କୁ ଖୋଜି ବାହାର କରି ନେବାକୁ ପଡ଼ିବ ।

: ସେ ଶକ୍ତି ମୋର ନାହିଁ । ଦିନେ ବହୁତ ଖୋଜିଛି କିନ୍ତୁ ପାଇ ନାହିଁ । ଉତ୍ତର ପାଇବି ଏଇ ଆଶା ନେଇ ଆଜିଠାରୁ ମୁଁ ତୁମ ନିକଟରେ ହାତ ପାତି ରହିଲି । କହି ସାରି ଅଜିତ ନୀରବରେ ଖାଇବାକୁ ଲାଗିଲା ।

କିଛି ସମୟ ପରେ କମଳ ପ୍ରଶ୍ନ କଲା—ଏତେ ଯାଗା ଥାଉ ଥାଉ ଆପଣ ହଠାତ୍ ହରେନ୍ଦ୍ରର ଆଶ୍ରମରେ ପହଞ୍ଚିଲେ କାହିଁକି ?

: କେଉଁଠି ଗୋଟାଏ ରହିବା ତ ଦରକାର । ତୁମେ ନିଜେ ତ ଜାଣ ଆଗ୍ରା ଛାଡ଼ି ଯିବାର ଶକ୍ତି ମୋର ନ ଥିଲା ।

: ଜାଣେ ତାହାହେଲେ ?

: ହଁ ଜାଣନ୍ତି ତ ଆଉ କ'ଣ ?

: ଆଉ ତା ଯଦି ସତ ହୋଇଥାଏ, ତେବେ ସିଧା ମୋ ପାଖକୁ ଚାଲି ଆସିଲେ ନାହିଁ କାହିଁକି ?

: ଯଦି ଆସିଥାନ୍ତି, ପ୍ରକୃତରେ କ'ଣ ସ୍ଥାନ ଦେଇଥାନ୍ତ ?

: ପ୍ରକୃତରେ ତ ଆସିନାହିଁ ? ସେ ଯାହା ହେଉ, ହରେନ୍ଦ୍ର ଆଶ୍ରମରେ ତ କଷ୍ଟର ସୀମା ନାହିଁ—ତାହା ହିଁ ସେମାନଙ୍କର ସାଧନା । କିନ୍ତୁ ଏତେ କଷ୍ଟ ଆପଣ ସହ୍ୟ କରିଛନ୍ତି କିପରି ?

: ଜାଣେନା କିପରି ସହ୍ୟ କରିଛି । କିନ୍ତୁ ଆଜି ମୋର ସେସବୁ କଥା ଆଉ ମନେ ପଡ଼େ ନାହିଁ । ବର୍ତ୍ତମାନ ମୁଁ ସେମାନଙ୍କ ଭିତରେ ଜଣେ । ହୁଏତ ଏହା ହିଁ ମୋର ଭବିଷ୍ୟତର ଜୀବନ ହୋଇପାରେ । ଏତେଦିନ ଧରି ମୁଁ ଚୁପ୍ ହୋଇ ବସିରହି ନଥିଲି । ଲୋକ ପଠାଇ ସ୍ଥାନେ ସ୍ଥାନେ ଆଶ୍ରମ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରୁଛି । ତିନି ଚାରୋଟି ଆଶ୍ରମ ସ୍ଥାପନ ହୋଇ ପାରିବାର ଆଶା ପାଇଛି, ଇଚ୍ଛା ଅଛି ଥରେ ମୁଁ ନିଜେ ଖୋଜି ବାହାରିବି ।

: ଏ ପରାମର୍ଶ ଆପଣଙ୍କୁ ଦେଲା କିଏ ? ବୋଧହୁଏ ହରେନ୍ଦ୍ର ?

: ଯଦି ଦେଇଥାନ୍ତି ତେବେ ସତ୍ ପରାମର୍ଶ ଦେଇଛନ୍ତି । ଦେଶର ସର୍ବନାଶ ଯେଉଁମାନେ ଆଖିରେ ଦେଖି ପାରିଛନ୍ତି, ଏଠାର ଦାରିଦ୍ର୍ୟର କଷ୍ଟର ଦୁଃଖ, ଏଠାର ଧର୍ମହୀନତାର ଗଭୀର ଗ୍ଲାନି, ଏଠାର ଦୌର୍ବଲ୍ୟତାର ଏକାନ୍ତ ଭୀରୁତା···

କମଳ ବାଧା ଦେଇ କହିଲା—ହରେନ୍ଦ୍ର ଏସବୁ ଦେଖି ପାରିଛି ବୋଲି ମୁଁ ଅସ୍ୱୀକାର କରୁନାହିଁ । କିନ୍ତୁ ଆପଣଙ୍କର ତ ଏସବୁ ଶୁଣା କଥା । ନିଜ ଆଖିରେ କିଛି ଦେଖିବା ପାଇଁ ଆଜି ଯୁଦ୍ଧା ତ ସୁଯୋଗ ପାଇ ପାରି ନାହାଁନ୍ତି ?

: କିନ୍ତୁ ଏସବୁ ତ ସତ ?

: ସତ ନୁହେଁ ବୋଲି ତ ମନା କରି ପାରୁନି । କିନ୍ତୁ ସେ ସବୁର ପ୍ରତିକାର କ'ଣ ଏଇପରି ଆଶ୍ରମ ପ୍ରତିଷ୍ଠା ଦ୍ୱାରା ହୋଇ ପାରିବ ?

: ନ ହେବ କାହିଁକି ? ଭାରତବର୍ଷ କହିଲେ ତ କେବଳ ଉତ୍ତର ଦିଗରେ ହିମାଳୟ, ଏବଂ ଅପର ତିନି ଦିଗରେ ସମୁଦ୍ର ଘେରା ଭୂଖଣ୍ଡ ମାତ୍ର ନୁହେଁ ? ଏଠାର ପ୍ରାଚୀନ ସଭ୍ୟତା, ଧର୍ମର ବଶିଷ୍ଟତା, ନୀତିର ପବିତ୍ରତା, ଏବଂ ନ୍ୟାୟ ନିଷ୍ଠାର ମହିମା— ଏସବୁକୁ ନେଇ ତ ଭାରତ ଦେବଭୂମି । ଏହାକୁ ନିରନ୍ତରଣରୁ ହୀନତାଠାରୁ ରକ୍ଷା କରିବା ପାଇଁ ତପସ୍ୟା ବ୍ୟତୀତ ଆଉ କ'ଣ ଅନ୍ୟ କୌଣସି ରାସ୍ତା ଅଛି ?

କମଳ ବାଧା ଦେଇ କହି ଉଠିଲା—ଆପଣଙ୍କର ଖିଆ ସରିଲାଣି । ମୁହଁ ହାତ ଧୋଇ ସେ ଘରକୁ ଚାଲନ୍ତୁ ।

: ତୁମେ ଖାଇବ ନାହିଁ ?

: ମୁଁ କ'ଣ ଦି ଓଳି ଖାଏ ଯେ ଆଜି ଖାଇବ ? ଉଠନ୍ତୁ ।

: ଆଶ୍ରମକୁ କିନ୍ତୁ ମୋତେ ତ ଫେରିଯିବାକୁ ପଡ଼ିବ ।

: ନା, ଯିବାକୁ ପଡ଼ିବ ନାହିଁ । ସେ ଘରକୁ ଚାଲନ୍ତୁ । ମୋର ଅନେକ କିଛି କଥା ଶୁଣିବା ପାଇଁ ଅଛି ।

: ଆଚ୍ଛା ଯାଉଛି । କିନ୍ତୁ ବାହାରେ ରହିବା ଆମର ନିୟମ ନାହିଁ । ଯେତେ ରାତି ହେଉ ପଛକେ ମୋତେ ଆଶ୍ରମକୁ ଫେରିଯିବାକୁ ପଡ଼ିବ ।

: ସେହି ନିୟମ ଦୀକ୍ଷିତ ଆଶ୍ରମବାସୀମାନଙ୍କ ପାଇଁ, ଆପଣଙ୍କ ପାଇଁ ନୁହେଁ ।

: ଲୋକେ କ'ଣ କହିବେ ?

ଲୋକ ଶବ୍ଦ ଉଲ୍ଲେଖ କରିବାବେଳେ ସାଧାରଣତଃ କମଳ ଧୈର୍ଯ୍ୟ ହରାଇ ବସିଥାଏ, ତେଣୁ ସେ କହିଲା—ଲୋକମାନେ କେବଳ ଆପଣଙ୍କୁ ନିନ୍ଦାକରି ପାରିବେ କିନ୍ତୁ ରକ୍ଷା କରିପାରିବେ ନାହିଁ । ତାହା ଯିଏ ପାରିବ ତା ନିକଟରେ ଆପଣଙ୍କର ଭୟ

ନାହିଁ । ସେମାନଙ୍କ ଅପେକ୍ଷା ମୁଁ ବେଶୀ ଆପଣଙ୍କର ଆପଣାର । ସେଦିନ ସଞ୍ଜବେ ଯିବା ପାଇଁ ମୋତେ ଡାକିଥିଲେ କିନ୍ତୁ ଯାଇ ପାରି ନଥିଲି । ଆଜି ନଯାଇ ପାରିଲେ ନ ଚଳେ । ଚାଲନ୍ତୁ ସେ ଘରକୁ । ମୋତେ ଭୟ କରିବାର କିଛି ନାହିଁ । ପୁରୁଷର ଯେଉଁମାନେ ଉପଭୋଗର ବସ୍ତୁ ସେମାନଙ୍କ ଭିତରୁ ମୁଁ ଜଣେ ନୁହେଁ । ଉଠନ୍ତୁ ।

ଏ ଘରକୁ ଆସି କମଳ ସମ୍ପୂର୍ଣ୍ଣ ନୂଆ ବିଛଣାଚଦରଟିଏ ଖଟ ଉପରେ ପରିପାଟି କରି ବିଛାଇ ଦେଲା ଏବଂ ନିଜପାଇଁ ମଝିରେ ଯେପରି ସେପରି ହେଉ ଗୋଟିଏ ବିଛଣା ପ୍ରସ୍ତୁତ କରି କହିଲା—ଆସୁଛ । ଦଶ ମିନିଟରୁ ବିଳମ୍ବ ହେବ ନାହିଁ । ଶୋଇ ପଡ଼ିବ ନାହିଁ ଯେପରି ।

: ନା ।

: ନ ହେଲେ ଠେଲି ଉଠାଇ ଦେବି ।

: ଦରକାର ପଡ଼ିବ ନାହିଁ କମଳ, ନିଦ ମୋ ଆଖିରୁ ଉଭେଇ ଯାଇଛି ।

: ଆଚ୍ଛା, ପରୀକ୍ଷା ପରେ ତାହା ଜଣାଯିବ । ଏହା କହି ସେ ଘରୁ ବାହାରି ଚାଲିଗଲା । ରୋଷାଇ କରିଥିବା ପାତ୍ରଗୁଡ଼ିକ ଯଥା ସ୍ଥାନରେ ଏବଂ ଅଇଣ୍ଠା ବାସନ ସବୁ ବାରଣ୍ଡା ବାହାରେ ରଖି, ଚାକରାଣୀ ଅନେକ ବେଳରୁ ଚାଲି ଯାଇଛି । ତଳେ ସିଡ଼ି କବାଟ ବନ୍ଦ କରିବା, ରୋଷାଇ ଘରେ ତାଲା ଦେବା ପ୍ରଭୃତି କେତୋଟି ଛୋଟକାଟର କାମ ଏ ପର୍ଯ୍ୟନ୍ତ ବାକି ପଡ଼ି ରହିଛି । ସେ ସବୁ କରି ସାରିଲେ ଯାଇ ତାର ଛୁଟି ।

କମଳ ଦ୍ୱାରା ଯତ୍ନରଚିତ ସୁନ୍ଦର ଶଯ୍ୟାଟି ଉପରେ ଏକାକୀ ବସି ଅଜିତ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲା । ବିଶେଷ କୌଣସି କାରଣ ହେତୁ ନୁହେଁ, କେବଳ ଭଲ ଲାଗିବାର ତୃପ୍ତି ପାଇଁ । ଏକ ଶାନ୍ତ ଆନନ୍ଦର ମଧୁର ସ୍ପର୍ଶ ଯେପରି ନୀରବରେ ତା ସର୍ବାଙ୍ଗରେ ପରିବ୍ୟାପ୍ତ ହୋଇ ପଡ଼ିଲା ।

ଅନନ୍ତ ଧନର ସନ୍ତାନ । ପିଲାଟି ଦିନରୁ ବିଳାସ ଭିତରେ ପ୍ରତିପାଳିତ । କିନ୍ତୁ ନରେନ୍ଦ୍ରର ବ୍ରହ୍ମଚର୍ଯ୍ୟାଶ୍ରମରେ ଭର୍ତ୍ତି ହେବା ଦିନଠାରୁ ଦୈନ୍ୟ ଏବଂ ଆତ୍ମ-ନିଗ୍ରହର ଦୁର୍ଗମ ପନ୍ଥାରେ ଭାରତୀୟ ବୈଶିଷ୍ଟ୍ୟର କର୍ମୋପଲବ୍ଧିର ଏକାନ୍ତ ସାଧନା ଏହି ଦିଗକୁ ତାର ଦୃଷ୍ଟି ଅପସାରିତ କରିଛି । ହଠାତ୍ ଆଖିରେ ପଡ଼ିଲା ହଳଦୀ ରଙ୍ଗର ସୂତା ଦ୍ୱାରା ତକିଆର ଚାରିପାଖରେ ଛୋଟ ଛୋଟ ମଲ୍ଲୀ ଫୁଲ ଅଙ୍କା ହୋଇଥିବା ଛବି ଗୁଡ଼ିକ । ବିଛଣା ଚଦରର ଯେଉଁ କଣଟି ଝୁଲି ରହିଛି ତାହା ଦେହରେ ସାଧା ରେଶମ ସୂତାରେ ବୁଣା ହୋଇଥିବା ଗୋଟିଏ ଅଜଣା ଲତାର ଛବି । ଏପରିକ ଶିଳ୍ପକର୍ମ ସାମାନ୍ୟ ହୋଇପାରେ । କେତେ ଲୋକଙ୍କ ଘରେ ତ ରହିଛି । ଅବସର ସମୟରେ କମଳ ନିଜ ହାତରେ ସିଲାଇ କରିଛି । ଦେଖିକରି ଅଜିତ ମୁଗ୍ଧ ହୋଇଗଲା । ହାତରେ ଧରି ତାହାକୁ ଓଲଟ ପାଲଟ କରୁଥିଲା, କମଳ ବାହାରୁ କାମସାରି ଘରେ ଆସି ଠିଆ ହେବାକ୍ଷଣି ତା ମୁହଁକୁ ଚାହିଁ କହି ଉଠିଲା—ବାଃ—ବେଶ୍ ତ ।

କମଳ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ କହିଲା– କ'ଣ କହୁଛ ! ଏଗୁଡ଼ା ଲତାଗୁଡ଼ିକ ତ ?

: ହଁ, ଆଉ ଏଇ ହଳଦିଆ ରଙ୍ଗର ଫୁଲ ଗୁଡ଼ିକ । ତୁମେ ଚିହ୍ନି ପାରୁଛ ନା ?

କମଳ ହସି ହସି କହିଲା—ଚମତ୍କାର ପ୍ରଶ୍ନ ତ ? ଚିହ୍ନେ ନ କରି କ'ଣ କାଶଗଡ଼ ତଡ଼ାଇ ତିଆରି କରାଇଛ ? ଆମମାନଙ୍କର କ'ଣ ଏଇ ପ୍ରକାରର କିଛି ଦରକାର ?

: ନା, ନା, ନା ମୋର ଦରକାର ନାହିଁ । ମୁଁ କ'ଣ କରିବ ?

ତାର ଏଇ ବ୍ୟାକୁଳ ସଲ୍ଲଜ ପ୍ରତ୍ୟାଖ୍ୟାନ ହେତୁ କମଳ ହସି ହସି କହିଲା—ଆଶ୍ରମକୁ ନେଇ ଶୋଇବେ । କେହି ପଚାରିଲେ କହିବେ—କମଳ ନିଜ ଉଜାଗର ରହି ତିଆରି କରି ଦେଇଛି ।

: ଧେତ୍ ।

: ଧେତ୍ କାହିଁକି ? ନିଜ ପାଇଁ ଏ ସବୁ ଜିନିଷ କେହି ତିଆରି କରେ ନାହିଁ, କରେ ଅନ୍ୟ ପାଇଁ । କଷ୍ଟକରି ଏଇ ଯେଉଁ ଫୁଲ ସବୁ ବୁଣି କରି ତିଆରି କରିଥିଲି ତାହା କ'ଣ ଆପଣାର ଶୋଇବା ପାଇଁ ? ଯିଏ ଜଣେ ହେଲେ ଆସିବେ—କେବଳ ତାଙ୍କରି ପାଇଁ । ସକାଳେ ଯେତେବେଳେ ଯିବେ ସେତେବେଳେ ସବୁ ସଙ୍ଗରେ ଦେଇଦେବ ।

ଏଥର ଅଜିତ ନିଜେ ମଧ୍ୟ ହସିଲା । କହିଲା—ଆଚ୍ଛା କମଳ, ପ୍ରକୃତରେ କ'ଣ ମୁଁ ଏତେ ବୋକା ?

: କାହିଁକି ?

: ତୁମେ ମୋ କଥା ଭାବି ତିଆରି କରିଥିଲ ବୋଲି ବିଶ୍ୱାସ କରିବି ?

: କରିବେ ନାହିଁ କାହିଁକି ?

: ସତ ନୁହେଁ ବୋଲି ।

: କିନ୍ତୁ ସତ କହିଲେ ବିଶ୍ୱାସ କରିବେ ତ ?

: ନିଶ୍ଚୟ କରିବ । ତୁମ ଅଙ୍କାର କୌଣସି ସୀମା ନାହିଁ । ସେଦିନ ମଟରରେ ବୁଲିବା କଥା ମନେପଡ଼ିବା କ୍ଷଣି ମନରେ ଲଜ୍ଜା ଆସେ । ସେ କଥା ଅଲଗା । କିନ୍ତୁ ଯାହା ପରିହାସର କଥା ନୁହେଁ ତାହାକୁ କୌଣସି ପ୍ରକାରରେ ବନେଇ ଚୁନେଇ କହି ପାରୁ ନାହିଁ ଏକଥା ମୁଁ ଭଲ କରି ଜାଣେ ।

: ଯଦି କହେ ପ୍ରକୃତରେ ମୁଁ ଅଙ୍କା କରିନାହିଁ । ସତ କଥା କହୁଛି ବିଶ୍ୱାସ କରିବେ ?

: ନିଶ୍ଚୟ କରିବ ।

: ତେବେ ଆପଣଙ୍କୁ ଆଉ ସତ କଥା କହିବ । ଯେତେବେଳ ପର୍ଯ୍ୟନ୍ତ ରାଜେନ ଆସି ନ ଥାଏ । ଅର୍ଥାତ ଆଶ୍ରମରେ ସ୍ଥାନ ନ ପାଇ ପୁଣି ସେ ପର୍ଯ୍ୟନ୍ତ

ସେ ମୋ ଘରେ ମଧ୍ୟ ଆଶ୍ରୟ ପାଇ ନ ଥାଏ । ଆପଣମାନେ ସମସ୍ତେ ଯେତେବେଳେ ମୋତେ ଘୃଣାରେ ଦୂରେଇ ଦେଲେ ଏଇ ବିଦେଶରେ କାହା ନିକଟରେ ଠିଆ ହେବା ପାଇଁ ମୋର ଯେତେବେଳେ ଆଉ ବାଟ ନ ଥିଲା, ସେହି ଦୁଃଖର ଦିନଗୁଡ଼ିକରେ କେବଳ ଏହି ସୂଚୀକାର୍ଯ୍ୟ ମୁଁ କରିବସିଛି । ସେଦିନ ଚିନ୍ତା କରି କାହା ପାଇଁ ଗୁଡ଼ିଏ କରିଥିଲି ଅବଶ୍ୟ ମୋର ମନେ ନାହିଁ । ପ୍ରାୟ ମୁଁ ଭୁଲିଯାଇଥିଲି । କିନ୍ତୁ ଆଜି ବିଛଣା ପକାଇବାକୁ ଆସିଲି ବେଳେ ମନେ ହେଲା ଯେଉଁ ବିଛଣା ଚାଦରରେ କେହି କେଉଁଦିନ ଶୋଇନାହିଁ ତହିଁରେ ଆପଣଙ୍କୁ କୌଣସିମତେ ଶୋଇବାକୁ ଦେଇ ପାରିବି ନାହିଁ ।

: କାହିଁକି ପାରିବେ ନାହିଁ ?

: କେଜାଣି । କିଏ ଯେପରି ବାଧା ଦେଇ ମୋତେ ଏଇ କଥାସବୁ କହି ଦେଇ ଗଲା । ଏତିକ କହି କିଛି ସମୟ ନୀରବ ରହିବା ପରେ ସେ କହିଲା, ହଠାତ୍ ମନେ-ପଡ଼ିଲା । ଏସବୁ ବାକ୍ସରେ ସାଇତା ହୋଇ ରହିଛି । ସେତେବେଳେ ଆପଣ ବାହାରେ ମୁହଁ ଧୋଉଥିଲେ । ଶୀଘ୍ର ଆସି ପହଞ୍ଚି ଯାଇଛନ୍ତି, ଏହା ଭାବି ତର ତର ହୋଇ ଯାଇ ବାକ୍ସ ଖୋଲି ଏସବୁ ଆଣି ଯେତେବେଳେ ବିଛଣାରେ ବିଛାଉଥିଲି ସେତେବେଳେ ମନେପଡ଼ିଲା ସେଦିନ ରାତି ଉଜାଗର ରହି ଯାହାଙ୍କୁ ଭାବି ଭାବି ଏଇ ଫୁଲ-ଲତା ସବୁ ବୁଣି ଚାଲିଥିଲି ସେ ଜଣକ ହେଉଛନ୍ତି—ଆପଣ ।

ଅଜିତ କିଛି କଥା କହି ପାରିଲା ନାହିଁ । କେବଳ ଗୋଟାଏ ଆରକ୍ତ ଆଭା ତା ମୁହଁ ଉପରେ ଉକୁଟି ଆଖିର ପଲକ ମାନଙ୍କେ ଲିଭି ଗଲା ।

କମଳା ନିଜେ ମଧ୍ୟ କିଛି ସମୟ ନୀରବ ରହିବା ପରେ ପ୍ରଶ୍ନ କଲା—ଚୁପ୍ ହୋଇ କ'ଣ ଭାବୁଛନ୍ତି, କହନ୍ତୁ ତ ?

: କେବଳ ଚୁପ୍ ହୋଇ ରହିଛି । ଭାବିପାରୁ ନାହିଁ ।

: କାରଣ ?

: କାରଣ, ତୁମ କଥା ଶୁଣିବା ପରେ ମୋ ଗ୍ରନ୍ଥ ଭିତରେ ଯେପରି ଝଡ଼ ବହି ଗଲା । କେବଳ ଝଡ଼—ନା ଆସିଲା ଆନନ୍ଦ, ନା ଆସିଲା ଆଶା ।

କମଳା ନୀରବରେ ଶୁଣି ରହିଲା । ଅଜିତ ଧୀରେ ଧୀରେ କହିବାକୁ ଲାଗିଲା, କମଳା ଗୋଟାଏ ଗପ କହୁଛି ଶୁଣ । ମୋ ମାଆଙ୍କୁ ଦିନେ ଆମର ଗୃହ ଦେବତା ରାଧାବଲ୍ଲଭ ଜୀଉ ଦେଖା ଦେଇଥିଲେ । ତା ହାତରୁ ଖାଇବା ନେଇ ଆଗରେ ବସି ଖାଇଥିଲେ—ଏ ସବୁ କୁଆଡ଼େ ତା ଆଖିରେ ଦେଖିବା କଥା ଥିଲା । ତଥାପି ଆମ ଘରେ କେହି ଏ କଥାକୁ ବିଶ୍ୱାସ କରି ପାରି ନ ଥିଲେ । ସମସ୍ତେ ବୁଝିଲେ ଏହା ତାର ସ୍ୱପ୍ନ । କିନ୍ତୁ ଏହି ଅବିଶ୍ୱାସ ଜନିତ ଦୁଃଖ ତାର ମୃତ୍ୟୁକାଳ ପର୍ଯ୍ୟନ୍ତ ମନରୁ ଯାଇ ପାରିନାହିଁ । ଆଜି ତୁମ କଥା ଶୁଣି ମୋର ସେହି କଥା ମନେପଡ଼ୁଛି । ତୁମେ ଥଟ୍ଟା କରୁନାହଁ ଜାଣୁଛି ।

କିନ୍ତୁ ମୋ ମାଥା ଭଳି ତୁମର କେଉଁଠାରେ ଭୁଲ ହୋଇଯାଉଛି । ମଣିଷ ଜୀବନରେ ବହୁକାଳ ପର୍ଯ୍ୟନ୍ତ ଏହିପରି ନିଜ ସମ୍ବନ୍ଧରେ ଅନ୍ଧକାରରେ ରହିଥାଏ । ହୁଏତ ହଠାତ୍ ଦିନେ ତାର ଆଖି ଫିଟେ । ମୋର ମଧ୍ୟ ସେହିପରି । ଏତେଦିନ ପୃଥିବୀର କେତେ ଯାଗା ତ ବୁଲୁଛି; କେବଳ ଏଇ ଆଶ୍ରମକୁ ଆସି ଯାହା ମୁଁ ନିଜକୁ ଚିହ୍ନି ପାରିଲି । ମୋର ଥିବା ଭିତରେ ଅଛି କେବଳ ଟଙ୍କା, ଯାହାକି ବାବାଙ୍କର ଦାନ । ଏହା ଛଡ଼ା ଏପରି କିଛି ନିଜର ନାହିଁ ଯାହାକୁ ତୁମେ ମୋ ଅଙ୍ଗୀକାରରେ ଭଲ ପାଇ ପାରିବ ।

: ଟଙ୍କା ପାଇଁ ଚିନ୍ତା ନାହିଁ । ଆଶ୍ରମବାସୀମାନେ ଥରେ ଯେତେବେଳେ ସନ୍ଧାନ ପାଇ ପାରିଛନ୍ତି ତାହାର ବ୍ୟବସ୍ଥା ସେମାନେ କରିବେ । ଏହା କହି କମଳ ହସି ଦେଇ କହିଲା—କିନ୍ତୁ ଅନ୍ୟ ସକଳ ଦିଗରୁ ଆପଣ ଏପରି ନିଃସ୍ୱ ବୋଲି ଏ ଖବର ଯଦି ଆଗରୁ ପାଇଥାନ୍ତି ତାହାହେଲେ କ'ଣ କେବେ ଭଲ ପାଇବାକୁ ଯାଇଥାନ୍ତି ? ତା ଛଡ଼ା ଆପଣଙ୍କ ସ୍ୱଭାବର ଭଲ-ମନ୍ଦ ଟିକିକ ବୁଝିବାକୁ ସମୟ ପାଇଲି ଅବା କେତେବେଳେ ? ମନ ଭିତରେ ଥିଲା କେବଳ ଗୋଟାଏ ସନ୍ଦେହ । ତା ଠିକଣା ପାଉ ନ ଥାନ୍ତି—କେବଳ ଏଇ ଦଶ ମିନିଟ ତଳେ ଏକାକୀ ବଗିଚା ଆଗରେ ଠିଆ ହୋଇଥିଲି ବେଳେ ହଠାତ୍ ଠିକ୍ ଖବରଟି କିଏ ଯେପରି ଆସି ମୋ କାନେ କାନେ କହିଗଲା ।

ଅଜିତ ବିସ୍ମିତ ହୋଇ ପ୍ରଶ୍ନ କଲା—ସତ କହୁଛ ମାତ୍ର ଦଶ ମିନିଟ ପୂର୍ବରୁ ? କିନ୍ତୁ ଏହା ସତ ହୋଇଥିଲେ ତ ପାଗଳାମି ବୋଲି ଭାବିବାକୁ ହେବ ।

: ପାଗଳାମି ତ । ସେଥିପାଇଁ ତ ଆପଣଙ୍କୁ କହିଥିଲି ମୋତେ ଆଜି କେଉଁଠାକୁ ନେଇ ଚାଲନ୍ତୁ । ବିବାହ କରି ଘର ସଂସାର କରନ୍ତୁ—ଏଇ ଭିକ୍ଷା ତ କରି ନ ଥିଲି ।

ଅଜିତ ଅତ୍ୟନ୍ତ କୁଣ୍ଠିତ ହୋଇ ପଡ଼ିଲା । କହିଲା—ଭିକ୍ଷା କରୁଛ କମଳ ? ଏହା ତ ଭିକ୍ଷା ମାଗିବା ନୁହେଁ, ତୁମର ଭଲ ପାଇବାର ଅଧିକାର । କିନ୍ତୁ ଅଧିକାରର ଦାବୀ ତୁମେ କରିଲ ନାହିଁ, ବରଂ ତାହା ହିଁ ଇଚ୍ଛା କରିଲ ଯାହା କେବଳ ବୁଦ୍‌ବୁଦ୍ ଭଳି ସ୍ୱଳ୍ପାୟୁ ଏବଂ ମିଥ୍ୟା ।

: ହୋଇପାରେ ତାର ପରମାୟୁ କମ୍ । ତାହା ବୋଲି ମିଥ୍ୟା ହେବ କାହିଁକି ? ଆୟୁର ଦୀର୍ଘତାକୁ ଯେଉଁମାନେ ସତ ବୋଲି ଜାବୁଡ଼ି ଧରିବା ପାଇଁ ଇଚ୍ଛା କରନ୍ତି, ମୁଁ ସେମାନଙ୍କର କ'ଣ କେହି ନୁହେଁ ?

: କିନ୍ତୁ ଏହି ଆନନ୍ଦର ଯେ କୌଣସି ସ୍ଥାୟିତ୍ୱ ନାହିଁ, କମଳ ।

: ନ ଥାଉ ପଛକେ । କିନ୍ତୁ ଗଛର ଫୁଲ ଶୁଖିଯିବ ବୋଲି, ଦୀର୍ଘସ୍ଥାୟୀ ଶୋଲ ଫୁଲର ତୋଡ଼ା ତିଆରି କରି ଯେଉଁମାନେ ଫୁଲଦାନୀରେ ସଜାଇ ରଖନ୍ତି ସେମାନଙ୍କ ସହିତ ମୋର ମତର ମେଳ ହୁଏ ନାହିଁ । ଆପଣଙ୍କୁ ଆହୁରି ଥରେ ଏଇ କଥା କହିଥିଲି ଯେ—କୌଣସି ଆନନ୍ଦର ସ୍ଥାୟିତ୍ୱ ନାହିଁ । ଅଛି କେବଳ କ୍ଷଣସ୍ଥାୟୀ ଦିନ ଗୁଡ଼ିକର ।

ସେତିକି ହିଁ ତ ମାନବ ଜୀବନର ଚରମ ସମ୍ପଦ । ଅନନ୍ତକୁ ସମ୍ବର୍ଦ୍ଧନ ପାଇଁ ବାନ୍ଧି ରଖିବାକୁ ଗଲେ ସେ ମରିଯାଏ । ସେଥିପାଇଁ ତ ବିବାହରେ ସ୍ଥାୟିତ୍ୱ ଅଛି—କିନ୍ତୁ ଆନନ୍ଦ ନାହିଁ । ଦୁଃସହ ସ୍ଥାୟିତ୍ୱର ମୋଟା ଦଉଡ଼ିକୁ ଗଳାରେ ବାନ୍ଧି ମଣିଷ ଆତ୍ମହତ୍ୟା କରିଥାଏ ।

ଅଜିତର ମନେ ପଡ଼ିଲା ଠିକ୍ ଏଇ କଥା ହିଁ ସେ ତା ନିକଟରୁ ଆଗରୁ ଶୁଣିଛି । କେବଳ ମୁହଁର କଥା ନୁହେଁ, ଏହା ହେଉଛି ତା ଅନ୍ତରର ବିଶ୍ୱାସ । ଶିବନାଥ ତାକୁ ବିବାହ କରିନାହିଁ, ଫାଙ୍କି ଦେଇଛି । କିନ୍ତୁ ଏଥିପାଇଁ କମଳ ଜନକ ପାଇଁ ଅଭିଯୋଗ କରିନାହିଁ । କରିନାହିଁ କାହିଁକି ? ଆଜି ଏହି ପ୍ରଥମ କରି ଅଜିତ ନିଃସନ୍ଦେହରେ ବୁଝି ପାରିଲା ଯେ ଏହି ଫାଙ୍କି ଭିତରେ ତା ନିଜର ମଧ୍ୟ ସମ୍ମତି ଥିଲା । ପୃଥିବୀ ସାରା ସମସ୍ତ ମାନବ ଜାତିର ଏହି ପ୍ରାଚୀନ ଏବଂ ପବିତ୍ର ବିବାହ ଅନୁଷ୍ଠାନ ପ୍ରତି ଅତ୍ୟନ୍ତ ଅବଜ୍ଞାରେ ଅଜିତର ମନ ଧିକ୍କାରରେ ପୂର୍ଣ୍ଣ ହୋଇଗଲା ।

ମୁହୂର୍ତ୍ତିକ ପାଇଁ ନୀରବ ରହିବା ପରେ ଅଜିତ କହିଲା—ତୁମ ନିକଟରେ ତର୍କ କରିବାଟା ମୋ ପକ୍ଷରେ ଶୋଭା ପାଏ ନାହିଁ । କିନ୍ତୁ ତୁମ ନିକଟରେ ମୁଁ ଆଜି କିଛି ଗୋପନ କରିବି ନାହିଁ । ଏମାନେ କହନ୍ତି ସଂସାରରେ କାମିନୀ-କାଞ୍ଚନ ତ୍ୟାଗ କରିବାଟା ହିଁ ପୁରୁଷ ପକ୍ଷରେ ବଡ଼ ପୁରୁଷାର୍ଥ । ବୁଦ୍ଧି ଦିଗରୁ ଏକଥାକୁ ମୁଁ ବିଶ୍ୱାସ କରେ; କିନ୍ତୁ ଏହି ସାଧନା ଦ୍ୱାରା ସିଦ୍ଧି ଲାଭ ଠାରୁ ମହତ୍ତର କିଛି ନାହିଁ, ଏ ବିଷୟରେ ମଧ୍ୟ ମୁଁ ନିଃସଂଶୟ । କାଞ୍ଚନ ମୋର ଯଥେଷ୍ଟ ଅଛି । ସେଥିପ୍ରତି ଲୋଭ ନାହିଁ । କିନ୍ତୁ ଜୀବନସାରା ଭଲ ପାଇବା ପାଇଁ କେହି ନାହିଁ, କେହି କେବେ ରହିବେ ନାହିଁ । ଏକଥା ଭାବିଲେ ମୋ ଛାତି ଯେପରି ଶୁଖିଯାଏ । ଭୟ ହୁଏ, ଅନ୍ତରର ଏହି ଦୁର୍ବଳତାକୁ କ୍ଷଣିକ ପାଇଁ ମୁଁ ଜୟ କରିପାରିବି ନାହିଁ । ଅଦୃଷ୍ଟରେ ତାହା ଯଦି କେବେ ଘଟେ, ଆଶ୍ରମ ତ୍ୟାଗ କରି ସେଦିନ ମୁଁ ଚାଲିଯିବି । କିନ୍ତୁ ତୁମର ଆହ୍ୱାନ ତାହାଠାରୁ ମିଥ୍ୟା । ଏହି ଆହ୍ୱାନର ମୁଁ ଉତ୍ତର ଦେଇ ପାରିବି ନାହିଁ ।

: ଏହାକୁ ମିଛ ବୋଲି କହୁଛନ୍ତି କାହିଁକି ?

: ମିଛ ତ । ମନୋରମା ପ୍ରକୃତରେ ମତେ କେବେ ଭଲପାଉ ନ ଥିଲା, ତାହା ତା ଆଚରଣରୁ ବୁଝାପଡ଼େ । କିନ୍ତୁ ଶିବନାଥ ପ୍ରତି ଶିବାନୀର ଭଲ ପାଇବା ତ ମୁଁ ନିଜ ଆଖିରେ ଦେଖିଛି । ସେଦିନ ଯେପରି ସେହି ଭଲପାଇବାର ସୀମା ନ ଥିଲା । ଆଜି ମଧ୍ୟ ସେହିପରି ତାର ଚିହ୍ନ ପର୍ଯ୍ୟନ୍ତ ବିଲୁପ୍ତ ହୋଇଯାଇଛି ।

: ଆଜି ଯଦି ତାହା ହୋଇ ଯାଇଥାଏ ତେବେ ସେଦିନ କ'ଣ କେବଳ ମୋ ଛଳନା ହିଁ ଆପଣଙ୍କ ଆଖିରେ ପଡ଼ିଥିଲା ?

: ସେ କଥା ତୁମକୁ ଜଣା । କିନ୍ତୁ ଆଜି ମନେ ହେଉଛି ନାରୀ ଜୀବନରେ ଏହା-ଠାରୁ ବଳି ମିଥ୍ୟା ଆଉ କିଛି ନାହିଁ ।

କମଳର ବୁଦ୍ଧି ପ୍ରଖର ହୋଇ ଉଠିଲା, ଜୀବନ—ନାଟ୍ୟଜୀବନର ସତ୍ୟାସତ୍ୟ ଠିକ୍ କରିବାର ଦାୟିତ୍ୱ ନାରୀ ଉପରେ ଥାଉ । ସେହି ବିଷୟରେ ଦାୟିତ୍ୱ ପୁରୁଷଙ୍କର ନେବା ଆବଶ୍ୟକ ନାହିଁ । ମନୋରମାର ନୁହେଁ କମ୍ପା କମଳର ନୁହେଁ । ଏପରି ଭାବରେ ସଂସାରରେ ନ୍ୟାୟ ବିଚାରନ ବିଡ଼ମ୍ବିତ । ସେଥିପାଇଁ ନାରୀ ଅସମ୍ମାନିତା । ପୁରୁଷର ଚିତ୍ତ ସଂକୀର୍ଣ୍ଣ ଏବଂ କଳୁଷିତ ହୋଇ ଉଠିଛି । ତେଣୁ ଏହି ମିଥ୍ୟା ମାମଲାର ଆଜି ନିଷ୍ପତ୍ତି ହୋଇ ପାରିଲା ନାହିଁ । ଅବିଚାରରେ କେବଳ ଗୋଟିଏ ପକ୍ଷ କ୍ଷତିଗ୍ରସ୍ତ ହୁଏ ନାହିଁ ଅଜିତ ବାବୁ, ଦୁଇ ପକ୍ଷ ହିଁ ସର୍ବନାଶ ହୁଅନ୍ତି । ସେଦିନ ଶିବନାଥ ଯାହା ପାଇଥିଲେ ଦୁନିଆରେ କମ୍ ପୁରୁଷଙ୍କ ଭାଗ୍ୟରେ ତାହା ହିଁ ମିଳିଥାଏ । କିନ୍ତୁ ଆଜି ତାହା ନାହିଁ । କାହିଁକି ନାହିଁ ଏହି ଯୁକ୍ତି ଉଠାଇ ପୁରୁଷ ହାତରେ ମୋଟା ଦଣ୍ଡ ବୁଲାଇ ଶାସନ କରି ହୁଏ; କିନ୍ତୁ ଫେରି ପାଇ ହୁଏ ନାହିଁ । ସେଦିନର ଥିବାଟା ଯେପରି ସତ୍ୟ, ଆଜିକାର ନ ଥିବାଟା ମଧ୍ୟ ଠିକ୍ ସେତିକି ତାହାଠାରୁ ଅଧିକ ସତ୍ୟ । ଶଠତାର ଛିଣ୍ଡା କନ୍ଥା ଗୁଡ଼େଇ ଏହାକୁ ଘୋଡ଼ାଇବା ପାଇଁ ଲଜ୍ୟାବୋଧ କରିଛ ବୋଲି ପୁରୁଷର ବିଚାରରେ କ'ଣ ଏହା ହେଲା ନାରୀ ଜୀବନର ସବୁଠାରୁ ବଡ଼ ମିଥ୍ୟା ? ଏହି ସୁବିଚାର ଆଶାରେ ହିଁ ଆମେମାନେ ଆପଣମାନଙ୍କ ମୁହଁକୁ ଚାହିଁ ରହି ?

: କିନ୍ତୁ ଉପାୟ ଆଉ କ'ଣ ଅଛି ? ଯାହା ଏପରି କ୍ଷଣଭଙ୍ଗୁର, ଏପରି କ୍ଷଣସ୍ଥାୟୀ ତାକୁ ଏହାଠାରୁ ବେଶୀ ସମ୍ମାନ ମନୁଷ୍ୟ ଦେବ ଅବା କାହିଁକି ?

: ଦେବେ ନାହିଁ ଜାଣେ । ଆପଣମାନଙ୍କ ବିଚାରରେ ରୋଷେଇ ଘରେ ଯେଉଁ ଫୁଲଟି ତା ଜୀବନ ଓଳିକରୁ ବେଶୀ ନୁହେଁ । ତାହାଠାରୁ ଏହି ମସଲା ବଟା କାମଟା କିନ୍ତୁ ଢେର ସ୍ଥାୟୀ । ସତ୍ୟର ବିଚାର କରିବା ପାଇଁ ଏହାଠାରୁ ବଳି ମାନଦଣ୍ଡ ଆପଣ ଆଉ କେଉଁଠାରୁ ପାଇ ପାରିବେ ?

: କମଳ, ଏହା ଯୁକ୍ତି ନୁହେଁ, ଏହା କେବଳ ତୁମ ରାଗର କଥା ।

: ରାଗ କେଉଁଥି ପାଇଁ କରିବି ଅଜିତବାବୁ ? କେବଳ ସ୍ଥାୟୀତ୍ୱ ନେଇ ଯେଉଁମାନଙ୍କର କାରବାର, ସେମାନେ ଏହିପରି ଭାବରେ ମୂଲ୍ୟ ଧାର୍ଯ୍ୟ କରିଥାନ୍ତି । ମୋ ଆହ୍ୱାନ ପାଇଁ ଆପଣ ଯେଉଁ ଉତ୍ତର ଦେଇପାରୁ ନାହାଁନ୍ତି ତା ମୂଳରେ ମଧ୍ୟ ଏହି ସଂଶୟ । ଚିରଦିନ ପାଇଁ ଦସ୍ତଖତ କରି ଯେଉଁ ବନ୍ଧନ ନେବେ ତାକୁ ଆପଣ କ'ଣ ଦେଇ ବିଶ୍ୱାସ କରିବେ ? ଫୁଲ ଯେ ବୃନ୍ତେ ନାହିଁ ତା ପାଖରେ ଏଇ ପଥରର ଫୁଲ ଦାନିଟା ବେଶୀ ସତ୍ୟ । ଶୁଖି ଝରିଯିବାରେ ଶଙ୍କା ନାହିଁ, ତାର ଆୟୁଷ ଗୋଟାଏ ବେଳା ପାଇଁ ନୁହେଁ, ବରଂ ନିତ୍ୟକାଳ ପାଇଁ । ରୋଷାଇ ଘରର ପ୍ରୟୋଜନ ପାଇଁ ଚିରଦିନ ରଗଡ଼ି ରଗଡ଼ି ମସଲା ବାଟିଦେବା ପାଇଁ, ଖଡ଼ ଗାଳିବା ପାଇଁ, ତରକାରିର ଉପକରଣ ପାଇଁ ସେହି ଫୁଲଟି ଉପରେ ନିର୍ଭର କରିବାକୁ ହୁଏ । ସେ ନ ରହିଲେ ସଂସାର ବିସ୍ୱାଦ ହୋଇ ଉଠେ ।

ଅଜିତ ତା ମୁହଁକୁ ଚାହିଁ କହିଲା—ଏଭଳି ବିଦ୍ରୂପ କେଉଁଥି ପାଇଁ କମଳ ?

କମଳ କାନକୁ ବୋଧହୁଏ ଏଇ ପ୍ରଶ୍ନ ପହଞ୍ଚିଲା ନାହିଁ । ସେ ଯେପରି ଆପଣା ମନକୁ ମନ କହିବାକୁ ଲାଗିଲା—ମନୁଷ୍ୟ ବୁଝି ପାରେ ନାହିଁ ଯେ ହୃଦୟ ବୋଲି ବସ୍ତୁଟା ଲୁହାରେ ତିଆରି ନୁହେଁ ଏବଂ ନିଶ୍ଚିନ୍ତ ଭାବରେ ତାହା ଉପରେ ନିର୍ଭର କରିହୁଏ ପାରେ ନାହିଁ । ଦୁଃଖ ଯେ ନାହିଁ ତାହା ନୁହେଁ, କିନ୍ତୁ ଏହା ତାର ଧର୍ମ । କିନ୍ତୁ ଏକଥା କେହି କହନ୍ତି ନାହିଁ କିମ୍ବା ସ୍ୱୀକାର କରନ୍ତି ନାହିଁ । ଏହାଠାରୁ ବଡ଼ ଧରଣର ଦୁର୍ନୀତି ସଂସାରରେ ଆଉ କ'ଣ ଅଛି ? ସେଥିପାଇଁ ତ ଭାବିପାରିଲେ ନାହିଁ, ଶିବନାଥଙ୍କୁ ମୁଁ କିପରି କ୍ଷମା କରିପାରିଲି । ବାଧ ବାଧ ଯୌବନ ସମୟରେ ଯୋଗିନୀ ହେବାଟାକୁ ସେମାନେ ଉଚିତ ମନେ କରନ୍ତି ବୋଲି ଏହା ସେମାନଙ୍କର ସହ୍ୟ ହେଲା ନାହିଁ । ଘୃଣା ଏବଂ ଅବହେଳାରେ ସେମାନଙ୍କର ମନ ବିଷେଇ ଉଠିଲା । ଗଛର ପତ୍ର ଶୁଖି ଝଡ଼ିଯାଏ, ତାରି କ୍ଷତ ନୂତନ ପତ୍ର କଅଁଳି ପୂର୍ଣ୍ଣ କରିଦିଏ । ଏହାହିଁ ହେଲା ମିଥ୍ୟା, ଆଉ ବାହାରର ଶୁଖିଲା ଲତା ମରିଯାଇ ଗଛରେ ସର୍ବାଙ୍ଗରେ ମାଡ଼ି ରହିଥିବାଟା ହେଲା ସେମାନଙ୍କ ପାଇଁ ସତ୍ୟ ।

ଅଜିତ ଏକ ମନରେ ଶୁଣୁଥିଲା । ଶେଷ ହେବା କ୍ଷଣି ଗୋଟାଏ ଦୀର୍ଘ ନିଃଶ୍ୱାସ ତ୍ୟାଗ କରି କହିଲା—ଗୋଟାଏ କଥା ପ୍ରାୟ ଆମେମାନେ ଭୁଲି ଯାଇଥାଉ ଯେ, ଅସଲରେ ତୁମେ ଆମମାନଙ୍କର ଆପଣାର ନୁହଁ । ତୁମର ରକ୍ତ, ତୁମର ଶିକ୍ଷା, ତୁମର ସଂସ୍କାର ସବୁ ବିଦେଶୀୟ । ସେହି ବନ୍ଧନକୁ କୌଣସି ମତେ ତୁମେ ଛଡ଼ାଇ ପାରୁ ନାହଁ ଏବଂ ଏହିଠାରେ ହିଁ ଆମ ସହିତ ତୁମର ଅହରହ ସଂଘର୍ଷ ଲାଗି ରହିଛି । ରାତି ଅନେକ ହେଲାଣି କମଳ, ଏହି ନିଷ୍ଫଳ କଳହକୁ ବନ୍ଦ କର । ଏହି ଆଦର୍ଶ ତୁମ ପାଇଁ ନୁହେଁ ।

: କେଉଁ ଆଦର୍ଶ ? ଆପଣଙ୍କ ବ୍ରହ୍ମଚର୍ଯ୍ୟ ଆଶ୍ରମର ?

ଅଜିତ ଖୋଞ୍ଚା ଖାଇ ମନେ ମନେ ରାଗି ଉଠିଲା । କହିଲା—ବେଶ, ତାହାହିଁ । କିନ୍ତୁ ଏହି ଗୂଢ଼ତତ୍ତ୍ୱ ବିଦେଶୀମାନଙ୍କ ପାଇଁ ନୁହେଁ । ଏହା ତୁମେ ବୁଝି ପାରିବ ନାହିଁ ।

: ଆପଣ ବୁଝାଇ ଦେଲେ ମଧ୍ୟ ପାରିବି ନାହିଁ ?

: ନା ।

ଏଥର କମଳ ହସି ଉଠିଲା । ଯେପରି ସେ ଆଉ ମନୁଷ୍ୟ ନୁହେଁ । କହିଲା—ଆଚ୍ଛା କହନ୍ତୁ ତ, କ'ଣ କଲେ ଏଇ ସାଧୁମାନଙ୍କ ଆଡ୍ଡାରୁ ଆପଣଙ୍କ ନାମ କଟାଇ ଦେଇ ପାରିବେ ? ବାସ୍ତବିକ, ଏଇ ଆଶ୍ରମଟା ହେଉଛି ମୋର ଚକ୍ଷୁଶୂଳ ।

ଅଜିତ ବିଛଣା ଉପରେ ଶୋଇ ପଡ଼ି କହିଲା—ସ୍ୱଇଚ୍ଛାକୁ ଡାକି ଆଣି ତୁମେ ଅନାୟାସରେ ଆଶ୍ରୟ ଦେଲ । ତୁମର ବୋଧହୁଏ କିଛି ସେତେବେଳେ ମନେ ହେଲା ନାହିଁ—ନୁହେଁ ?

: କ'ଣ ଆଉ ମନେ ହେବ ?

: ଏସବୁ ବୋଧହୁଏ ତୁମେ ଗ୍ରହଣ କର ନାହିଁ ?

: କ'ଣ ଗ୍ରହଣ କରେ ନାହିଁ ? ଆପଣଙ୍କର ମତାମତ ? ନା ।

: ନିଜ ସମ୍ବନ୍ଧରେ ବୋଧହୁଏ କେତେବେଳେ ଭୟ କରନା ?

: କେବେ କରେ ନାହିଁ ବୋଲି ତ କହି ପାରୁ ନାହିଁ, କିନ୍ତୁ ବ୍ରହ୍ମଘ୍ନଙ୍କୁ ଭୟ କରିବ କେଉଁଥି ପାଇଁ ?

: ହୁଁ ! କହି ଅଜିତ ନୀରବ ରହିଲା ।

ହଠାତ୍ କିଛି ସମୟ ପରେ କହି ଉଠିଲା—କେଞ୍ଚୁଆ ମାଟିର ତଳେ ଅନ୍ଧକାରରେ ଥାଏ । ସେ ଜାଣେ ବାହାର ଆଲୁଅକୁ ବାହାରିଲେ ତାର ରକ୍ଷା ନାହିଁ । ତାକୁ ଗିଳି ଖାଇ ପକାଇବାକୁ ଅନେକ ମୁହଁ ଆଁ କରି ରହିଛନ୍ତି । ଲୁଚିବା ବ୍ୟତୀତ ଆତ୍ମରକ୍ଷା ପାଇଁ ଅନ୍ୟ କୌଣସି ଉପାୟ ତାକୁ ଜଣା ନାହିଁ । କିନ୍ତୁ ତୁମେ ଜାଣ ମନୁଷ୍ୟ କେଞ୍ଚୁଆ ନୁହଁ । ଏପରିକି ସ୍ତ୍ରୀ ଲୋକ ହେଲେ ମଧ୍ୟ । ଶାସ୍ତ୍ରରେ ଅଛି, ନିଜର ସ୍ୱରୂପଟିକୁ ଜାଣି ପାରିବା ହିଁ ପରମ ଶକ୍ତି । ଏହି ଜାଣିବାଟା ହିଁ ତୁମର ଅସଲ ଶକ୍ତି ନା—କମଳ ?

କମଳ କିଛି ନ କହି କେବଳ ଗୃହିଁ ରହିଲା ।

ଅଜିତ କହିଲା ସ୍ତ୍ରୀମାନେ ଯେଉଁ ବସ୍ତୁଟିକୁ ସେମାନଙ୍କ ଇହ ଜୀବନର ମଧ୍ୟ ସର୍ବସ୍ୱ ବୋଲି ଜାଣନ୍ତି, ସେହିଠାରେ ତୁମର ଏପରି ସରଳ ଔଦାସୀନ୍ୟ ଯେତକ ନିନ୍ଦନୀୟ ସେତକ ତୁମମାନଙ୍କୁ ଅନୁକ୍ଷଣ ଅଗ୍ନିର ବଳୟ ଭଳି ଆଗୁଳି ରଖେ । ଦେହରେ ଲାଗିବା ଆଗରୁ ତାହା ପୋଡ଼ି ପାଉଁଶରେ ପରିଣତ ହୋଇଯାଏ । ଏଇମାତ୍ର ମୋତେ କହୁଥିଲ—ପୁରୁଷର ଯେଉଁମାନେ ଲୋଭର ବସ୍ତୁ, ସେହି ଜାତି ଭିତରେ ତୁମର ସ୍ଥାନ ନାହିଁ ବୋଲି । ଆଜି ରାତିରେ ତୁମ ସହିତ ସାମ୍ନାସାମ୍ନି ବସି ଏହି କଥାଟାର ଅର୍ଥ ପରିଷ୍କାର ହୋଇଯାଇଛି । ଆମମାନଙ୍କର ସୁଖ୍ୟାତିକୁ ଅବଜ୍ଞା କରିବା ପାଇଁ ସାହସ ଯେ ତୁମେ କେଉଁଠାରୁ ପାଉଛ ତାହା ମଧ୍ୟ ବୁଝି ପାରୁଛି ।

କମଳ କୃତ୍ରିମ ବିସ୍ମୟରେ ମୁହଁ ଟେକି କହିଲା—ଘଟଣା କ'ଣ ଅଜିତ ବାବୁ ? କଥାଗୁଡ଼ାକ ଅନେକାଂଶରେ ଜାଣିଥିବା ଭଳି ଶୁଣା ଯାଉଛି ।

: ଆଚ୍ଛା କମଳ, ସତ କହ, ମୋ ମତାମତ କ'ଣ ଅନ୍ୟ ସମସ୍ତଙ୍କ ମତ ଭଳି ତୁମ ନିକଟରେ ଏପରି ତୁଚ୍ଛ ?

: କିନ୍ତୁ ଏକଥା ଜାଣି ଆପଣଙ୍କର ଲାଭ କ'ଣ ହେବ ?

କମଳ, ନିଜକୁ ଶକ୍ତିବାନ ବୋଲି କେଉଁଦିନ ତୁମ ନିକଟରେ ଗର୍ବ କରି ନାହିଁ । ବାସ୍ତବିକ ଭିତରେ ଭିତରେ ମୁଁ ଯେପରି ଦୁର୍ବଳ, ସେହିପରି ଅସହାୟ । କୌଣସି କିଛି କାର୍ଯ୍ୟ ଜୋର କରି କରିବାର ସାମର୍ଥ୍ୟ ମୋ ଭିତରେ ନାହିଁ ।

କମଳ ହସି ଦେଇ କହିଲା—ତାହା ମୁଁ ଆପଣଙ୍କ ଠାରୁ ଅଧିକ ଜାଣେ ।

: ମୋର କ'ଣ ମନେହୁଏ ଜାଣ ? ତୁମକୁ ପାଇବା ଯେପରି ସହଜ, ଆଉ ହରାଇବା ମଧ୍ୟ ସେହିପରି ସହଜ ।

: ତାହା ମଧ୍ୟ ଜାଣେ ।

: ପ୍ରକୃତରେ ତ, ତୁମକୁ ଆଜି କେବଳ ପାଇଗଲେ ହେବ ନାହିଁ । ଦିନେ ଯେତେବେଳେ ହରାଇବାକୁ ପଡ଼ିବ ସେତେବେଳେ କ'ଣ ହେବ ?

କମଳ ଶାନ୍ତ କଣ୍ଠରେ କହିଲା—କିଛି ହେବ ନାହିଁ । ସେଦିନ ହରାଇବାଟା ମଧ୍ୟ ଏହିପରି ସହଜ ଲାଗିବ । ଯେତେଦିନ ପାଖରେ ରହିଥିବି ଆପଣଙ୍କୁ ସେହି ବିଦ୍ୟା ଶିଖାଇ ଦେଇ ଯିବି ।

ଅଜିତ ମନେ ମନେ ଚମକି ଉଠିଲା । କହିଲା—ବିଲାତରେ ରହି ଦେଖିଛି ସେମାନେ କେତେ ସହଜରେ, କେତେ ସାମାନ୍ୟ କାରଣରେ ଚିରଦିନ ପାଇଁ ବିଚ୍ଛିନ୍ନ ହୋଇ ଯାଉ ନାହାନ୍ତି ? ମନେ ମନେ ଖୁବେ ଟିକିଏ କଷ୍ଟ ହେଲେ କ'ଣ ମନରେ ସେମାନେ ଅନୁଭବ କରନ୍ତି ନାହିଁ ? ଆଉ ଏହାହିଁ ଯଦି ସେମାନଙ୍କର ଭଲପାଇବାର ପରିଚୟ ହୋଇପାରେ ତେବେ ସେମାନେ ସଭ୍ୟ ବୋଲି ଗର୍ବ କରନ୍ତି କେଉଁଥିପାଇଁ ?

: ବାହାରୁ ଖବର କାଗଜ ପଢ଼ି ଯେତେ ସହଜ ଭାବୁଛନ୍ତି ସେତେଟା କିନ୍ତୁ ପ୍ରକୃତରେ ନୁହେଁ । ତଥାପି କିନ୍ତୁ ମୁଁ କାମନା କରେ ନର-ନାରୀଙ୍କର ଏହି ପରିଚୟ ଯେପରି ଦିନେ ଜଗତରେ ଆଲୋକ-ଉତ୍ତାପ ଭଳି ସରଳ ହୋଇଯାଉ ।

ଅଜିତ ନୀରବରେ ତା ମୁହଁକୁ ଚାହିଁ ରହିଲା । କଥା କହିଲା ନାହିଁ । ତାପରେ ଅନ୍ୟ ଦିଗକୁ ମୁହଁ ବୁଲାଇ ଶୋଇବା କ୍ଷଣି କି କାରଣରୁ କେଜାଣି ଆଖିରେ ଲୁହ ଜକେଇ ଆସିଲା ।

ହୁଏତ କମଳ ବୁଝି ପାରିଲା । ଉଠି ଆସି ଶେଯର ଗୋଟିଏ କଡ଼ରେ ବସି ତା ମୁଣ୍ଡ ଉପରେ ହାତ ବୁଲାଇବାକୁ ଲାଗିଲା ସିନା କିନ୍ତୁ ଆଶ୍ୱାସନା ଦେବା ପାଇଁ ପଦଟିଏ କଥା ତା ତୁଣ୍ଡରୁ ବାହାରି ପାରିଲା ନାହିଁ ।

ଆଗର ଖୋଲା ଝରକା ଦେଇ ଦେଖାଗଲା ପୂର୍ବର ଆକାଶ ସ୍ୱଚ୍ଛ ହୋଇ ଆସିଛି । କମଳ କହିଲା—ଅଜିତବାବୁ, ଶୋଇବା ପାଇଁ ଆଉ ସମୟ ନାହିଁ ।

: ନା, ଏଥର ଉଠୁଛି । କହି, ଅଜିତ ଆଖିରୁ ଲୁହ ପୋଛି ଉଠି ବସିଲା ।

ସଂସାରରେ ସମସ୍ତଙ୍କ ଭିତରେ ବୋଧହୁଏ ଆଶୁବାବୁ ଜଣେ ମାତ୍ର ବ୍ୟକ୍ତି ଯିଏକି ଏହାଠାରୁ ଅଧିକା ତାଙ୍କ ସୃଷ୍ଟିକର୍ତ୍ତାଙ୍କ ନିକଟରେ ଦାବୀ କରି ପାରିନାହାଁନ୍ତି । ପୈତୃକ ବିପୁଳ ଧନସମ୍ପଦ ଯେପରି ଧୀର ସ୍ଥିର ଭାବରେ ଆନନ୍ଦର ସହିତ ଗ୍ରହଣ କରିଛନ୍ତି, ବିରାଟ ବପୁଟାର ଏବଂ ଆନୁସଙ୍ଗିକ ବାତ ବ୍ୟାଧିଟାକୁ ମଧ୍ୟ ସେହିପରି ସାଧାରଣ ଦୁଃଖ ଭଳି ମାନି ନେଇଛନ୍ତି । ଜଗତରେ ସୁଖ—ଦୁଃଖ ଯେ ବିଧାତା ତାଙ୍କୁ ଲକ୍ଷ୍ୟ କରି ସୃଷ୍ଟି କରି ନାହାନ୍ତି ଏବଂ ସେ ସବୁ ନିଜ ନିଜ ନିୟମ ଅନୁସାରେ ଚାଲନ୍ତି—ଏହି ସତ୍ୟ କେବଳ ବୁଦ୍ଧି ଦ୍ୱାରା ନୁହେଁ, ହୃଦୟ ଦେଇ ଉପଲବ୍ଧି କରିବା ପାଇଁ ତାଙ୍କୁ ତପସ୍ୟା କରିବାକୁ ପଡ଼ି ନାହିଁ । ସହଜାତ ସଂସ୍କାର ହେତୁ ତାହା ସେ ପାଇ ପାରିଥିଲେ । ଆକସ୍ମିକ ସ୍ତ୍ରୀ-ବିୟୋଗ ଦୁର୍ଘଟଣା ହେତୁ ସମସ୍ତ ପୃଥିବୀ ଯେତେବେଳେ ଆଖି ଆଗରେ ଶୂନ୍ୟ ଦେଖାଗଲା ସେଦିନ ଯେପରି ଭାଗ୍ୟ ଦେବତାଙ୍କୁ ସହସ୍ର ଧିକ୍କାରରେ ଲାଞ୍ଛିତ କରି ନାହାଁନ୍ତି; ଏକାନ୍ତ ସ୍ନେହର ଧନ ମନୋରମା ମଧ୍ୟ ଯେଉଁଦିନ ସେହିପରି ସମସ୍ତ ଆଶାଭରସାରେ ନିଆଁ ଧରାଇ ଦେଲା, ସେଦିନ ସେପରି ମଧ୍ୟ ମୁଣ୍ଡ ପିଟି କାନ୍ଦି ନାହାନ୍ତି । କ୍ଷୋଭ ଏବଂ ଦୁଃସହ ନୈରାଶ୍ୟର ମଝିରେ ତାଙ୍କର ମନ ଭିତରେ କିଏ ଯେପରି ଅତ୍ୟନ୍ତ ପରିଚିତ କଣ୍ଠରେ ବାରମ୍ବାର କହିବାକୁ ଲାଗିଥାଏ ଯେ—ଏଇପରି ଘଟିଥାଏ । ଏପରି ଦୁଃଖ ବହୁମାନବଙ୍କ ଭାଗ୍ୟରେ ବହୁବାର ଘଟିଛି ଏବଂ ଏଇପରି ଭାବରେ ସଂସାର ଚାଲେ । ଏଥିରେ କେଉଁଠି ନୂତନତ୍ୱ ନାହିଁ, ଏହା ସୃଷ୍ଟି ଭଳି ସୁପ୍ରାଚୀନ । ଉଚ୍ଛ୍ୱସିତ ଶୋକର ତରଙ୍ଗ ତୋଳି ଏହାକୁ ସଂସାରରେ ନବୀନ ବୋଲି ପରିବ୍ୟାପ୍ତ କରିବାରେ ନା ଅଛି ପୌରୁଷ, ନା ଅଛି ପ୍ରୟୋଜନ । ସେଥିପାଇଁ ସର୍ବବିଧ ଦୁଃଖକୁ ହିଁ ତାଙ୍କୁ ଏପରି ଶାନ୍ତ କରାଇ, ଚାରି ଦିଗରେ ଏପରି ଗୋଟିଏ ସ୍ନିଗ୍ଧ ପ୍ରସନ୍ନତାର ବେଷ୍ଟନୀ ସୃଜନ କରିଦେଇଛି ଯେ ଭିତରକୁ ଆସିଲେ ସମସ୍ତଙ୍କର ବୋଧହୁଏ ଯେପରି ଆପଣା ଛାଏଁ ଲଘୁ ଏବଂ ଅନାବିଳକର ହୋଇ ଉଠେ ।

ଏଇପରି ଭାବରେ ଆଶୁବାବୁଙ୍କର ଚିରଦିନ କଟିଯାଉଛି । ଆଗ୍ରାକୁ ଆସିବା ପରେ ନାନା ବିପର୍ଯ୍ୟୟ ମଧ୍ୟରେ ଏହାର ବ୍ୟତିକ୍ରମ ଘଟି ନାହିଁ । ଅଥଚ ଏହି ବ୍ୟତିକ୍ରମ ଟିକକ ଆଜିକାଲି ଅନେକଙ୍କ ଆଖିରେ ଦେଖାଯାଏ । ହଠାତ୍ ଦେଖାଯାଏ ସେମାନଙ୍କ ଆଚରଣରେ ଧୈର୍ଯ୍ୟର ଅଭାବ । ବହୁକ୍ଷେତ୍ରରେ ଯେପରି ଚୁପି ହୋଇ ରହିବା ପାଇଁ ସେମାନେ ଚାହାଁନ୍ତି ନାହିଁ । ମନେହୁଏ ଆଳାପ ଆଲୋଚନା ଅକାରଣରେ ରୂଢ଼ତାର ଧାର ଘଷି ଦାହାଣ ଆସନ୍ତି । ମନ୍ତବ୍ୟ ପ୍ରକାଶ ପାଇଁ ଅହେତୁକ ତୀକ୍ଷ୍ଣତା ଚାକରବାକରଙ୍କ କାନକୁ ଅଦ୍ଭୁତ ଶୁଣାଯାଏ—କିନ୍ତୁ କାହିଁକି ଯେ ଏହା ଘଟୁଛି ତାହା ମଧ୍ୟ ଭାବି ପାରିବା ଦୁଷ୍କର ହୋଇ ଉଠେ । ବ୍ୟାଧିର ଯନ୍ତ୍ରଣା ମଧ୍ୟରେ ଏହି ବିକୃତି ତାଙ୍କୁ ଅବିଶ୍ୱାସ୍ୟ ମନେ

ହେଉଥିଲ; କିନ୍ତୁ ବର୍ତ୍ତମାନ ସେ ତ ଆରୋଗ୍ୟ ଲାଭ କରି ଆସୁଛନ୍ତି । କିନ୍ତୁ କାରଣ ଯାହା ହେଉନା କାହିଁକି ସାମାନ୍ୟ ଲକ୍ଷ୍ୟ କରିଲେ ବୁଝାପଡ଼େ ତାଙ୍କର ନିଭୃତ ଚିତ୍ତ ତଳେ ଯେଉଁ ଦହନ ଅନବରତ ଗ୍ୱଲିଛି, ତାହାର ଅଗ୍ନି ସ୍ଫୁଲିଙ୍ଗ ହିଁ ମଝିରେ ମଝିରେ ବାହାରକୁ ଦେଖାଯାଉଛି ।

ଆଜିସୁଦ୍ଧା ପ୍ରକାଶ୍ୟରେ କିଛି ନାହାଁନ୍ତି ସତ, କିନ୍ତୁ ଆଗ୍ରସ ମିଳେ ଯେ ଆସ୍ଥା ରହିଣି ତାଙ୍କର ସରି ଆସିଲଣି । ହୁଏତ ଆଉ ଯାହା ସାମାନ୍ୟ ସୁସ୍ଥ ହେବାପାଇଁ ବିଳମ୍ବ । ତାପରେ ହଠାତ୍ ଯେପରି ଦିନେ ଆସି ପହଞ୍ଚିଥିଲେ ସେହିପରି ହଠାତ୍ ଆଉ ଦିନେ ଅନ୍ତର୍ହିତ ହୋଇଯିବେ ।

ଓପରଓଳି ଅନେକ ବଙ୍ଗାଳୀ ଖବର ନେଇ ଦେଖା କରିବାପାଇଁ ଆସନ୍ତି । ଯଥା :—ସପତ୍ନୀକ ମ୍ୟାଜିଷ୍ଟ୍ରେଟ ସାହେବ, ରାୟବାହାଦୁର, କଲେଜର ଅଧ୍ୟାପକମାନେ, ନାନା କାରଣରୁ ଯେଉଁମାନେ ଏହି ସ୍ଥାନ ଛାଡ଼ି ଯାଇପାରୁ ନାହାନ୍ତି ସେମାନେ, ହରେନ୍ଦ୍ର, ଅକ୍ଷୟ ଏବଂ ବଙ୍ଗାଳୀପଡ଼ାର ଯେଉଁମାନେ ଆନନ୍ଦ ଉତ୍ସବ ଦିନରେ ବହୁବାର ପଲାଉ ଆଉ ମାଂସ ଉଦରସ୍ଥ କରି ଯାଇଛନ୍ତି, ସେମାନଙ୍କ ଭିତରୁ କେହି କେହି । ଆସେ ନାହିଁ କେବଳ ଅକ୍ଷୟ, କାରଣ ସେ ଏଠାରେ ନାହିଁ ବୋଲି । ମହାମାରୀର ସୂଚନା ପାଇ ସ୍ତ୍ରୀକି ଗାଆଁକୁ ଯାଇଛି । ବୋଧହୁଏ ଏଠାକାର ଅବସ୍ଥା ଥଣ୍ଡା ପଡ଼ିଲଣି ଏଇ ଖବର ପ୍ରତୀକ୍ଷାରେ ସେଠାରେ ରହିଛି । ଆଉ ଆସେ ନାହିଁ କମଳ । ସେଇ ଯେ ସେଦିନ ଆସିଥିଲା ଆଉ ତାର ଦେଖା ନାହିଁ ।

ଆଶୁବାବୁ ମଜଲିସ୍ ଲୋକ । ତଥାପି ଆଜିକାଲି ସେପରି ମଜଲିସରେ ଯୋଗ ଦେଇ ପାରନ୍ତି ନାହିଁ । ଉପସ୍ଥିତ ରହିଲେ ମଧ୍ୟ ପ୍ରାୟ ନୀରବ ହୋଇ ରହନ୍ତି । ତାଙ୍କର ସ୍ୱାସ୍ଥ୍ୟହୀନତାକୁ ସ୍ମରଣ କରି ଅନ୍ୟମାନେ ସାନନ୍ଦରେ କ୍ଷମା ଦିଅନ୍ତି । ଦିନେ ଯେଉଁ ସବୁ କାମ ମନୋରମା କରୁଥିଲା, ଆତ୍ମୀୟା ବୋଲି ବେଲାକୁ ଆଜିକାଲି ସେ ସବୁ କାର୍ଯ୍ୟ କରିବାକୁ ପଡ଼େ । ଆତିଥେୟତାରେ କୌଣସି ତ୍ରୁଟି ପରିଲକ୍ଷିତ ହୁଏ ନାହିଁ । ବାହାର ଲୋକ ବାହାରୁ ଆସି ଏହାର ରସ ଟିକିଏ ଉପଭୋଗ କରନ୍ତି, ହୁଏତ ଅବା ସଭା ଶେଷରେ ପରିତୃପ୍ତ ଚିତ୍ତରେ ଏହି ନିରଭିମାନୀ ଗୃହସ୍ୱାମୀଙ୍କୁ ମନେ ମନେ ଧନ୍ୟବାଦ ଜଣାଇ ଆଶ୍ଚର୍ଯ୍ୟ ହୋଇ ଭାବନ୍ତି ଏଇ ଚିରରୋଗୀ ମନୁଷ୍ୟଟି ଦ୍ୱାରା ପ୍ରତ୍ୟହ କିପରି ନିପୁଣ ରୂପେ ଅଭ୍ୟର୍ଥନା ସମ୍ଭବପର ହୋଇ ପାରୁଛି !

ସମ୍ଭବ ଯେ କିପରି ଭାବରେ ହୁଏ ଏହି ଇତିହାସ ଟିକିଏ କିନ୍ତୁ ଗୋପନ ରହେ । ନୀଳିମା ସମସ୍ତଙ୍କ ଆଗରେ ବାହାରେ ନାହିଁ । ତାର ସେପରି ଅଭ୍ୟାସ ନ ଥିଲା ଏବଂ ସେ ମଧ୍ୟ ଭଲ ପାଏ ନାହିଁ । କିନ୍ତୁ ଅନ୍ତରାଳରୁ ତାର ଜାଗ୍ରତ ଦୃଷ୍ଟି ସର୍ବକ୍ଷଣ ଏହି ଗୃହରେ ସର୍ବତ୍ର ପରିବ୍ୟାପ୍ତ ଥାଏ । ତାହା ଯେପରି ନିଗୂଢ଼, ସେହିପରି ନୀରବ । ସିଁଡ଼ିରେ ପଞ୍ଝାଳିତ

ରକ୍ତଧାରା ପରି ଏହି ନାଃଶବ୍ଦ ପ୍ରବାହ ଏକାକୀ ଆଶୁବାବୁ ବ୍ୟତୀତ ଆଉ ବୋଧହୁଏ କେହି ଅନୁଭବ କରିପାରନ୍ତି ନାହିଁ ।

ଶୀତ ଋତୁର ପ୍ରଥମାର୍ଦ୍ଧ ପ୍ରାୟ ସରିବାକୁ ଆସିଲା । କିନ୍ତୁ ଯେଉଁ କାରଣରୁ ହେଉ ଏ ବର୍ଷ ଶୀତ ସେତେ ଜୋର ହୋଇ ନାହିଁ । ଆଜି ସକାଳ ପହରରୁ ଟିପ୍‌ଟିପ୍ ହୋଇ ବର୍ଷା ପଡୁଥିଲା । ଉପରନ୍ତୁ ଝାଞ୍ଜି ବଢ଼ିବାକୁ ଲାଗିଲା । ବାହାରୁ କେହି ଆସିବାର ସମ୍ଭାବନା ଆଉ ରହିଲା ନାହିଁ । ଘରର ଝରକାଗୁଡ଼ିକ ଅସମୟରେ ବନ୍ଦ ହୋଇ ଯାଇଛି । ଆଶୁବାବୁ ଇଜି ଚେୟାର ଉପରେ ପାଦ ରଖି ଶୋଇରହି କ'ଣ ଗୋଟାଏ ବହି ପଢ଼ିବାରେ ଲାଗିଥିଲେ । ବେଲା ହୁଏତ କେତେକ କାରଣରୁ ବିରକ୍ତ ହୋଇ କହିଲା ଏ ପୋଡ଼ା ଦେଶରେ ସବୁ କଥା ଓଲଟା । କିଛିଦିନ ତଳେ ଏ ଦେଶକୁ ଆସିଥିଲି । ହୁଏତ ଜୁନ କିମ୍ବା ଜୁଲାଇ ମାସ ହୋଇପାରେ; କିନ୍ତୁ ପାଣିପାଇଁ ଏ ଦେଶରେ ଯେପରି ହା-ହାକାର ଲୋକମାନେ କରି ଉଠନ୍ତି ନ ଆସିଥିଲେ ମୁଁ କଦାପି ଚିନ୍ତା କରିପାରି ନ ଥାନ୍ତି । ସେଥିପାଇଁ ଭାବେ ଏପରି ଜଳକଷ୍ଟ ଦେଶରେ ଲୋକେ ତାଜମହଲ ଗଢ଼ିବାକୁ ଯାଇଥିଲେ କେଉଁ ବିବେଚନାରେ ?

ନୀଲିମା ଅଳ୍ପଦୂରରେ ଚୌକିରେ ବସି ସିଲାଇ କରୁଥିଲା । ମୁହଁ ନ ଟେକି କହିଲା— ଏହାର କାରଣ କ'ଣ ସମସ୍ତେ ଜାଣିପାରନ୍ତି ? ପାରନ୍ତି ନାହିଁ ।

ବେଲା ସରଳ ଭାବରେ ପ୍ରଶ୍ନ କଲା—କାହିଁକି ?

ନୀଲିମା କହିଲା—ବିରାଟ ଜିନିଷ ହିଁ ମନୁଷ୍ୟର ହା-ହାକାର ଭିତରୁ ଜନ୍ମଲାଭ କରିଥାଏ । ପୃଥିବୀଟା ଆମୋଦ, ଆହ୍ଲାଦ କରିବାର ଯାଗା ନୁହେଁ । ତେଣୁ ସେମାନଙ୍କ ଆଖିରେ ଏହା ପଡ଼ିବ କିପରି ?

ଉତ୍ତରଟା ଏପରି ଅଭାବିତ ଭାବରେ କଠୋର ଯେ କେବଳ ବେଲା ନିଜେ ନୁହେଁ, ଆଶୁବାବୁ ପର୍ଯ୍ୟନ୍ତ ବିସ୍ମୟାପନ୍ନ ହୋଇ ଉଠିଲେ । ବହିରୁ ମୁହଁ ଉଠାଇ ସେ ଦେଖିଲେ— ସେ ମେଝିଅର ଏକମନରେ ସିଲାଇ କରି ଚାଲିଛି ଯେପରି ଏପରି କଥା ତା ମୁହଁରୁ ବାହାରି ନାହିଁ ।

ବେଲା କଳହପ୍ରିୟା ରମଣୀ ନୁହେଁ ଏବଂ ମୋଟ ଉପରେ ସେ ସୁଶିକ୍ଷିତା । ଦେଖିଛି ଏବଂ ଶୁଣିଛି ଅନେକ । ବୟସ ବୋଧହୁଏ ପଇଁତିରିଶ ଉପରେ ହେବ । କିନ୍ତୁ ସଯତ୍ନ ଏବଂ ସତର୍କତା ହେତୁ ଯୌବନର ଲାବଣ୍ୟ ଆଜି ମଧ୍ୟ ତାର ଅସ୍ତ ହୋଇ ନାହିଁ । ହଠାତ୍ ଦେଖିଲେ ମନେହୁଏ ସତେ ଅବା ମେଝିଅର ସେ ରହିଛି । ଆଖିର ଦୃଷ୍ଟି ହାସ୍ୟ କୌତୁକରେ ଚପଳ, ଚଞ୍ଚଳ ଏବଂ ନିରନ୍ତର ଭାସିବୁଲିବା ଯେପରି ତାହାର କାର୍ଯ୍ୟ । କେଉଁଠାରେ କୌଣସି କାରଣରୁ ସ୍ଥିର ହୋଇ ରହିବା ପାଇଁ ସେ ଯେପରି ସୃଷ୍ଟ ହୋଇ ନାହିଁ । ଆନନ୍ଦ ଉତ୍ସବରେ ବେଲା ଖୁସି ହୁଏ । ମଝିରେ ମଝିରେ ଦୁଃଖ ଆସି ଦେଖାଦେଲେ ଝୁନ୍ଦନର୍ତ୍ତୀ ସେଥିପାଇଁ ଲଜ୍ଜିତ ହୁଅନ୍ତି ।

ବେଲାର ପ୍ରବନ୍ଧଟା ମୁଦ୍ରଣ୍ତ୍ରିକ ଭିତରେ କଟିଯିବା ପରେ କ୍ଷଣକ ପାଇଁ ତା ମୁହଁ କ୍ରୋଧରେ ଲାଲ ହୋଇ ଉଠିଲା । ଗୁଗ କରି ଝଗଡ଼ା ସୃଷ୍ଟି କରିବା ଲାଗି ତା ଶିକ୍ଷା ଓ ସୌଜନ୍ୟକୁ କଷ୍ଟ ହୁଏ । ସେ ଆପଣାର କ୍ରୋଧ ସମ୍ବରଣ କରି କହିଲା—ମୋତେ ଆକ୍ଷେପ କରି ଲାଭ ନାହିଁ । କେବଳ ଅନଧିକାର ଚର୍ଚ୍ଚା ବୋଲି ନୁହେଁ, ହାହାକାର କରି ଭୁଲିବାଟା ଯେତେ ଉଚ୍ଚ ଧରଣର ଘଟଣା ହେଉ ନା କାହିଁକି ତାହା ମୁଁ କରିପାରେ ନାହିଁ ଏବଂ ତାହା ଭିତରୁ କୌଣସି ଅଭିଜ୍ଞତା ହାସଲ କରିବା ପାଇଁ ମୁଁ ସମ୍ପୂର୍ଣ୍ଣ ଅକ୍ଷମ । ମୋର ଆତ୍ମସମ୍ମାନ ବଜାୟ ରଖିବା ଠାରୁ ଅଧିକ ମୁଁ କିଛୁ ଆଶା କରେ ନାହିଁ ।

ନୀଳିମା କାମ କରିବାରେ ଲାଗିଲା । ଉତ୍ତର ଦେଲା ନାହିଁ ।

ଆଶୁବାବୁ ମନେ ମନେ କ୍ଷୁଣ୍ଣ ହୋଇଥିଲେ ଏବଂ ଏହା ଯେପରି ଆଗକୁ ଆଉ ନ ବଢ଼େ ସେଥିପାଇଁ କହି ଉଠିଲେ—ନା, ନା, ତୋତେ, ଆକ୍ଷେପ ନୁହେଁ ବେଲା, କଥାଟା ସାଧାରଣ ଭାବରେ ସେ କହିଛି । ନୀଳିମାର ସ୍ୱଭାବ ମୁଁ ଜାଣେ । ସେ ଏପରି କହି ପାରେ ନାହିଁ । କେବେ ମଧ୍ୟ କହି ନାହିଁ ଏକଥା ମଧ୍ୟ କହୁଛି ।

ବେଲା ସଂକ୍ଷେପରେ କହିଲା—ନ ହୋଇଥିଲେ ଭଲ । ଏତେଦିନ ହେବ ଏକ ସଙ୍ଗରେ ଥାଇ ମୁଁ ଏହା ଭାବିପାରି ନ ଥାନ୍ତି ।

ନୀଳିମା ହଁ କି ନାହିଁ କୌଣସି ଉତ୍ତର ଦେଲା ନାହିଁ । ଯେପରି ଘରେ କେହି ନାହାଁନ୍ତି ସେହିପରି ଭାବରେ ସିଲାଇରେ ମନ ଦେଲା । ଘରଟା ନିସ୍ତବ୍ଧ ହୋଇଗଲା ।

ବେଲା ଜୀବନର ଗୋଟାଏ ଇତିହାସ ଅଛି । ଏଠାରେ ତାହା କହିବା ଅନାବଶ୍ୟକ । ତା ବାପା ଥିଲେ ଆଇନ ବ୍ୟବସାୟୀ । କିନ୍ତୁ ବ୍ୟବସାୟରେ ଅର୍ଥ ଏବଂ ଯଶ କେଉଁଟାକୁ ହେଲେ ଆୟତ୍ତ କରି ପାରିଲେ ନାହିଁ । ଧର୍ମମତ ତାଙ୍କର କ'ଣ ଥିଲା କେହି ଜାଣନ୍ତି ନାହିଁ । ସାମାଜିକ ଜୀବନରେ ହିନ୍ଦୁ, ଖ୍ରୀଷ୍ଟାନ କିମ୍ବା ବ୍ରାହ୍ମ କୌଣସି ଧର୍ମକୁ ମାନୁ ଚଳୁ ନ ଥିଲେ । ଝିଅକୁ ଖୁବ୍ ଭଲ ପାଉଥିଲେ ଏବଂ ସାମର୍ଥ୍ୟର ଅତିରିକ୍ତ ଖର୍ଚ୍ଚ କରି ଶିକ୍ଷା ଦେବା ପାଇଁ ଚେଷ୍ଟା କରିଥିଲେ । ସେହି ଚେଷ୍ଟା ସମ୍ପୂର୍ଣ୍ଣ ନିଷ୍ଫଳ ହୋଇ ନାହିଁ, ଆଗରୁ ବୁଝାଯାଇଛି । ବେଲା ନାମଟି ସେ ପସନ୍ଦ କରି ଦେଇଛନ୍ତି । ସମାଜକୁ ନ ମାନିଲେ ସୁଦ୍ଧା ଆପଣାର ଗୋଟିଏ ଦଳ ଥିଲା । ବେଲା ସୁନ୍ଦରୀ ଓ ଶିକ୍ଷିତା ବୋଲି ସେହି ଦଳ ଭିତରେ ପ୍ରଚାର ହୋଇଗଲା । ତେଣୁ ଧନୀ ପାତ୍ର ଜୁଟିବାକୁ ବିଳମ୍ବ ହେଲା ନାହିଁ । ସେ ମଧ୍ୟ ସଦ୍ୟ ବିଲାତରୁ ଆଇନ ପାଶ୍ କରି ଆସିଥିଲେ । କେତେଦିନ ଧରି ଦେଖା ଶୁଣା ଓ ଜଣାଜଣିର ପାଳି ଚାଲିଲା । ତାହା ପରେ ବିବାହ ହେଲା ଆଇନ ମତେ ରେଜେଷ୍ଟ୍ରୀ କରିହୋଇ । ଆଇନ ପ୍ରତି ଗଭୀର ମନୋଯୋଗର ଗୋଟାଏ ଅଙ୍କ ଶେଷ ହେଲା । ଦ୍ୱିତୀୟ ଅଙ୍କରେ ବିଳାସ ବ୍ୟସନ, ଏକାଠି ଦେଶ ଭ୍ରମଣ, ଅନ୍ୟତ୍ର ବାସ୍ଥି ପରିବର୍ତ୍ତନ, ଏପରି ଅନେକ କିଛି ଚାଲିଲା । ଉଭୟ ପକ୍ଷରେ ନାନା ପ୍ରକାର ଜନରବ ଶୁଣାଗଲା କିନ୍ତୁ

ଆଲୋଚନା ଅପ୍ରାସଙ୍ଗିକ । ଯାହା ପ୍ରାସଙ୍ଗିକ ତାହା ଅଚିରେ ପ୍ରକାଶ ପାଇଲା । ବରପକ୍ଷ ହାତେ ହାତେ ଧରାପଡ଼ିଲେ ଏବଂ କନ୍ୟା ପକ୍ଷ ବିବାହ ବିଚ୍ଛେଦ ମାମଲା ରୁଜୁ କରିବାକୁ ଚାହିଁଲେ । ବନ୍ଧୁ ମହଲରେ ମିଳାମିଶା ପାଇଁ ଚେଷ୍ଟା ଚାଲିଲା । ଶିକ୍ଷିତା ବେଲା କିନ୍ତୁ ନର-ନାରୀଙ୍କର ସମାନ ଅଧିକାର ତତ୍ତ୍ୱର ବଡ଼ପଣ୍ଡା । ଏହି ଅସମ୍ମାନଜନକ ପ୍ରସ୍ତାବକୁ ସେ କର୍ଣ୍ଣପାତ କରିଲା ନାହିଁ । ସ୍ୱାମୀଟି ବିଚାରା ଚରିତ୍ର ଦିଗରୁ ଯାହା ହେଉ କିନ୍ତୁ ମଣିଷ ହିସାବରେ ମନ୍ଦ ଲୋକ ନ ଥିଲେ । ସ୍ତ୍ରୀକୁ ସେ ଶକ୍ତ ଏବଂ ସାଧ୍ୱ ମତେ ଭଲ ପାଉଥିଲେ । ଅପରାଧକୁ ଲଜ୍ୟାର ସହିତ ସ୍ୱୀକାର କରି କୋର୍ଟର ଦୁର୍ଗତିରୁ ରକ୍ଷା ପାଇବା ପାଇଁ କର ଯୋଡ଼ି ପ୍ରାର୍ଥନା ଜଣାଇଲେ । କିନ୍ତୁ ସ୍ତ୍ରୀ କ୍ଷମା କରିଲେ ନାହିଁ । ଶେଷରେ ବହୁ ଦୁଃଖରେ ଗୋଟାଏ ନିଷ୍ପତ୍ତି ହେଲା । ନଗଦ ଆକାରରେ ଏବଂ ଭରଣ ପୋଷଣ ପାଇଁ ମାସିକ ବିବାଦରେ ଅନେକ ଟଙ୍କା ମୁଣ୍ଡ ପାତି ଦାଖଲ କରି ସାରି ବିଚାରା ସେ ମାମଲାରୁ ରକ୍ଷା ପାଇଲା । ଦାମ୍ପତ୍ୟ ଯୁଦ୍ଧରେ ଜୟ ଲାଭ କରି ବେଲା ଭଗ୍ନ ସ୍ୱାସ୍ଥ୍ୟକୁ ଯୋଡ଼ିବା ପାଇଁ ସିମଳା, ମସୌରି, ନଇନିତାଲ ପ୍ରଭୃତି ପର୍ବତାଞ୍ଚଳକୁ ସଦର୍ପରେ ପ୍ରସ୍ଥାନ କଲା । ସେ ଆଜକୁ ପ୍ରାୟ ଛଅ, ସାତ ବର୍ଷ ତଳର କଥା । ଏହାର ଅନତିକାଳ ପରେ ହିଁ ତା ପିତାଙ୍କର ମୃତ୍ୟୁ ହୁଏ । ଏହି ଘଟଣାରେ ତାଙ୍କର ସମ୍ମତି ତ ନ ଥିଲା ବରଂ ସେ ଅତ୍ୟଧିକ ମର୍ମପୀଡ଼ା ଭୋଗ କରି-ଥିଲେ । ଆଶୁବାବୁଙ୍କର ପରଲୋକଗତ ପତ୍ନୀଙ୍କ ସହିତ ତାଙ୍କର କଣ ଗୋଟାଏ ଦୂରସମ୍ପର୍କ ଥିଲା, ସେହି ସମ୍ବନ୍ଧ ନେଇ ବେଲା ଆଶୁବାବୁଙ୍କର ଆତ୍ମୀୟା । ତା ବିବାହ ଉପଲକ୍ଷ୍ୟରେ ସେ ମଧ୍ୟ ନିମନ୍ତ୍ରିତ ହୋଇ ଉପସ୍ଥିତ ଥିଲେ ଏବଂ ସେହି ଅବସରରେ ତା ସ୍ୱାମୀଙ୍କ ସହିତ ପରିଚୟ ହେବାର ସୁଯୋଗ ପାଇ ପାରିଥିଲେ । ଏହିରୂପେ ନାନା ଆତ୍ମୀୟତା ସୂତ୍ର ନେଇ ବେଲା ଆପଣାର ଲୋକ ହୋଇ ଆଗ୍ରାରେ ପହଞ୍ଚିଛି । କିନ୍ତୁ ପର ହୋଇ ଆଗ୍ରାକୁ ଆଶାରେ ମଧ୍ୟ ଆସିନାହିଁ । ଏହି ତୁଳନା ହେତୁ ନୀଳିମା ସହିତ ତାର ଢେର ପ୍ରଭେଦ ଥିଲା ।

ଅବସ୍ଥାଟା ଅଥଚ ଅନ୍ୟ ପ୍ରକାର ହୋଇ ଉଠିଲା । ଏହି ଘରେ ତା ସ୍ଥାନ ଯେ କେଉଁଠି, ଏ ବିଷୟରେ ଘରେ କାହା ମନରେ ତିଳାର୍ଦ୍ଧ ସନ୍ଦେହ ନ ଥିଲା । କାରଣ ଯେପରି ଥିଲା ଅଜଣା, କର୍ତ୍ତୃତ୍ୱ ମଧ୍ୟ ଥିଲା ସେହିପରି ଅବିସମ୍ବାଦିତ ।

ବହୁ ସମୟ ପର୍ଯ୍ୟନ୍ତ ନୀରବ ରହିବା ପରେ ବେଲା ହିଁ ପ୍ରଥମେ କଥା କହିଲା । କହିଲା—ସ୍ପଷ୍ଟ ବୁଝିହେଉଁ ନାହିଁ । କିନ୍ତୁ ମୋତେ ଧିକ୍କାର ଦେବା ପାଇଁ ଯେ ଏକଥା ନୀଳିମା କହୁଛନ୍ତି, ଏ ବିଷୟରେ ମୋର ସନ୍ଦେହ ନାହିଁ ।

ଆଶୁବାବୁଙ୍କ ମନରେ ଯୁଏତ ସନ୍ଦେହ ନ ଥିଲା । ତଥାପି ବିସ୍ମିତ କଣ୍ଠରେ ପ୍ରଶ୍ନ କଲେ—ଧିକ୍କାର ? ଧିକ୍କାର ଦେଇ ବସିବ କାହିଁକି ବେଲା ?

ବେଲା କହିଲା—ଆପଣ ତ ସବୁ ଜାଣନ୍ତି । ନିନ୍ଦା କରିବା ପାଇଁ ସେଦିନ ଲୋକଙ୍କର ଅଭାବ ନ ଥିଲା କିମ୍ବା ଆଜି ମଧ୍ୟ ହେବ ନାହିଁ । ନିଜର ସମ୍ମାନ, ସନ୍ତୋଷର

ସମସ୍ତ ନାରୀ ଜାତିର ସମ୍ମାନ ରକ୍ଷିବା ପାଇଁ ସେଦିନ ଗ୍ରହଣ କରି ପାରି ନ ଥିଲି ଆଜି ମଧ୍ୟ କରିପାରି ନାହିଁ । ନିଜର ମର୍ଯ୍ୟାଦାକୁ ନଷ୍ଟ କରି ସ୍ୱାମୀଙ୍କ ସମ୍ମାନ ରକ୍ଷା କରିପାରି ନାହିଁ ବୋଲି ସବୁଠାରେ ସ୍ତ୍ରୀ ଲୋକମାନଙ୍କ ଦ୍ୱାରା ନିନ୍ଦିତ ହୋଇଥିଲି ଅଧିକ । ଆଜି ଦେଖୁଛୁ ସେହିମାନଙ୍କ ଠାରୁ ଏବେ ବି ମଧ୍ୟ ନିସ୍ତାର ପାଇ ପାରୁ ନାହିଁ । ଅନ୍ୟାୟ କରି ନାହିଁ ବୋଲି ସେଦିନ ଯେପରି ଭୟ କରି ନ ଥିଲି ଆଜି ମଧ୍ୟ ସେହି ଭଳି ନିର୍ଭୟ । ନିଜର ବିବେକ ଓ ବୁଦ୍ଧି ନିକଟରେ ମୁଁ ସମ୍ପୂର୍ଣ୍ଣ ଖାଣ୍ଟି ।

ନୀଳିମା ସିଲେଇରୁ ମୁହଁ ଉଠାଇଲା ନାହିଁ । କିନ୍ତୁ ଆସ୍ତେ ଆସ୍ତେ କହିଲା—ଦିନେ କମଳ କହିଥିଲା ଯେ ବିବେକ ଓ ବୁଦ୍ଧିଟା ହିଁ ସଂସାରରେ ବଡ଼ ବସ୍ତୁ ନୁହେଁ । ବିବେକର ଦ୍ୱାରା ଦେଇ ସମସ୍ତ ନ୍ୟାୟ ଅନ୍ୟାୟର ମୀମାଂସା ହୋଇପାରେ ନାହିଁ ।

ଆଶୁବାବୁ ବିସ୍ମିତ ହୋଇ ପ୍ରଶ୍ନ କଲେ—ସେ କ'ଣ ସେପରି କହେ କି ?

: ହଁ । କହେ ଏଇଟା ହେଉଛି କେବଳ ନିର୍ବୋଧଙ୍କର ଅସ୍ତ୍ର । ସେହି ଅସ୍ତ୍ର ହାତରେ ଥିଲେ ତାହା ଆଗ ଓ ପଛ ଦୁଇଦିଗକୁ କାଟେ । ତାହାର କୌଣସି ଠିକ୍ ଠିକଣା ନାହିଁ ।

ଆଶୁବାବୁ କହିଲେ—ସେ କହିଲେ କହିଥାଉ । ଏକଥା ତୁମେ ମୁହଁରେ ଆଣନା ନୀଳିମା ।

ବେଲା କହିଲା—ଏତେବଡ଼ ଦୁଃସାହସର କଥା ଆଗରୁ ତ କେବେ ଶୁଣି ନାହିଁ ।

ଆଶୁବାବୁ ମୁହୂର୍ତ୍ତକାଳ ମୌନ ରହି ଧୀରେ ଧୀରେ କହିଲେ—ପ୍ରକୃତରେ ଦୁଃସାହସ । ତା ସାହସର ଅନ୍ତ ନାହିଁ । ଆପଣା ନିୟମରେ ଚଳେ । ସବୁ କଥା ତାର ସଦାବେଳେ ମଧ୍ୟ ବୁଝି ହୁଏ ନାହିଁ । କିମ୍ବା ମାନି ଚଳିହୁଏ ନାହିଁ ।

ବେଲା କହିଲା—ଆପଣା ନିୟମରେ ମୁଁ ମଧ୍ୟ ଚଳେ ଆଶୁବାବୁ । ସେଥିପାଇଁ ବାବାଙ୍କ ନିଷେଧକୁ ମଧ୍ୟ ମାନି ନେଇ ନାହିଁ । ସ୍ୱାମୀକୁ ପରିତ୍ୟାଗ କରିଲି କିନ୍ତୁ ମୁଣ୍ଡ ଟେକି ଠିଆ ହୋଇ ପାରିଲି ନାହିଁ ।

ଆଶୁବାବୁ କହିଲେ—ଏହା ଗମ୍ଭୀର ପରିତାପର ବିଷୟ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତୁମ ବାପା ସମ୍ମତି ଜଣାଇ ନ ଥିଲେ ମଧ୍ୟ ମୁଁ ଦେଇ ପାରିଥିଲି ।

ବେଲା କହିଲା thanks (ଧନ୍ୟବାଦ) । ତାହା ମୋର ମନେ ଅଛି ଆଶୁବାବୁ ।

: କାରଣ ସ୍ତ୍ରୀ ଓ ପୁରୁଷର ସମାନ ଦାୟିତ୍ୱ ଏବଂ ସମାନ ଅଧିକାରରେ ମୁଁ ସମ୍ପୂର୍ଣ୍ଣ ବିଶ୍ୱାସ କରେ । ଆମ ହିନ୍ଦୁ ସମାଜରେ ଏଇଟା ବିରାଟ ଦୋଷ ଯେ ଶତ ଅପରାଧ କଲେ ମଧ୍ୟ ସ୍ୱାମୀର ବିଚ୍ଛେଦ ପାଇଁ ଭୟ ନାହିଁ । କିନ୍ତୁ ତୁଚ୍ଛ ଦୋଷରେ ସ୍ତ୍ରୀକୁ ଶାସ୍ତି ଦେବା ପାଇଁ ସହସ୍ର ଦ୍ୱାର ଖୋଲା । ଏଇ ବିଧିବ୍ୟବସ୍ଥାକୁ ନ୍ୟାୟ ବୋଲି କୌଣସି ଦିନ

ମୁଁ ଗ୍ରହଣ କରି ନେଇ ନାହିଁ । ସେଥିପାଇଁ ବେଲାର ବାପା ଯେତେବେଳେ ମତାମତ ପାଇଁ ମୋ ପାଖକୁ ଚିଠି ଲେଖିଥିଲେ ସେତେବେଳେ ଏଇ କଥା ହିଁ ଜଣାଇ ଦେଇଥିଲି ଯେ—ଜନ୍ମପତ୍ରଟା ଆଦୌ ଶୋଭନୀୟ ନୁହଁ । ସୁଖକର ନୁହଁ । ସେ ଯଦି ତାର ଅସନ୍ତୁ ଚରିତ୍ର ସ୍ୱାମୀକୁ ବର୍ଜନ କରିବା ପାଇଁ ଇଚ୍ଛା କରୁଛି ତାହାକୁ ଅନ୍ୟାୟ ବୋଲି ମୁଁ ନିଷେଧ କରି ପାରିବି ନାହିଁ ।

ନୀଳିମା ଅକୃତ୍ରିମ ବିସ୍ମୟରେ ଆଖି ଟେକି ପ୍ରଶ୍ନ କଲା—ଆପଣ ସତରେ ଏଇ ଅଭିମତ ଜଣାଇ ଉତ୍ତର ଲେଖିଥିଲେ ?

: ସତରେ ତ ।

ନୀଳିମା ସ୍ତମ୍ଭୀଭୂତ ହୋଇ ରହିଗଲା ।

ସେହି ନିସ୍ତବ୍ଧତା ଆଗରେ ଆଶୁବାବୁ କିପରି ଅସ୍ୱସ୍ତି ଅନୁଭବ କରିବାକୁ ଲାଗିଲେ । କହିଲେ—ଏଥିରେ ଆଶ୍ଚର୍ଯ୍ୟ ହେବା ଭଳି କିଛି ନାହିଁ । ନୀଳିମା, ବରଞ୍ଚ ନ ଲେଖିଥିଲେ ମୋ ପ୍ରତି ମୁଁ ଅନ୍ୟାୟ କରିଥାନ୍ତି । ଟିକିଏ ଅଟକିଯାଇ କହିଲେ—ତୁମେ ତ କମଲର ଜଣେ ବଡ଼ ଭକ୍ତ । କହିଲ ସେ ନିଜେ ଏ କ୍ଷେତ୍ରରେ କ'ଣ କରିଥାନ୍ତା ? କ'ଣ ଜବାବ ଦେଇଥାନ୍ତା ? ସେଥିପାଇଁ ତ ସେଦିନ ଯେତେବେଳେ ଏ ଦୁଇଜଣଙ୍କର ଆଳାପ ପରିଚୟ କରାଇ ଦେଲି ସେତେବେଳେ ଏଇ କଥାଟା ହିଁ ଜୋର ଦେଇ କହିଥିଲି ଯେ, କମଲ ତୋ ଭଳି ଚିନ୍ତା କରିବା ପାଇଁ, ତୋ ଭଳି ମଣିଷର ପରିଚୟ ଦେବା ପାଇଁ ଆଉ ଗୋଟିଏ ଝିଅକୁ ଦେଖିଛୁ—ସେ ହେଉଛି ଏଇ ବେଲା ।

ନୀଳିମାର ଦୁଇ ଆଖି ହଠାତ୍ ବ୍ୟଥାରେ ଭରି ଉଠିଲା । କହିଲା—ସେ ବହିଷ୍କୃତ ଭଦ୍ର ସମାଜର ବାହାରେ ପଡ଼ିରହିଛି । ତାକୁ ଆପଣମାନେ ଟଣାଟଣି କରୁଛନ୍ତି କାହିଁକି ?

ଆଶୁବାବୁ ବ୍ୟସ୍ତ ହୋଇ କହି ଉଠିଲେ—ନା, ନା, ଟଣାଟଣି ନୁହେଁ ନୀଳିମା, ଏହା କେବଳ ଗୋଟାଏ ଉଦାହରଣ ମାତ୍ର ।

ନୀଳିମା କହିଲା ଏହା ହିଁ ତ ଟଣାଟଣି । ଏଇମାତ୍ର ଆପଣ କହୁଥିଲେ ଯେ ତାର ସବୁ କଥା ବୁଝି ହୁଏ ନାହିଁ କିମ୍ବା ମାନି ଚଳି ହୁଏ ନାହିଁ । ଯଦି କିଛି କରି ହୁଏ ନାହିଁ ତେବେ ସେ କ'ଣ କେବଳ ଉଦାହରଣ ଦେବା ପାଇଁ ଗୋଟାଏ ବସ୍ତୁ ?

ଆପଣା କଥାରେ ଦୋଷ କେଉଁଠି ରହିଗଲା, ଆଶୁବାବୁ ତାହା ଖୋଜି ପାରିଲେ ନାହିଁ । କ୍ଷୁବ୍ଧ କଣ୍ଠରେ କହିଲେ—ଯେଉଁଥିପାଇଁ ହେଉନା କାହିଁକି ଆଜି ବୋଧହୁଏ ତୁମ ମନ ବହୁତ ଖରାପ ଅଛି । ଏ ସମୟରେ ଆଲୋଚନା କରିବାଟା ଭଲ ହେବ ନାହିଁ ।

ନୀଳିମା ଏ କଥାକୁ କାନକୁ ନେଲା ନାହିଁ । କହିଲା—ସେଦିନ ଆପଣ ସେମାନଙ୍କର ବିବାହ-ବିଚ୍ଛେଦ ସମ୍ପର୍କରେ ମତ ଦେଇଥିଲେ ଏବଂ ଆଜି ନିଃସଙ୍କୋଚରେ କମଳର ଦୃଷ୍ଟାନ୍ତ ଦେଲେଣି । ସେହି ଅବସ୍ଥାରେ କ'ଣ କରିବାକୁ ହୋଇଥାନ୍ତା ତାହା କମଳ ହିଁ କେବଳ ଜାଣେ । ତା ଦୃଷ୍ଟାନ୍ତକୁ ପ୍ରକୃତରେ ଅନୁସରଣ କରିବାକୁ ଗଲେ ଆଜି ବେଳାକୁ କୁଲି ମଜୁରିଆ ଭଳି ଜାମା ସିଲାଇ କରି ଆହାର ଯୋଗାଡ଼ କରିବା ପାଇଁ ପଡ଼ନ୍ତା । କମଳ ଆଉ ଯାହା କରିଥାନ୍ତା ପଛକେ କିନ୍ତୁ ଯେଉଁ ସ୍ୱାମୀକୁ ସେ ଲାଞ୍ଛନା ଦେଇ ଘୃଣା କରି ତ୍ୟାଗ କରି ବସିଛି ତାରି ଦିଆ ଅନ୍ନକୁ ପାଟିକୁ ନେଇ କିମ୍ବା ତାହାରି ପ୍ରଦତ୍ତ ବସ୍ତ୍ରରେ ଲଜ୍ୟା ଟାଙ୍କି ବଞ୍ଚିବା ପାଇଁ ଇଚ୍ଛା କରି ନ ଥାନ୍ତା । ଆପଣାକୁ ଏତେ ନିଚ କରିଦେବା ଆଗରୁ ସେ ଆପେ ଆତ୍ମହତ୍ୟା କରି ବସିଥାନ୍ତା ।

ଅଶୁବାବୁ ଜବାବ କ'ଣ ଦେବେ, ଶିବୁଶିବୁ ଅଭିଭୂତ ହୋଇ ପଡ଼ିଲେ ଏବଂ ବେଲା ଠିକ୍ ବଜ୍ରାହତ ଭଳି ଅଚଳ ହୋଇ ବସିରହିଲା । ଅକ୍ଷା ମଜ୍ଜା କରି ନୀଳିମାର ଧନ କହେ । ସମସ୍ତଙ୍କ ମୁହଁକୁ ଚାହିଁରହିବା ଯେପରି ତା କାମ । ସେ ଯେ ହଠାତ୍ ଏପରି ନିର୍ମମ ହୋଇ ପାରିବ ଦୁଇଜଣ କେହି ଏହା କଳ୍ପନା କରିପାରି ନ ଥିଲେ ।

ନୀଳିମା ମୁହୂର୍ତ୍ତିକ ପାଇଁ ସ୍ଥିର ରହି କହିଲା—ଆପଣଙ୍କ ମଜଲିସ୍‌ରେ ମୁଁ ଯୋଗଦିଏ ନାହିଁ ସତ କିନ୍ତୁ ଯାହାଙ୍କୁ ନେଇ ସକଳ ଆଲୋଚନା ଚାଲେ ସେସବୁ ମୋ କାନକୁ ଆସେ । ନ ହେଲେ ହୁଏତ କୌଣସି କଥା ମୁଁ କହି ନ ଥାନ୍ତି । କମଳ ଜନକ ପାଇଁ ଶିବନାଥର ନିନ୍ଦା କରେ ନାହିଁ । କାହା ନିକଟରେ ତା ଦୁଃଖ ପାଇଁ ଅଭିଯୋଗ କରେ ନାହିଁ । କାହିଁକି ଜାଣନ୍ତି ?

ଆଶୁବାବୁ ବିମୂଢ଼ ହୋଇଥିଲେ ମଧ ପ୍ରଶ୍ନ କଲେ—କାହିଁକି ?

ସେ କଥା କହି କୌଣସି ମୂଲ୍ୟ ନାହିଁ । ଆପଣମାନେ ବୁଝି ପାରିବେ ନାହିଁ । ଟିକିଏ ଅଟକି ଯାଇ କହିଲା—ଆଶୁବାବୁ, ସ୍ୱାମୀ-ସ୍ତ୍ରୀର ଅଧିକାର, ଏହା ଅତ୍ୟନ୍ତ ସ୍ଥୂଳ କଥା । କିନ୍ତୁ ତାହା ବୋଲି ଏପରି ଭାବନ୍ତୁ ନାହିଁ ଯେ ସ୍ତ୍ରୀ ହୋଇ ମୁଁ ସ୍ତ୍ରୀ ମାନଙ୍କ ଦାବୀ ବିରୁଦ୍ଧରେ ପ୍ରତିବାଦ କରୁଛି । ସତବାକ ମୁଁ କହୁନି, ଯେହେତୁ ମୁଁ ଜାଣେ ଏହା ସତ୍ୟ । କିନ୍ତୁ ଏକଥା ମଧ୍ୟ ଜାଣେ ଯେ ସତ୍ୟବିଳାସୀ ଦଳେ ଅଛି । ନର-ନାରୀଙ୍କ ମୁହଁରେ ଏବଂ ଆନ୍ଦୋଳନ ଦ୍ୱାରା ଏ ସତ୍ୟ ଏପରି ଅସ୍ପଷ୍ଟ ହୋଇ ଉଠିଛି ଯେ ଆଜି ଏହାକୁ ମିଥ୍ୟା ବୋଲି କହିବା ପାଇଁ ମନ ବଳେ । ମୁଁ ହାତଯୋଡ଼ି ପ୍ରାର୍ଥନା କରୁଛି, ଆପଣ ସମସ୍ତଙ୍କ ସହ ମିଶି କମଳ ବିଷୟରେ ଏପରି ଚର୍ଚ୍ଚା ଆଉ କରନ୍ତୁ ନାହିଁ ।

ଆଶୁବାବୁ ଉତ୍ତର ଦେବାକୁ ଯାଉଥିଲେ । କିନ୍ତୁ ସେ କଥା କହିବା ପୂର୍ବରୁ ନୀଳିମା ସିଲାଇ ପଛର ଜିନିଷପତ୍ର ଗୋଟାଇ ଧରି ଉଠି ଚାଲିଗଲା ।

ଆଶୁବାବୁ ଦୁଃଖିତ ହୋଇ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ—ଏ କେତେ-ବେଳେ କ'ଣ ଶୁଣିଛ, ମୁଁ ଜାଣେ ନାହିଁ । କିନ୍ତୁ ମୋ ଉପରେ ସେ ଅଯଥା ଦୋଷାରୋପ କରୁଛ ।

ବାହାରେ କିଛି ସମୟ ପାଇଁ ବର୍ଷା କମି ଯାଇଥିଲା । କିନ୍ତୁ ଉପରର ମେଘାଚ୍ଛନ୍ନ ଆକାଶ ଅସମୟରେ ଘର ଭିତରେ ଅନ୍ଧକାର ସଞ୍ଚାରିତ କଲା । ସ୍ୱଳ୍ପ ଆଲୋକ ଥୋଇ ଦେଇ ଚାଲିଗଲା । ଆଶୁବାବୁ ଆଖି ଆଗରେ ବହି ଖଣ୍ଡିକ ପୁଣି ଖୋଲି ଧରିଲେ ଯଦିଓ ଛାପା ଅକ୍ଷର ସହିତ ମନ ସଂଯୋଗ କରିବା ସମ୍ଭବପର ହେଲା ନାହିଁ ତଥାପି କିନ୍ତୁ ହେଲା ସହିତ କଥାବାର୍ତ୍ତାରେ ପ୍ରବୃତ୍ତ ହେବା ଅନୁରୂପ ଅସମ୍ଭବ ହୋଇ ଉଠିଲା ।

ଭଗବାନ ଦୟା କରିଲେ । ଗୋଟିଏ ଛତାରେ ସାଧ୍ୟ ବାହାରେ ଠେଲାଠେଲି ହୋଇ କୃଚ୍ଛ୍ରବ୍ରତଧାରୀ ହରେନ୍ଦ୍ର ଓ ଅଜିତ ବଡ଼ ବେଗରେ ଘର ଭିତରକୁ ପଶି ଆସିଲେ । ଦୁଇଜଣ ଯାକ ଅଧାଅଧି ଓଦା ଯାଇଥାନ୍ତି । ପଚାରିଲେ—ନୂଆ'ଉ କାହାନ୍ତି ?

ଆଶୁବାବୁ ଯେପରି ହାତରେ ସ୍ୱର୍ଗର ଚାନ୍ଦ ପାଇ ପାରିଲେ । ଆଜି ଭଳି ଦିନରେ କେହି ଯେ ଆସି ପହଞ୍ଚିବେ ଏହି ଭରସା ତାଙ୍କର ନ ଥିଲା । ଆଗ୍ରହରେ ଉଠି ନ ଆସି ଅଭ୍ୟର୍ଥନା ଜଣାଇଲେ । କହିଲେ—ଆସ ଅଜିତ, ବସ ହରେନ୍ଦ୍ର ।

: ବସୁଛୁ । ନୂଆ'ଉ କାହାନ୍ତି ?

: ଇସ୍ ! ଦୁଇଜଣ ଯାକ ଯେ ଗୁରୁପୁରୁ ଓଦା ଯାଇଛ ଦେଖୁଛି ।

: ଆଜ୍ଞା ହଁ । ସେ କୁଆଡ଼େ ଗଲେ ?

: ଡାକି ପଠାଉଛି ବୋଲି ଆଶୁବାବୁ ଗୋଟାଏ ହୁଙ୍କାର ଛାଡ଼ିବା ପାଇଁ ଉଦ୍ୟତ ହେଉଛନ୍ତି ଏହି ସମୟରେ ଭିତରର ପର୍ଦ୍ଦା ଆଡ଼େଇ ନୀଳିମା ଆପେ ଆସି ପ୍ରବେଶ କଲା । ତା ହାତରେ ଦୁଇଟି ଶୁଖିଲା ଧୋବ ଲୁଗା ଏବଂ ଜାମା ।

ହରେନ୍ଦ୍ର କହିଲା ଏ କ'ଣ ? ଆପଣ କ'ଣ ହାତ ଗଣି ଜାଣି ପାରନ୍ତି ନା କ'ଣ ?

ନୀଳିମା କହିଲା ଗଣି ଯୋଗାଡ଼ କରିବା ଦରକାର ହୋଇନାହିଁ । ଝରକାରୁ ତୁମ ଦୁହିଁଙ୍କୁ ଦେଖି ପାରିଥିଲି । ଗୋଟାଏ ଭଙ୍ଗା ଛତା ତଳେ ପରସ୍ପର ପ୍ରତି ଯେଉଁଭଳି ଦରଦ ଦେଖାଇ ଚାଲିଥିଲ ତାହା ଦେଖି ମୁଁ କ'ଣ, ସାରା ଦେଶର ଲୋକଙ୍କର ମଧ୍ୟ ତୁମ ଦୁହିଙ୍କ ଠାରେ ଦୃଷ୍ଟି ପଡ଼ନ୍ତା ।

ଆଶୁବାବୁ କହିଲେ—ଗୋଟାଏ ଛତା ତଳେ ଦୁଇଜଣ ? ସେଥିପାଇଁ ଦୁହିଁଙ୍କୁ ଭିଜିବାକୁ ପଡ଼ିଛି । ଏହା କହି ସେ ହସିଲେ ।

ନୀଳିମା କହିଲା—ଏମାନେ ବୋଧହୁଏ ସମାନାଧିକାର ତତ୍ତ୍ୱରେ ବିଶ୍ୱାସୀ । ଅନ୍ୟାୟ କରନ୍ତି ନାହିଁ । ସେଥିପାଇଁ ରାସ୍ତାରେ ମୁଣ୍ଡକୁ ବଞ୍ଚାଇ ଛତାକୁ ଭାଗ କରି ଧରି ଚାଲି

ଥିଲେ ; କ'ଣ ମତ ନୁହେଁ ? ଆଚ୍ଛା, ବର୍ତ୍ତମାନ ଲୁଗା ପାଲଟି ପକାଅ । ଏହା କହି ସେ ଜାମା ଓ ଲୁଗା ହରେନ୍ଦ୍ର ହାତକୁ ବଢ଼ାଇ ଦେଲା ।

ଆଶୁବାବୁ ବ୍ୟସ୍ତ ହୋଇ ରହିଲେ । ହରେନ୍ଦ୍ର କହିଲା --ଲୁଗା ତ ନେବି ଦୁଇଟା କିନ୍ତୁ ଜାମା ଯେ ଗୋଟାଏ ।

: ଜାମାଟା ମସ୍ତ ବଡ଼ । ତେଣୁ ଗୋଟାକରେ ଚଳିବ । କହି ନୀଳିମା ଗମ୍ଭୀର ହୋଇ ପାଖରେ ପଡ଼ିଥିବା ଚୌକିରେ ବସି ପଡ଼ିଲା ।

: ଜାମାଟା ଆଶୁବାବୁଙ୍କର । ସୁତରାଂ ଦୁଇଜଣଙ୍କୁ କାହିଁକି ଆଉ ମଧ୍ୟ ଚାରିଜଣଙ୍କୁ ହୋଇପାରେ । କିନ୍ତୁ ମଶାରି ଭଳିଆ ଟାଙ୍ଗିବାକୁ ସିନା ହୋଇପାରିବ କିନ୍ତୁ ଦେହରେ ପିନ୍ଧି ହେବ ନାହିଁ କହି ହରେନ୍ଦ୍ର ହସି ଉଠିଲା ।

ବେଲା ବିରସ ମନରେ ବସିଥିଲା । ହସ ଚାପି ରଖି ନ ପାରି ଉଠି ଗଲା । ନୀଳିମା ମଧ୍ୟ ଝରକା ଆଡ଼େ ଚାହିଁ ରହି ନୀରବ ରହିଲା ।

ଆଶୁବାବୁ ହଠାତ୍ ଗାମ୍ଭୀର୍ଯ୍ୟର ସହିତ କହିଲେ—ରୋଗ ଭୋଗି ଭୋଗି ମୁଁ ଅଧା ହୋଇଛି ହରେନ, ଆଉ ଖୁଣି ନାହିଁ । ଦେଖିଲ ନାହିଁ ଝିଅପିଲାଗୁଡ଼ାଙ୍କୁ କେପରି କଷ୍ଟ ଲାଗିଲା । ଜଣେ ସହ୍ୟ କରି ନ ପାରି ଉଠିଗଲା । ଆଉ ଜଣେ ରାଗରେ ମୁହଁ ଫୁଲାଇ ସେଆଡ଼କୁ ଚାହିଁ ରହିଛନ୍ତି ।

ହରେନ୍ଦ୍ର କହିଲା—ଖୁଣି ନାହିଁ ଆଶୁବାବୁ । ବରଂ ବସନ୍ତର ମହିମା କୀର୍ତ୍ତନ କରୁଛି ମାତ୍ର । ଖୁଣ୍ଟାଖୁଣ୍ଟିର କୁପ୍ରଭାବ କେବଳ ଆମ ଭଳି ନର-ଜାତିକୁ ହିଁ ବିପନ୍ନ କରେ । ଆପଣଙ୍କୁ କିନ୍ତୁ ସ୍ପର୍ଶ କରିପାରେ ନାହିଁ । ଅତଏବ ଚିର ଉନ୍ନତ ହିମାଚଳ ଭଳି ଏ ଦେହ ଆପଣଙ୍କର ଅକ୍ଷୟ ହୋଇ ରହିଥାଉ । ଝିଅପିଲାମାନେ ନିଃଶଙ୍କ ହୋଇ ପାରନ୍ତି । ପ୍ରାପ୍ୟ ଖାଇ ଆସୁଥିବା ମିଷ୍ଟାନ୍ନରୁ ଯେପରି ଜଳବିନ୍ଦୁ ପରିମାଣର ଏତେ ଟିକିଏ ହେଲେ ଆଜି ଏହି ଇତର ଲୋକ ଦୁଇଟାଙ୍କ ଭାଗ୍ୟକୁ କମ ନ ହୁଏ ।

ନୀଳିମା ମୁହଁ ଟେକି ହସିଲା । କହିଲା, ବର୍ତ୍ତମାନଙ୍କର ସ୍ତୁତି କରିବା ତ ଆବହମାନ କାଳରୁ ଚାଲି ଆସିଛି । ସେଇଟା ହିଁ ନିର୍ଦ୍ଦିଷ୍ଟ ଧାରା, ଏବଂ ତହିଁରେ ତୁମେ ହରେନ୍ଦ୍ର ସିଦ୍ଧହସ୍ତ । କିନ୍ତୁ ଆଜି ଟିକିଏ ନିୟମର ବ୍ୟତିକ୍ରମ କରିବାକୁ ପଡ଼ିବ । ଆଜି ଶ୍ରେଷ୍ଠଙ୍କୁ ଖୋସାମତ୍ ନ କରିଲେ ଇତର ଜନଙ୍କ ଭାଗ୍ୟରେ ମିଷ୍ଟାନ୍ନର ଅଙ୍କ ଏକବାରେ ଶୂନ୍ୟ ହୋଇ ପଡ଼ିବ ।

ବେଲା ବାରଣ୍ଡାରୁ ଫେରି ଆସି ପୁଣି ବସିଲା ।

ହରେନ୍ଦ୍ର ପ୍ରଶ୍ନ କଲା—କାହିଁକି ନୁଆ'ଉ ?

ଗଭୀର ସ୍ନେହରେ ନୀଳିମାର ଆଖି ସଜଳ ହୋଇ ଉଠିଲା । କହିଲା, ଏପରି ମିଠା ମିଠା କଥା ଅନେକ ଦିନରୁ ଶୁଣିନାହିଁ ଭାଇ, ସେଥିପାଇଁ ଶୁଣିବାକୁ ଟିକିଏ ଲୋଭ ହେଉଛି ।

: ତେବେ ଆରମ୍ଭ କରିବି ନା କ'ଣ ?

: ଅଚ୍ଛା ବର୍ତ୍ତମାନ ଥାଉ । ତୁମେ ସେ ଘରକୁ ଯାଇ ଲୁଗା ବଦଳାଅ । ମୁଁ ଆଉ ଗୋଟାଏ ଜାମା ପଠାଇ ଦେଉଛୁ ।

: କିନ୍ତୁ ଲୁଗା ପାଲଟି ସାରିଲା ପରେ ?

ନୀଳମା ହସି ହସି କହିଲା—ତାପରେ ଚେଷ୍ଟା କରି ଦେଖିବ ଇତରଜନଙ୍କ ଭାଗ୍ୟରେ ଯଦି କେଉଁଠାରୁ କିଛି ଆଣି ଜୁଟାଇ ଦେଇ ପାରେ ।

ହରେନ୍ଦ୍ର କହିଲା—କଷ୍ଟ କରି ଚେଷ୍ଟା କରିବାକୁ ପଡ଼ିବ ନାହିଁ ନ୍ଆ'ଉ, କେବଳ ଥରଟିଏ ଆଖି ମେଲି ଚାହିଁଲେ ହେଲା । ଆପଣଙ୍କର କରୁଣା ଦୃଷ୍ଟି ଯେଉଁଠାରେ ପଡ଼ିବ ସେହିଠାରେ ହିଁ ଅନ୍ନର ଭଣ୍ଡାର ଉଚ୍ଛୁଳି ଉଠିବ । ଚାଲ ଅଜିତ; ଆଉ ଭାବନା ନାହିଁ । ଆମେ ଏ ଭିତରେ ଓଦା ଲୁଗା ବଦଳାଇ ଆସିବା କହି ସେ ଅଜିତର ହାତ ଧରି ଟାଣି ଟାଣି ପାଖ ଘରକୁ ଚାଲିଗଲା ।

ଅଜିତ କହିଲା—ବର୍ଷା କମିବାର ତ କୌଣସି ଲକ୍ଷଣ ନାହିଁ ।

ହରେନ୍ଦ୍ର କହିଲା ନାହିଁ । ଅତଏବ ପୁଣି ଦୁଇଜଣଙ୍କୁ ସେହି ଭଙ୍ଗା ଛତାଟି ତଳେ ସମାନାଧିକାର ସହିତ ସଭ୍ୟତାକୁ ପ୍ରମାଣ କରିବା ପାଇଁ ଅନ୍ଧକାର ରାସ୍ତାରେ ଚାଲି ଆଶ୍ରମରେ ପହଞ୍ଚିବାକୁ ପଡ଼ିବ । ଅବଶ୍ୟ ତାପରର ଚିନ୍ତା ନାହିଁ । କାରଣ ତାହା ଏଠାରେ ସମାପ୍ତ କରି ନେଇଛେ । ସୁତରାଂ ଆଉ ଥରେ କେବଳ ଓଦା ଲୁଗାକୁ ପାଲଟି କରି ଯାଇ ଶୋଇ ପଡ଼ିବାକୁ ହେବ ।

ଆଶୁବାବୁ କହିଲେ—ତେବେ ତୁମେ ଦୁହେଁ ପେଟ ପୂରାଇ ଖାଇ ନେଲ ନାହିଁ କାହିଁକି ?

ହରେନ୍ଦ୍ର କହି ଉଠିଲା—ନା, ଥାଉ । ସେଥିରେ କ'ଣ ଅଛି । ଆପଣ ବ୍ୟସ୍ତ ହେବା ଦରକାର ନାହିଁ ।

ନୀଳମା ପ୍ରଥମେ ଖିଲଖିଲ ହୋଇ ହସି ଉଠିଲା । ପରେ ଅନୁଯୋଗ କଣ୍ଠରେ କହିଲା—ଶୁଣ ଦଅରଟି ମୋର, ମିଛଟାରେ କାହିଁକି ରୋଗୀ ଲୋକଟିର ଉତ୍କଣ୍ଠା ବଢ଼ାଉଛ ? ତାପରେ ଆଶୁବାବୁଙ୍କୁ ଲକ୍ଷ୍ୟ କରି କହିଲା—ସେ ସନ୍ନ୍ୟାସୀ ଲୋକ, ବୈରାଗୀ ଗିରିରେ ପାକଳ ହୋଇ ଗଲେଣି, ତେଣୁ ଖାଇବା ଦଉରୁ ସେମାନଙ୍କର ଯୁକ୍ତି କେହି ଦେଖି ପାରିବେ ନାହିଁ । ଭାବନା କେବଳ ଅଜିତ ବାବୁଙ୍କ ପାଇଁ । ଏମାନଙ୍କ ସଂସର୍ଗରେ ଆସି

ଏବେ ଶୀଘ୍ର ତାଙ୍କର ପରିପକ୍ୱତା ଆସି ପାରି ନାହିଁ । ତାହା ତାଙ୍କର ଆଜିକାର ଖାଇବା ଦେଖିଲେ ହିଁ ଜଣା ପଡ଼ିଯାଏ ।

ହରେନ୍ଦ୍ର କହିଲ—ବୋଧହୁଏ ମନ ଭିତରେ ପାପ ଅଛି । ଧରା ପଡ଼ିଯିବ ଦିନେ ।

ଅଜିତ ଲଜ୍ଜାରେ ଲାଲ ପଡ଼ିଯାଇ କହିଲା—ଆପଣ କ'ଣ ଯେ କହନ୍ତି ହରେନ୍ଦ୍ର ବାବୁ ?

ନୀଳିମା ମୁହୂର୍ତ୍ତକ ପାଇଁ ତା ମୁହଁକୁ ଚାହିଁରହି କହିଲା—ମୋ ସୁନା ଦିଅରଟିର ମୁହଁରେ ଫୁଲଚନ୍ଦନ ପଡ଼ୁ । ତାହା ଯେପରି ହୁଏ । ତାଙ୍କ ମନ ଭିତରେ ଟିକିଏ ପାପ ଥାଉ ଏବଂ ସେ ଦିନେ ଧରାପଡ଼ନ୍ତୁ ଆଉ ମୁଁ ଏଥିପାଇଁ କାଳୀଘାଟ ଯାଇ ଭୋଗ କରି ଆସେ ।

: ତାହାହେଲେ ଆୟୋଜନ କରନ୍ତୁ ।

ଅଜିତ ଅତ୍ୟନ୍ତ ବିରକ୍ତ ହୋଇ କହିଲା—ଆପଣ କ'ଣ ଗୁଡ଼ାଏ ବାଜେ କଥା ଏଣୁତେଣୁ ଗପୁଛନ୍ତି ହରେନ୍ଦ୍ର ବାବୁ ? ଶୁଣିବାକୁ ଭାରି ଖରାପ ଲାଗୁଛି ।

ହରେନ୍ଦ୍ର ଆଉ କଥା କହିଲା ନାହିଁ । ଅଜିତ ମୁହଁକୁ ଚାହିଁ ନୀଳିମା ଯଦିଓ କୌତୂହଳୀ ହୋଇ ଉଠିଲା । ତଥାପି ଚୁପ୍ ହୋଇ ରହିଲା ।

ଅଜିତର କଥା ଚାପା ପଡ଼ିଯିବାର କିଛି ସମୟ ପରେ ହରେନ୍ଦ୍ର ନୀଳିମାକୁ ଲକ୍ଷ୍ୟ କରି କହିଲା—ଆମମାନଙ୍କ ଆଶ୍ରମ ଉପରେ କମଲଙ୍କର ଭାରି ରାଗ । ଆପଣଙ୍କର ବୋଧହୁଏ ମନେଥିବ ନା'ଉ ?

ନୀଳିମା ମୁଣ୍ଡ ହଲାଇ କହିଲା—ଅଛି । ବର୍ତ୍ତମାନ କ'ଣ ତାର ସେହି ଧାରଣା ରହିଛି ?

: ଠିକ୍ ସେହିପରି ଧାରଣା ନୁହେଁ ବରଂ ଆହୁରି ଟିକିଏ ବଢ଼ି ଯାଇଛି । ଏତିକି ମାତ୍ର ଯାହା ପ୍ରଭେଦ । କେବଳ ଆମ ଉପରେ ନୁହେଁ, ସବୁବିଧ ଧର୍ମ ପ୍ରତିଷ୍ଠାନ ପ୍ରତି ତାର ଅତ୍ୟନ୍ତ ବିରାଗ । ବ୍ରହ୍ମଚର୍ଯ୍ୟ କିମ୍ବା ଈଶ୍ୱରଙ୍କ ସମ୍ବନ୍ଧରେ ଆଲୋଚନା ହେବା ଶୁଣିବା ମାତ୍ରେ ହିଁ ଅହେତୁକ ଭକ୍ତି ଓ ପ୍ରୀତିର ପ୍ରାବଲ୍ୟ ହେତୁ ସେ ଅଗ୍ନିବତ୍ ହୋଇ ଉଠୁଛନ୍ତି । ମିଜାଜ୍ ଭଲ ଥିଲେ ବୁଢ଼ା, ପିଲାଠାରୁ ମୂର୍ଖଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ପିଲାଖେଳ ଦେଖି କୌତୁକ ବୋଧ କରି ପାରିବେ, ଚମତ୍କାର !

ବେଲା ଚୁପ୍ ହୋଇ ଶୁଣୁଥିଲା । କହିଲା—ଈଶ୍ୱର ତାଙ୍କ ନିକଟରେ ପିଲାଖେଳ ? ଆଉ ତାଙ୍କରି ସଙ୍ଗେ ମୋର ତୁଳନା କରୁଥିଲେ ଆଶୁବାବୁ ? ଏହା କହି ସେ ପର୍ଯ୍ୟାୟକ୍ରମରେ ସମସ୍ତଙ୍କ ମୁହଁକୁ ଚାହିଁଲା । କିନ୍ତୁ କାହା ନିକଟରୁ କୌଣସି ଉତ୍ସାହ ପାଇ ପାରିଲା ନାହିଁ । ତାହାର ତୀକ୍ଷ୍ଣ ସ୍ୱର ଏମାନଙ୍କ କାନକୁ ଗଲା କି ନାହିଁ କିଛି ବୁଝା ପଡ଼ିଲା ନାହିଁ ।

ହରେନ୍ଦ୍ର କହିବାକୁ ଲାଗିଲା—ଅଥଚ ନିଜ ଭିତରେ ଏପରି ଏକ ନିର୍ଦ୍ଵନ୍ଦ୍ଵ, ନୀରବ ମିତାଚାର ଓ ନିର୍ବିଶେଷ ତିତିକ୍ଷା ରହିପାରିଛି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଆପଣଙ୍କର ଶିବନାଥ ଘଟଣାଟା ମନେ ଅଛି ଆଶୁବାବୁ ? ସେ ଆପଣଙ୍କର କିଏ ? ତଥାପି ଏତେବଡ଼ ଅନ୍ୟାୟ ସହ୍ୟ କରି ହେଲା ନାହିଁ, ଦଣ୍ଡ ଦେବାପାଇଁ ଆକାଂକ୍ଷା ମନ ଭିତରେ ନିଆଁ ଭଳି ଜଳି ଉଠିଲା । କିନ୍ତୁ କମଲ କହିଲେ—ନା । ତାଙ୍କର ସେଦିନର ମୁହଁର ଚେହେରା ମୋର ସ୍ପଷ୍ଟ ମନେ ଅଛି । ସେହି "ନା" ଭିତରେ ବିଦ୍ଵେଷ ନାହିଁ, ଜ୍ଵାଳା ନାହିଁ, ଉପରୁ ହାତ ବଢ଼ାଇ ଦାନ କରିବାର ଶ୍ଳାଘ୍ୟ ନାହିଁ, କ୍ଷମତାର ଦମ୍ଭ ନାହିଁ, ବରଂ ଦାକ୍ଷିଣ୍ୟ ଯେପରି ଅବିକଳ କରୁଣାରେ ଭରପୂର ହୋଇ ରହିଥାଏ । ଶିବନାଥ ଯେତେ ଅନ୍ୟାୟ କରିଥାନ୍ତୁ, ମୋ ପ୍ରସ୍ତାବରେ କମଲ କେବଳ ଚମକି ଉଠି କହିଲେ—ଛିଃ, ଛିଃ, ନା, ନା, ସେପରି ହେବ ନାହିଁ । ଅର୍ଥାତ୍ ଦିନେ ସେ ଯାହାକୁ ଭଲ ପାଇଥିଲେ, ତାହାପ୍ରତି ନିଷ୍ଠୁର ହେବାପାଇଁ ସେ ଭାବି ପାରିଲେ ନାହିଁ ଏବଂ ସମସ୍ତଙ୍କ ଆଖିର ଆଢ଼ୁଆଳରେ ତାଙ୍କର ସବୁ ଦୋଷକୁ ନୀରବରେ ନିଃଶେଷ କରି ପୋଛି ଫିଙ୍ଗି ଦେଲେ । ଚେଷ୍ଟାକରି ନୁହେଁ, ଏହା ତାଙ୍କର ଚଞ୍ଚଳତା ନୁହେଁ କିମ୍ବା ଶୋକାଚ୍ଛନ୍ନ ହା-ହୁତାଶ ନୁହେଁ । ଖୁବ୍ ସହଜ ଭାବରେ ଯେପରି ପାହାଡ଼ରୁ ଜଳର ଧାରା ଅବଲୀଳାକ୍ରମେ ତଳକୁ ଗଡ଼ି ବହି ଆସେ ଠିକ୍ ସେହିପରି ।

ଆଶୁବାବୁ ନିଃଶ୍ଵାସ ଛାଡ଼ି କେବଳ କହିଲେ—ସତକଥା ।

ହରେନ୍ଦ୍ର କହିବାକୁ ଲାଗିଲା—ମୋର କିନ୍ତୁ ସବୁଠାରୁ ଖରାପ ଲାଗେ ସେ ଯେତେବେଳେ କେବଳ ମୋର ଆଇଡ଼ିଆଲଟାକୁ ନୁହେଁ, ମୋର ଧର୍ମ, ଐତିହ୍ୟ, ରୀତି, ନୈତିକ-ଅନୁଶାସନ, ସବୁକିଛିକୁ ଉପହାସ କରି ଉଡ଼ାଇ ଦେବାକୁ ଚାହିଁଲେ । ବୁଝୁଛି, ତାଙ୍କ ଦେହରେ ଯେପରି ଉତ୍କଟ ବିଦେଶୀ ରକ୍ତ, ମନ ମଧ୍ୟରେ ସେହିପରି ଉଗ୍ର ପରଧର୍ମର ଭାବ ପ୍ରବାହିତ ହୋଇ ଚାଲିଛି, ତଥାପି ତାଙ୍କ ମୁହଁ ଆଗରେ ଠିଆ ହୋଇ ଜବାବ ଦେଇପାରିଲି ନାହିଁ । ସେ କହିବାବେଳେ ତାଙ୍କ କଥାରେ ଏପରି କ'ଣ ଗୋଟାଏ ଦୃଢ଼ତା ଫୁଟି ବାହାରି ପଡ଼େ ଯାହାଦ୍ଵାରା ମନେହୁଏ ସେ ଯେପରି ଜୀବନର ଅର୍ଥ ଖୋଜି ପାଇଛନ୍ତି । ଶିକ୍ଷାଦ୍ଵାରା ନୁହେଁ, ଅନୁଭବ ଉପଲବ୍ଧି ଦ୍ଵାରା ନୁହେଁ, ଯେପରି ଆଖିଦ୍ଵାରା ଅର୍ଥଟାକୁ ସିଧା ଦେଖି ପାରନ୍ତି ।

ଆଶୁବାବୁ ଖୁସି ହୋଇ କହିଲେ—ଠିକ୍ ମୋର ମଧ୍ୟ ଏପରି ଅନେକବାର ମନେ ହୋଇଛି । ସେଥିପାଇଁ ତାର ଯେପରି କଥା ସେହିପରି କାର୍ଯ୍ୟ । ସେ ଯଦି ମିଛ କୁହିଥାଏ, ତେବେ ସେହି ମିଥ୍ୟାର ମଧ୍ୟ ପୌରୁଷ ଅଛି । ଟିକିଏ ଅଟକିଯାଇ କହିଲେ, ଦେଖ ହରେନ, ସବୁଠାରୁ ଭଲ ହୋଇଛି ଯେ ପାଷାଣ୍ଡଟା ଚାଲିଯାଇଛି । ତାକୁ ସେ ଚିରଦିନ ଆଚ୍ଛନ୍ନ କରି ରହିଥିଲେ ନ୍ୟାୟର ମର୍ଯ୍ୟାଦା ରହି ନ ଥାନ୍ତା । ବଲୁଆ ଦେଶରେ ମୋତିମ ଲ ଭଳି ଅପଚୟ ହୋଇଥାନ୍ତା ।

ହରେନ୍ଦ୍ର କହିଲା—ପୁଣି ଅନ୍ୟ ଦିଗରେ ଏପରି ମାୟା ମମତା ଯେ ଏଭଳି ନୂଆଁ'ଉଙ୍କ ବ୍ୟତୀତ ଆଉ କାହାଠାରେ ଥିବା ମୁଁ ଦେଖିପାରି ନାହିଁ । ସେବା କରିବାରେ ଯେପରି ସାକ୍ଷାତ୍ ଲକ୍ଷ୍ମୀ । ହୁଏତ ପୁରୁଷମାନଙ୍କ ଅପେକ୍ଷା ଅନେକ ଦିଗରୁ ଅନେକ ବଡ଼ ବୋଲି ନିଜକୁ ସେମାନଙ୍କ ନିକଟରେ ଏପରି ନ୍ୟୁନ୍ୟ କରିପକାନ୍ତି ଯେ ତାହା ଏକ ଆଶ୍ଚର୍ଯ୍ୟକର ବ୍ୟାପାର ହୋଇଉଠେ; ଯେତେବେଳେ ତାଙ୍କ ପାଦତଳେ ପଡ଼ିଯିବାକୁ ମନ ଛଟପଟ ହୁଏ ।

ନୀଳିମା ହସି ହସି କହିଲା—ତୁମେ ବୋଧହୁଏ ଆରଜନ୍ମରେ କେଉଁ ରାଜରାଣୀର ଭାଟ ଥିଲ । ତେଣୁ ଏ ଜନ୍ମରେ ସେହି ସଂସ୍କାର ତୁମଠାରୁ ଯାଇ ନାହିଁ । ପିଲାଙ୍କୁ ପାଠ ପଢ଼ାଇବା ଛାଡ଼ି ଏ ବୃତ୍ତି ଧରିଲେ ବହୁତ ଲାଭ ହୋଇପାରିବ ।

ହରେନ୍ଦ୍ର ମଧ୍ୟ ହସିଲା । କହିଲା—କ'ଣ କରିବ ନୂଆଁ'ଉ । ମୁଁ ନିହାତି ସରଳ ସାଦାସିଧା ମଣିଷ । ଯାହା ଭାବେ ତାହା କହି ପକାଏ । ଆଚ୍ଛା ପଚାରନ୍ତୁ ତ ଅଜିତ ବାବୁଙ୍କୁ ସେ ବର୍ତ୍ତମାନ କହିପାରିବେ । ଯାହା ହେଉ, ବଞ୍ଚି ରହିଲେ ଦିନେ କିନ୍ତୁ ଦେଖି ପାରିବେ···

ଅଜିତ ନମ୍ର କଣ୍ଠରେ କହି ଉଠିଲା—ଆଃ କ'ଣ କହୁଛନ୍ତି ହରେନ୍ ବାବୁ । ଆପଣଙ୍କ ଆଶ୍ରମରୁ ଦେଖୁଛି ଦିନେ ମୋତେ ପଳେଇଯିବାକୁ ପଡ଼ିବ ।

: ଦିନେ ଯେ ପଳେଇବେ ତାହା ମୁଁ ଭଲଭାବରେ ଜାଣେ । କିନ୍ତୁ ଏଇ କେତୋଟା ଦିନ ଟିକିଏ ସହ୍ୟ କରି ରହନ୍ତୁ ।

: ତାହା ହେଲେ କହନ୍ତୁ ଯାହା ଆପଣଙ୍କର ଇଚ୍ଛା ହେଉଛି । ମୁଁ ଉଠିଯାଉଛି ।

ନୀଳିମା କହିଲା—ଆଚ୍ଛା ଭାଇ, ତୁମ ଆଶ୍ରମଟାକୁ ପାଣିଣ କରିଦେଉନାହଁ, ତାହା ହେଲେ ତୁମେ ବଞ୍ଚିଯିବ ଆଉ ପିଲା ଗୁଡ଼ାକ ମଧ୍ୟ ବଞ୍ଚିଯିବେ ।

ହରେନ୍ଦ୍ର କହିଲା – ପିଲାଗୁଡ଼ାକ ବଞ୍ଚିଯାଇ ପାରନ୍ତି ନୂଆଁ'ଉ –କିନ୍ତୁ ଆମର ବଞ୍ଚିବାର ଆଶା ନାହିଁ । ଅନ୍ତତଃ ପକ୍ଷରେ ଅକ୍ଷୟଙ୍କ ବଞ୍ଚି ପାରିବ ନାହିଁ । ସେ ଆମକୁ ଯମ ଘରକୁ ପଠାଇଲେ ଯାଇ ଛାଡ଼ିବ ।

ଆଶୁବାବୁ କହିଲେ—ଦେଖୁଛି ତାହାହେଲେ ଅକ୍ଷୟକୁ ତୁମେମାନେ ଭୟ କରୁଛ ?

: ଆଜ୍ଞା, କରୁ । ବିଷ ଖାଇବା ସହଜ । କିନ୍ତୁ ତାହାର ବିଦ୍ରୂପକୁ ସହ୍ୟ କରିବା ଅସାଧ୍ୟ । ଇନ୍ଫ୍ଲୁଏଞ୍ଜାରେ ଏତେ ଲୋକ ମରିଗଲେ କିନ୍ତୁ ସେ ତ ମରିଲା ନାହିଁ । ସୁନ୍ଦର ଭାବରେ ସ୍ଥାନ ଛାଡ଼ି ପଳେଇଗଲା ।

ସମସ୍ତେ ହସି ଉଠିଲେ । ନୀଳିମା କହିଲା—ଅକ୍ଷୟ ବାବୁଙ୍କ ସହିତ କଥା ହୋଇ ନାହିଁ ସତ, ଏଥର କିନ୍ତୁ ତୁମମାନଙ୍କ ପାଇଁ ତାଙ୍କ ଆଗକୁ ଯାଇ ତାହାର କ୍ଷମା ମାଗିନେବି । ଭିତରେ ଭିତରେ ଜଣା ପଡ଼ୁ ତୁମେମାନେ ଯେ ଏକ ପ୍ରକାର କୋଇଲା ପାଲଟି ଗଲଣି ।

ହରେନ୍ଦ୍ର କହିଲ—ଆମେମାନେ ଧରା ପଡ଼ି ଯାଇଛୁ ନା'ଁଉ । ଆପଣ କିନ୍ତୁ କଳାପୋଡ଼ାର ଊର୍ଦ୍ଧ୍ୱରେ । ବିଧାତା କଅଁ କେବଳ ଆମମାନଙ୍କ ପାଇଁ ସୃଷ୍ଟି କରିଥିଲେ । ଆପଣମାନେ କିନ୍ତୁ ତାଙ୍କ ରାଜ୍ୟର ବାହାରେ ।

ନୀଳିମା ଲଜ୍ଜାରେ ଲାଲ ପଡ଼ିଯାଇ କହିଲ—ତାହା ନୁହେଁ ତ କ'ଣ ?

ବେଲା କହିଲ—ପ୍ରକୃତରେ ତ ତାହା ହିଁ ।

ମୁହୂର୍ତ୍ତେ ସମସ୍ତ ନୀରବରେ କଟିଲ । ତାପରେ ଅଜିତ କହିଲ—ସେଦିନ ଠିକ୍ ଏଥି ନିମନ୍ତେ ଗୋଟିଏ ଚମତ୍କାର ଗଳ୍ପ ପଢ଼ିଛି । ଆଶୁବାବୁଙ୍କ ଆଡ଼େ ଚାହିଁ ପ୍ରଶ୍ନକଲା—ଆପଣ ପଢ଼ି ନାହାଁନ୍ତି ?

: କାହିଁ ! ମନେ ପଡ଼ୁନି ତ ।

: ଯେଉଁ ମାସିକ ପତ୍ର ଗୁଡ଼ାକ ଆପଣଙ୍କର ବିଲାତରୁ ଆସେ । ତହିଁରୁ ଗୋଟାକରେ ଅଛି । ଫରାସୀ ଗଳ୍ପର ଅନୁବାଦ । ସ୍ତ୍ରୀ ଲୋକଙ୍କର ଲେଖା । ବୋଧହୁଏ ଡାକ୍ତର ହେବେ । ସାମାନ୍ୟ ଭାବରେ ନିଜର ପରିଚୟ ଦେବାକୁ ଯାଇ କହିଛନ୍ତି ଯେ—ସେ ଏଇମାତ୍ର ଯୌବନ ପାର ହୋଇ ପ୍ରୌଢ଼ତ୍ୱରେ ପାଦ ଦେଇଛନ୍ତି । ଏଇ ତ ଆଗରେ ଥାକରେ ରହିଛି କହି ସେ ସେଲଫରୁ ବହିଟା ଭିଡ଼ି ଆଣିଲ ।

ଆଶୁବାବୁ ପ୍ରଶ୍ନ କଲେ ଗପର ନାଆଁଟା କ'ଣ ?

ଅଜିତ କହିଲ—ନାମଟି ବଡ଼ ଅଦ୍ଭୁତ—"ଯେବେ ମୁଁ ଯେତେବେଳେ ନାରୀ ଥିଲି ।"

ବେଲା କହିଲ—ତା ମାନେ ? ଲେଖିକା କ'ଣ ବର୍ତ୍ତମାନ ପୁରୁଷ ହୋଇଗଲେ ନା କ'ଣ ?

ଅଜିତ କହିଲ—ଲେଖିକା ହୁଏତ ଆପଣା କଥା କହି ପକାଇଛନ୍ତି, ବୋଧ ହୁଏ କେତେ ଡାକ୍ତର ବୋଲି ନାରୀ ଦେହର କ୍ରମ ବିବର୍ତ୍ତନର ଯେଉଁ ଛବି ଦେଇଛନ୍ତି ତାହା ସ୍ଥାନେ ସ୍ଥାନେ ରୁଚିକୁ ଆଘାତ କରେ ଯଥା ···

ନୀଳିମା ହଠାତ୍ ବାଧା ଦେଇ କହି ଉଠିଲ—ଯଥାର ଦରକାର ନାହିଁ ଅଜିତ୍ ବାବୁ, ସେ କଥା ଥାଉ ।

ଅଜିତ କହିଲ—ଥାଉ । କିନ୍ତୁ ଅନ୍ତରର ଅର୍ଥାତ୍ ନାରୀ ହୃଦୟର ଯେଉଁ ରୂପଟି ଆଙ୍କିଛନ୍ତି ତାହା ଠିକ୍ ମଧୁର ନ ହେଲେ ମଧ୍ୟ ବିସ୍ମୟକର ।

ଆଶୁବାବୁ କୌତୂହଳୀ ହୋଇ ଉଠିଲେ । କହିଲେ—ବେଶ୍ କଥା ତ ଅଜିତ୍ । କିଛିଏ କିଛି ବାଦ୍ ଦେଇ ତୁମେ ପଢ଼ିଦିଅ, ଶୁଣିବା । ବର୍ଷା ତ କମିନାହିଁ—ରାତ ମଧ୍ୟ ସେପରି ବେଶୀ ହୋଇ ନାହିଁ ।

: ବାଦ୍ ଦେଇ ବି ପଢ଼ିଲେ ଚଳିବ । ଗଳ୍ପଟା ବଡ଼ । ଇଚ୍ଛା ହେଲେ ପୁରାଟା ପରେ ପଢ଼ି ପାରିବେ ।

ହେଲା କହିଲ—ପଢ଼ନ୍ତୁ ନା ଶୁଣିବା । ଅନ୍ୟତଃ ସମୟଟା ତ କଟିଯିବ ।

ସାଧାରଣତଃ ମାଳମାର ଇଚ୍ଛା ହେଲେ ସେ ଉଠିଯାଇଥାଏ । କିନ୍ତୁ ବର୍ତ୍ତମାନ ଉଠି ଚାଲିଯିବା ପାଇଁ କୌଣସି କାରଣ ନଥିବାରୁ ବାଧ୍ୟ ହୋଇ ବସି ରହିଲ ।

ଆଲୁଅ ଆଗରେ ବହିଟା ଖୋଲି ଧରି ଅଙ୍କିତ କହିଲ—ଆରମ୍ଭରୁ ଟିକିଏ ଭୂମିକା ଅଛି । ତାହା ସଂକ୍ଷେପରେ କହିଦେବା ଆବଶ୍ୟକ । ଯାହାଙ୍କର ଆତ୍ମ କାହାଣୀ ମୁଁ ପଢ଼ୁଛି ସେ ସୁଶିକ୍ଷିତା, ସୁନ୍ଦରୀ ଏବଂ ବଡ଼ ଘରର ଝିଅ । ଚରିତ୍ର କଳଙ୍କର କ ନାହିଁ ଗଳ୍ପରେ ସ୍ପଷ୍ଟ ଭାବରେ କଛି ଉଲ୍ଲେଖ ନାହିଁ । କିନ୍ତୁ ନିଃସଂଶୟରେ ବୁଝାଯାଇ ପାରେ ଯେ ଦାଗ ଯଦି ଅବା କୌଣସି ସମୟରେ କୌଣସି କାରଣରୁ ଲାଗି ଯାଇଥାଏ ତେବେ ତାହା ଯୌବନର ପ୍ରାରମ୍ଭରୁ—ଅର୍ଥାତ୍ ବାହା ହେବା ପୂର୍ବରୁ ।

ସେଦିନ ତାଙ୍କୁ ଭଲ ପାଇଥିଲେ ଅନେକ । ଜଣେ ସମସ୍ୟାର ସମାଧାନ କରିଲେ ଆତ୍ମହତ୍ୟା କରି, ଆଉ ଜଣେ ଚାଲିଗଲେ ସାଗର ପାର ହୋଇ କ'ନାଡ଼ାକୁ । ଗଲେ ସତ କିନ୍ତୁ ଆଶା ଛାଡ଼ି ପାରିଲେ ନାହିଁ । ଦୂରରେ ରହି ଦୀର୍ଘ ଚିଠି ଲେଖିଛନ୍ତି ସେ ସାଇତି ରଖିଥିଲେ ଗୋଟାଏ ଜାହାଜ ବୋଝାଇ ହୋଇଯାଇ ପାରିବ । ଉତ୍ତରର ଆଶା କରି ନାହାନ୍ତି କମ୍ଭା ଉତ୍ତର ମଧ୍ୟ ପାଇ ନାହାଁନ୍ତି । ପନ୍ଦର ବର୍ଷ ପରେ ପୁଣି ଦେଖା । ଦେଖା ହେବା କ୍ଷଣି ସେ ଯେପରି ହଠାତ୍ ଚମକି ଉଠିଲେ । ଇତି ମଧ୍ୟରେ ଯେ ପନ୍ଦରବର୍ଷ ବିତିଯାଇଛି । ଯାହାକୁ ପଚିଶ ବର୍ଷର ଯୁବତୀ ଦେଖି ବିଦେଶକୁ ଯାଇଥିଲେ ତାର ସେହି ବୟସ ଆଜି ଯେ ଚାଳିଶ ହୋଇଥିବ—ଏପରି ଧାରଣା ତାଙ୍କର ନ ଥିଲା । କୁଶଳ ସମ୍ଭାଷଣ ଅନେକ ହେଲା । ଅଭିଯୋଗ ଓ ଅନୁଯୋଗ ମଧ୍ୟ କମ୍ ହେଲା ନାହିଁ । କିନ୍ତୁ ସେଦିନ ଦେଖା ହୋଇଥିଲେ ଯାହାର ଆଖି କୋଣରୁ ଅଗ୍ନି ଛୁଟୁଥିଲା, ଉନ୍ମତ୍ତ କାମନାର ଝଞ୍ଜାବର୍ତ୍ତରେ ସମସ୍ତ ଇନ୍ଦ୍ରିୟ ଅବରୁଦ୍ଧ ଦ୍ୱାରକୁ ଭାଙ୍ଗି ବାହାରି ଆସିବା ପାଇଁ ଇଚ୍ଛା କରୁଥିଲା ଅଥଚ କିନ୍ତୁ ତାହାର କୌଣସି ଚିହ୍ନ କେଉଁଠାରେ ନାହିଁ । ତାଙ୍କୁ ଯେପରି କେବେ ସ୍ୱପ୍ନରେ ଦେଖିଥିଲା ଭଳି ମନେ ହେଲା ନାହିଁ । ଝିଅମାନେ ଅନ୍ୟ ସବୁଥିରେ ଠକେଇ ଦେଇ ପାରିବେ କିନ୍ତୁ ଏଥିରେ ପାରିବେ ନାହିଁ । ଏହିଠାରୁ ଗଳ୍ପର ଆରମ୍ଭ । ଏହା କହି ସେ ପଢ଼ିବା ପାଇଁ ବହିର ପୃଷ୍ଠାରେ ଝୁଙ୍କି ପଡ଼ିଲା ।

ଆଣ୍ଡ୍ରବାବୁ ବାଧା ଦେଇ କହିଲେ—ନା, ନା ଇଂରାଜୀ ନୁହେଁ ଅଙ୍କିତ; ଇଂରାଜୀ ନୁହେଁ । ତୁମ ମୁହଁରୁ ବଙ୍ଗଳା ଭାଷାରେ ଗଳ୍ପର ଭାବଟିକିକ ଖୁବ୍ ଭଲ ଲାଗିଲା । ତୁମେ ଏଇପରି ଭାବରେ ଗଳ୍ପର ଅବଶିଷ୍ଟ ଅଂଶତକ କହିଯାଅ ।

: ମୁଁ କ'ଣ କହି ପାରିବ ?

: ପାଚ୍ଛବ, ପାଚ୍ଛବ । ଯେଉଁପର ଭାବରେ କହିଗଲ, ସେହିପର ଭାବରେ କହିଗଲ ।

: ହିରେନ୍ଦ୍ରବାବୁଙ୍କ ଭଳି ମୋର ଭାଷା ଜ୍ଞାନ ନାହିଁ । ବଙ୍ଗଳା ଭାଷା ଦ୍ୱାରା ଗଳ୍ପଟା ଯଦି ତ୍ରୁଟି କିଛି ହୋଇପଡ଼େ ତେବେ ତାହା ମୋର ଅକ୍ଷମତା ବୋଲି ଧରିନେବେ । ଏହା କହିସାରି ସେ ଟିକିଏ ଏଣେ ତେଣେ ଚାହିଁ କହିବାକୁ ଲାଗିଲା ।

ଝିଅଟି ଘରକୁ ଫେରି ଆସିଲା । ଲୋକଟିକୁ ସେ ଯେ କୌଣସି ଦିନ ଭଲ ପାଇ ଥିଲା, କିମ୍ବା ପାଇବା ପାଇଁ ଇଚ୍ଛା କରିଥିଲ, ତା ନୁହେଁ—ବରଂ ଏକାନ୍ତ ଭାବେ ଚିରଦିନ ଏହି ପ୍ରାର୍ଥନା କରି ଆସିଛି ଯେ ଈଶ୍ୱର ଯେପରି ଏହି ଲୋକଟିକୁ ମୋହମୁକ୍ତ କରନ୍ତି ଏବଂ ଏହି ନିଷ୍ଫଳ ପ୍ରଣୟର ଦାବିରୁ ତାକୁ ଅବ୍ୟାହତି ଦାନ କରନ୍ତି । ଅସମ୍ଭବ ବସ୍ତୁର ଲୋଭରେ ସେ ଯେପରି ଆଉ ଯନ୍ତ୍ରଣା ନ ପାଏ । ଦେଖାଗଲା, ଏତେଦିନ ପରେ ଭଗବାନ ତାର ସେହି ପ୍ରାର୍ଥନା ହିଁ ମଞ୍ଜୁର କରିଛନ୍ତି । କୌଣସି କଥାବାର୍ତ୍ତା ହେଲା ନାହିଁ । ତଥାପି ନିଃସନ୍ଦେହରେ ବୁଝାଗଲା ଯେ ସେ କାନାଡ଼ାରେ ଥାଉ ବା ନ ଥାଉ ସକାତରରେ ପ୍ରଣୟ ଭିକ୍ଷା ମାଗି ଆଉ ସେ ନିରନ୍ତର କଷ୍ଟ ଭୋଗ କରିବ ନାହିଁ କିମ୍ବା ତାକୁ ମଧ୍ୟ ଦୁଃଖ ଦେବ ନାହିଁ । ଦୁଃସାଧ୍ୟ ସମସ୍ୟାର ଆଜି ଶେଷ ମୀମାଂସା ହୋଇଯାଇଛି । ଚିରଦିନ 'ନା' କହି ଝିଅଟି ଅସ୍ୱୀକାର କରି ଆସିଛି, ଆଜି ମଧ୍ୟ ତାହାର ବ୍ୟତିକ୍ରମ ହୋଇ ନାହିଁ । କିନ୍ତୁ ସେହି ଶେଷ "ନା" ଆଜି କିନ୍ତୁ ଆସିଲା ବିପରୀତ ଦିଗରୁ । ଦୁହିଁଙ୍କ ଭିତରେ ଯେଉଁ ଏତେ ବଡ଼ ବିଭେଦ ଥିଲା, ତାହା ଝିଅଟି ସ୍ୱପ୍ନରେ ସୁଦ୍ଧା ଭାବି ପାରି ନ ଥିଲା । ମାନବର ଲୋଲୁପ ଦୃଷ୍ଟି ଚିରଦିନ ତାକୁ ବିବ୍ରତ କରିଛି, ଲଜ୍ୟାରେ ପୀଡ଼ିତ କରିଛି । ଆଜି ଠିକ୍ ସେହି ଦିଗରୁ ଯଦି ତାକୁ ମୁକ୍ତି ମିଳି ପାରିଥାଏ, କିନ୍ତୁ ଶାରୀରିକ ଧର୍ମ ହେତୁ ଆଜି ତାର ଯୌବନ ଯଦି ପୁରୁଷର ଉଦ୍ଦୀପ୍ତ କାମନା, ଉନ୍ମାଦ ଆସକ୍ତିର ଗତିରୋଧ କରି ପାରିଥାଏ ତେବେ ସେଥିପାଇଁ ତାର ଅଭିଯୋଗ କରିବାର କ'ଣ ଅଛି ? ଅଥଚ ଘରକୁ ଫେରିବା ବାଟରେ ସମସ୍ତ ବିଶ୍ୱ ସଂସାର ଆଜି ଯେପରି ତା ଆଖି ଆଗରେ ସମ୍ପୂର୍ଣ୍ଣ ଅପରିଚିତର ମୂର୍ତ୍ତି ନେଇ ଦେଖାଗଲା । ଭଲ ପାଇବା ନୁହେଁ, ଆତ୍ମାର ଏକାନ୍ତ ମିଳନ ପାଇଁ ବ୍ୟାକୁଳତା ହେତୁ ନୁହେଁ—ବରଂ ଏସବୁ ତାହା ନିକଟରେ ଅନ୍ୟକଥା । ବଡ଼ କଥା ହେଲା—ଯାହା ବଡ଼ ନୁହେଁ, ଯାହା ରୂପକ, ଯାହା ଅସୁନ୍ଦର, ଯାହା ଅଶୁଭ, ଯାହା ଅତ୍ୟନ୍ତ କ୍ଷଣସ୍ଥାୟୀ, ସେହି କୁତ୍ସିତ ପାଇଁ ହିଁ ନାରୀର ଅନ୍ତଜାତ ମନ ତଳେ ଯେଉଁ ଆସନ ପାତି ହୋଇ ରହିଥିଲା, ସୁରୂପର ବିମୁଖତା ଯେ ତାହାକୁ ଏପରି ନିର୍ମମ ଭାବରେ ଆହତ କରିପାରେ ଗତ କାଲି ସୁଦ୍ଧା ସେ କ'ଣ ଏହା ଜାଣି ପାରି ଥିଲା କି ?

ହିରେନ୍ଦ୍ର କହିଲେ—ଅଜିତ ତ ବେଶ କହି ପାରନ୍ତି । ଦେଖୁଛି ଗଳ୍ପଟା ଖୁବ୍ ମନଦେଇ ପଢ଼ିଛନ୍ତି ।

ସ୍ତ୍ରୀ ଲୋକମାନେ ଚୁପ୍ ହୋଇ ବସିି ରହିଲେ । କୌଣସି ମନ୍ତବ୍ୟ ପ୍ରକାଶ କରିଲେ ନାହିଁ ।

ଆଶୁବାବୁ କହିଲେ —ହୁଁ, ତାପରେ ଅଜିତ ବାବୁ ?

ଅଜିତ କହିବାକୁ ଲାଗିଲା—ମହଲାଟିର ହଠାତ୍ ମନେ ପଡ଼ିଗଲା ଯେ କେବଳ ଏହି ଲୋକଟି ନୁହେଁ । ବହୁ ଲୋକ ବହୁଦିନ ଧରି ତାକୁ ଭଲ ପାଇ ବସିଛନ୍ତି । ପ୍ରାର୍ଥନା କରିଛନ୍ତି, ଏବଂ ପଦେ ମାତ୍ର ହସ ହସ କଥା ପାଇଁ ସେମାନଙ୍କର ବ୍ୟାକୁଳତାର ଶେଷ ନ ଥିଲା । ପ୍ରତିଦିନର ପ୍ରତି ପଦକ୍ଷେପ ହିଁ ଯେ ସେମାନଙ୍କର ପଦଚିହ୍ନ ହୋଇ ଆସି ଦେଖା-ଦେଉଥିଲା ତାହାର କୌଣସି ହିସାବ ନ ଥିଲା । ଆଜି ସେମାନେ ଗଲେ କୁଆଡ଼େ ? କେଉଁଆଡ଼େ ତ ଯାଇ ନାହାନ୍ତି । ଏବେ ଘୁଞ୍ଚା ମଝିରେ ମଝିରେ ସେମାନେ ଆଖିରେ ପଡ଼ନ୍ତି । ତେବେ କ'ଣ ତା ନିଜର କଣ୍ଠସ୍ୱର ବିଗିଡ଼ି ଯାଇଛି ? ତା ଆପଣା ହସର ରୂପ ବଦଳି ଯାଇଛି ? ଏଇତ ସେଦିନ, ଦଶ ପନ୍ଦର ବର୍ଷ ହେବ ? କେତେ ଦିନ ଅବା ? ଏଇ ମଝିରେ କ'ଣ ସେ ସବୁ ହରାଇ ବସିଲା ?

ଆଶୁବାବୁ ହଠାତ୍ କହି ଉଠିଲେ—ଯାଇ ନାହିଁ କିଛି ଅଜିତ । ହୁଏତ ଯାଇଛି କେବଳ ତାର ଯୌବନ—ଅର୍ଥାତ୍ ତାର ମାଆ ହେବାର ଶକ୍ତି ଟିକକ ଯାହା ସେ ହରାଇ ବସିଛି ।

ଅଜିତ୍ ତାଙ୍କଆଡ଼େ ଚାହିଁ ରହି ପ୍ରଶ୍ନ କଲା—ଠିକ୍ କଥା । ଗଳ୍ପଟା ଆପଣ ପଢ଼ିଥିଲେ ?

: ନା ।

: ନ ହେଲେ ଜାଣିଲେ କିପରି ?

ଆଶୁବାବୁ ଟିକିଏ ହସିଲେ । ତାପରେ ଉତ୍ତର ଦେଇ କହିଲେ—ତୁମେ ତାପରେ କହ······

ଅଜିତ୍ କହିବାକୁ ଲାଗିଲା—ସେ ଘରକୁ ଫେରି ଆସି ଶୋଇବା ଘରେ ଥିବା ବଡ଼ ଅଇ-ନାଟା ଆଗରେ ଆଲୁଅ ଜଳାଇ ଠିଆ ହେଲା । ବାହାରକୁ ପିନ୍ଧି ଯାଇଥିବା ପୋଷାକକୁ ପାଲଟି ଘରପିନ୍ଧା ପୋଷାକ ପିନ୍ଧୁ ପିନ୍ଧୁ ନିଜର ପ୍ରତିଛବି ମୂର୍ତ୍ତିକୁ ଚାହିଁ ଆଜି ଏହି ପ୍ରଥମଥର ପାଇଁ ଯେପରି ତା ଆପଣାର ଦୃଷ୍ଟି ବଦଳିଗଲା । ଏପରି ଭାବରେ ଧକ୍କା ଖାଇ ନ ଥିଲେ ହୁଏତ ବର୍ତ୍ତମାନ ତା ଆଖିରେ ପଡ଼ି ନ ଥାନ୍ତା ଯେ, ନାରୀର ଯାହା ସବୁଠାରୁ ଶ୍ରେଷ୍ଠ ସମ୍ପଦ, ଆପଣ ଯାହାକୁ କହୁଛନ୍ତି ତାର ମାଆ ହେବାର ଶକ୍ତି, ସେହି ଶକ୍ତି ଆଜି ତାର ନିସ୍ତେଜ, ମଳୀନ ଏବଂ ସେ ଆଜି ମରଣପଥର ଯାତ୍ରୀ । ଆଉ ଏ ଜୀବନରେ ସେହି ଶକ୍ତିକୁ ଫେରାଇ ଆଣି ହେବ ନାହିଁ । ତା ଅଚେତନ ଦେହ ଉପର ଦେଇ ଅବିଚ୍ଛିନ୍ନ ଜଳଧାରା ପରି ସେହି ସମ୍ପଦ ତାର ବ୍ୟର୍ଥତାରେ ନଷ୍ଟ ହୋଇଯାଇଛି । କିନ୍ତୁ ଏତେବଡ଼ ଐଶ୍ୱର୍ଯ୍ୟ ଯେ ଏପରି ଭାବରେ ସ୍ୱଳ୍ପାୟୁ ହୋଇଯାଏ; ଏହି ବାର୍ତ୍ତା ଆଜି ଶେଷ ସମୟରେ ତା କାନରେ ପହଞ୍ଚିଲା ।

ଆଶୁବାବୁ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ—ଏପରି ହିଁ ହୋଇଥାଏ ଅଜିତ୍ । ଜୀବନରେ ଅନେକ କିଛି ବଡ଼ ପଦାର୍ଥ ହରାଇ ହିଁ ତାକୁ ଚିହ୍ନି ହୋଇଥାଏ । ତାପରେ ?

ତାପରେ ସେହି ଦର୍ପଣ ଆଗରେ ଠିଆ ହୋଇ ଯୌବନାନ୍ତ ଶରୀରର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରିବାକୁ ଲାଗିଲି । ଦିନେ ସେ କ'ଣ ଥିଲା ଏବଂ ଆଜି କ'ଣ ହୋଇ ବସିଛି । ସେହି ବିବରଣୀ ମୁଁ କହିପାରିବି ନାହିଁ କାରଣ ତେତିକି ପଢ଼ିବା ପାଇଁ ମୋର ଧୈର୍ଯ୍ୟ ନ ଥିଲା ।

ନୀଳିମା ପୂର୍ବଭଳି ବ୍ୟସ୍ତ ହୋଇ ବାଧା ଦେଲା – ନା, ନା, ଅଜିତ୍ ବାବୁ । ଥାଉ ସେହି ସ୍ଥାନଟା ବାଦ୍ ଦେଇ ତେତିକି କହନ୍ତୁ ।

ଅଜିତ୍ କହିଲା—ମହିଳା ଜଣକ ବିଶ୍ଳେଷଣର ଶେଷଆଡ଼କୁ କହିଛନ୍ତି ନାରୀର ଦୈହିକ ସୌନ୍ଦର୍ଯ୍ୟ ଭଳି ସୁନ୍ଦର ବସ୍ତୁ ଏହି ଦୁନିଆରେ ନାହିଁ, ଏବଂ ଏହି ବିକୃତ ପରି ଅସୁନ୍ଦର ବସ୍ତୁ ମଧ୍ୟ ପୃଥିବୀରେ ଆଉ ଦ୍ୱିତୀୟ କିଛି ନାହିଁ ।

ଆଶୁବାବୁ କହିଲେ—ଏଇଟା କିନ୍ତୁ ବଢ଼ାଇ କରି କହିଛନ୍ତି, ଅଜିତ ।

ନୀଳିମା ମୁଣ୍ଡ ହଲାଇ ପ୍ରତିବାଦ ଜଣାଇ କହିଲା—ନା, ଏତେ ଟିକିଏ ମଧ୍ୟ ବଢ଼େଇ କରି କହି ନାହାଁନ୍ତି । ଏହା ସତ ।

ଆଶୁବାବୁ କହିଲେ—ଝିଅଟିର ଯାହା ବୟସ ତାହାକୁ ତ ବିକୃତର ବୟସ ବୋଲି କହି ହେବ ନାହିଁ ନୀଳିମା ।

ନୀଳିମା କହିଲା—କହି ହେବ । କାରଣ ଏହା ତ କେବଳ ଝିଅମାନଙ୍କର ବୟସ ଗଣି ବର୍ଷ ଗଣିବାର ହିସାବ ନୁହେଁ, ଏହାର ଆୟୁଷକାଳ ଯେ ନିହାତି କମ୍ । ଏକଥା ଆଉ ସିଏ ଭୁଲିଗଲେ ଚଳିବ କିନ୍ତୁ ଝିଅମାନେ ଭୁଲିଗଲେ ଚଳିବ ନାହିଁ ।

ଅଜିତ ମୁଣ୍ଡ ହଲାଇ ଖୁସି ହୋଇ କହିଲା ଠିକ୍ ଏହି ଉତ୍ତରଟି ସେ ନିଜେ ଦେଇଛନ୍ତି । କହିଛନ୍ତି ଆଜିଠାରୁ ପ୍ରତୀକ୍ଷାର ଶେଷ ସମାପ୍ତି କରି ବଞ୍ଚି ରହିବାଟି ହିଁ ହେବ ଅବଶିଷ୍ଟ ଜୀବନର ଏକମାତ୍ର ସତ୍ୟ । ଏଥିରେ ସାନ୍ତ୍ୱନା ନାହିଁ, ଆନନ୍ଦ ନାହିଁ, ଆଶା ନାହିଁ ଜାଣେ, ତଥାପି ତ ଉପହସିତ ହେବାର ଲଜ୍ୟାରୁ ବଞ୍ଚିଯାଇ ପାରିବି । ଐଶ୍ୱର୍ଯ୍ୟର ଭଗ୍ନସ୍ତୂପ ହୁଏତ ଆଜି ହିଁ କୌଣସି ଦୁର୍ଭାଗାର ମନୋହରଣ କରିପାରେ କିନ୍ତୁ ସେହି ମୁଗ୍ଧତା ତା ପକ୍ଷରେ ଯେପରି ହେବ ବିଡ଼ମ୍ବନା ସେହିପରି ମୋ ପକ୍ଷରେ ହୋଇ ଉଠିବ ଚରମ ମିଥ୍ୟା । ଯେଉଁ ରୂପର ପ୍ରକୃତ ପ୍ରୟୋଜନ ଶେଷ ହୋଇଯାଇଛି, ତାହାକୁ ନାନା ଭାବରେ, ନାନା ସାଜରେ ସଜାଇ "ଶେଷ ହୋଇ ନାହିଁ" ବୋଲି ନିଜେ ଠକି ଭୁଲିପାରିବି ନାହିଁ କିମ୍ବା ଅପରକୁ ଠକାଇ ପାରିବି ନାହିଁ ।

ଆଉ କେହି କିଛି କହିଲେ ନାହିଁ । କେବଳ ନୀଳିମା କହିଲା—ସୁନ୍ଦର । କଥାଗୁଡ଼ିକ ମୋତେ ଭାରି ସୁନ୍ଦର ଲାଗିଲା, ଅଜିତ ବାବୁ ।

ସମସ୍ତଙ୍କ ଭଳି ହରେନ୍ଦ୍ର ମଧ୍ୟ ଏକ ମନରେ ଶୁଣୁଥିଲା । ସେ କେବଳ ମନ୍ତବ୍ୟରେ ଖୁସି ହୋଇ ପାରିଲା ନାହିଁ । କହିଲା ଏହା ଆପଣଙ୍କର ଭାବାତିଶଯ୍ୟର ଉଚ୍ଛ୍ୱାସ ନୁହଁ । ଗଭୀର ଚିନ୍ତା କରି କହୁ ନାହାଁନ୍ତି । ଉଚ୍ଚ ଡାଳରେ ଶିମିଳୀ ଫୁଲ ହୁଏତ ଖୁବ୍

ସୁନ୍ଦର ଦେଖାଯାଇପାରେ କିନ୍ତୁ ଫୁଲର ଆବଶ୍ୟକତା ପଡ଼ିଲାବେଳେ ତା ପାଖରେ ନିମନ୍ତ୍ରଣ ପତ୍ରଖଣ୍ଡ ନ ଥାଏ । ରମଣୀର ଦେହ କ'ଣ ଏପରି ତୁଚ୍ଛ ଜିନିଷ ଯେ ଏହାଛଡ଼ା ଆଉ ତାହାର କୌଣସି ପ୍ରୟୋଜନ ନାହିଁ ?

ନୀଳିମା କହିଲା— ସେ କଥା ତ ଲେଖିକା କହି ନାହାଁନ୍ତି । ଦୁର୍ଭାଗ୍ୟ ମନୁଷ୍ୟଗୁଡ଼ାକଙ୍କ ପ୍ରୟୋଜନ ଯେ ସହଜରେ ଶାନ୍ତ ହୁଏ ନାହିଁ, ଏହି ଆଶଙ୍କା ତାଙ୍କ ମନର ମଧ୍ୟ ଥିଲା । ସାମାନ୍ୟ ଟିକିଏ ହସିଦେଇ କହିଲା—ଉଚ୍ଛ୍ୱାସର କଥା କହୁଥିଲେ ପରା ? ଅକ୍ଷୟବାବୁ ଉପସ୍ଥିତ ନାହାଁନ୍ତି, ସେ ଥିଲେ ବୁଝିପାରନ୍ତେ ଏହାର ଆଢଣଘଂଟା ଆଜିକାଲି କେଉଁ ଦିଗକୁ ଉର୍ଦ୍ଧ୍ୱଷ୍ଟ ହେଉଛି ।

ହରେନ୍ଦ୍ର ଉତ୍ତର ଦେଲା—ଆପଣ ନୂଆ'ହି ଗାଳି ଦେଲେ ଯେ ମୁଁ ଦବି ଯିବି ତାହା ନୁହେଁ ।

ଏହା ଶୁଣି ଆଶୁବାବୁ ନିଜେ ଟିକିଏ ହସିଲେ । କହିଲେ—ବାସ୍ତବିକ୍, ମୋର ମଧ୍ୟ ମନେହୁଏ ଗଳ୍ପଟିରେ ଲେଖିକା ଝିଅମାନଙ୍କର ରୂପର ପ୍ରକୃତ ଆବଶ୍ୟକତାକୁ ଇଙ୍ଗିତ କରିଛନ୍ତି ।

: କିନ୍ତୁ ଏହା କ'ଣ ଠିକ୍ ?

: ଠିକ୍ ନୁହେଁ, ଏକଥା ସାରା ଜଗତକୁ ଗ୍ରହି ମନେକରିବା କଠିନ ।

ହରେନ୍ଦ୍ର ଉତ୍ତେଜିତ ହୋଇ ଉଠିଲା । କହିଲା—ସାରା ଜଗତକୁ ଗ୍ରହି ଯାହା ମନେ କରନ୍ତୁ କି ନାହିଁ କିନ୍ତୁ ମନୁଷ୍ୟ ସମାଜକୁ ଗ୍ରହିଁ ଏହାକୁ ସ୍ୱୀକାର କରିବା ମୋ ପକ୍ଷରେ କଠିନ । ମନୁଷ୍ୟର ପ୍ରୟୋଜନ ଜୀବଜଗତର ସାଧାରଣ ଆବଶ୍ୟକତାକୁ ଅତିକ୍ରମ କରି ବହୁଦୂର ପର୍ଯ୍ୟନ୍ତ ଗ୍ଳିଯାଇଛି, ସେଥିପାଇଁ ତ ତାର ସମସ୍ୟା ଏପରି ବିଚିତ୍ର ଏବଂ ଏତେ ଦୁରୂହ । ଏହାକୁ ଗ୍ଳୁଣିରେ ଗ୍ଣି ବାଛି ଅଲଗା କରି ଫିଙ୍ଗିଦେଇ ପାରି ହେଉ ନାହିଁ ବୋଲି ତ ତାର ମର୍ଯ୍ୟାଦା ରହିପାରିଛି, ଆଶୁବାବୁ ।

: ସେ କଥା ସତ । ଗଳ୍ପର ବାକି ଅଂଶଟା ଶୁଣେ ଅଜିତ୍ ।

ହରେନ୍ଦ୍ର ଦୁଃଖିତ ହେଲା । କହିଲା—ନା, ତାହା ହେବ ନାହିଁ ଆଶୁବାବୁ । ରୁଚ୍ଛା ତାଚ୍ଛଲ୍ୟ କରି ଉତ୍ତରଟାକୁ ଏପରି ଭାବରେ ଏଡ଼ାଇ ଦେଇ ଗ୍ଳିଯିବା ପାଇଁ ମୁଁ ଛାଡ଼ି ଦେବନାହିଁ । ହୁଏତ ମୋ କଥାକୁ ସ୍ୱୀକାର କରନ୍ତୁ ନଚେତ୍ ଭୁଲଟା ଦେଖାଇ ଦିଅନ୍ତୁ । ଆପଣ ଅନେକ ଦେଖିଛନ୍ତି । ଅନେକ ପଢ଼ିଛନ୍ତି । ବଡ଼ଟ ପଣ୍ଡିତ ଲୋକ ଆପଣ । ଆପଣଙ୍କର ଏହି ଟାଳଟୁଳ କଥାର ଫାଙ୍କ ଭିତରେ ଯେ ନୂଆ'ଉ ଜିତି ଯିବେ ତାହା ମୁଁ ସହ୍ୟ କରିପାରିବି ନାହିଁ ।

ଆଶୁବାବୁ ହସ ହସ ମୁହଁରେ କହିଲେ—ତୁମେ ବ୍ରହ୍ମଚାରୀ ଲୋକ, ରୂପ ବିଚାରରେ ହାରିଗଲେ ତ ତୁମକୁ ଲଜ ମାନିବ ନାହିଁ, ହରେନ୍ ।

*

: ନା, ତାହା ମୁଁ ଶୁଣିବ ନାହିଁ ।

ଆଶୁବାବୁ କ୍ଷଣକାଳ ମୌନ ରହି ଧୀରେ ଧୀରେ କହିଲେ—ତୁମ କଥାକୁ ଅପ୍ରମାଣ କରିବା ନିମିତ୍ତ ଅଣାଭିଜ୍ଞ ଯୁକ୍ତି କରିବା ପାଇଁ ମୁଁ ଲଜ୍ଜ୍ୟା ଅନୁଭବ କରେ । ବସ୍ତୁତଃ, ନାରୀ ରୂପର ନିଗୂଢ଼ ଅର୍ଥ ଅପରିସ୍ଫୁଟ ରହିଛି, ତାହାହିଁ ଭଲ, ହରେନ୍ ।
ତାପରେ ଟିକିଏ ଚୁପ୍ ରହି ପୁଣି କହିବାକୁ ଲଗିଲେ, ଅଜିତର ଗଳ୍ପ ଶୁଣୁ ଶୁଣୁ ପୁଣି ବହୁକାଳ ପୂର୍ବର ଗୋଟାଏ ଦୁଃଖର କାହାଣୀ ମନେ ପଡ଼ୁଛି । ପିଲାବେଳେ ମୋର ଜଣେ ଇଂରେଜୀ ବନ୍ଧୁ ଥିଲେ । ସେ ଜଣେ ପୋଲିସର ଝିଅକୁ ଭଲ ପାଉଥିଲେ । ଝିଅଟି ଥିଲା ଅପରୂପ ସୁନ୍ଦରୀ । ଛାତ୍ରୀମାନଙ୍କୁ ପିଆନୋ ବଜାଇବା ଶିଖାଇ ଜୀବିକା ନିର୍ବାହ କରୁଥିଲା । କେବଳ ରୂପରେ ନୁହେଁ, ନାନା ଗୁଣରେ ଗୁଣବତୀ ଏହି ଝିଅଟିର ଶୁଭକାମନା ସମସ୍ତେ କରୁଥାନ୍ତି । ପ୍ରତ୍ୟେକ ନିଶ୍ଚିତ ହୋଇଥାନ୍ତି ଯେ ତା ବିବାହରେ କୌଣସି କାଳେ ବିଘ୍ନ ଘଟିବ ନାହିଁ ।

ଅଜିତ୍ ପ୍ରଶ୍ନ କଲା—ବିଘ୍ନ ଘଟିଲା କିପରି ?

ଆଶୁବାବୁ କହିଲେ—କେବଳ ବୟସ ହିସାବରୁ । ହିନେ ତା ଦେଶରୁ କନ୍ୟାଟିର ମାଆ ଆସି ଉପସ୍ଥିତ ହେଲେ । ତାଙ୍କର ମୁହଁରୁ କଥା କଥାରେ ହଠାତ୍ ବାହାରି ପଡ଼ିଲା ଝିଅଟି ସେତେବେଳକୁ ପଇଁତିରିଶ ବର୍ଷ ପାର ହୋଇ ଗଲାଣି ।

ଶୁଣିକରି ସମସ୍ତେ ଚମକି ଉଠିଲେ । ଅଜିତ ପ୍ରଶ୍ନକଲା, ମହିଳା ଜଣକ କ'ଣ ଆପଣଙ୍କ ନିକଟରେ ବୟସ ଲୁଚାଇଥିଲେ ?

ଆଶୁବାବୁ କହିଲେ—ନା, ମୋର ବିଶ୍ୱାସ ଥିଲା ତାଙ୍କୁ ପଚାରିଥିଲେ ସେ କଦାପି ଗୋପନ କରି ନଥାନ୍ତେ । ସେପରି ପ୍ରକୃତି ମଧ୍ୟ ତାଙ୍କର ନୁହେଁ । କିନ୍ତୁ ପଚାରିବା ପାଇଁ କାହା ମନରେ ପ୍ରଶ୍ନ ମଧ୍ୟ ଉଦୟ ହୋଇ ନାହିଁ । ଏପରି ତା ଦେହର ଗଠନ, ଏପରି ତା ସୁକୁମାର ମୁଖଶ୍ରୀ, ଏପରି ମଧୁର କଣ୍ଠସ୍ୱର ଯହିଁରୁ କୌଣସି ପ୍ରକାରରେ ମନେହୁଏ ନାହିଁ ଯେ ତା ବୟସ ତିରିଶରୁ ବେଶୀ ହୋଇପାରେ ବୋଲି ।

ବେଲା କହିଲା—ଆଶ୍ଚର୍ଯ୍ୟ ! ଆପଣମାନଙ୍କ ଭିତରୁ କାହାର କ'ଣ ଆଖି ନଥିଲା ?

: ଥିଲା ତ । କିନ୍ତୁ ଜଗତର ସମସ୍ତ ବସ୍ତୁ କେବଳ ଆଖି ଦେଇ ଦେଖି ହୁଏ ନାହିଁ । ଏହା ହେଉଛି ଜହିଁରୁ ଗୋଟିଏ ଉଦାହରଣ—

: କିନ୍ତୁ ପାତ୍ରର ବୟସ କେତେ ?

: ସେ ମୋର ସମ ବୟସୀ । ସେତେବେଳେ ବୋଧହୁଏ ଅଠାଇଶି କମ୍ବା ଅଣତିରିଶରୁ ବେଶୀ ନ ଥିଲା ।

: ତା ପରେ ?

: ତାହା ପରର ଘଟଣା ଖୁବ୍ ହିଁ ସଂକ୍ଷିପ୍ତ । ପିଲାଟିର ମନ ମୁହୂର୍ତ୍ତକ ଭିତରେ ଯେପରି ଏଇ ପ୍ରୌଢ଼ା ରମଣୀଟିର ବକ୍ଷରେ ପାଷାଣ ହୋଇଗଲା । କେତେ ଦିନର କଥା ହେଲାଣି, ତଥାପି କିନ୍ତୁ ମନେ ପଡ଼ିଲେ ଦୁଃଖ ଆସେ । କେତେ କହା କଟା, କେତେ ହାହୁତାଶ, କେତେ ଯିବା ଆସିବା, କେତେ ରାଗ ରୁଷା, ତଥାପି କିନ୍ତୁ ତା ମନରୁ ସେହି ବିତୃଷ୍ଣାକୁ ପୋଛି ହେଲା ନାହିଁ । ଏହି ବିବାହ ଯେ ଅସମ୍ଭବ— ଏହାଠାରୁ ଅଧିକ ସେ କିଛି ଭାବିପାରିଲା ନାହିଁ ।

କ୍ଷଣକ ପାଇଁ ସମସ୍ତେ ନୀରବ ହୋଇଗଲେ । ନୀଳିମା ପ୍ରଶ୍ନ କଲା—ଘଟଣାଟା ଯଦି ଠିକ୍ ଓଲଟା ହୋଇଥାନ୍ତା ବୋଧହୁଏ ଅସମ୍ଭବ ହୋଇ ନଥାନ୍ତା ?

: ବୋଧହୁଏ ନୁହେଁ ।

: କିନ୍ତୁ ଏଭଳି ବିବାହ କ'ଣ ସେମାନଙ୍କ ଦେଶରେ ଗୋଟିଏ ହେଲେ ହୁଏ ନାହିଁ ? ସେପରି ପୁରୁଷ କ'ଣ ସେ ଦେଶରେ ଆଦୌ ନାହାଁନ୍ତି ?

ଆଶୁବାବୁ ହସି ପକାଇ କହିଲେ—ଅଛନ୍ତି । ଅଜିତ ଗଳ୍ପର ଗାର୍ଲିକ ବୋଧହୁଏ ଦୁର୍ଭାଗା ବିଶେଷଣଟା ବିଶେଷ କରି ସେହିଭଳି ପୁରୁଷମାନଙ୍କୁ ସ୍ମରଣ କରି ଲେଖିଛନ୍ତି । କିନ୍ତୁ ବର୍ତ୍ତମାନ ତ ରାତି ଅନେକ ହୋଇ ଗଲାଣି, ଅଜିତ ଏହାର ଶେଷ କେଉଁଠି ?

ଅଜିତ ଚକିତ ହୋଇ କହିଲା, ମୁଁ ଆପଣଙ୍କ ଗଳ୍ପ କଥା ହିଁ ଭାବୁଛି । ଏତେ ଭଲ ପାଇ ସୁଦ୍ଧା ଯୁବକଟି କିପରି ତାକୁ ଗ୍ରହଣ କରି ନପାରିଲା ! ଏତେ ବଡ଼ ସତ୍ୟଟା ମିଥ୍ୟା ଭିତରେ କୁଆଡ଼େ ମିଳାଇ ଗଲା ସିନା ! ସାରା ଜୀବନ ଧରି ମହିଳାଟି ନିଶ୍ଚୟ ଏହି କଥାଟିକୁ ହିଁ ସୁମରୁ ଥିବ ଯେ—ଦିନେ ସେ ନାରୀ ଥିଲା । ନାରୀତ୍ୱର ପ୍ରକୃତ ଅବଦାନ ଯେ ନାରୀର ଅଜ୍ଞାତସାରରେ କେବେ ଘଟିପାରେ ଏହା ପୂର୍ବରୁ ହୁଏତ ସେହି ବିଗତଯୌବନା ନାରୀ ଚିନ୍ତା ହିଁ କରି ନଥିବ ।

: କିନ୍ତୁ ତୁମ ଗଳ୍ପର ଶେଷ ଅଂଶଟା ?

ଅଜିତ ଶାନ୍ତ ଭାବରେ କହିଲା—ଆଜି ଥାଉ । ଯୌବନର ଏହି ଶେଷଟା ଯେ ବର୍ତ୍ତମାନ ଶେଷ ହୋଇ ଯାଇ ନାହିଁ । ନିଜ ଏବଂ ପର ନିକଟରେ ଝିଅମାନଙ୍କର ଏହି ପ୍ରତାରଣାର କରୁଣ କାହାଣୀ ଦ୍ୱାରା ହିଁ ଗଳ୍ପର ଶେଷ ସମାପ୍ତି ଘଟିଛି । ସେ କଥା ହୁଏତ ଆଉ ଦିନେ କହିବ ।

ନୀଳିମା ମୁଣ୍ଡ ହଲାଇ କହିଲା—ନା, ନା, ତା ଅପେକ୍ଷା ଏଇତକ ବରଂ ଏଇଠାରେ ଅସମାପ୍ତ ରହିଥାଉ ।

ଆଶୁବାବୁ କୌଣସି ଉତ୍ତର ଦେଲେ ନାହିଁ । ଦୁଃଖିତ ହୋଇ କହିଲେ ବାସ୍ତବିକ ଏଇ ସମସ୍ୟାଟା ହିଁ ଝିଅମାନଙ୍କର ନିଃସଙ୍ଗ ଜୀବନର ସବୁଠାରୁ ଦୁଃସମସ୍ୟା । ସେତେବେଳେ ସେମାନେ ଅସହିଷ୍ଣୁ, କପଟୀ, ପରଛିଦ୍ରାନ୍ୱେଷୀ, ଏପରିକି ନିଷ୍ଠୁର ହୋଇ ଉଠନ୍ତି ।

ସେଥିପାଇଁ ବୋଧହୁଏ ସବୁ ଦେଶରେ ମନୁଷ୍ୟମାନେ ଏମାନଙ୍କୁ—ଅର୍ଥାତ୍ ଏହି ଅବିବାହିତା ପ୍ରୌଢ଼ା ନାରୀମାନଙ୍କୁ ଏଡ଼ାଇ ଚାଲିବାକୁ ଚାହାଁନ୍ତି ନୀଳିମା ।

ନୀଳିମା ହସି ଦେଇ କହିଲା—ପ୍ରୌଢ଼ା ନାରୀମାନଙ୍କୁ କହିବା ଉଚିତ ନୁହେଁ ଆଶୁବାବୁ, କହିବା ଉଚିତ ତୁମ ଭଳି ପତି-ପୁତ୍ରହୀନା ଦୁର୍ଭାଗାମାନଙ୍କୁ ସେମାନଙ୍କର ଏଡ଼ାଇ ଚାଲିବା ଉଚିତ ।

ଆଶୁବାବୁ ଏହାର ଉତ୍ତର ଦେଲେ ନାହିଁ । କିନ୍ତୁ ଇଙ୍ଗିତ ଟିକିକ ଗ୍ରହଣ କରିଲେ । କହିଲେ—ଅଥଚ ସ୍ୱାମୀ ପୁତ୍ର ଯେଉଁମାନେ ସୌଭାଗ୍ୟବତୀ, ସେମାନେ ସ୍ନେହରେ, ପ୍ରେମରେ, ସୌନ୍ଦର୍ଯ୍ୟରେ, ମାଧୁର୍ଯ୍ୟରେ, ଏପରି ପରିପୂର୍ଣ୍ଣ ହୋଇ ଉଠନ୍ତି ଯେ ଜୀବନର ଏତେବଡ଼ ସଙ୍କଟ କାଳ କେତେବେଳେ କେଉଁପରି ଭାବରେ ଅତିବାହିତ ହୋଇଯାଏ ତାହାର ସନ୍ଧାନ ପାଇ ପାରନ୍ତି ନାହିଁ ।

ନୀଳିମା କହିଲା—ଭାଗ୍ୟବତୀମାନଙ୍କୁ ଈର୍ଷା କରିନାହିଁ ଆଶୁବାବୁ । ସେଭଳି ଇଚ୍ଛା ମନ ଭିତରେ ଆଜି ପର୍ଯ୍ୟନ୍ତ ଦେଖା ଦେଇ ନାହିଁ, କିନ୍ତୁ ଭାଗ୍ୟ ଦୋଷରୁ ଯେଉଁମାନେ ମୋ ଭଳି ଭବିଷ୍ୟତର ସମସ୍ତ ଆଶାକୁ ଜଳାଞ୍ଜଳି ଦେଇଛନ୍ତି ସେମାନଙ୍କ ପଥର ନିର୍ଦ୍ଦେଶ, କେବେ ମୋତେ ବତାଇ ଦେଇ ପାରିବେ କି ?

ଆଶୁବାବୁ କିଛି ସମୟ ସ୍ତବ୍ଧ ଭାବରେ ବସି ରହିଲେ । ପରେ କହିଲେ—ଏହି କଥାର ଉତ୍ତର ଦେବାକୁ ଯାଇ ମୁଁ ଗୁରୁଜନମାନଙ୍କ କଥାର ପ୍ରତିଧ୍ୱନି ହିଁ କେବଳ ମାତ୍ର କରିପାରେ ନୀଳିମା । ତାହାଠାରୁ ଅଧିକା କିଛି କହିବା ପାଇଁ ମୋର ଶକ୍ତି ନାହିଁ । ସେମାନେ କହନ୍ତି—ପରାର୍ଥେ ଆପଣାକୁ ଉତ୍ସର୍ଗ କରିଦେବା ପାଇଁ । ସଂସାରରେ ଦୁଃଖର ଅଭାବ ନାହିଁ । ଆତ୍ମ ନିବେଦନ ଦୃଷ୍ଟାନ୍ତର ମଧ୍ୟ ଅଭାବ ନାହିଁ । ଏସବୁ ମୁଁ ଜାଣେ । କିନ୍ତୁ ଏହା ମଧ୍ୟରେ ନାରୀର ପ୍ରକୃତ କଲ୍ୟାଣକର ଆନନ୍ଦ ଅଛି କି ନାହିଁ ଆଜି ସୁଦ୍ଧା ମୁଁ ନିଃସନ୍ଦେହ ଭାବରେ ଜାଣି ପାରି ନାହିଁ ନୀଳିମା !

ହରେନ୍ଦ୍ର ପ୍ରଶ୍ନ କଲା--ଏପରି ସନ୍ଦେହ କ'ଣ ଆପଣଙ୍କ ଭାଗ୍ୟରେ ଥିଲା ?

ଆଶୁବାବୁ ମନେ ମନେ ଯେପରି କୁଣ୍ଠିତ ହୋଇ ଉଠିଲେ । ଟିକିଏ ଅଟକି ଯାଇ କହିଲେ, ଠିକ୍ ମନେ ପକାଇ ପାରୁନାହିଁ ହରେନ । ସେତେବେଳକୁ ଦୁଇ ତିନି ଦିନ ହେବ ମନୋରମା ଚାଲି ଯାଇଥାଏ । ମନ ମୋର, ଭାବାତୁର । ଦେହ ବିବଶ । ଏଇ ଚୌକିଟାରେ ଚୁପ୍ ହୋଇ ପଡ଼ିଥାଏ । ହଠାତ୍ ଦେଖିଲି କମଳ ଆସି ପହଞ୍ଚିଗଲା । ଆଦର କରି ପାଖରେ ତାକୁ ବସାଇଲି । ମୋ ବ୍ୟଥା ସ୍ଥାନଟାକୁ ଆଡ଼େଇ ଦେଇ ସେ ସାବଧାନତା ସହକାରେ ଚାଲି ଯିବା ପାଇଁ ଇଚ୍ଛା କଲା ,କିନ୍ତୁ ପାରିଲା ନାହିଁ । କିନ୍ତୁ କଥାବାର୍ତ୍ତା ଭିତରେ କ'ଣ ଏପରି ଗୋଟାଏ ପ୍ରସଙ୍ଗ ଉଠିଲା ଯେ ସେତେବେଳେ ତାର ଆଉ ହୋସ ରହିଲା ନାହିଁ । ତୁମେ ତ ଜାଣ ତାକୁ । ଯାହା କିଛି ପ୍ରାଚୀନ ତାହା ପ୍ରତି ତାର ପ୍ରବଳ ବିତୃଷ୍ଣା । ମୁଣ୍ଡ ପିଟି ଭାଙ୍ଗି ଦେବା ହିଁ ଯେପରି ତାର passion (ଆସକ୍ତି) ।

ମନ ଉତ୍ତର ଦେବା ପାଇଁ ଇଚ୍ଛା କରୁ ନ ଥିଲି, ଚିରଦିନ ସଂସ୍କାର ହେତୁ ବାଧ ହୋଇଯାଏ । ତଥାପି ଖୋଜି କଥା କହି ହେଉ ନ ଥିଲି । ପରାଭବ ମାନିନେବାକୁ ହେଉ ନ ଥିଲା । ମନେ ଅଛି ସେଦିନ ତା ଆଗରେ ଝିଅମାନଙ୍କର ଆତ୍ମୋତ୍ସର୍ଗ କଥା ଉପସ୍ଥାପନା କରିଥିଲି କିନ୍ତୁ କମଳ ସ୍ୱୀକାର କଲି ନାହିଁ । କହିଲି—ଝିଅମାନଙ୍କର କଥା ଆପଣଙ୍କ ଅପେକ୍ଷା ମୁଁ ବେଶୀ ଜାଣେ । ଏହି ପ୍ରବୃତ୍ତି ସେମାନଙ୍କର ପୂର୍ଣ୍ଣତାରୁ ଆସେ ନାହିଁ, ଆସେ ଶୂନ୍ୟତାରୁ । ଆସିଲେ ହୃଦୟ ଖାଲି କରିଦିଏ । ଏହା ନା ସ୍ୱଭାବରୁ ଜନ୍ମ ଅଭାବରୁ ଆସିଥାଏ । ଅଭାବ ହେତୁ ଆତ୍ମୋତ୍ସର୍ଗ ବିଷୟରେ ମୁଁ କଣା କଉଡ଼ିଏ ବିଶ୍ୱାସ କରେ ନାହିଁ ଆଶୁବାବୁ । କ'ଣ ଯେ ଉତ୍ତର ଦେବି ଖୋଜି ପାଇଲି ନାହିଁ, ତଥାପି କହିଲି, କମଳ ହିନ୍ଦୁ ସଭ୍ୟତାର ମୂଳ ବସ୍ତୁଟି ଯଦି ତୋର ପରିଚୟ ଥିଲେ ଆଜି ହୁଏତ ବୁଝାଇ ଦେଇ ପାରନ୍ତି ଯେ, ତ୍ୟାଗ ଓ ବିସର୍ଜ୍ଜନ ଦୀକ୍ଷା ଦ୍ୱାରା ସିଦ୍ଧି ଲାଭ କରିବା ହିଁ ଆମମାନଙ୍କର ସବୁଠାରୁ ବିରାଟ ସଫଳତା ଏବଂ ଏହି ପଥ ଧରି ଆମମାନଙ୍କର କେତେ ବିଧବା ଝିଅ ହିଁ ଦିନେ ଜୀବନର ସର୍ବୋତ୍ତମ ସାର୍ଥକତା ଉପଲବ୍ଧି କରିଯାଇଛନ୍ତି ।

କମଳ ହସି ଦେଇ କହିଲା—କରିବାର ଦେଖିଛନ୍ତି କି ? ଜଣେକର ନାଆଁ ହେଲେ କହନ୍ତୁତ ? ସେ ଏପରି ଭାବରେ ପ୍ରଶ୍ନ କରିବ ବୋଲି ମୁଁ ଭାବି ନ ଥିଲି । ବରଞ୍ଚ ଭାବିଥିଲି ସେ ହୁଏତ କଥାଟା ମାନିନେବ ।

ନୀଳିମା କହିଲା—ବେଶ୍ । ଆପଣ ମୋ ନାଆଁଟା କାହିଁକି କହି ଦେଲେ ନାହିଁ ? ମନେ ପଡ଼ି ନ ଥିବ ବୋଧହୁଏ ?

ଅଜିତ ଓ ହରେନ୍ଦ୍ର ଏହା ଶୁଣି ମୁହଁ ତଳକୁ କରି ବସିଲେ ଏବଂ ବେଲା ମୁହଁ ବୁଲାଇ ନେଲା—ପ୍ରକୃତରେ କି କଠୋର ପରିହାସ !

ଆଶୁବାବୁ ଯଦିଓ ଅପ୍ରତିଭ ହୋଇ ପଡ଼ିଲେ କିନ୍ତୁ ତାହା ପ୍ରକାଶ କରିଲେ ନାହିଁ । କହିଲେ ନା, ପ୍ରକୃତରେ ମନେ ପଡ଼ି ନାହିଁ, ଆଖି ଆଗରେ ଥିବା ଜିନିଷ ଯେପରି ଆଖିରେ ପଡ଼େ ନାହିଁ, ସେହିପରି । ତୁମ ନାମଟା କହି ପାରିଥିଲେ ସତରେ ତାକୁ ଠିକ୍ ଉତ୍ତର ଦେଇ ହୋଇ ପାରିଥାନ୍ତା । କିନ୍ତୁ ତାହା ଯେତେବେଳେ ମନେ ପଡ଼ିଲା ସେତେବେଳେ କମଳ କହିଲା, ମୋତେ ଯେଉଁ ଶିକ୍ଷାର ଖୁଣ୍ଟା ଦେଇ ବସିଲେ ଆଶୁବାବୁ, ଆପଣଙ୍କ ନିଜ ସମ୍ପର୍କରେ କ'ଣ ତାହା ଷୋଳ ଅଣାରେ ଖାଟେ ନାହିଁ ? ସାର୍ଥକତାର ଯେଉଁ ଆଇଡ଼ିଆ ଶିଶୁ କାଳରୁ ଝିଅମାନଙ୍କ ମୁଣ୍ଡରେ ଭୁକାଇ ଆସିଛନ୍ତି ସେହି ମୁଖସ୍ଥ ହୋଇଥିବା ବୋଲିକୁ ସେମାନେ ସଦର୍ପରେ ଆବୃତ୍ତି କରି ଚାଲନ୍ତି, ତାହା ବୋଧହୁଏ ସତ୍ୟ । ଆପଣମାନେ ତ ଠକନ୍ତି । ଆତ୍ମପ୍ରସାଦର ବ୍ୟର୍ଥ ଅଭିମାନରେ ସେମାନେ ମଧ୍ୟ ମରନ୍ତି ।

କମଳ ବଳିପଡ଼ି କହିଲା—ସହମରଣର କଥା ତ ଆପଣଙ୍କର ମନେପଡ଼ିବା ଉଚିତ୍ । ଯେଉଁମାନେ ଯୋଡ଼ି ହୋଇ ମରନ୍ତି ଏବଂ ଯେଉଁମାନେ ପୋଡ଼ି ହୋଇ ମରିବା ପାଇଁ ଉଦ୍‌ଗ୍ରୀବ ହଅନ୍ତି ସେହି ଦୁଇପକ୍ଷର ଦମ୍ଭ ତ ସେଦିନ ଏହାହିଁ ଭାବିକରି ଆକାଶର ସୀମା ସ୍ପର୍ଶ କରିପାରିଥିଲା ଯେ ବୈଧବ୍ୟ ଜୀବନର ଏତେବଡ଼ ଦୃଷ୍ଟାନ୍ତ ଜଗତରେ ଆଉ କେଉଁଠାରେ ଅଛି କି ?

: ଏହାର ମଧ୍ୟ କ'ଣ ଉତ୍ତର ଦେବି ଖୋଜି ପାଇ ପାରିଲି ନାହିଁ । ସେ କିନ୍ତୁ ଅପେକ୍ଷା ମଧ୍ୟ କରିଲା ନାହିଁ । ନିଜେ କହି ଉଠିଲା—ଉତ୍ତର ତ ନାହିଁ, ଦେବେ କ'ଣ ? ଟିକିଏ ଅଟକି ଯାଇ ମୋ ମୁହଁକୁ ଚାହିଁ କହିଲା—ପ୍ରାୟ ପ୍ରତ୍ୟେକ ଦେଶରେ ହିଁ ଏହି ଆତ୍ମୋତ୍ସର୍ଗ କଥାଟାର ଗୋଟାଏ ବହୁ ବ୍ୟାପ୍ତ ଏବଂ ବହୁ ପ୍ରାଚୀନ ପରମାର୍ଥିକ ମୋହ ରହିଛି । ସେଥିପାଇଁ ପ୍ରତ୍ୟେକ ଦେଶରେ ଥୋକାଏ ନିଶାଗ୍ରସ୍ତ ହୁଅନ୍ତି । ପରଲୋକର ଅସାମାନ୍ୟ ପଦାର୍ଥ ଇହଲୋକର ସାମାନ୍ୟ ବସ୍ତୁକୁ ସମାଚ୍ଛନ୍ନ କରିଦିଏ । ଭାବିବାକୁ ଦିଏ ନାହିଁ ଯେ ଏହା ଭିତରେ ନରନାରୀ କାହାର ମଧ୍ୟ ଜୀବନରେ ହିଁ ଶ୍ରେୟ ଅଛି କି ନାହିଁ ? ଅସ୍ୱାର ବୁଦ୍ଧି ଯେପରି ସ୍ୱତଃସିଦ୍ଧ ସତ୍ୟ ଭଳି କାନଧରି ସ୍ୱୀକାର କରାଇ ଦିଏ, ଠିକ୍ ଅନେକଟା ଏହି ସହମରଣ ପରି । ନା ଆଉ ଗପିବି ନାହିଁ । ମୁଁ ଉଠୁଛି ।

ପ୍ରକୃତରେ ସେ ଚାଲିଯିବାର ଜାଣିପାରି ବ୍ୟସ୍ତ ହୋଇ କହି ଉଠିଲି—କମଳ, ପ୍ରଚଳିତ ନୀତି ଏବଂ ପ୍ରତିଷ୍ଠିତ ସମସ୍ତ ସତ୍ୟକୁ ଅବଜ୍ଞା କରି ଚୂର୍ଣ୍ଣ କରିଦେବାଟା ଯେପରି ତୋର ବ୍ରତ, ଏ ଶିକ୍ଷା ତୋତେ କିଏ ଦେଇଛି ସେ କିନ୍ତୁ ଜଗତର କଲ୍ୟାଣ କରିନାହିଁ ।

କମଳ କହିଲା—ମୋ ବାପା ଦେଇଥିଲେ ।

ମୁଁ କହିଲି, ତୋ ମୁହଁରୁ ଶୁଣିଥିଲି ସେ ଜ୍ଞାନୀ ଓ ପଣ୍ଡିତ ଲୋକ ଥିଲେ । ଏକଥା କ'ଣ ସେ କେବେ ଶିଖାଇ ନ ଥିବେ ଯେ, ଆପଣାକୁ ନିଃଶେଷ ଭାବରେ ଦାନ କରି ସାରିଲା ପରେ ଯାଇ ମନୁଷ୍ୟ ପ୍ରକୃତରେ ଆପଣାକୁ ପାଇପାରିଥାଏ ! ସ୍ୱେଚ୍ଛାରେ ଦୁଃଖ ବରଣ କରିବା ଦ୍ୱାରା ଯଥାର୍ଥ ଭାବରେ ଆତ୍ମାର ପ୍ରତିଷ୍ଠା ଆସି ପାରିଥାଏ ।

କମଳ କହିଲା—ସେ କହିଥିଲେ ମନୁଷ୍ୟକୁ ନିଃଶେଷ କରି ଶୋଷି ନେବା ପାଇଁ ଦୁରଭିସନ୍ଧି ଯେଉଁମାନଙ୍କର ଥାଏ ସେହିମାନେ ହିଁ ଅପରକୁ ନିଃଶେଷ ଭାବରେ ଦାନ କରିବା ପାଇଁ ବୁଦ୍ଧି ଦେଇଥାନ୍ତି । ଆହୁରି ମଧ୍ୟ ଦୁଃଖର ଉପଲବ୍ଧି ଯେଉଁମାନଙ୍କର ନାହିଁ ସେହିମାନେ ହିଁ ଦୁଃଖ ବରଣର ମହିମାରେ ପଞ୍ଚମୁଖ ହୋଇ ଉଠନ୍ତି । ଜଗତରେ ଦୁର୍ଲଙ୍ଘ୍ୟ ଶାସନର ଦୁଃଖ ତ ଏହା ନୁହେଁ, ଯେ ଏହାକୁ ସ୍ୱେଚ୍ଛାରେ ଆପଣା ଘରକୁ ଯାଚି ହୋଇ ଡାକି ଆଣିବାକୁ ହେବ । ଅର୍ଥହୀନ ସୌଖୀନ ଜିନିଷ ଭଳି ଏହା କେବଳ ପିଲା-ଖେଳ, ବରଞ୍ଚ ତାହାଠାରୁ ଅଧିକା କିଛି ନୁହେଁ ।

ଆଶ୍ଚର୍ଯ୍ୟରେ ମୁଁ ଉଠି ହସରେ ବସିଲି । କହିଲି କମଳ, ତୋ ବାପା କ'ଣ ତୋତେ କେବଳ ନିଚ୍ଛକ ଭୋଗର ମନ୍ତ୍ର ଦେଇ ଯାଇଛନ୍ତି ? ଜଗତରେ ଯାହା କିଛି ମହତ୍ତ୍ୱ ତାକୁ କେବଳ ତାଚ୍ଛଲ୍ୟ କରିବା ପାଇଁ ଶିକ୍ଷା ଦେଇ ଯାଇଛନ୍ତି ?

କମଳ ବୋଧହୁଏ ଏଭଳି ପ୍ରଶ୍ନ ଆଶା କରି ନ ଥିଲା । ଦୁଃଖିତା ହୋଇ ତେଣୁ ଉତ୍ତର ଦେଲା—ଏହା ଆପଣଙ୍କର ଅସହିଷ୍ଣୁତାର ପରିଚୟ ହିଁ, ଆଶୁବାବୁ । ଆପଣ ନିଶ୍ଚୟ ଜାଣନ୍ତି ଯେ, କୌଣସି ବାପ ତା ପିଲାଙ୍କୁ ଏପରି ମନ୍ତ୍ର ଦେଇପାରେ ନାହିଁ । ମୋ ବାପାଙ୍କୁ ଆପଣ ଭୁଲ ବୁଝୁଛନ୍ତି । ସେ ସାଧୁଲୋକ ଥିଲେ ।

କହିଲି—ତୁ ଯାହା କହୁଛୁ ପ୍ରକୃତରେ ଯଦି ଏହି ଶିକ୍ଷା ସେ ଦେଇ ଯାଇଥାନ୍ତି ତାଙ୍କ ପ୍ରତି ସୁବିଚାର କରିବା ମଧ୍ୟ ଶକ୍ତ । ମନୋରମା ଜନନୀର ମୃତ୍ୟୁପରେ ଅନ୍ୟ କୌଣସି ସ୍ତ୍ରୀଲୋକକୁ ମୁଁ ଯେ ଭଲପାଇ ପାରି ନାହିଁ ଶୁଣି ତୁ କହିଥିଲୁ ଏହା ହେଉଛି ଚିତ୍ତର ଦୁର୍ବଳତା ଏବଂ ଏହି ଦୁର୍ବଳତା ପାଇଁ ଗୌରବାନ୍ୱିତ ହେବାରେ ବିଶେଷତ୍ୱ ନାହିଁ । ମୃତ ପତ୍ନୀର ସ୍ମୃତି ପ୍ରତି ସମ୍ମାନକୁ ତୁ ନିଷ୍ଫଳ ଆତ୍ମ-ନିଗ୍ରହ କହି ଉପେକ୍ଷା ଦୃଷ୍ଟିରେ ଦେଖିଥିଲୁ । ସଂଯମର ଅନ୍ୟ କୌଣସି ଅର୍ଥ ଯେବେ ତୁ ଦେଖିବାକୁ ପାଇ ନ ଥିଲୁ ।

କମଳ କହିଲା—ଆଜି ମଧ୍ୟ ପାଇ ନାହିଁ ଆଶୁବାବୁ । ସଂଯମ ଜୀବନର ଆନନ୍ଦକୁ ଉଦ୍ଧତ ଆସ୍ଫାଳନ ଦ୍ୱାରା ମଳିନ କରିପକାଏ । ଏହା ତ କୌଣସି ବସ୍ତୁ ନୁହେଁ କେବଳ ମନର ଗୋଟାଏ ଲୀଳା ମାତ୍ର । ତାହାକୁ ବାନ୍ଧି ରଖିବା ଦରକାର । ସୀମା ମାଡ଼ି ଚାଲିବାକୁ ତ ସଂଯମ କୁହନ୍ତି । ଶକ୍ତିର ଗର୍ବ । ସଂଯମର ସୀମାକୁ ମଧ୍ୟ ଡେଇଁ ଚାଲିଯାଇ ପାରିବା ସମ୍ଭବ । ସେତେବେଳେ ଆଉ ତାକୁ ସେହି ମର୍ଯ୍ୟାଦା ଦେଇ ହୁଏ ନାହିଁ । ଅତି ସଂଯମଟା ଯେ ଆଉ ଏକ ଧରଣର ଅସଂଯମ, ଏକଥା କ'ଣ କେବେ ଭାବି କରି ଦେଖି ନାହାଁନ୍ତି, ଆଶୁବାବୁ ?

ପ୍ରକୃତରେ ଭାବି ଦେଖି ନ ଥିଲି । ସେଥିପାଇଁ ହଠାତ୍ ଉତ୍ତର ଦେଇ ଆସିଥିବା କଥାଟା ହିଁ ମନରେ ଧପ୍ କରି ପଡ଼ିଗଲା । କହିଲି ଏହା କେବଳ ତୋ କଥାର ଭେଲକିବାଜି । ତାହା ଭୋଗର ଓକିଲାତିରେ ହିଁ ପରିପୂର୍ଣ୍ଣ । ମଣିଷ ଯେତିକି ଜୀବନ୍ତ ଧରି ଭୋଗ କରିବାକୁ ଇଚ୍ଛା କରେ ସେତିକି ସେ ହରାଇଥାଏ । ତା ଭୋଗର କ୍ଷୁଧା ତ ମେଣ୍ଟେ ନାହିଁ ବରଞ୍ଚ ଅତୃପ୍ତି ନିରନ୍ତର ବଢ଼ି ଚାଲେ । ସେଥିପାଇଁ ଆମ ଶାସ୍ତ୍ରକାରମାନେ କହି ଯାଇଛନ୍ତି—ଏ ପଥରେ ଶାନ୍ତି ନାହିଁ, ତୃପ୍ତି ନାହିଁ, ଏବଂ ମୁକ୍ତିର ଆଶା ମଧ୍ୟ ବୃଥା । ସେମାନେ କହିଛନ୍ତି—ନ ଜାତୁ କାମଃ, କାମନାମୁପଭୋଗେନ ଶାମ୍ୟତି । ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ ।'' ଅଗ୍ନିରେ ଘିଅ ଢାଳିଲେ ତାହା ଯେପରି ଜୋରରେ ଜଳି ଉଠେ, ସେହିପରି ଉପଭୋଗ ଦ୍ୱାରା କାମନା ବଢ଼େ ସିନା କମି କୌଣସି ଦିନ କମେ ନାହିଁ ।

କମଳ ବଳିପଡ଼ି କହିଲା—ସହମରଣର କଥା ତ ଆପଣଙ୍କର ମନେପଡ଼ିବା ଉଚିତ୍ । ଯେଉଁମାନେ ପୋଡ଼ି ହୋଇ ମରନ୍ତି ଏବଂ ଯେଉଁମାନେ ପୋଡ଼ି ହୋଇ ମରିବା ପାଇଁ ଉତ୍ସାହ ଦିଅନ୍ତି ସେହି ଦୁଇପକ୍ଷର ଦମ୍ଭ ତ ସେଦିନ ଏହାହିଁ ଭାବିକରି ଆକାଶର ସୀମା ସ୍ପର୍ଶ କରିପାରିଥିଲା ଯେ ବୈଧବ୍ୟ ଜୀବନର ଏତେବଡ଼ ଦୃଷ୍ଟାନ୍ତ ଜଗତରେ ଆଉ କେଉଁଠାରେ ଅଛି କି ?

: ଏହାର ମଧ୍ୟ କ'ଣ ଉତ୍ତର ଦେବି ଖୋଜି ପାଇ ପାରିଲି ନାହିଁ । ସେ କିନ୍ତୁ ଅପେକ୍ଷା ମଧ୍ୟ କରିଲା ନାହିଁ । ନିଜେ କହି ଉଠିଲା—ଉତ୍ତର ତ ନାହିଁ, ଦେବେ କ'ଣ ? ଟିକିଏ ଅଟକି ଯାଇ ମୋ ମୁହଁକୁ ଚାହିଁ କହିଲା—ପ୍ରାୟ ପ୍ରତ୍ୟେକ ଦେଶରେ ହିଁ ଏହି ଆତ୍ମୋତ୍ସର୍ଗ କଥାଟାର ଗୋଟାଏ ବହୁତ ବ୍ୟାପ୍ତ ଏବଂ ବହୁତ ପ୍ରାଚୀନ ପରମାର୍ଥିକ ମୋହ ରହିଛି । ସେଥିପାଇଁ ପ୍ରତ୍ୟେକ ଦେଶରେ ଥୋକାଏ ନିଶାଗ୍ରସ୍ତ ହୁଅନ୍ତି । ପରଲୋକର ଅସାମାନ୍ୟ ପଦାର୍ଥ ଇହଲୋକର ସାମାନ୍ୟ ବସ୍ତୁକୁ ସମାଚ୍ଛନ୍ନ କରିଦିଏ । ଭାବିବାକୁ ଦିଏ ନାହିଁ ଯେ ଏହା ଭିତରେ ନରନାରୀ କାହାର ମଧ୍ୟ ଜୀବନରେ ହିଁ ଶ୍ରେୟ ଅଛି କି ନାହିଁ ? ସଂସ୍କାର ବୁଦ୍ଧି ଯେପରି ସ୍ୱତଃସିଦ୍ଧ ସତ୍ୟ ଭଳି କାନଧରି ସ୍ୱୀକାର କରାଇ ଦିଏ, ଠିକ୍ ଅନେକଟା ଏହି ସହମରଣ ପରି । ନା ଆଉ ଗପିବି ନାହିଁ । ମୁଁ ଉଠୁଛି ।

ପ୍ରକୃତରେ ସେ ଚାଲିଯିବାର ଜାଣିପାରି ବ୍ୟସ୍ତ ହୋଇ କହି ଉଠିଲି—କମଳ, ପ୍ରଚଳିତ ନୀତି ଏବଂ ପ୍ରତିଷ୍ଠିତ ସମସ୍ତ ସତ୍ୟକୁ ଅବଜ୍ଞା କରି ଚୂର୍ଣ୍ଣ କରିଦେବାଟା ଯେପରି ତୋର ବ୍ରତ, ଏ ଶିକ୍ଷା ତୋତେ ଯିଏ ଦେଇଛି ସେ କିନ୍ତୁ ଜଗତର କଲ୍ୟାଣ କରିନାହିଁ ।

କମଳ କହିଲା—ମୋ ବାପା ଦେଇଥିଲେ ।

ମୁଁ କହିଲି, ତୋ ମୁହଁରୁ ଶୁଣିଥିଲି ସେ ଜ୍ଞାନୀ ଓ ପଣ୍ଡିତ ଲୋକ ଥିଲେ । ଏକଥା କ'ଣ ସେ କେବେ ଶିଖାଇ ନ ଥିବେ ଯେ, ଆପଣାକୁ ନିଃଶେଷ ଭାବରେ ଦାନ କରି ସାରିଲା ପରେ ଯାଇ ମନୁଷ୍ୟ ପ୍ରକୃତରେ ଆପଣାକୁ ପାଇପାରିଥାଏ ! ସ୍ୱେଚ୍ଛାରେ ଦୁଃଖ ବରଣ କରିବା ଦ୍ୱାରା ଯଥାର୍ଥ ଭାବରେ ଆତ୍ମାର ପ୍ରତିଷ୍ଠା ଆସି ପାରିଥାଏ ।

କମଳ କହିଲା—ସେ କହିଥିଲେ ମନୁଷ୍ୟକୁ ନିଃଶେଷ କରି ଶୋଷି ନେବା ପାଇଁ ଦୁରଭିସନ୍ଧି ଯେଉଁମାନଙ୍କର ଥାଏ ସେହିମାନେ ହିଁ ଅପରକୁ ନିଃଶେଷ ଭାବରେ ଦାନ କରିବା ପାଇଁ ବୁଦ୍ଧି ଦେଇଥାନ୍ତି । ଆହୁରି ମଧ୍ୟ ଦୁଃଖର ଉପଲବ୍ଧି ଯେଉଁମାନଙ୍କର ନାହିଁ ସେହିମାନେ ହିଁ ଦୁଃଖ ବରଣର ମହିମାରେ ପଞ୍ଚମୁଖ ହୋଇ ଉଠନ୍ତି । ଜଗତରେ ଦୁର୍ଲଙ୍ଘ୍ୟ ଶାସନର ଦୁଃଖ ତ ଏହା ନୁହେଁ, ଯେ ଏହାକୁ ସ୍ୱେଚ୍ଛାରେ ଆପଣା ଘରକୁ ଯାଚି ହୋଇ ଡାକି ଆଣିବାକୁ ହେବ । ଅର୍ଥହୀନ ସୌଖୀନ କଳାପ ଭଳି ଏହା କେବଳ ପିଲା-ଖେଳ, ବରଞ୍ଚ ତାହାଠାରୁ ଅଧିକା କିଛି ନୁହେଁ ।

ଆଶ୍ଚର୍ଯ୍ୟରେ ମୁଁ ବୁଡ଼ି ହଗଇ ବସିଲି । କହିଲି କମଳ, ତୋ ବାପା କ'ଣ ତୋତେ କେବଳ ନିଚ୍ଛକ ଭୋଗର ମନ୍ତ୍ର ଦେଇ ଯାଇଛନ୍ତି ? ଜଗତରେ ଯାହା କିଛି ମହତ୍ତ୍ୱ ତାକୁ କେବଳ ତାଚ୍ଛଲ୍ୟ କରିବା ପାଇଁ ଶିକ୍ଷା ଦେଇ ଯାଇଛନ୍ତି ?

କମଳ ବୋଧହୁଏ ଏଭଳି ପ୍ରଶ୍ନ ଆଶା କରି ନ ଥିଲା । ଦୁଃଖିତା ହୋଇ ତେଣୁ ଉତ୍ତର ଦେଲା—ଏହା ଆପଣଙ୍କର ଅସହିଷ୍ଣୁତାର ପରିଚୟ ଦିଏ, ଆଶୁବାବୁ । ଆପଣ ନିଶ୍ଚୟ ଜାଣନ୍ତି ଯେ, କୌଣସି ବାପ ତା ପିଲାକୁ ଏପରି ମନ୍ତ୍ର ଦେଇପାରେ ନାହିଁ । ମୋ ବାପାଙ୍କୁ ଆପଣ ଭୁଲ ବୁଝୁଛନ୍ତି । ସେ ସାଧୁଲୋକ ଥିଲେ ।

କହିଲି—ତୁ ଯାହା କହୁଛୁ ପ୍ରକୃତରେ ଯଦି ଏହି ଶିକ୍ଷା ସେ ଦେଇ ଯାଇଥାନ୍ତି ତାଙ୍କ ପ୍ରତି ସୁବିଚାର କରିବା ମଧ୍ୟ ଶକ୍ତ । ମନୋରମା ଜନନୀର ମୃତ୍ୟୁପରେ ଅନ୍ୟ କୌଣସି ସ୍ତ୍ରୀଲୋକକୁ ମୁଁ ଯେ ଭଲପାଇ ପାରି ନାହିଁ ଶୁଣି ତୁ କହିଥିଲୁ ଏହା ହେଉଛି ଚରିତ୍ରର ଦୁର୍ବଳତା ଏବଂ ଏହି ଦୁର୍ବଳତା ପାଇଁ ଗୌରବାନ୍ୱିତ ହେବାରେ ବିଶେଷତ୍ୱ ନାହିଁ । ମୃତ ପତ୍ନୀର ସ୍ମୃତି ପ୍ରତି ସମ୍ମାନକୁ ତୁ ନିଷ୍ଫଳ ଆତ୍ମ-ନିଗ୍ରହ କହି ଉପେକ୍ଷା ଦୃଷ୍ଟିରେ ଦେଖିଥିଲୁ । ସଂଯମର ଅନ୍ୟ କୌଣସି ଅର୍ଥ ସେଦିନ ତୁ ଦେଖିବାକୁ ପାଇ ନ ଥିଲୁ ।

କମଳ କହିଲା—ଆଜି ମଧ୍ୟ ପାଉ ନାହିଁ ଆଶୁବାବୁ । ସଂଯମ ଜୀବନର ଆନନ୍ଦକୁ ଉଦ୍ଧତ ଆସ୍ଫାଳନ ଦ୍ୱାରା ମଳିନ କରିପକାଏ । ଏହା ତ କୌଣସି ବସ୍ତୁ ନୁହେଁ କେବଳ ମନର ଗୋଟାଏ ଲୀଳା ମାତ୍ର । ତାହାକୁ ବାନ୍ଧି ରଖିବା ଦରକାର । ସୀମା ମାନି ଚାଲିବାକୁ ତ ସଂଯମ କୁହନ୍ତି । ଶରୀର ସ୍ପର୍ଦ୍ଧା ସଂଯମର ସୀମାକୁ ମଧ୍ୟ ଡେଇଁ ଚାଲିଯାଇ ପାରିବା ସମ୍ଭବ । ସେତେବେଳେ ଆଉ ତାକୁ ସେହି ମର୍ଯ୍ୟାଦା ଦେଇ ହୁଏ ନାହିଁ । ଅତି ସଂଯମଟା ଯେ ଆଉ ଏକ ଧରଣର ଅସଂଯମ, ଏକଥା କ'ଣ କେବେ ଭାବି କରି ଦେଖି ନାହାନ୍ତି, ଆଶୁବାବୁ ?

ପ୍ରକୃତରେ ଭାବି ଦେଖି ନ ଥିଲି । ସେଥିପାଇଁ ଚରିଦିନ ଭାବି ଆସିଥିବା କଥାଟା ହିଁ ମନରେ ଧପ୍ କରି ପଡ଼ିଗଲା । କହିଲି ଏହା କେବଳ ତୋ କଥାର ଭେଲିକବାଜି । ତାହା ଭୋଗର ଓକିଲାତିରେ ହିଁ ପରିପୂର୍ଣ୍ଣ । ମଣିଷ ଯେତିକି ଜାବୁଡ଼ି ଧରି ଭୋଗ କରିବାକୁ ଇଚ୍ଛା କରେ ସେତିକି ସେ ହରାଇଥାଏ । ତା ଭୋଗର କ୍ଷୁଧା ତ ମେଣ୍ଟେ ନାହିଁ ବରଞ୍ଚ ଅତୃପ୍ତି ନିରନ୍ତର ବଢ଼ି ଚାଲେ । ସେଥିପାଇଁ ଆମ ଶାସ୍ତ୍ରକାରମାନେ କହି ଯାଇଛନ୍ତି—ଏ ପଥରେ ଶାନ୍ତି ନାହିଁ, ତୃପ୍ତି ନାହିଁ, ଏବଂ ମୁକ୍ତିର ଆଶା ମଧ୍ୟ ବୃଥା । ସେମାନେ କହିଛନ୍ତି—ନ ଜାତୁ କାମଃ, କାମନାମୁପଭୋଗେନ ଶମ୍ୟତି । ହବିଷା କୃଷ୍ଣ ବର୍ତ୍ମେବ ଭୂୟ ଏବାଭି ବର୍ଦ୍ଧତେ ।" ଅଗ୍ନିରେ ଘିଅ ଢାଳିଲେ ତାହା ଯେପରି ଜୋରରେ ଜଳି ଉଠେ, ସେହିପରି ଉପଭୋଗ ଦ୍ୱାରା କାମନା ବଢ଼େ ସିନା କିନ୍ତୁ କୌଣସି ଦିନ କମେ ନାହିଁ ।

ହରେନ୍ଦ୍ର ଉଦ୍‌ବଗ୍ନ ହୋଇ କହିଲ—ତା ନିକଟରେ ଶାସ୍ତ୍ର ବାକ୍ୟ କହିବାକୁ ଯାଉଥିଲେ କାହିଁକି ? ତା ପରେ ?

: ଠିକ୍ ତାହା ହିଁ । ଶୁଣି କରି ହସି ଉଠି କହିଲ—ଶାସ୍ତ୍ରରେ ଏପରି ଅଛି ନା କ'ଣ ? ଥିବତ । ସେମାନେ ଜାଣନ୍ତି ଜ୍ଞାନର ଚର୍ଚ୍ଚା ହେଲେ ଜ୍ଞାନ ଅର୍ଜ୍ଜିବା ପାଇଁ ଇଚ୍ଛା ବଢ଼ିଥାଏ । ଧର୍ମର ସାଧାନା ଦ୍ୱାରା ଧର୍ମର ପିପାସା ଉତ୍ତରୋତ୍ତର ବଢ଼ିଯିଲେ । ପୁଣ୍ୟର ଅନୁଶୀଳନ ଦ୍ୱାରା ପୁଣ୍ୟଲାଭ କ୍ରମଶଃ ଉଗ୍ର ହୋଇ ଉଠେ । ମନେହୁଏ ଯେପରି ବର୍ତ୍ତମାନ ବହୁତ କଛି ବାକି ରହିଯାଇଛି । ଏହା ଠିକ୍ ସେହିପରି । ଶମ୍ୟତ ବୋଲି ଏ କ୍ଷେତ୍ରରେ ସେମାନେ ଆକ୍ଷେପ କରି ଯାଇ ନାହାଁନ୍ତି । ସେମାନଙ୍କର ବିବେଚନା ଥିଲ ।

ହରେନ୍ଦ୍ର, ଅଜିତ, ବେଲା ଓ ନୀଳିମା ଗୁରଜଣଯାକ ଏକାଠି ହସି ଉଠିଲେ ।

ଆଶୁବାବୁ କହିଲେ—ହସିବାର କଥା ନୁହେଁ । ଝିଅଟାର ଉପହାସ ଓ ବିଦ୍ରୂପ ଫଳରେ ମୁଁ ଯେପରି ଜ୍ଞାନ ହରାଇ ବସିଲି । ନିଜକୁ ସମ୍ଭାଳି ନେଇ କହିଲି ଏହା ସେମାନଙ୍କର ଅଭିପ୍ରାୟ ନ ଥିଲ । ଭୋଗ ମଧ୍ୟରେ ତୃପ୍ତି ନାହିଁ । କାମନାର ନିବୃତ୍ତି ହୋଇପାରେ ନାହିଁ । ଏହି ଇଙ୍ଗିତ ହିଁ ସେମାନେ ଦେଇ ଯାଇଛନ୍ତି ।

କମଲ କହି ଉଠିଲା—କେଜାଣି କାହିଁକି ଏପରି ବାହୁଲ୍ୟ ଇଙ୍ଗିତ ସେମାନେ ଦେଇଗଲେ ? ଏହା କ'ଣ ହାଟ ମଝିରେ ବସି ଯାହା ଦେଖିବା ଜମ୍ମା ପଡ଼ୋଶୀ ଘରେ ବାଜୁଥିବା ଗ୍ରାମୋଫୋନ ବାଜାର ଗାଉଣା ଯେ ମଝିରେ ମନେ ହେବ, ଥାଉ, ଯଥେଷ୍ଟ ତୃପ୍ତିଲାଭ କରିଗଲଣି । ଆଉ ଏଣିକି ନୁହେଁ । ସେମାନଙ୍କର ଅସଲ ସତ୍ତ୍ୱା ତ ବାହାରର ଭୋଗ ଭିତରେ ନ ଥାଏ । ଭୋଗର ମୂଳ ଉତ୍ସ ସେମାନଙ୍କର ଜୀବନକୁ ଆଶା, ଆନନ୍ଦ ଓ ରସ ଯୋଗାଇ ଦେଇଥାଏ । ତେଣୁ ଶାସ୍ତ୍ରର ଧିକ୍‌କାର ସେମାନଙ୍କ ଦରଜା ନିକଟରେ ବ୍ୟର୍ଥ ହୋଇ ମୁହଁମାଡ଼ି ପଡ଼ିରହେ ସିନା କିନ୍ତୁ ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ ।

କହିଲ—ତା ହୋଇ ପାରେ । କିନ୍ତୁ ଏହା ଯେ ରିପୁ । ତାହାକୁ ତ ମନୁଷ୍ୟର ଜୟ କରିବା ଦରକାର ।

କମଲ କହିଲା—ରିପୁ ବୋଲି ଗାଳି ଦେଲେ ତ ଆଉ ତାହା ଶ୍ରେଷ୍ଠ ହୋଇ ଯିବ ନାହିଁ । ପ୍ରକୃତିର ଅସଲ ଦଲିଲର ସେ ହେଉଛି ଦଖଲଦାର । ତାହାର କୌଣସି ସତ୍ତ୍ୱକୁ ସଂସାରରେ କେହି କେବେ ବିଦ୍ରୋହ କରି ଏଡ଼ାଇ ପାରିଛି କି ? ଦୁଃଖର ଜ୍ୱାଳାରେ ଆତ୍ମହତ୍ୟା କରିବାଟା ତ ଦୁଃଖକୁ ଜୟ କରିବା ନୁହେଁ । ଅଥଚ ଏଇ ଧରଣର ଜୋରରେ ମଣିଷ ଅକଲ୍ୟାଣର ସିଂହଦ୍ୱାର ନିକଟରେ ଶଲ୍ଲର ପଥକୁ ଅଣ୍ଡାଳି ବୁଲେ । ଶାନ୍ତି ତ ମିଳେ ନାହିଁ ବରଂ ମନକୁ ସ୍ୱସ୍ତି ଅପସରି ଯାଏ ।

ଶୁଣି ମନେ ହେଲା ସେ ବୋଧହୁଏ ମୋତେ କେବଳ ଖୁଣ୍ଟା ଦେଲା । ଏତିକି କହି ସେ ମୁହୂର୍ତ୍ତିକ ପାଇଁ ଚୁପ୍ ରହିବା ପରେ କହିଲେ—କ'ଣ ଯେ ହେଲା ହଠାତ୍ ତୁଣ୍ଡରୁ ବାହାରି ପଡ଼ିଲା, କମଳ ତୋ ନିଜ ଜୀବନଟାକୁ ଟିକିଏ ଭାବି କରି ଦେଖିତ । କଥାଟା କହି ସାରିଲା ପରେ ମୋ ଆପଣା କାନକୁ କିପରି କଷ୍ଟ ଲାଗିଲା । କାରଣ କଟାକ୍ଷ କରିବା ଭଳି କିଛି ତ ତାର ନ ଥିଲା । କମଳ ଏକଥା ଶୁଣି ନିଜେ ବୋଧହୁଏ ଆଶ୍ଚର୍ଯ୍ୟ ହୋଇ ପଡ଼ିଲା କିନ୍ତୁ ରାଗ ଅଭିମାନ କିଛି କଲା ନାହିଁ । ଶାନ୍ତ ମୁହଁରେ ମୋ ଆଡ଼କୁ ଚାହିଁ କହିଲା—ମୁଁ ପ୍ରତିଦିନ ହିଁ ଭାବି ଦେଖୁଛି ଆଶୁବାବୁ । ଦୁଃଖ ଯେ ପାଇନାହିଁ ତାହା କହୁ ନାହିଁ, ତାହାକୁ କିନ୍ତୁ ଜୀବନର ଶେଷ ସତ୍ୟ ବୋଲି ମାନି ନେଇ ପାରିନାହିଁ । ଶିବ-ନାଥର ଯାହା ଦେବାର ଥିଲା ତାହା ସେ ଦେଇଛନ୍ତି । ଆନନ୍ଦର ସେହି ମୁହୂର୍ତ୍ତଗୁଡ଼ିକ ମୋ ମନରେ ମଣି ମାଣିକ ଭଳି ସଞ୍ଚିତ ହୋଇ ରହିଛି । ନିଷ୍ଫଳ ଚିନ୍ତାଦାହରେ ପୋଡ଼ି ସେ ସବୁକୁ ପୋଡ଼ି ପାଉଁଶ କରି ଦେଇ ନାହିଁ । ଶୁଖିଲା ଝରଣା ତଳେ ଭିକ୍ଷା ଦିଅ ବୋଲି ଖାଲି ହାତ ପାତି ଠିଆ ହୋଇ ନାହିଁ । ତାର ଭଲ ପାଇବାର ଆୟୁଷ ଯେତେବେଳେ ସରିଗଲା, ତାକୁ ଶାନ୍ତ ମନରେ ବିଦାୟ ଦେଲି । ଆକ୍ଷେପ ଓ ଅଭିଯୋଗ ଧୂଆଁରେ ଆକାଶକୁ କଳା ରଙ୍ଗରେ ଭରି ଦେବା ପାଇଁ ମୋର ପ୍ରବୃତ୍ତି ହେଲା ନାହିଁ । ସେଥିପାଇଁ ତା ସମ୍ବନ୍ଧରେ ମୋର ସେଦିନର ଆଚରଣ ଆପଣଙ୍କ ନିକଟରେ ଏପରି ଅଦ୍ଭୁତ ବୋଲି ମନେ ହୋଇଥିଲା । ଆପଣ ଭାବୁଥିବେ ଏତେ ବଡ଼ ଅପରାଧ କମଳ ମାଫ କରିଲା କିପରି ? କିନ୍ତୁ ଅପରାଧ ଅପେକ୍ଷା ବେଶୀ ମନକୁ ସେଦିନ ଆସିଥିଲା ଆପଣାର ଦୁର୍ଭାଗ୍ୟ କଥା ।

ମନେ ହେଲା ଯେପରି ତାର ଆଖି କୋଣରେ ଲୁହ ଦେଖା ଦେଲା । ତା କଥା ହୁଏତ ସତ ହୋଇପାରେ ଏବଂ ମୋର ଭୁଲ ମଧ୍ୟ ନ ହେବାରେ ବ୍ୟତିକ୍ରମ ନ ଥାଇପାରେ । ତଥାପି ବୁକ ଭିତରଟା ଯେପରି ବ୍ୟଥାରେ ଭରି ପଡ଼ିଲା । କେବଳ ତାହା ସହିତ ମୋର ପ୍ରଭେଦ କେତେ ଅଳ୍ପ ! କହିଲି କମଳ, ମଣିମାଣିକ୍ୟର ସମ୍ପଦ ମୋର ମଧ୍ୟ ଅଛି । ତାହା ତ ସାତୋଟି ରାଜାଙ୍କର ଧନ । ତେଣୁ ମୁଁ କାହିଁକି ଯିବ ଅନ୍ୟକୁ ଈର୍ଷା କରିବା ପାଇଁ ?

କମଳ ଚୁପ୍ ହୋଇ ଚାହିଁ ରହିଲା । ପ୍ରଶ୍ନ କଲି—ଏ ଜୀବନରେ ଆଉ କ'ଣ କାହାକୁ ତୁ ଭଲପାଇ ପାରିବୁ କମଳ ? ଏପରି ଭାବରେ ସମସ୍ତ ଦେହ ମନ ଦେଇ ଅନ୍ୟ କାହାକୁ ଗ୍ରହଣ କରିପାରିବୁ ?

କମଳ ଅବିଚଳିତ କଣ୍ଠରେ ଉତ୍ତର ଦେଲା—ଅନ୍ତତଃ ସେହି ଆଶା ନେଇ ତ ବଞ୍ଚିରହିବାକୁ ପଡ଼ିବ, ଆଶୁବାବୁ । ଅସମୟରେ ମେଘ ଆଢୁଆଳରେ ଆଜି ସୂର୍ଯ୍ୟ ଅସ୍ତ ହୋଇଗଲା ବୋଲି ସେହି ଅନ୍ଧକାରଟା କ'ଣ ହେବ ସତ୍ୟ ? ଆଉ କାଲି ପ୍ରଭାତର ଆଲୋକରେ ଆକାଶ ଯଦି ଭରି ଉଠିବ ଦୁଇ ଆଖି ବୁଜି ତାହାକୁ କ'ଣ କହିବ ଏହା

ଆଲୁଅ ନୁହେଁ ମିଥ୍ୟା—ଅନ୍ଧକାର ? ଜୀବନଟାକୁ ନେଇ ଏପରି ଭାବରେ ପିଲାଖେଳ କରି କ'ଣ ଶେଷ କରିଦେବ ?

କହିଲି—ରାତି କେବଳ ଗୋଟିଏ ତ ନୁହେଁ କମଳ, ପ୍ରଭାତର ଆଲୋକକୁ ଶେଷ କରି ପୁଣି ତ ରାତି ଆସିପାରେ ?

ସେ କହିଲା—ଆସୁ । ସେତେବେଳେ ପୁଣି ମନରେ ଭୋର ଉପରେ ଆସ୍ଥାରଖି ରାତି ଯାପନ କରିବ ।

ବିସ୍ମୟରେ ଅଭିଭୂତ ହୋଇ ବସିରହିଲି । କମଳ ଚାଲିଗଲା ।

ପିଲାଖେଳ ! ମନେ ହେଉଥିଲା ଶୋକ ମଧ୍ୟଦେଇ ଆମ ଦୁହିଁଙ୍କର ଭାବନାର ଧାରା ଯାଇ ଗୋଟିଏ ସ୍ରୋତରେ ମିଶି ଯାଇଛି । ଦେଖିଲି, ନା, ତାହା ନୁହେଁ । ଆକାଶ ପାତାଳ ପ୍ରଭେଦ । ଜୀବନର ଅର୍ଥ ତା ନିକଟରେ ସ୍ୱତନ୍ତ୍ର । ମୋ ସହିତ ତାର କୌଣସି ସାମଞ୍ଜସ୍ୟ ନାହିଁ । ଭାଗ୍ୟକୁ ମଧ୍ୟ ମାନେ ନାହିଁ । ଅତୀତର ସ୍ମୃତି ତା ଆଗରେ ପଥରୋଧ କରି ଠିଆ ହୋଇପାରେ ନାହିଁ । ଅନାଗତ ମଧ୍ୟ ତା'ପାଇଁ ସେଇଆ—ଯାହାକି ଆଜି ପର୍ଯ୍ୟନ୍ତ ଆସି ପହଞ୍ଚିପାରି ନାହିଁ । ସେଥିପାଇଁ ତା ଆଶା ଯେପରି ଦୁର୍ବାର, ଆନନ୍ଦ ମଧ୍ୟ ସେହିପରି ଅପରାଜେୟ । ଆଉ ଜଣେ କେହି ତା ଜୀବନକୁ ଫାଙ୍କି ଦେଇଛି ବୋଲି ସେ ନିଜର ଜୀବନକୁ ଫାଙ୍କି ଦେବାପାଇଁ କୌଣସିମତେ ରାଜି ନୁହେଁ ।

ସମସ୍ତେ ଚୁପ୍ ହୋଇ ରହିଲେ ।

ଉଦ୍‌ଗତ ଦୀର୍ଘଶ୍ୱାସକୁ ଚାପିରଖି ଆଶ୍ୱବାବୁ ପୁଣି କହିଲେ—ଆଶ୍ଚର୍ଯ୍ୟ ରକମର ଝିଅଟିଏ ! ସେଦିନ ବିରକ୍ତି ଓ ଆକ୍ଷେପର ସୀମା ରହିଲା ନାହିଁ । କିନ୍ତୁ ଏକଥା ତ ମନେ ମନେ ଅସ୍ୱୀକାର କରିପାରିଲି ନାହିଁ ଯେ ଏହା ତାର ବାପ ନିକଟରୁ ଶିଖିଥିବା କଥା ନୁହେଁ । ଯାହା ଶିଖିଛି, ଏକବାରେ ନିଃସନ୍ଦେହ ହୋଇ ଶିକ୍ଷାଲାଭ କରିଛି । କେତେ ଅବା ବୟସ ! କିନ୍ତୁ ନିଜର ମନଟାକୁ ଯେପରି ସେ ଏହି ବୟସରେ ସମ୍ୟକ୍ ଭାବରେ ଉପଲବ୍ଧି କରିପାରିଛି ।

ଟିକିଏ ଅଟକିଯାଇ ଆଶୁବାବୁ କହିଲେ—ସତରେ ତ, ଜୀବନଟା ଆଦୌ ପିଲା-ଖେଳ ନୁହଁ । ଭଗବାନଙ୍କର ଏତେବଡ଼ ଦାନ ତ ଆଉ ସେଥିପାଇଁ ଆସିନାହିଁ । ଆଉ କେହି ଜଣେ ତା ଜୀବନରେ ବିଫଳ ହେଲା ବୋଲି ସେହି ଶୂନ୍ୟତାର ଧ୍ୱଜା ଚିରଜୀବନ ଜଗି ଘୋଷଣା କରିବାକୁ ହେବ, ଏପରି କଥା ଅବା କହିବ କିପରି ?

ବେଲା ଆସ୍ତେ ଆସ୍ତେ କହିଲା—ସୁନ୍ଦର କଥାଟିଏ ।

ହରେନ୍ଦ୍ର ନୀରବରେ ଉଠି ଠିଆ ହୋଇ କହିଲା—ରାତି ଅନେକ ହେଲାଣି । ବର୍ଷା ମଧ୍ୟ କମିଯାଇଛି, ଯାଉଛି ।

ଅଜିତ ଉଠି ଠିଆ ହେଲା । କିଛି କହିଲା ନାହିଁ । ଉଭୟେ ନମସ୍କାର କରି ବାହାରି ଚାଲିଗଲେ ।

ବେଲା ଶୋଇବା ପାଇଁ ଗଲା । ଛୋଟ ଛୋଟ ଗୋଟାଏ ଦୁଇଟା କାମ ସେ ପର୍ଯ୍ୟନ୍ତ ନୀଳିମାର ବାକୀ ଥିଲା । କିନ୍ତୁ ଆଜି ତାହା ସେହିପରି ଅସମ୍ପୂର୍ଣ୍ଣ ହୋଇ ପଡ଼ି ରହିଲା । ଅନ୍ୟମନସ୍କ ଭଳି ସେ ମଧ୍ୟ ଚୁପ୍‌ଚାପ୍ ହୋଇ ଚାଲିଗଲା ।

ଚାକର ଅପେକ୍ଷାରେ ଆଶୁବାବୁ ଆଖିରେ ହାତ ଦେଇ ପଡ଼ି ରହିଲେ ।

ପ୍ରକାଣ୍ଡ ଅଟ୍ଟାଳିକା । ବେଲା ଓ ନୀଳିମାର ଶୟନକକ୍ଷ ଠିକ୍ ବିପରୀତ ଦିଗରେ । ଘରେ ଆଲୁଅ ଜଳୁଥିଲା । ଏତେ କଥା ଓ ଆଲୋଚନାର ବିଷୟବସ୍ତୁ ଯେପରି ନିର୍ଜ୍ଜନ ନିଃସଙ୍ଗ ଘର ଭିତରେ ଆସି ପହଞ୍ଚିବାକ୍ଷଣି ସେମାନଙ୍କ ନିକଟରେ ଝାପ୍‌ସା ହୋଇ ଉଠିଲା । ଅଥଚ ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ଲୁଗା ବଦଳାଇ ଦୁହେଁ ଯେତେବେଳେ ଦର୍ପଣ ଆଗରେ ଠିଆ ହୋଇପଡ଼ିଲେ ସେତେବେଳେ ଏହି ଦୁଇଟି ନାରୀଙ୍କର ଏକ ସମୟରେ ଠିକ୍ ଗୋଟିଏ କଥା କେବଳ ମନେପଡ଼ିଲା—ଦିନେ ମୁଁ ନାରୀ ଥିଲି ।

ଦଶ ବାରଦିନ ହେବ କମଳ ଆଗ୍ରା ଛାଡ଼ି କୁଆଡ଼େ ଚାଲିଯାଇଛି, ଅଥଚ ଆଶୁ-ବାବୁଙ୍କର ସେ ଅତ୍ୟନ୍ତ ପ୍ରୟୋଜନୀୟ ହୋଇ ଉଠିଛି । କମ୍ ବେଶୀ ସମସ୍ତେ ଚିନ୍ତିତ । କିନ୍ତୁ ଉଦ୍‌ବେଗର କଳାମେଘ ସବୁଠାରୁ ଜମାଟ ବାନ୍ଧିଲା ହରେନ୍ଦ୍ରର ବ୍ରହ୍ମଚର୍ଯ୍ୟାଶ୍ରମର ମୁଣ୍ଡ ଉପରେ । ବ୍ରହ୍ମଚାରୀ ହରେନ୍ଦ୍ର, ଏବଂ ଅଜିତ୍ ଦୁହେଁ ଉତ୍କଣ୍ଠାରେ ଏପରି ଭାବରେ ଖୋଜିଗଲେ ଯେ ସେମାନଙ୍କର ବ୍ରହ୍ମ ହଜିଗଲେ ମଧ୍ୟ ଏତେଟା ବୋଧହୁଏ ହୋଇପାରି ନ ଥାନ୍ତା । ଅବଶେଷରେ ସେମାନେ ଦିନେ ତାକୁ ଖୋଜି ବାହାର କରିପାରିଲେ । ଘଟଣାଟା ନିହାତି ସାମାନ୍ୟ । କମଳର ଚିହ୍ନା ବଗିଚାରେ ଘନିଷ୍ଠ ପରିଚିତ ଜଣେ ଫିରିଙ୍ଗୀ ସାହେବ ବଗିଚା କାମ ଛାଡ଼ି ରେଲଓ୍ୱେରେ ଚାକିରି ପାଇଁ ସମ୍ପ୍ରତି ଟୁନ୍‌ଡ଼ଲାକୁ ଆସିଛନ୍ତି । ତାଙ୍କର ସ୍ତ୍ରୀ ନାହିଁ । ଦୁଇ ବର୍ଷର ଗୋଟିଏ ଝିଅ, ସେ ହିଁ ଅତ୍ୟନ୍ତ ବିବ୍ରତ ହୋଇ କମଳକୁ ନେଇ ଯାଇଛନ୍ତି । ତାଙ୍କର ଘର ସଂସାର ସଜାଡ଼ିବାରେ ଲାଗି ପଡ଼ିଥିବାରୁ କମଳର ଆପଣା ବସାକୁ ଫେରିବା ପାଇଁ ଏତେ ବିଳମ୍ବ । ଆଜି ସକାଳେ ସେ ଆପଣା ବସାକୁ ଫେରି ଆସିଛି । ଅପରାହ୍ଣ ସମୟରେ କାର୍ ପଠାଇ ଦେଇ ଆଶୁବାବୁ ଆଗ୍ରହର ସହିତ ପ୍ରତୀକ୍ଷା କରି ରହିଛନ୍ତି ।

ବେଲାର ମାଜିଷ୍ଟ୍ରେଟଙ୍କ ଘରେ ନିମନ୍ତ୍ରଣ ଥିଲା । ସେ ମଧ୍ୟ ଶାଢ଼ୀ ପ୍ରଭୃତି ପିନ୍ଧି ଗାଡ଼ି ପାଇଁ ଅପେକ୍ଷା କରିଥାଏ ।

ଚିନ୍ତା କରୁ କରୁ ନୀଳିମା ହଠାତ୍ କହି ଉଠିଲା—ସେ ଲୋକଟାର ସ୍ତ୍ରୀ ନାହିଁ । ଗୋଟିଏ ଛୋଟ ଝିଅ ଛଡ଼ା ଘରେ ଅନ୍ୟ କୌଣସି ସ୍ତ୍ରୀ ଲୋକ ନାହିଁ ଅଥଚ ତାହାର ଘରେ କମଳ ଦଶ ବାର ଦିନ ସ୍ୱଚ୍ଛନ୍ଦରେ କଟାଇ ଦେଇ ପାରିଲା କିପରି ?

ଆଶୁବାବୁ ଅନେକ କଷ୍ଟରେ ବେକ ଭାଙ୍ଗି ତା ଆଡ଼କୁ ଚାହିଁଲେ ଏବଂ ଏହି କଥାର ତାତ୍ପର୍ଯ୍ୟ ଠିକ୍ ଭାବରେ ଜାଣିପାରିଲେ ନାହିଁ ।

ନୀଳିମା ଯେପରି ଆପଣା ମନକୁ ମନ କହିବାକୁ ଲାଗିଲା—ସେ ଯେପରି ଠିକ୍ ନଦୀର ମାଛ ଭଳି । ପାଣିରେ ରହିଲେ ଓଦା ହେବାର ପ୍ରଶ୍ନ ଉଠେ ନାହିଁ । ଖାଇବା ପିନ୍ଧିବାର ଚିନ୍ତା ନାହିଁ । ଶାସନ କରିବା ପାଇଁ କେହି ନାହାଁନ୍ତି । ଅଖି ରଙ୍ଗାଇ କରି ଦେଖିବା ପାଇଁ ସମାଜ ମଧ୍ୟ ନାହିଁ । ଯାହାକୁ କୁହନ୍ତି ଏକବାରେ ସ୍ୱାଧୀନ ।

ଆଶୁବାବୁ ମୁଣ୍ଡ ହଲାଇ କହିଲେ--ଅନେକଟା ସେହିପରି ।

ତା ରୂପ ଓ ଗୁଣର ସୀମା ନାହିଁ । ବୁଦ୍ଧି ମଧ୍ୟ ସେହିପରି ଅଫୁରନ୍ତ । ସେହି ଗ୍ରେନ୍ ପିଲାଟିର ସଙ୍ଗେ କେତେ ଦିନର ଅବା ଜଣାଶୁଣା ? ଉତ୍ପାତ ଭୟରେ ଯେତେବେଳେ କେଉଁଠାରେ ଆଶ୍ରୟ ମିଳିଲା ନାହିଁ ସେତେବେଳେ ସେ ହିଁ ନିଃସଙ୍କୋଚରେ ତାକୁ ଆପଣା ବସାକୁ ଡାକି ନେଇଥିଲା । କାହାର ମତାମତର ମୁହଁକୁ ଚାହିଁ ସେ ଆପଣା କର୍ତ୍ତବ୍ୟରେ ହେଳା କରିଲା ନାହିଁ । ଯାହା କେହି କରି ନପାରିଲେ ତାହା ସେ ଅନାୟାସରେ କରିବସିଲା । ଶୁଣିବାକ୍ଷଣି ମନେ ହେଲା ଯେପରି ସମସ୍ତେ ତାହା ତୁଳନାରେ ଛୋଟ ହୋଇ ପଡ଼ିଛନ୍ତି । ଅଥଚ ଝିଅମାନଙ୍କୁ କେତେ ଆଡ଼ୁ କେତେ କଥାକୁ ବିଚାର କରିବାକୁ ନ ପଡ଼େ ।

ଆଶୁବାବୁ କହିଲେ—ଭାବିବା ତ ଉଚିତ ଥିଲା, ନୀଳିମା ।

ବେଲା କହିଲା—ଇଚ୍ଛା କରିଲେ ମୁଁ ମଧ୍ୟ ଏପରି ବେପରୁଆ ଭାବରେ ସ୍ୱାଧୀନ ହୋଇ ପାରିବି ।

ନୀଳିମା କହିଲା—ନା, ପାରି ନଥାନ୍ତେ । ଇଚ୍ଛା କଲେ ମୁଁ ପାରିବି ନାହିଁ । ଆପଣ ମଧ୍ୟ ପାରି ନଥାନ୍ତେ । କାରଣ ସଂସାର ଯେଉଁ କଳଙ୍କ ଦେହରେ ମାଖି ଦେବ ତାହାକୁ ପୋଛିଦେବାର ଶକ୍ତି ଆମର ନାହିଁ । ଟିକିଏ ଅଟକି ଯାଇ ପୁଣି କହିଲା—ଏଇଭଳି ଇଚ୍ଛା ମୋର ମଧ୍ୟ ଦିନେ ହୋଇଥିଲା । ସେଥିପାଇଁ ଅନେକ ଦିନରୁ ଏହି କଥା ଭାବି କରି ଦେଖିଛି । ପୁରୁଷମାନଙ୍କଦ୍ୱାରା ତିଆରି ସଂସାରରେ ପ୍ରତ୍ୟହ ତିଳ ତିଳ ହୋଇ ଜଳି ପୋଡ଼ି ମରୁଛି । କେବଳ ଜଳିବା ହିଁ ସାର ହୋଇଛି, କିନ୍ତୁ କମଳକୁ ଦେଖିବା ଆଗରୁ ଏହାର ଅସଲ ରୂପଟି କେବେ ଆଖିରେ ପଡ଼ି ନ ଥିଲା । ଝିଅମାନଙ୍କର ମୁକ୍ତି, ଝିଅମାନଙ୍କର ସ୍ୱାଧୀନତା, ସେତେବେଳେ ଥିଲା କଳ୍ପନାଙ୍କ ଲକ୍ଷଣରେ । କିନ୍ତୁ ଏବେ ସ୍ପଷ୍ଟରେ ଦେଖୁଛି ତାହା ସେହି ଜପଣରୁ ଆଉ ପାଦଟିଏ ମଧ୍ୟ ଆଗେଇ ପାରି

ନାହିଁ । କାହିଁକି ଜାଣନ୍ତି ? ବର୍ତ୍ତମାନ ଦେଖିବାକୁ ପାଉଛୁ ସ୍ୱାଧୀନତା ଚନ୍ଦ୍ର-ବନ୍ଦରରେ ମିଳେ ନାହିଁ । ନ୍ୟାୟ-ଧର୍ମର ଦୋହାଇ ଦେଇ ମିଳେ ନାହିଁ, କିମ୍ବା ସଙ୍ଗରେ ଠିଆ ହୋଇ ପୁରୁଷମାନଙ୍କ ସହିତ କନ୍ଦଳ କରିଲେ ମିଳେ ନାହିଁ । ଏହା କାହାକୁ କେହି ଦେଇ ହୁଏ ନାହିଁ । ଦେଣା-ପାଉଣାର ବସ୍ତୁ ହିଁ ଏହା ନୁହେଁ । କମଳକୁ ଦେଖିଲେ ଜଣାପଡ଼େ ସେ ନିଜର ପୂର୍ଣ୍ଣତାରେ, ଆତ୍ମାର ଆପଣା ବିସ୍ତାରରେ ଆପେ ଆସିଛି । ବାହାରୁ ଡିମ୍ବର ଖୋଳକୁ ଠୁକର ଦେଇ ଖଣ୍ଡି ଭିତରେ ଥିବା ଜୀବନକୁ ମୁକ୍ତ ଦେଲେ ସେ ମୁକ୍ତ ପାଏ ନାହିଁ । ବରଂ ମରିଯାଏ, ଆମମାନଙ୍କ ସହିତ ତାର ତଫାତ୍ ଏଇଠାରେ ।

ବେଲାକୁ ଉଦ୍ଦେଶ୍ୟ କରି କହିଲା—ଏଇଯେ ଦଶବାରଦିନ ଧରି କେଉଁଆଡ଼େ ବୁଲିଗଲା । ସେଥିପାଇଁ ସମସ୍ତଙ୍କର ଭୟର ସୀମା ରହିଲା ନାହିଁ, କିନ୍ତୁ ଏପରି ଆଶଙ୍କା କାହାର ହେଲା ନାହିଁ ଯେ ଏଭଳି କିଛି କାର୍ଯ୍ୟ କମଳ କରିପାରେ ଯହିଁରେ ତା ଇଜ୍ଜତରେ ଆଞ୍ଚ ଆସିପାରେ । କହନ୍ତୁତ, ମଣିଷ ମନରେ ଏପରି ଭାବରେ ବିଶ୍ୱାସ ଆମେମାନେ କ'ଣ ଅର୍ଜ୍ଜନ କରି ପାରିଥାନ୍ତେ ? ଆମକୁ ଏହି ଗୌରବ ଅବା ଦିଅନ୍ତେ କେଉଁମାନେ ? ପୁରୁଷ-ମାନେ ତ ନୁହଁନ୍ତି—ସ୍ତ୍ରୀମାନେ ମଧ୍ୟ ନୁହଁନ୍ତି ।

ଆଶୁବାବୁ ତା ମୁହଁକୁ ବିସ୍ମୟରେ କ୍ଷଣକପାଇଁ ଚାହିଁ ରହି କହିଲେ—ବାସ୍ତବିକ୍ ସତକଥା, ନୀଳିମା ।

ବେଲା ପ୍ରଶ୍ନ କଲା—କିନ୍ତୁ ସ୍ୱାମୀ ଥିଲେ ସେ କ'ଣ କରନ୍ତେ ?

ନୀଳିମା କହିଲା—ତାଙ୍କର ସେବା କରିଥାନ୍ତି, ରାନ୍ଧିବାଢ଼ି ଖାଇବାକୁ ଦେଇଥାନ୍ତି, ଘରଦୁଆର ପରିଷ୍କାର କରିଥାନ୍ତି, ପିଲାପିଲି ଥିଲେ ସେମାନଙ୍କୁ ମଣିଷ କରିବାକୁ ଲାଗି-ପଡ଼ିଥାନ୍ତି । ପ୍ରକୃତରେ ସେ ଏକାକୀ ମନୁଷ୍ୟ । ଟଙ୍କା ପଇସା ମଧ୍ୟ ପାଖରେ କମ୍ । ସମସ୍ତ ଅଭାବହେତୁ ସେ ବୋଧହୁଏ ଆମମାନଙ୍କ ସହିତ ଥରଟିଏ ସୁଦ୍ଧା ସାକ୍ଷାତ୍ କରିପାରୁ ନ ଥାନ୍ତି ।

ବେଲା କହିଲା—ତେବେ ?

: ତେବେ କ'ଣ ? କହି ହସିପକାଇ ପୁଣି ନୀଳିମା କହିଲା—କାମଦାମ କିଛି କରିବ ନାହିଁ । ଶୋକ-ଦୁଃଖ-ଅଭାବ-ଅଭିଯୋଗ କିଛି ନ ଥିବ । ଚବିଶଘଣ୍ଟା ବାହାରେ ବୁଲୁଥିବ । ଏହାସବୁ କ'ଣ ଝିଅମାନଙ୍କର ମାନଦଣ୍ଡ ନା କ'ଣ ? ସ୍ୱୟଂ ବିଧାତାଙ୍କର ତ କାମର ସୀମା ନାହିଁ, କିନ୍ତୁ କେହି କ'ଣ ତାଙ୍କୁ ପରାଧୀନ ବୋଲି ଭାବିଥାନ୍ତି କି ? ଏହି ସଂସାରରେ ଆମ ନିଜର ଖଟଣୀ କ'ଣ କମ୍ କି ?

ଆଶୁବାବୁ ବିସ୍ମିତ ହୋଇ ମୁଗ୍ଧ ନେତ୍ରରେ ତା ଆଡ଼କୁ ଚାହିଁ ରହିଲେ । ପ୍ରକୃତରେ ଏଇ ଧରଣର କୌଣସି କଥା ତା ମୁହଁରୁ ସେ ଆଜି ପର୍ଯ୍ୟନ୍ତ ଶୁଣି ନ ଥିଲେ ।

ମାଳମା କହିବାକୁ ଲାଗିଲା—କମଳ ବସି ରହିବା ତ ଜାଣେ ନାହିଁ, ସେତେବେଳେ ସ୍ୱାମୀ-ପୁଅ ସଂସାର ଧରି ସେ ସଂସାର କାମରେ ବ୍ୟସ୍ତ ରହୁଥିଲା । ଆନନ୍ଦ କେତେବେଳେ ଲହରୀ ପରି ତା ସଂସାର ଉପରେ ଦେଇ ବହି ଚାଲିଯାଏ, ସେ ତାହାର ସନ୍ଧାନ ପାଇପାରୁ ନ ଥିଲା । କିନ୍ତୁ ଯେଉଁଦିନ ବୁଝିପାରିଲା ଯେ ସ୍ୱାମୀଙ୍କର କାର୍ଯ୍ୟଗୁଡ଼ିକ ତା ଦେହରେ ବୋଝ ହୋଇ ଚାପି ଧରିଛି, ମୁଁ ଶପଥ କରି କହିପାରିବି କେହି ଦିନକ ପାଇଁ ସେହି ସଂସାରରେ ତାକୁ ଅଟକାଇ ରଖିପାରି ନ ଥାନ୍ତେ ।

ଆଶୁବାବୁ କହିଲେ—ପ୍ରକୃତରେ ତାହାତ ସତ ବୋଲି ମନେହୁଏ ।

ଅଦୂରରେ ପରିଚିତ ମଟରକାର୍‌ର ହର୍ଣ୍ଣ ଶୁଣାଗଲା । ବେଲା ଝରକା ଭିତରୁ ଚାହିଁ ଦେଖି କହିଲା—ହଁ ଆମରି ଗାଡ଼ି—ଆମରି ଗାଡ଼ି ।

ଅଳ୍ପ ସମୟରେ ଚାକର ଆସି କମଳ ପହଞ୍ଚିବାର ଖବର ଦେଲା ।

କେତେଦିନ ହେବ ଆଶୁବାବୁ ଏହିଭଳି ପ୍ରତୀକ୍ଷା କରି ରହିଥିଲେ ଅଥଚ ଖବର ପାଇବା ପରେ ତାଙ୍କ ମୁହଁ ଅତିଶୟ ମଳିନ ଓ ଗମ୍ଭୀର ହୋଇ ପଡ଼ିଲା । ଏଇମାତ୍ର ଆରାମ ଚୌକିରେ ସିଧା ହୋଇ ବସିଥିଲେ । ପୁଣି ଚିତ୍‌ ହୋଇ ଶୋଇ ପଡ଼ିଲେ ।

ଘର ଭିତରେ ପ୍ରବେଶ କରି କମଳ ସମସ୍ତଙ୍କୁ ନମସ୍କାର କଲା, ଏବଂ ଆଶୁବାବୁଙ୍କ ପାଖ ଚୌକିରେ ବସିପଡ଼ିଲା । କହିଲା—ଶୁଣିଲି, ଆପଣ କୁଆଡ଼େ ମୋ ପାଇଁ ବହୁତ ବ୍ୟସ୍ତ ହୋଇ ପଡ଼ିଛନ୍ତି ? ମୁଁ କ'ଣ ଜାଣେ ଆପଣ ମୋତେ ଏତେଦୂର ଭଲ ପାଆନ୍ତି ବୋଲି ? ତାହାହେଲେ ଯିବା ଆଗରୁ ଖବର ଦେଇ ଯାଇ ପାରିଥାନ୍ତି । ଏତିକି କହି ସେ ତାଙ୍କର ସ୍ଥୂ ପରିପୁଷ୍ଟ, ଶିଥିଳ ହାତକୁ ଆପଣା ହାତମୁଠାକୁ ଟାଣିନେଲା ।

ଆଶୁବାବୁଙ୍କର ମୁହଁ ଅନ୍ୟଆଡ଼େ ଥିଲା । ଠିକ୍ ସେହିପରି ମଧ୍ୟ ରହିଲା । ସେ ପଦଟିଏ କଥା ମଧ୍ୟ ଉତ୍ତର ଦେଇ ପାରିଲେ ନାହିଁ ।

କମଳ ପ୍ରଥମେ ମନେ କଲା ସେ ସମ୍ପୂର୍ଣ୍ଣ ସୁସ୍ଥ ହେବା ଆଗରୁ ସେ ଚାଲି ଯାଇଥିଲା ଏବଂ ଏତେଦିନ ଧରି ତାଙ୍କର କୌଣସି ଖବର ରଖିପାରି ନାହିଁ ବୋଲି ଆଶୁବାବୁ ଅଭିମାନ କରିଛନ୍ତି । ତାଙ୍କର ମୋଟା ଅଙ୍ଗୁଳିକୁ ନିଜର ଚମ୍ପାକଢ଼ି ଭଳି ଆଙ୍ଗୁଳି ମଧ୍ୟରେ ପୁରାଇ କାନ ପାଖକୁ ମୁହଁ ଆଣି ଚୁପ୍ ଚୁପ୍ କରି କହିଲା—ମୁଁ କହୁଛି ମୋର ଦୋଷ ହୋଇଛି । ସେଥିପାଇଁ ମୁଁ କ୍ଷମା ମାଗୁଛି । କିନ୍ତୁ ଏଥର ଉତ୍ତରରେ ସେ ଯେତେବେଳେ କିଛି ଶୁଣିବାକୁ ପାଇଲା ନାହିଁ ସେତେବେଳେ ସେ ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇ ଉଠିଲା ଏବଂ ମନେ ମନେ ଭୟ ପାଇଲା ।

ବେଲା ଯିବାପାଇଁ ପାଦ ବଢ଼ାଇ ରହିଥିଲା । ଉଠିପଡ଼ି ଠିଆ ହୋଇ ବିନୟର ସହିତ କହିଲା—ଆପଣ ଆସିବେ ବୋଲି ଜାଣିଥିଲେ ମାଳିନୀର ନିମନ୍ତ୍ରଣଟା ଆଜି

କୌଣସିମତେ ରକ୍ଷା କରି ନ ଥାନ୍ତି, କିନ୍ତୁ ବର୍ତ୍ତମାନ ନ ଗଲେ ସେ ବଡ଼ ହତାଶ ହୋଇ ପଡ଼ିବ ।

କମଳ ପ୍ରଶ୍ନ କଲା—ମାଳିନୀ କିଏ ?

ନୀଳିମା ଉତ୍ତର ଦେଲା—ଏଠିକାର ମ୍ୟାଜିଷ୍ଟ୍ରେଟ ସାହେବଙ୍କର ସ୍ତ୍ରୀ । ନାଆଁଟା ବୋଧହୁଏ ତୁମର ମନେ ନାହିଁ । ତାପରେ ବେଲାକୁ ଉଦ୍ଦେଶ୍ୟ କରି କହିଲା—ପ୍ରକୃତରେ ତୁମର ଯିବା ଉଚିତ୍ । ନ ଗଲେ ସେମାନଙ୍କର ଗାନ ବାଜଣା ଆସରଟା ମାଟି ହୋଇଯିବ ।

: ନା, ନା, ମାଟି ହେବ ନାହିଁ । ତଥାପି ସେମାନେ ଖୁସି ଦୁଃଖିତ ହେବେ । ଶୁଣିଛି ଆଉ ଦୁଇ ଚାରିଜଣଙ୍କୁ ମଧ୍ୟ ଡାକିଛନ୍ତି । ଆଚ୍ଛା ତାହାହେଲେ ଆଜି ଆସୁଛି । ଆଉ ଦିନେ ଆପଣଙ୍କ ସହ ଆଳାପ କରିବି । ନମସ୍କାର, କହି ସେ ସାମାନ୍ୟ ବ୍ୟଗ୍ର ପଦକ୍ଷେପରେ ବାହାରି ଚାଲିଗଲା ।

ନୀଳିମା କହିଲା—ଭଲ ହୋଇଛି ତାଙ୍କର ଆଜି ବାହାରେ ଖାଇବାର ନିମନ୍ତ୍ରଣ ଥିଲା, ନ ହେଲେ ସବୁ କଥା ଖୋଲିକରି କହି ହୋଇ ନ ଥାନ୍ତା । ହଁ କମଳ, ମୁଁ ତୁମକୁ 'ଆପଣ' ବୋଲି ଡାକିବି ନା ତୁମେ ବୋଲି ଡାକିଥାନ୍ତି ?

କମଳ କହିଲା ତୁମେ ବୋଲି । କିନ୍ତୁ ମୁଁ ଏପରି ଭାବରେ ନିର୍ବାସିତା ହୋଇ ନାହିଁ ଯେ ଏହା ମଧ୍ୟରେ ସେତିକ ମଧ୍ୟ ଭୁଲି ଯାଇଥିବେ ?

: ନାହିଁ, ଭୁଲି ନାହିଁ । କିପରି ଟିକିଏ ଅଡୁଆ ଲାଗିଲା । ଲାଗିବାର କଥା ମଧ୍ୟ । ଆଚ୍ଛା ସେସବୁ ଥାଉ । ସାତ ଆଠଦିନ ଧରି ତୁମକୁ ଆମେମାନେ ଖୋଜୁଥିଲୁ । ଖୋଜୁଥିଲୁ କହିଲେ ଠିକ୍ ହେବ ନାହିଁ ପାଇବା ପାଇଁ ଯେପରି ମନେ ମନେ ତପସ୍ୟା କରୁଥିଲୁ ।

ତପସ୍ୟାର ଶୁଷ୍କ ଗାମ୍ଭୀର୍ଯ୍ୟ କିନ୍ତୁ ତା ମୁହଁରେ ନ ଥିଲା, ତାହାକୁ ଅକୃତ୍ରିମ ସ୍ନେହର ଏକ ମଧୁର ପରିହାସ କଳ୍ପନା କରି କମଳ ହସି ଦେଇ କହିଲା—ଏପରି ସୌଭାଗ୍ୟର କାରଣ ? ଭଉଣୀ ମୁଁ ତ ସମସ୍ତଙ୍କ ଦ୍ୱାରା ପରିତ୍ୟକ୍ତା, ସମାଜରେ ତ ମୋତେ କେହି ଗ୍ରହାନ୍ତି ନାହିଁ ।

ଏହି ସମ୍ଭାଷଣଟି ନୂଆ । ନୀଳିମାର ଦୁଇ ଆଖି ହଠାତ୍ ଛଳ ଛଳ ହୋଇ ଉଠିଲା । କିନ୍ତୁ ସେ ଚୁପ ହୋଇ ରହିଲା ।

ଆଶୁବାବୁ ରହି ପାରିଲେ ନାହିଁ । ମୁହଁ ତୁଲାଇ କହିଲେ—ଭଦ୍ର ସମାଜର ଆବଶ୍ୟକତା ହେଲେ ଏପରି ଅନୁଯୋଗର ଉତ୍ତର ସେମାନେ ଦେବେ । କିନ୍ତୁ ମୁଁ ଜାଣେ ଜୀବନରେ ଯଦି ଭଲ ଭାବରେ ତୋତେ କିଏ ଜାଣି ପାରିଥାଏ ତେବେ ସେ ହେଉଛି ଏହି ନୀଳିମା । ଏତେ ଦୂର ଭଲ ପାଇବା ବୋଧହୁଏ ତୁ ଆଉ କାହାଠାରୁ ଜୀବନରେ ପାଇ ନ ଥିବୁ, କମଳ ।

: ସେ କଥା ମୁଁ ଭଲ ଭାବରେ ଜାଣେ ।

ନୀଳିମା ଉଠି ଠିଆ ହେଲା । କୁଆଡ଼େ ଯିବା ପାଇଁ ନୁହେଁ । ଏହିପରି ବ୍ୟକ୍ତିଗତ ଆଲୋଚନାରେ ସେ ସାଧାରଣତଃ ଯେପରି ଅସ୍ଥିର ହୋଇ ଉଠିଥାଏ । ବହୁ କ୍ଷେତ୍ରରେ ପ୍ରିୟଜନମାନେ ତାକୁ ଭୁଲ ବୁଝିଥାନ୍ତି ତଥାପି ତା ସ୍ୱଭାବ ଏପରି ଥିଲା । ତାହାର କଥାଟାକୁ ଶୀଘ୍ର ଚାପି ଦେଇ ସେ କହିଲା—ତୋତେ ଦୁଇଟା ଖବର ଦେବାର ମୋର ଥିଲା ।

କମଳ ତା ମନର ଭାବ ବୁଝି ପାରିଲା । ହସି ଦେଇ କହିଲା—ବେଶ୍, ଦେବାର ଯଦି ଥାଏ ତେବେ କୁହ ।

ନୀଳିମା ଆଶୁବାବୁଙ୍କୁ ଦେଖାଇ ଦେଇ କହିଲା—ସେ ଲାଜରେ ତୋ ନିକଟରେ ମୁହଁ ଲୁଚାଇ କରି ରଖିଛନ୍ତି—ସେହି କଥା କହିବାର ଭାର ମୁଁ ନେଇଛି । ମନୋରମା ସହିତ ଶିବନାଥର ବିବାହ ସ୍ଥିର ହୋଇ ଯାଇଛି । ପିତା ଓ ଭାବୀ ଶ୍ୱଶୁରଙ୍କର ଅନୁମତି ଏବଂ ଆଶୀର୍ବାଦ ପ୍ରାର୍ଥନା କରି ଦୁଇ ଜଣ ହିଁ ପତ୍ର ଦେଇଛନ୍ତି ।

ଶୁଣିକରି କମଳର ମୁହଁ ପାଣ୍ଡୁର ହୋଇଗଲା । କିନ୍ତୁ ସେ ସଙ୍ଗେ ସଙ୍ଗେ ଆତ୍ମ ସମ୍ବରଣ କରି କହିଲା—ସେଥିପାଇଁ ତାଙ୍କର ଲଜ୍ଜ୍ୟା କରିବାର କ'ଣ ଅଛି ?

: ସେ ତାଙ୍କର ଝିଅ ବୋଲି । ଚିଠି ପାଇବା ପରେ ବାରମ୍ବାର ଏଇ କେତୋଟି କଥା ହିଁ କହି ଚାଲିଛନ୍ତି ଯେ ଆଗ୍ରାରେ ଏତେ ଲୋକ ମରିଗଲେ, ଭଗବାନ ମୋତେ ଦୟା କରିଲେ ନାହିଁ କାହିଁକି ? ଜାଣତରେ ହିଁ କୌଣସି ଦିନ କୌଣସି ଅନ୍ୟାୟ କରି ନାହିଁ । ସେଥିପାଇଁ ଏକାନ୍ତ ବିଶ୍ୱାସ ଥିଲା; ଈଶ୍ୱର ମୋ ପ୍ରତି ନିଶ୍ଚୟ ସଦୟ ହେବେ । ସେହି ଅଭିମାନର ବ୍ୟଥା ହିଁ ଆଜି ସକଳ ଦୁଃଖ ମଧ୍ୟରେ ବଡ଼ ହୋଇ ଉଠିଛି । ମୋ ଛଡ଼ା ଆଉ କାହାକୁ ସେ କିଛି କହି ପାରି ନାହାନ୍ତି । ଦିନ ରାତି କେବଳ ମନେ ମନେ ତତେ ହିଁ ଖୋଜି ଚାଲିଛନ୍ତି । ବୋଧହୁଏ ତାଙ୍କର ଧାରଣା ତୁ କେବଳ ପରିତ୍ରାଣର ବାଟ ବତାଇ ଦେଇ ପାରିବୁ ।

କମଳ ଉର୍ଦ୍ଧ୍ୱ ମାତ୍ର ଦେଖିଲା ଆଶୁବାବୁଙ୍କର ମୁଦ୍ରିତ ଆଖିରୁ କେତେ ଟୋପା ଲୁହ ଗଡ଼ି ପଡ଼ିବାରେ ଲାଗିଛି । ଆପଣା ହାତରେ ସେହି ଲୁହକୁ ପୋଛି ପକାଇ କମଳ ନିଜେ ସ୍ତବ୍ଧ ହୋଇ ଉଠିଲା ।

ବହୁତ ସମୟ ଚୁପ୍ ରହିବା ପରେ କମଳ ପ୍ରଶ୍ନ କଲା—ଗୋଟାଏ ପ୍ରଶ୍ନ ତ କହିଲ —ଆଉଟା ?

ନୀଳିମା ରହସ୍ୟ ଛଳରେ କଥାଟା କହିବାକୁ ଚାହିଁଥିଲେ ମଧ୍ୟ କହି ପାରିଲା ନାହିଁ । କହିଲା—ଘଟଣାଟା ଅଭାବିତ, ନ ହେଲେ ଗୁରୁତର କିଛି ନୁହେଁ । ଆମ ମୁଖାର୍ଜି ମହାଶୟଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ପାଇଁ ସମସ୍ତଙ୍କର ଦୁଃଶ୍ଚିନ୍ତା ଥିଲା । ସେ ଆରୋଗ୍ୟ ଲାଭ

କରିଛନ୍ତି ଏବଂ ପରେ ବଡ଼ ଭାଇ ଓ ବଡ଼ ଭାଉଜ ତାଙ୍କର ଏକାନ୍ତ ଅନିଚ୍ଛା ସତ୍ତ୍ୱେ ଜୋର ଜବରଦସ୍ତି କରି ଆଉ ଥରେ ବାହା କରି ଦେଇଛନ୍ତି । ଲାଜରେ ଜଡ଼ ସଡ଼ ହୋଇ ସେ ଆଶୁବାବୁଙ୍କ ପାଖକୁ ଚିଠି ଖଣ୍ଡିଏ ଲେଖି ଏକଥା ଜଣାଇଛନ୍ତି । ଏତକ କହି ସେ ଏଥର ନିଜେ ହସି ପକାଇଲା ।

ଏହି ହସ ଭିତରେ ସୁଖ ନ ଥିଲା କିମ୍ବା କୌତୁକ ନ ଥିଲା । କମଳ ତା ମୁହଁକୁ ଚାହିଁ କହିଲା—ଏ ଦୁଇଟି ଯାକ ଖବର ବିବାହ ଜନିତ ଘଟଣା । ଗୋଟିଏ ହୋଇ ଯାଇଛି ଆଉ ଅନ୍ୟଟି ହେବା ନିମିତ୍ତ ସ୍ଥିର ହୋଇ ଯାଇଛି । ମୋତେ ଖୋଜୁଥିଲ କାହିଁକି ? ଏ ଦୁଇଟାରୁ କୌଣସିଟାର ସମସ୍ୟାକୁ ତ ସମାଧାନ କରି ପାରିବି ନାହିଁ ।

ନୀଳିମା କହିଲା—ଅଥଚ ସମାଧାନ କରି ପାରିବାର କଳ୍ପନା କରି ସେ ତୁମକୁ ଖୋଜୁଥିଲେ । ମୁଁ କିନ୍ତୁ ତୋତେ ଖୋଜୁ ନ ଥିଲି ଭଉଣୀ । କାୟମନରେ ଭଗବାନଙ୍କୁ ଡାକି ଲାଗିଥିଲି ଯେପରି ତୋ ସହିତ ଦେଖାହୋଇ ତୋର ପ୍ରସନ୍ନ ଦୃଷ୍ଟି ଲାଭ କରିପାରେ । ବଙ୍ଗଳ ଦେଶରେ ଝିଅ ହୋଇ ଜନ୍ମ ଲାଭ କରି ଅଦୃଷ୍ଟକୁ ଦୋଷ ଦେଇଦେଲେ ଶାନ୍ତି ମିଳି ପାରିବ ନାହିଁ । ବୁଦ୍ଧି ଦୋଷରୁ ମୁଁ ବାପ ଘର ଏବଂ ଶାଶୁଘର ଦୁଇ କୂଳକୁ ଖାଇ ବସିଛି । ଏହା ପରେ ଅଧିକା ଯାହା ଲୋକସାନ ହୋଇଛି ତାହାର ସମ୍ପୂର୍ଣ୍ଣ ବିବରଣୀ ଦେଇ ପାରିବି ନାହିଁ । ଏଥର ଭଣୋଇଙ୍କ ଆଶ୍ରୟଟା ମଧ୍ୟ ଘୁଞ୍ଚିଗଲା । ଆଶୁବାବୁଙ୍କୁ ଦେଖାଇ କରି କହିଲା—ତାଙ୍କର ଅବଶ୍ୟ ଦୟା-ଦାକ୍ଷିଣ୍ୟର ସୀମା ନାହିଁ । ଯେଉଁ କେତେଟା ଦିନ ଏଠାରେ ଅଛି ମୁଣ୍ଡ ଗୁଞ୍ଜିବା ପାଇଁ ସ୍ଥାନ ପାଇ ପାରିବି । ତାଙ୍କ ପରେ ଆଖି ଆଗରେ ଅନ୍ଧକାର ବ୍ୟତୀତ ଆଉ କିଛି ଦେଖିବାକୁ ପାଉ ନାହିଁ । ଭାବୁଛି ଏଥର ତୋତେ ଆଶ୍ରୟ ଦେବା ପାଇଁ କହିବି । ନ ପାଇଲେ ମରିବି । ପୁରୁଷର କୃପା ଭିକ୍ଷା ଚାହିଁ ସ୍ରୋତର ଆବର୍ଜନା ଭଳି ଆଉ ଘାଟରେ ଲଗି ଲାଗି ଆୟୁଷର ଶେଷ ଦିନଟା ପର୍ଯ୍ୟନ୍ତ ଅପେକ୍ଷା କରି ପାରିବି ନାହିଁ; କହୁ କହୁ ତା ଗଳାର ସ୍ୱର ଭାରି ହୋଇ ଉଠିଲା । କିନ୍ତୁ ଆଖିର ଲୁହକୁ ଜୋର କରି ଦମନ କରି ରଖିଲା ।

କମଳ ତା ମୁହଁକୁ ଚାହିଁ ଟିକିଏ ହସିଲା ।

: ହସିଲୁ ଯେ ?

: ହସିବାଟା ଉତ୍ତର ଦେବା ଅପେକ୍ଷା ସହଜ ବୋଲି ।

: ତାହା ମୁଁ ଜାଣେ । ଆଜି କାଲି ମଝିରେ ମଝିରେ କୁଆଡ଼େ ଯେ ଅଦୃଶ୍ୟ ହୋଇ ଯାଉଛୁ ସେଥିପାଇଁ ତ ମୋର ଭୟ ।

: ହେଲି ଅବା ଅଦୃଶ୍ୟ । କିନ୍ତୁ ଦରକାର ବେଳେ ମୋତେ ଖୋଜି ନେବାକୁ ପଡ଼ିବ ନାହିଁ ଅପା, ମୁଁ ପୃଥିବୀ ସାରା ଆପଣଙ୍କୁ ଖୋଜି ବାହାର କରିପାରିବି—ଏ ବିଷୟରେ ତୁମେ ନିଶ୍ଚିନ୍ତ ହୋଇ ରୁହ ।

*

ଆଶୁବାବୁ କହିଲେ—ଏଥର ମୋତେ ସେହିଭଳି ଅଭୟ ଦାନ କର କମଳ । ମୁଁ ଯେପରି ତୋ ଭଳି ନିଃସନ୍ଦେହୀ ହୋଇପାରେ ।

: ଆଦେଶ କରନ୍ତୁ ମୁଁ କ'ଣ କରିପାରିବ ?

: ତୋର କିଛି କରିବାର ଆବଶ୍ୟକତା ନାହିଁ କମଳ । ଯାହା ଦରକାର ତାହା ମୁଁ ନିଜେ କରିବ । ମୋତେ କେବଳ ଏତିକି ମାତ୍ର ଉପଦେଶ ଦେ, ଯେପରି ପିତାର କର୍ତ୍ତବ୍ୟ ପାଳନ କରିବାରେ ମୁଁ ଅପରାଧ କରି ନ ବସେ । ଏ ବିବାହ ପାଇଁ ମୁଁ ଯେ ସମ୍ମତି ଦେଇ ପାରୁ ନାହିଁ ତାହା ନୁହେଁ ବରଂ ସମ୍ପନ୍ନ ମଧ୍ୟ କରାଇ ଦେବ ନାହିଁ ।

: ଆପଣଙ୍କ ସମ୍ମତି ନ ଦେଇ ପାରନ୍ତି । କିନ୍ତୁ ବିବାହ ବନ୍ଦ କରିପାରିବେ କିପରି ?

ଆଶୁବାବୁ ଉତ୍ତେଜନାକୁ ଚାପି ରଖି ପାରିଲେ ନାହିଁ । ଅସ୍ୱୀକାର କରିବାର ଶକ୍ତି ନାହିଁ ବୋଲି ଏହି କଥାଟା ହିଁ ତାଙ୍କ ମନ ଭିତରେ ଦିନରାତି ଗୋଳେଇ ଘାଣ୍ଟି ହେଉ-ଥିଲା । କହିଲେ—ତା ଜାଣେ । କିନ୍ତୁ ଝିଅର ମଧ୍ୟ ଜାଣିବା ଉଚିତ ଯେ ବାପ ଠାରୁ ବଡ଼ ହେବାଟା ତା ପକ୍ଷରେ ଉଚିତ ନୁହେଁ ! କେବଳ ମତାମତଟା ମୋ ନିଜର ନୁହେଁ କମଳ, ସମ୍ପତ୍ତିଟା ମଧ୍ୟ ନିଜର । ଆଶୁବାବୁର ଦୁର୍ବଳତାର ପରିଚୟ ଲୋକମାନେ ଜାଣି ପାରିଛନ୍ତି କିନ୍ତୁ ତାର ଆଉ ଗୋଟାଏ ଦିଗ ଯେ ରହିଛି ତାକୁ କିନ୍ତୁ ସେମାନେ ଭୁଲି ଯାଇଛନ୍ତି ।

କମଳ ତାଙ୍କ ମୁହଁକୁ ଚାହିଁ କୋମଳ କଣ୍ଠରେ କହିଲା—ଆଶା କରୁଛି ଆପଙ୍କର ସେହି ଦିଗଟା ଯେପରି ଲୋକମାନେ ସର୍ବଦା ଭୁଲିଯାଇ ରହି ପାରନ୍ତି । କିନ୍ତୁ ତାହା ଯଦି ନ ହେଲା, ପରିଚୟଟା କ'ଣ ସର୍ବାଗ୍ରେ ନିଜ ଝିଅ ଆଗରେ ଦେବାକୁ ପଡ଼ିବ ।

: ହଁ, ଅବାଧ୍ୟ ଝିଅ ନିକଟରେ । ଏହା କହି ସେ ମୁହୂର୍ତ୍ତ ମାତ୍ର ନୀରବ ରହିବା ପରେ କହିଲେ—ମା ଛେଉଣ୍ଡୀ ସେ ହେଉଛି ମୋର ଏକମାତ୍ର ସନ୍ତାନ । କିଭଳି ଭାବରେ ତାକୁ ମଣିଷ କରିଛି କେବଳ ସେହି ହିଁ ଜାଣନ୍ତି ଯିଏ କି ପିତୃ ହୃଦୟ ସୃଷ୍ଟି କରିଛନ୍ତି । ଏହି କଷ୍ଟ ଯେ କ'ଣ, ତାହା ଯଦି ମୁହଁରେ ବର୍ଣ୍ଣନା କରି ବସିବି ତେବେ ଏହାର ବିକୃତି କେବଳ ମୋତେ ନୁହେଁ, ସମସ୍ତ ପିତାଙ୍କର ଯିଏ ପିତା ତାଙ୍କ ପର୍ଯ୍ୟନ୍ତ ମଧ୍ୟ ଉପହାସ କରି ଉଠିବ । ତା ଛଡା ତୁ ଅବା ବୁଝିବୁ କିପରି ? କିନ୍ତୁ ପିତାର ତ କେବଳ ସ୍ନେହ କରିବାର ନୁହେଁ କମଳ ତାର ମଧ୍ୟ କର୍ତ୍ତବ୍ୟ ରହିଛି । ଶିବନାଥକୁ ମୁଁ ଚିହ୍ନି ପାରିଛି । ତା ସର୍ବନାଶୀ ମୁହଁରୁ ଝିଅକୁ ରକ୍ଷା କରିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ବର୍ତ୍ତମାନ ମୋ ଆଖିକୁ ଦିଶୁ ନାହିଁ । କାଲି ତାକୁ ଚିଠି ଲେଖି ଜଣାଇ ଦେବ ଯେ ଏହାପରେ ମଣି ଯେପରି ମୋ ଠାରୁ କପର୍ଦ୍ଦକଟିଏ ମଧ୍ୟ ଆଶା ନ କରେ ।

: କିନ୍ତୁ ଏ ଚିଠିକୁ ଯଦି ସେମାନେ ବିଶ୍ୱାସ କରି ନ ପାରନ୍ତି ? ଯଦି ଭାବନ୍ତି ଏ ରାଗ ବାପାଙ୍କର ବେଶୀ ଦିନ ରହିପାରିବ ନାହିଁ । ଦିନେ ଆପଣାର ଅବିଶ୍ୱର ନିଜେ ସଂଶୋଧନ କରି ବସିବେ, ତାହାହେଲେ ?

: ତାହାହେଲେ ସେମାନେ ତାର ଫଳ ଭୋଗ କରିବେ । ଲେଖିବାର ଦାୟିତ୍ୱ ମୋର, ଆଉ ବିଶ୍ୱାସ କରିବାର ଦାୟିତ୍ୱ ସେମାନଙ୍କର ।

: ଏହା କ'ଣ ଆପଣ ପ୍ରକୃତରେ ସ୍ଥିର କରିଛନ୍ତି ?

: ହଁ ।

କମଳ ନୀରବରେ ବସି ରହିଲା । ଉଦ୍‌ଗ୍ରୀବ ପ୍ରତୀକ୍ଷାରେ ଆଶୁବାବୁ ନିଜେ ମଧ୍ୟ କିଛି ସମୟ ନୀରବ ରହି ମନେ ମନେ ବ୍ୟାକୁଳ ହୋଇ ଉଠିଲେ । କହିଲେ—ଚୁପ୍ ହୋଇ ବସି ରହିଲୁ ଯେ, ଉତ୍ତର ଦେଲୁ ନାହିଁ ।

: କାହିଁ ! କିଛି ତ ପ୍ରଶ୍ନ ପଚାରି ନାହାନ୍ତି ? ସଂସାରରେ ଜଣଙ୍କ ସହିତ ଅପର... ମତ ମେଳ ନ ଖାଇଲେ, ଯିଏ ଶକ୍ତିମାନ ସେ ଦୁର୍ବଳକୁ ଦଣ୍ଡ ଦେଇଥାଏ । ଏ... ବ୍ୟବସ୍ଥା ପ୍ରାଚୀନ କାଳରୁ ଚଳି ଆସୁଛି । ଏଥିରେ କହିବାର କ'ଣ ଅଛି ?

ଆଶୁବାବୁଙ୍କର ଦୁଃଖର ସୀମା ରହିଲା ନାହିଁ । କହିଲେ ଏହା ତୋର କପରି କଥା କମଳ ? ସନ୍ତାନ ସହିତ ପିତାର ତ ଶକ୍ତି ପରୀକ୍ଷାର ସମ୍ବନ୍ଧ ନୁହେଁ ଯେ ଦୁର୍ବଳ ବୋଲି ତାକୁ ଶାସ୍ତି ଦେବା ପାଇଁ ଇଚ୍ଛା କରୁଛି । କଠିନ ହେବା ଯେ କେତେ କଠିନ ତାହା କେବଳ ପିତା ହିଁ ଜାଣେ, ତଥାପି ମୁଁ ଯେ ଏତେବଡ କଠୋର ସଂକଳ୍ପ କରିଛି ତାହା କେବଳ ତାକୁ ଭୁଲ ବାଟରୁ ଫେରାଇ ଆଣିବା ପାଇଁ ତ ? ପ୍ରକୃତରେ କ'ଣ ତୁ ଏହା ବୁଝି ପାରୁ ନାହୁଁ ?

କମଳ ମୁଣ୍ଡ ହଲାଇ କହିଲା—ପାରୁଛି । କିନ୍ତୁ ଆପଣଙ୍କ କଥା ନ ମାନି ଯଦି ସେ ଭୁଲ କରେ, ଦୁଃଖ ସେ ପାଇବ । ଏହା ବୋଲି ତାର ଦୁଃଖକୁ ନିବାରଣ କରି ପାରିଲେ ନାହିଁ ବୋଲି ରାଗ କରି ତା ଦୁଃଖର ବୋଝକୁ ସହସ୍ର ଗୁଣ କରି ବଢ଼ାଇ ଦେବାକୁ ଯିବେ କାହିଁକି ?

ଟିକିଏ ଅଟକି ଯାଇ କହିଲା—ଆପଣ ହେଉଛନ୍ତି ମନୋରମାର ସମସ୍ତ ଆତ୍ମୀୟଙ୍କ ଭିତରେ ପରମାତ୍ମୀୟ । ଯେଉଁ ଲୋକଟାକୁ ମନ୍ଦ ବୋଲି ଜାଣିଛନ୍ତି, ତାହାରି ହାତରେ ହିଁ ନିଜର ଝିଅକୁ ନିଃସ୍ୱ ଏବଂ ନିରୁପାୟ କରି ବିସର୍ଜନ କରି ଦେବେ ଅଥଚ ତା ପାଇଁ ଫେରିବା ବାଟକୁ ଖୋଲି ରଖିବେ ନାହିଁ ?

ଆଶୁବାବୁ ବିହ୍ୱଳ ନେତ୍ରରେ ଚାହିଁ ରହିଲେ । ପଦେ କଥା ମଧ୍ୟ ତାଙ୍କ ତୁଣ୍ଡରୁ ଆସିଲା ନାହିଁ । କେବଳ ଦେଖୁ ଦେଖୁ ତାଙ୍କ ...ଇ ଚକ୍ଷୁ ଅଶ୍ରୁପ୍ଲାବିତ ହୋଇ ଉଠିଲା ।

କିଛିକ୍ଷଣ ଏପରି ଭାବରେ କଟିବା ପରେ ସେ ନିଜ ଜାମାରେ ଆଖି ଲୁହକୁ ପୋଛି, ଭାଙ୍ଗ କଣ୍ଠକୁ ପରିଷ୍କାର କରି ମୁଣ୍ଡ ହଲାଇ କହିଲେ—ଫେରିବା ପାଇଁ ଏବେ ସୁଦ୍ଧା ପଥ ଖୋଲା ରହିଛି କମଲ, ପରେ କିନ୍ତୁ ନାହିଁ । ସ୍ୱାମୀ ତ୍ୟାଗ କରି ଯେଉଁ ଫେରିବା, ଭଗବାନ ନ କରନ୍ତୁ; ମୁଁ ଯେପରି ତାହା ନିଜ ଆଖିରେ ଦେଖିପାରେ ।

କମଲ କହିଲା—ଏହା କିନ୍ତୁ ଅନ୍ୟାୟ । ବରଞ୍ଚ ମୁଁ କାମନା କରିବି, ଭୁଲ ଯଦି କେବେ ତା ଆଖିରେ ଧରାପଡ଼େ ସେହିଦିନ ଯେପରି ସଂଶୋଧନ କରିବାର ପଥ ଅବରୁଦ୍ଧ ହୋଇ ନ ଥାଏ । ଏପରି ଭାବରେ ତ ମଣିଷ ଆପଣାକୁ ସଂଶୋଧନ କରି କରି ଆଜି ମଣିଷ ହୋଇ ପାରିଛି । ଭୁଲକୁ ତ ଭୟ କରିବାର ନାହିଁ ଆଶୁବାବୁ ଯେତେ ସମୟ ପର୍ଯ୍ୟନ୍ତ ସେଥିପାଇଁ ଅନ୍ୟ ଦିଗରୁ ପଥ ଉନ୍ମୁକ୍ତ ରହିଛି । ସେହି ପଥଟା ଆପଣଙ୍କ ଆଖି ଆଗରେ ବନ୍ଦ ହୋଇ ରହିଛି ବୋଲି ଅଜି ଆପଣଙ୍କ ଆଶଙ୍କାର ସୀମା ନାହିଁ ।

ମନୋରମା ନିଜ କନ୍ୟା ନ ହୋଇ ଆଉ କାହାର ହୋଇଥିଲେ ଏହି ସରଳ କଥାଟା ସେ ବୁଝି ପାରିଥାନ୍ତେ, କିନ୍ତୁ ଏକମାତ୍ର କନ୍ୟାର ନିଦାରୁଣ ଭବିଷ୍ୟତର ନିଃସଂଶୟ ଦୁର୍ଗତି; କମଲର ସମସ୍ତ ଆବେଦନକୁ ନିଷ୍ଫଳ କରିଦେଲା । କେବଳ ଅସଫଳଗ୍ନ ମିନତିମିଶା ସ୍ୱରରେ କହିଲେ—ନା କମଲ, ଏ ବିବାହକୁ ବନ୍ଦ କରିବା ବ୍ୟତୀତ ଅନ୍ୟ କୌଣସି ରାସ୍ତା ମୋ ଆଖି ଆଗରେ ନାହିଁ । ଆଉ କିଛି ଉପାୟ ଥିଲେ ତୁ କହି ଦେ ?

: ମୁଁ ? ଇଙ୍ଗିତଟା କମଲ ଏତେ ସମୟ ପରେ ବୁଝି ପାରିଲା । ଏହାକୁ ସ୍ପଷ୍ଟ କରିବାକୁ ଯାଇ ତା କୋମଳ କଣ୍ଠ ମୁହୂର୍ତ୍ତିକ ଭିତରେ ଗମ୍ଭୀର ହୋଇ ଉଠିଲା । କିନ୍ତୁ ତାହା ସେହି ମୁହୂର୍ତ୍ତିକ ପାଇଁ । ନୀଳିମା ଉପରେ ଦୃଷ୍ଟି ପଡ଼ିବା କ୍ଷଣି ସେ ଆତ୍ମ ସମ୍ବରଣ କରି କହିଲା—ନା, ଏହି ବ୍ୟାପାରରେ ମୁଁ ଆପଣଙ୍କୁ କୌଣସି ସାମର୍ଥ୍ୟ ଦେଇ ପାରିବି ନାହିଁ । ଉତ୍ତରାଧିକାରୀରୁ ବଞ୍ଚିତ କରିବାର ଭୟ ଦେଖାଇଲେ ସେ ଭୀତ ହେବେ କି ନାହିଁ ମୁଁ ଜାଣେନା, ଯଦି ଭୀତ ହୁଏ ତେବେ ଏହି କଥା ହିଁ କହିବି ଯେ ଖୁଆଇ, ପିନ୍ଧାଇ ସ୍କୁଲ କଲେଜରେ ପାଠ ପଢ଼ାଇ ଝିଅକୁ ବଡ଼ କରାଇଛନ୍ତି କିନ୍ତୁ ମଣିଷ କରାଇ ପାରିନାହାଁନ୍ତି । ସେହି ଅଭାବ ପୂର୍ଣ୍ଣ କରିବାର ସୁଯୋଗ ଟିକକ ତାର ଯଦି କେବେ ଆସି ପହଞ୍ଚି ପାରିବ ବୋଲି ଭାବୁଥାନ୍ତି ତେବେ ମୁଁ କଂସେଇ ହେବା ପାଇଁ ଯିବି ନାହିଁକି ?

କଥାଟା କିନ୍ତୁ ଆଶୁବାବୁଙ୍କୁ ଭଲ ଲାଗିଲା ନାହିଁ । କହିଲେ—ତୁ କ'ଣ କହିବା ପାଇଁ ଚାହୁଁ ଯେ ବାଧା ଦେବାଟା ମୋର କର୍ତ୍ତବ୍ୟ ନୁହେଁ ?

: ଅନ୍ତତଃ ଭୟ ଦେଖାଇ ନୁହେଁ—ଏତିକି ମାତ୍ର କହିପାରିବି । ମୁଁ ଆପଣ ଝିଅ ହୋଇଥିଲେ ହୁଏତ ମନା ମାନି ନେଇଥାନ୍ତି କିନ୍ତୁ ଏ ଜୀବନରେ ଆଉ ଆପଣଙ୍କୁ କଦାପି ଶ୍ରଦ୍ଧା କରି ପାରି ନ ଥାନ୍ତି । ମୋ ବାପା ମୋତେ ଏଇ ଭାବରେ ହିଁ ଗଢ଼ି ଯାଇଛନ୍ତି ।

ଆଶୁବାବୁ କହିଲେ—ଅସଂଭବ ନୁହେଁ କମଳ । ତୋ କଲ୍ୟାଣର ପଥ ସେ ଏହି ଢଙ୍ଗରେ ହିଁ ଦେଖି ପାରିଥିଲେ । କିନ୍ତୁ ମୁଁ ପାରୁନାହିଁ । ତଥାପି ମୁଁ ପିତା ! ମୁଁ ସ୍ପଷ୍ଟ ଦେଖି ପାରୁଛି ଶିବନାଥକୁ କେହି କଦାପି ଭଲ ପାଇ ପାରିବ ନାହିଁ । ଏହା ମନୋରମାର ମୋହ । ଏହା ମିଥ୍ୟା । ଏହି କ୍ଷଣସ୍ଥାୟୀ ନିଶାର ମୋହ ଯେଉଁ ଦିନ ଭାଙ୍ଗିଯିବ ସେ ଦିନ ତା ଦୁଃଖର ଅନ୍ତ ରହିବ ନାହିଁ । ସେତେବେଳେ ତାକୁ ବଞ୍ଚାଇ ରଖିବ କିପରି ?

କମଳ କହିଲା—ନିଶା ଭିତରେ ବରଞ୍ଚ ଭାବନା ଥିଲା । କିନ୍ତୁ ନିଶା ଭାଙ୍ଗିଯିବା ପରେ ସେ ଯେତେବେଳେ ସୁସ୍ଥ ହୋଇ ଉଠିବ ସେତେବେଳେ ତାର ଆଉ ଭୟ ନଥିବ । ତା ସ୍ୱାସ୍ଥ୍ୟ ହିଁ ତାକୁ ସେତେବେଳେ ରକ୍ଷା କରିପାରିବ ।

ଆଶୁବାବୁ ଅସ୍ୱୀକାର କରି କହିଲେ—ଏ ସବୁ କେବଳ କଥାର ମାର-ପେଞ୍ଚ, କିନ୍ତୁ ଯୁକ୍ତି ନୁହେଁ । ସତ୍ୟ ଏହାଠାରୁ ଅନେକ ଦୂରରେ । ଭୁଲ ପାଇଁ ତାକୁ କଠିନ ଦଣ୍ଡ ଭୋଗିବାକୁ ପଡ଼ିବ, ଓଜନିଆ ଜୋରରେ ଶଞ୍ଚୁଁରୁ ଅବ୍ୟାହତି ମିଳିପାରିବ ନାହିଁ ।

: ଅବ୍ୟାହତିର ଇଙ୍ଗିତ ମୁଁ ଦେଇ ନାହିଁ ଆଶୁବାବୁ, ଭୁଲ ପାଇଁ ଦଣ୍ଡ ପାଇବାକୁ ହୁଏ ମୁଁ ଜାଣେ । ତାର ଦୁଃଖ ଅଛି କିନ୍ତୁ ଲଜ୍ଜା ନାହିଁ । ମଣି କାହାକୁ ଠକିବା ପାଇଁ ଯାଇ ନାହିଁ । ଭୁଲ ଜାଣିପାରିଲା ପରେ ସେ ଯଦି ଫେରି ଆସେ ତାକୁ ମୁଣ୍ଡ ତଳକୁ କରି ଆସିବାକୁ ହେବନାହିଁ—ଏହି ଭରସା ମୁଁ ଆପଣଙ୍କୁ ଦେବାପାଇଁ ଚାହୁଁଥିଲି ।

: ତଥାପି ତ ଭରସା ପାଇ ପାରୁ ନାହିଁ କମଳ । ଜାଣେ ଦିନେ ନା ଦିନେ ସେ ତାର ଭୁଲ ବୁଝି ପାରିବ । କିନ୍ତୁ ତାପରେ ତାକୁ ଯେ ଅନେକ ଦିନ ବଞ୍ଚି ରହିବା ପାଇଁ ପଡ଼ିବ । ସେତେବେଳେ ସେ କ'ଣ ନେଇ ରହିବ ? ବଞ୍ଚିବ କେଉଁ ଅବଲମ୍ବନ ନେଇ ?

: ଏପରି କଥା ଆପଣ କହିବେ ନାହିଁ । ମନୁଷ୍ୟ ଯଦି ଦୁଃଖ ପାଇବାର ଶେଷ କଥା ହୋଇଥାନ୍ତା, ତେବେ ତାର ମୂଲ୍ୟ ନ ଥିଲା । ସେ ଗୋଟିଏ ଦିଗର କ୍ଷତିକୁ ଅନ୍ୟ ଦିଗର ସମ୍ପଦ ଦ୍ୱାରା ପୂର୍ଣ୍ଣ କରି ପାରିଥାଏ । ନଚେତ୍ ମୁଁ ଅବା ଆଜି ବଞ୍ଚି ରହିଥାନ୍ତି କିପରି ? ବରଞ୍ଚ ଆପଣ ଆଶୀର୍ବାଦ କରନ୍ତୁ ଭୁଲ ଯଦି ସେ ବୁଝିପାରେ ସେ କିପରି ଆପଣାକୁ ମୁକ୍ତକରି ଆଣୁ ଏବଂ ସେତେବେଳେ ଯେପରି କୌଣସି ଲୋଭ, କୌଣସି ମୋହ ତାକୁ ଗହ୍ୱରଗ୍ରସ୍ତ କରି ନରଖୁ ।

ଆଶୁବାବୁ ଚୁପ୍ ହୋଇ ରହିଲେ । ଉତ୍ତର ଦେବା ପାଇଁ କଷ୍ଟ ଅନୁଭବ କଲେ । ତଥାପି କମଳ କଥାକୁ ସମର୍ଥନ ଜଣାଇବା ପାଇଁ ମଧ୍ୟ ତାଙ୍କୁ କମ୍ କଷ୍ଟ ହେଲା ନାହିଁ । ବହୁତ ସମୟ ପରେ କହିଲେ—ପିତାର ଦୃଷ୍ଟି ନେଇ ମୁଁ କ'ଣ ମଣିର

ଭବିଷ୍ୟତକୁ ଅନ୍ଧକାରମୟ ଦେଖି ପାରିବ ? ତୁ କ'ଣ ତଥାପି କହୁଛୁ ଯେ ମୋର ବାଧା ଦେବାଟା ଉଚିତ ନୁହେଁ ? ନୀରବରେ ଗ୍ରହଣ କରି ନେବାଟା କ'ଣ ମୋର କର୍ତ୍ତବ୍ୟ ?

: ମୁଁ ମାଆ ହୋଇଥିଲେ ଗ୍ରହଣ କରି ନଅନ୍ତି । ତାର ଭବିଷ୍ୟତ ଆଶଙ୍କାରେ ଆପଣଙ୍କ ଭଳି ହୁଏତ କଷ୍ଟ ପାଆନ୍ତି ସିନା କିନ୍ତୁ ଏପରି ଉପାୟରେ ବାଧା ଦେବାର ବ୍ୟବସ୍ଥା କରି ନଥାନ୍ତି । ମନେ ମନେ କହୁଥାନ୍ତି—ଏ ଜୀବନର ଯେଉଁ ରହସ୍ୟ ଆଗରେ ସେ ଆଜି ଠିଆ ହୋଇଛି ତାହା ମୋର ସମସ୍ତ ଦୁଃଶ୍ଚିନ୍ତାଠାରୁ ଯଥେଷ୍ଟ ବୃହତ । ଏହାକୁ ମୋତେ ସ୍ୱୀକାର କରିନେବାକୁ ହିଁ ପଡ଼ିବ ।

ଆଶୁବାବୁ କିଛି ସମୟ ନୀରବ ରହିବା ପରେ କହିଲେ—ତଥାପି ତ ବୁଝି ପାରିଲି ନାହିଁ କମଲ । ଶିବନାଥର ଚରିତ୍ର, ତାର ସମସ୍ତ ଦୁଷ୍କର୍ମର ବିବରଣୀ ମଣି ଭଲ ଭାବରେ ଜାଣେ । ଦିନେ ତାର ଏ ଘରକୁ ଆଗମନ ପାଇଁ ସେ ଘୋର ଆପତ୍ତି ଜଣାଇ-ଥିଲା । କିନ୍ତୁ ଆଜି ସେ ଯେପରି ମୋହଗ୍ରସ୍ତ ହୋଇ ଆପଣାର ହିତାହିତ ଜ୍ଞାନ ଏବଂ ନୈତିକ ବୁଦ୍ଧିକୁ ପାସୋରି ବସିଛି ଏହାକୁ ତ ପ୍ରକୃତରେ ଭଲ ପାଇବା କୁହାଯାଇ ପାରିବ ନାହିଁ—ବରଂ ତାହାକୁ ଯାଦୁ କହିଲେ ଚଳିବ । ଏହି ଛଳନାରୁ ତାକୁ ମୁକ୍ତ କରିବା କ'ଣ ପିତାର କର୍ତ୍ତବ୍ୟ ନୁହେଁ ?

ଏଇଥର କମଲ ଏକବାରେ ସ୍ତମ୍ଭୀଭୂତ ହୋଇଗଲା ଏବଂ ଏତେକ୍ଷଣ ପରେ ଉଭୟଙ୍କ ଚିନ୍ତାରେ ଥିବା ପ୍ରକୃତିଗତ ବିଭେଦ ତା ଆଖିରେ ପଡ଼ି ପାରିଲା । ସେମାନଙ୍କର ଜାତି ଅଲଗା ଏବଂ ପ୍ରମାଣର ବିମ୍ବ ନୁହେଁ ବୋଲି ହିଁ ଏତେ ସମୟ ଧରି ଏତେ ଆଲୋଚନା ବିଫଳ ହୋଇଗଲା । କମଲ ବୁଝି ପାରିଲା ଯେଉଁ ଦିଗ ପ୍ରତି ତା ଦୃଷ୍ଟି ଆବଦ୍ଧ ସେହି ଦିଗ ପ୍ରତି ସହସ୍ର ବର୍ଷ ଧରି ଆଖି ମେଲି ରହିଲେ ମଧ୍ୟ ଏହି ସତ୍ୟର ଦର୍ଶନ ମିଳି ପାରିବ ନାହିଁ । ସେହି ବୁଦ୍ଧିର ପ୍ରୟୋଗ, ସେହି ହିତାହିତବୋଧ, ସେହି ଭଲ-ମନ୍ଦ-ସୁଖ-ଦୁଃଖର ଅତି ସତର୍କ ହିସାବ, ସେହି ମଜଭୂତ ଗଢ଼ା ବୁନିୟାଦୀର ହୁଙ୍କାର, ଆଜି ଅଙ୍କ କଷି ଏହାର ଭଲ ପାଇବାର ଫଳକୁ ବାହାର କରିବା ପାଇଁ ଗୁହେଁ । ନିଜ ଜୀବଦଶାରେ ଆଶୁବାବୁ ପତ୍ନୀଙ୍କୁ ଏକାନ୍ତ ଭଲ ପାଇ ବସିଥିଲେ । ବହୁଦିନ ହେବ ସେ ଲୋକାନ୍ତରିତ । ତଥାପି ଆଜି ସେହି ଭଲ ପାଇବା ମନରୁ ଅନ୍ତର୍ହିତ ହୋଇ ପାରିନାହିଁ । ସଂସାରରେ ଏହାର ତୁଳନା ବିରଳ, ଏ ସମସ୍ତ କଥା ହିଁ ସତ୍ୟ । ତଥାପି ଏମାନେ ଭିନ୍ନ ଜାତୀୟ ।

ଏହାର ଭଲ ମନ୍ଦର ପ୍ରଶ୍ନ ଉଠାଇ ଯୁକ୍ତ କରିବା ଭଳି ନିଷ୍ଫଳତା ଆଉ ନାହିଁ । ଦାମ୍ପତ୍ୟ ଜୀବନରେ ଦିନକ ପାଇଁ ଆଶୁବାବୁଙ୍କର ପତ୍ନୀ ସହିତ ମତ ଭେଦ ଘଟି ନାହିଁ । ଅନ୍ତରରେ ମଳିନତା ସ୍ପର୍ଶ କରି ନାହିଁ । ନିର୍ବିଘ୍ନ ଶାନ୍ତି ଓ ଅବିଚ୍ଛିନ୍ନ ଆରାମରେ ଯେଉଁ-ମାନଙ୍କର ଦୀର୍ଘ ବିବାହିତ ଜୀବନ ଅତିବାହିତ ହୋଇଛି ତାହାର ଗୌରବ ଏବଂ ମହାତ୍ମ୍ୟକୁ କିଏ କରି ପାରିବ କିଏ ? ସଂସାର ମୁଗ୍ଧ ଚିତ୍ତରେ ଏହାର ସ୍ତବ ଗାନ କରିଛି । ଏହିପରି

ଦୁର୍ଲ୍ଲଭ କାହାଣୀ ଲିପିବଦ୍ଧ କରି କବି ଅମର ହୋଇଛନ୍ତି । ଏହି ସ୍ୱୀକୃତିକୁ ଲାଭ କରିବା ପାଇଁ ମନୁଷ୍ୟ ପକ୍ଷରେ ଲୋଭର ଅନ୍ତ ନାହିଁ । ଯାହାର ନିଃସନ୍ଦେହ ମହିମା ସ୍ୱତଃସିଦ୍ଧ ପ୍ରତିଷ୍ଠା ଦ୍ୱାରା ଚିରଦିନ ଅବିଚଳିତ, ତାହାକୁ ତୁଚ୍ଛ ବୋଲି କମଳ କେଉଁ ଆସ୍ପର୍ଦ୍ଧାରେ କହି ପାରିବ ? କିନ୍ତୁ ମଣି ? ଯେଉଁ ଦୁଃଶୀଳ ଦୁର୍ଭାଗାର ସବୁ କିଛି ଜାଣି ମଧ୍ୟ ତାର ହାତରେ ଆପଣାକୁ ବିସର୍ଜ୍ଜନ କରିବା ପାଇଁ, ସେ କେବଳ ଉଦ୍ୟତ ନୁହେଁ ବରଂ ସବୁକିଛି ଜାଣିବା ବାହାରେ ପାଦ ବଢ଼ାଇବା ପାଇଁ ଆଜି ତାର ଆଦୌ ଭୟ ନାହିଁ । ଦୁଃଖମୟ ପରିଣାମ ଚିନ୍ତାରେ ପିତା ଶଙ୍କିତ । ବନ୍ଧୁଗଣ ବିଷଣ୍ଣ । ସେ ହିଁ କେବଳ ଶଙ୍କାଶୂନ୍ୟ । ଆଶୁବାବୁ ଜାଣନ୍ତି ଏହି ବିବାହରେ ସମ୍ମାନ ନାହିଁ । ଶ୍ରୀ ନାହିଁ । ଠକାମି ଉପରେ ଏହାର ଭିତ୍ତିଭୂମି । ଏହି ସ୍ୱଳ୍ପକାଳୀନ ମୋହ ଯେତେବେଳେ ତୁଟିବ ସେତେବେଳେ ଆଜୀବନ ଲଜ୍ଜ୍ୟା ଓ ଦୁଃଖର ଅନ୍ତ ରହିବ ନାହିଁ—ହୁଏତ ଏସବୁ ସତ୍ୟ । କିନ୍ତୁ ଏ ସବୁ ଯାଇ ପୁଣି ପ୍ରବଞ୍ଚିତା ସ୍ତ୍ରୀଅଟିର ଅବଶିଷ୍ଟ, ଯାହା ରହିବ ତାହା ଯେ ପିତାଙ୍କର ସୁଖ-ଶାନ୍ତିମୟ ଦୀର୍ଘସ୍ଥାୟୀ ଦାମ୍ପତ୍ୟ ଜୀବନ ଠାରୁ ଅଧିକ ଏକଥା ଆଶୁବାବୁଙ୍କୁ ସେ କ'ଣ କହି ବୁଝାଇ ପାରିବ ? ପରିଣାମଟା ହିଁ ଯାହାଙ୍କ ନିକଟରେ ମୂଲ୍ୟ ନିରୂପଣର ଏକମାତ୍ର ମାନଦଣ୍ଡ, ତାଙ୍କ ସହିତ ତର୍କ କଲେ ଚଳିବ କିପରି ? କମଳର ଇଚ୍ଛା ହେଉଥିଲି କହି ଦେବା ପାଇଁ—ଆଶୁବାବୁ ମୋହ ମାତ୍ରେ ହିଁ ମିଥ୍ୟା ନୁହେଁ, କନ୍ୟାର ଚିତ୍ତାକାଶରେ ମୁହୂର୍ତ୍ତିକ ପାଇଁ ଉଦ୍‌ଭାସିତ ତଡ଼ିତ ରେଖା ମଧ୍ୟ ହୁଏତ ପିତାର ଅନିର୍ବାପିତ ଦୀପଶିଖାକୁ ଦୀପ୍ତି ଓ ପରିମାପରେ ଅତିକ୍ରମ କରିପାରେ —କିନ୍ତୁ ସେ କିଛି ନ କହି ନୀରବରେ ବସି ରହିଲା ।

ପିତାର କର୍ତ୍ତବ୍ୟ ସମ୍ବନ୍ଧରେ ଅତ୍ୟନ୍ତ ସ୍ପଷ୍ଟ ଅଭିମତ ପ୍ରକାଶ କରିସାରି ଆଶୁବାବୁ ଉତ୍ତର ଅପେକ୍ଷାରେ ଅଧୀର ହୋଇ ଉଠିଥିଲେ । କିନ୍ତୁ କମଳ ସେହିପରି ନିରୁତ୍ତର ଭାବରେ ମୁହଁ ତଳକୁ କରି ବସି ରହିଲା । ଏଥିରୁ ବେଶ୍ ବୁଝା ପଡ଼ିଲା ସେ ଆଉ ବାଦାନୁବାଦ କରିବା ପାଇଁ ଇଚ୍ଛା କରେ ନାହିଁ । କଥା ହେବା ପାଇଁ ବିଷୟବସ୍ତୁ ନାହିଁ ବୋଲି ନୁହେଁ ବରଂ ପ୍ରୟୋଜନ ନାହିଁ ବୋଲି । କିନ୍ତୁ ଏପରି ଭାବରେ ଜଣେ ମୌନବ୍ରତ ଅବଲମ୍ବନ କରିଲେ ତ ଅପରର ମନ ଶାନ୍ତ ହୋଇପାରେ ନାହିଁ । ପ୍ରକୃତରେ ଏହି ପ୍ରୌଢ଼ ଜଣଙ୍କର ଗମ୍ଭୀର ଅନ୍ତରରେ ସତ୍ୟ ପ୍ରତି ଏକାନ୍ତ ନିଷ୍ଠା ରହିଛି । ଏକମାତ୍ର ସନ୍ତାନର ଦୁର୍ଦ୍ଦିନ ଆଶଙ୍କାରେ ସେ ଲଜ୍ଜିତ । ତାଙ୍କ ଚିତ୍ତ ଉଦ୍‌ଭ୍ରାନ୍ତ । ମୁଖରେ ଯାହା କିଛି କହନ୍ତୁନା, ଅଧିକାର ଅଛି ବୋଲି ଉଦ୍ଧତ ସ୍ପର୍ଦ୍ଧାରେ ଜୋର ଖଟାଇବା ପ୍ରତି ତାଙ୍କର ଗଭୀର ବିତୃଷ୍ଣା । କମଳକୁ ସେ ଯେତେ ଦେଖୁଛନ୍ତି, ସେତିକି ତାଙ୍କର ବିସ୍ମୟ ଓ ଶ୍ରଦ୍ଧା ବଢ଼ି ଚାଲିଛି । ଲୋକ ଚକ୍ଷୁରେ ସେ ହେୟ ଆଉ ନିନ୍ଦିତା । ଭଦ୍ର ସମାଜ ଦ୍ୱାରା ପରିତ୍ୟକ୍ତା । କୌଣସି ସଭାକୁ ତାକୁ ନିମନ୍ତ୍ରଣ କରାଯାଏ ନାହିଁ । ଅଥଚ ଏହି ସ୍ତ୍ରୀଅଟିର ନୀରବ ଅବଜ୍ଞାକୁ ହିଁ ତାଙ୍କର ସବୁଠାରୁ ବେଶୀ ଡର ଏବଂ ତା ନିକଟରେ ତାଙ୍କର ଲଜ୍ଜ୍ୟା କୌଣସି ମତେ ଅପସରି ଯାଇ ପାରେ ନାହିଁ ।

ଆଶୁବାବୁ କହିଲେ, କମଳ, ତୋ ପିତା ୟୁରୋପିୟାନ । ତଥାପି ତୁ କେବେ ନିଜ ଦେଶକୁ ଫେରି ଯାଇ ନାହୁଁ । କିନ୍ତୁ ସେମାନଙ୍କ ଗହଣରେ ମୋର ଅନେକ ଦିନ କଟିଛି ।

ସେମାନଙ୍କର ଅନେକ କଥା ଆଖିରେ ଦେଖିଛୁ । ଅନେକ ଭଲ ପାଇବା ଜନିତ ବିବାହ ଉତ୍ସବରେ ଯେତେବେଳେ ନିମନ୍ତ୍ରଣ ପାଇଛି ଆନନ୍ଦର ସହିତ ଯୋଗ ଦେଇଛି । ଆଉ ସେହି ବିବାହ ବନ୍ଧନ ଯେତେବେଳେ ଅନାଦର, ଉପେକ୍ଷା ଓ ଅତ୍ୟାଚାର ହେତୁ ଭାଙ୍ଗି ଯାଉଛି ସେତେବେଳେ ଆଖିରୁ ଲୁହ ମଧ୍ୟ ପୋଛୁଛୁ । ଚାଲ ଗଲେ ମଧ୍ୟ ଏହା ଦେଖି ପାରିବୁ ।

କମଳ ମୁହଁ ଉଠାଇ କହିଲା—ନ ଗଲେ ମଧ୍ୟ ଦେଖି ପାରିବ ଆଣ୍ଟିବାବୁ । ଭାଙ୍ଗି-ବାର ନଜିର ସେ ଦେଶରେ ପ୍ରତ୍ୟହ ପୁଞ୍ଜିଭୂତ ହେଉଛି ଏବଂ ହେବାର କଥା ମଧ୍ୟ । ଏହା ଯେପରି ସତ୍ୟ, ଏହା ଠାରୁ ତାହାର ସ୍ୱରୂପ ବୁଝିବାକୁ ଯିବା ମଧ୍ୟ ସେହିପରି ଭୁଲ । ଏହା ବିଚାର କରିବାର ପଦ୍ଧତି ନୁହେଁ ।

ଆଣ୍ଟିବାବୁ ନିଜର ଭୁଲ ବୁଝିପାରି ଟିକିଏ ଅପ୍ରତିଭ ହୋଇ ପଡ଼ିଲେ । ମନେ ମନେ ଭାବିଲେ ଏପରି ଭାବରେ ତାହା ସହିତ ଯୁକ୍ତି କରିବା ଚଳିବ ନାହିଁ । କହିଲେ—ସେ ଯାହା ହେଉ, ଆମର ଏଇ ଦେଶଟାକୁ ଟିକିଏ ଭଲ କରି ଚାହିଁ ଦେଖତ । ଯେଉଁ ପ୍ରଥା ଆବହମାନ କାଳରୁ ଚାଲି ଆସିଛି ତହିଁରେ ତାକୁ ସୃଷ୍ଟି କରିଥିବା କର୍ତ୍ତାଙ୍କର ଦୂରଦର୍ଶିତା ସ୍ପଷ୍ଟ ପ୍ରତୀୟ-ମାନ । ଏଠାରେ ଦାୟିତ୍ୱ ପାତ୍ର-ପାତ୍ରୀଙ୍କ ଉପରେ ନାହିଁ । ଅଛି ବାପ-ମାଆ, ଗୁରୁଜନ-ମାନଙ୍କ ଉପରେ । ସେଥିପାଇଁ ଏଠାରେ ବିବେକ ଆକୁଳ-ଅସଂଯମ ଦ୍ୱାରା ଦୂଷିତ ନ ହୋଇ ଏକ ଶାନ୍ତ ଅବିଚଳିତ ମଙ୍ଗଳମୟ ବିଚାରଧାରା ଦ୍ୱାରା ପରିଚାଳିତ ହୋଇଥାଏ ।

: ମଣି ତ କିନ୍ତୁ ମଙ୍ଗଳର ହିସାବ କରିବାକୁ ଯାଇ ନାହିଁ—ସେ ଚାହିଁଛି ଭଲ ପାଇବାକୁ । ଗୋଟାକର ହିସାବ ଗୁରୁଜନମାନଙ୍କ ସୁଭଳ ଦ୍ୱାରା ମିଳିଥାଏ କିନ୍ତୁ ଅନ୍ୟଟାର ହିସାବ ହୃଦୟସ୍ଥିତ ଦେବତା ବ୍ୟତୀତ ଆଉ କେହି ଜାଣିପାରନ୍ତି ନାହିଁ । ତର୍କ କରି କିନ୍ତୁ ମୁଁ ଆପଙ୍କୁ ମିଛଟାରେ ଉତ୍ୟକ୍ତ କରୁଛି । ଯାହା ଘରେ ପଶ୍ଚିମ ଦିଗ ବ୍ୟତୀତ ଅନ୍ୟ ସବୁଦିଗର ଝରକା ବନ୍ଦ ଥାଏ, ସିଏ ସୂର୍ଯ୍ୟଙ୍କର ପ୍ରତ୍ୟୁଷର ଆବିର୍ଭାବକୁ ଦେଖିପାରେ ନାହିଁ, ସେ କେବଳ ପ୍ରଦୋଷ ସମୟରେ ସୂର୍ଯ୍ୟାସ୍ତ ହିଁ ଦେଖିପାରେ । କିନ୍ତୁ ସେହି ରଙ୍ଗ ଏବଂ ସାଦୃଶ୍ୟର ସାମଞ୍ଜସ୍ୟ ନେଇ ତର୍କ କରି ବସିଲେ କଥା ହିଁ କେବଳ ବଢ଼ିବ ସିନା କିନ୍ତୁ ମୀମାଂସାରେ କେହି ପହଞ୍ଚି ପାରିବା ନାହିଁ । ଆଜି ବହୁତ ରାତି ହେଲାଣି—ଚାଲିଣୁ ଯାଉଛୁ ।

ନୀଳିମା ବରାବର ଚୁପ୍ ହୋଇ ରହିଥିଲା । ଏତେ ସମୟ ଧରି ଏତେ କଥାବାର୍ତ୍ତା ଭିତରେ ପଦଟିଏ ହେଲେ ଯୋଗ କରି ନାହିଁ । ବର୍ତ୍ତମାନ କହିଲା—ମୁଁ ମଧ୍ୟ ତୋର ସବୁ କଥା ସ୍ପଷ୍ଟ ଭାବରେ ବୁଝିପାରି ନାହିଁ କମଳ । କିନ୍ତୁ ସାମାନ୍ୟ ଅନୁଭବ କରୁଛି ଯେ ଘରର ଅନ୍ୟସବୁ ଝରକାଗୁଡ଼ାକ ଖୋଲି ଦେବାଟା ତୋର ଉଚିତ୍ ହେବ । ଏହା ତ ଆଖିର ଦୋଷ ନୁହେଁ, ଦୋଷ ହେଉଛି ବନ୍ଦ ଝରକାଗୁଡ଼ିକର । ନଚେତ୍ ଯେଉଁ ଦିଗଟା ଖୋଲା

ରହିଛି ସେହିଠାରେ ଠିଆହୋଇ ଆମରଣ ଚାହିଁ ରହିଲେ ତାହା ବ୍ୟତୀତ ଆଉ ଅନ୍ୟ କିଛି କୌଣସି ଧନ ଆଖିରେ ପଡ଼ିବ ନାହିଁ ।

କମଳ ଉଠି ଠିଆ ହେବାକ୍ଷଣି ଆଶୁବାବୁ ବ୍ୟାକୁଳ କଣ୍ଠରେ କହି ଉଠିଲେ— ଯା'ନା କମଳ, ଆଉ ଟିକିଏ ବସ । ମୋ ମୁହଁକୁ ଚାହିଁ ଯାଇ ନାହିଁ । ଆଖିରେ ନିଦ ନାହିଁ । ଅବିରତ ବୁକୁ ଭିତରଟା କ'ଣ ଯେ ହେଉଛି ତାହା ମୁଁ ତୋତେ ବୁଝାଇ ପାରିବି ନାହିଁ । ତଥାପି ତୋ କଥାଗୁଡ଼ାକ ପ୍ରକୃତରେ ବୁଝି ପାରିବା ପାଇଁ ଆଉଥରେ ଚେଷ୍ଟାକରି ଦେଖିବି । ତୁ କ'ଣ ସତରେ କହୁଛୁ ମୁଁ ଚୁପ୍ ରହିବି ଏବଂ ଏହି ଘଟଣାଟା ଘଟିଯାଉ ।

କମଳ କହିଲା—ମଣି ଯଦି ତାଙ୍କୁ ଭଲପାଇ ପାରିଥାଏ, ତେବେ ତାହାକୁ ମୁଁ ଖରାପ ବୋଲି କହି ପାରିବି ନାହିଁ ।

: କିନ୍ତୁ ଏଇଟା ମୁଁ ତୋତେ ହଜାରଥର ବୁଝାଇବା ପାଇଁ ଚାହୁଁଛି କମଳ, ଏହା ତାର ଭଲପାଇବା ଆଦୌ ନୁହେଁ । ଦିନେ ନା ଦିନେ ତାର ଏହି ମୋହ •ନଷ୍ଟ• ଭାଙ୍ଗିବ ।

:କେବଳ ଯେ ମୋହ ଏଇପରି ଭାବରେ ଭାଙ୍ଗିପଡ଼େ ତାହା ନୁହେଁ ଆଶୁବାବୁ । ପ୍ରକୃତ ଭଲ ପାଇବା ମଧ୍ୟ ଏପରି ଭାଙ୍ଗିପଡ଼େ । ସେଥିପାଇଁ ଅଧିକାଂଶ ଭଲ ପାଇସାରିବା ପରେ ଅନୁଷ୍ଠିତ ହୋଇଥିବା ବିବାହ ହୋଇ ଉଠେ କ୍ଷଣସ୍ଥାୟୀ । ଏଥିପାଇଁ ସେହି ଦେଶର ଏତେ ଦୁର୍ନାମ ଏବଂ ସେଠାରେ ଏତେ ବିବାହ-ବିଚ୍ଛେଦ ମକଦ୍ଦମା ।

ଏହାଶୁଣି ହଠାତ୍ ଆଶୁବାବୁ ଯେପରି ଟିକିଏ ଆଲୋକ ଦେଖିପାରିଲେ । ଉଚ୍ଛ୍ୱସିତ ଆଗ୍ରହରେ କହି ଉଠିଲେ—ସେହି କଥା ହିଁ କହ କମଳ । ସେହି କଥା ହିଁ କହ । ଏହା ତ ସ୍ୱଚକ୍ଷୁରେ ମୁଁ ଅନେକ ଦେଖିଛି ।

ନୀଳିମା ଅବାକ୍ ହୋଇ ଚାହିଁ ରହିଲା ।

ଆଶୁବାବୁ ପ୍ରଶ୍ନ କଲେ—କିନ୍ତୁ ଆମ ଏ ଦେଶର ବିବାହ ପ୍ରଥା ? ତାହାକୁ ତୁ କ'ଣ ବୋଲି ବିଚାର କରୁ ? ତାହା ଯେ ସାରାଜୀବନ ପାଇଁ ଭାଙ୍ଗିଯାଏ ନାହିଁ ।

: ଭାଙ୍ଗିବାର କଥା ନୁହେଁ ଆଶୁବାବୁ । ତାହା ତ ଅନଭିଜ୍ଞ ଜୀବନର ପାଗଳାମୀ ନୁହେଁ । ବହୁଦର୍ଶୀ ଗୁରୁଜନମାନଙ୍କଦ୍ୱାରା ହିସାବ କରା ହୋଇଥିବା କାର୍ଯ୍ୟ । ତାହା ସ୍ୱପ୍ନର ମୂଳଧନ ନୁହେଁ—ପରିଣତ ବୟସ୍କ ଲୋକଙ୍କର ଖୁଣ୍ଟିନାଟି ବିଚାରବିଚ୍ଛ ପରେ ଅନୁଭୂତ-ଲବ୍ଧ ଜିନିଷ । ମାଟି ଭିତରେ ପଙ୍କ ନ ଥିଲେ ତାହା ସହଜରେ ଫାଟି ଯାଏ ନାହିଁ । ଏହି ଦେଶରେ କ'ଣ ସବୁ ଦେଶରେ ତାହା ମଜବୁତ । ସାରାଜୀବନ ବଜ୍ର ଭଳି ରହିଥାଏ ।

ଆଶୁବାବୁ ନିଃଶ୍ୱାସ ଗ୍ରହଣ ସ୍ଥିର ହୋଇ ରହିଲେ । ମୁହଁକୁ ତାଙ୍କର ଉତ୍ତର ପଇଟିଲା ନାହିଁ ।

ନୀଳିମା ନୀରବରେ ଶୁଣି ରହିଥିଲା । ଧୀରେ ଧୀରେ ପ୍ରଶ୍ନ କଲା—ତୁମ କଥା ଯଦି ସତ ହୁଏ, ପ୍ରକୃତ ଭଲ ପାଇବା ମଧ୍ୟ ଯଦି ଭୁଲ ବୋଲି ସ୍ୱର୍ଗ ପଡ଼େ ମନୁଷ୍ୟ ତେବେ ବଞ୍ଚିବ କାହାକୁ ନେଇ ? ତାର ଆଶା କରିବା ପାଇଁ ଅବଶିଷ୍ଟ ହୋଇ ରହିଲା କଣ ?

କମଳ କହିଲା—ଯେଉଁ ସ୍ୱର୍ଗବାସର ମିଆଦ ପୂରିଗଲା, ରହିବ ତାହାର ଏକାନ୍ତ ମଧୁର ସ୍ମୃତି । ଆଉ ତାହାର ପାଖରେ ବ୍ୟଥାର ସମୁଦ୍ର । ଆଶୁବାବୁଙ୍କ ସୁଖ ଓ ଶାନ୍ତିର ସୀମା ନ ଥିଲା କିନ୍ତୁ ଆଜି ତାଙ୍କ ପାଖରେ ଆଉ ବେଶୀ ପୁଞ୍ଜି ନାହିଁ । ଭାଗ୍ୟ ଯାହାଙ୍କୁ ଏତିକି ମାତ୍ର ଦେଇ ବିଦାୟ କରିଛି ତାକୁ କ୍ଷମା କରିବା ବ୍ୟତୀତ ଆଉ କଣ କରିଯାଇ ପାରେ, ଅପା ?

ଟିକିଏ ଅଟକି ଯାଇ କହିଲା—ଲୋକମାନେ ବାହାରେ ଥାଇ ହଠାତ୍ ଖବର ସବୁ ଶୁଣିଗଲେ । ବନ୍ଧୁବାନ୍ଧବମାନଙ୍କର ଭୟର ଶେଷ ରହେ ନାହିଁ । ଦୁଇହାତ ବଢ଼ାଇ ପଥ ଓଗାଳିବା ପାଇଁ ବାହାର ପଡ଼ନ୍ତି । ନିଶ୍ଚିତ ଭାବରେ ଭାବନ୍ତି ଯେ ସେମାନଙ୍କ ହିସାବରେ ବାହାରେ ସବୁ ଶୂନ୍ୟ । ଶୂନ୍ୟ କିନ୍ତୁ ନୁହେଁ ଅପା, ସବୁ ଯାଇ ଯାହା ହାତରେ ରହେ ମାଣିକ୍ୟ ଭଳି ତାହା ହାତ ମୁଠାରେ ରହିଥାଏ । ଦମ୍ଭବହୁଳ ପଥରେ ତାହାକୁ ଧରି ଶୋଭାଯାତ୍ରା କରିହୁଏ ନାହିଁ ବୋଲି ହିଁ ଦର୍ଶକର ଦଳ ହତାଶ ହୋଇ ଧିକ୍କାର ଦେଇ ଘରକୁ ଫେରନ୍ତି । କହନ୍ତି—ଏହା ହିଁ ତ ସର୍ବନାଶ ।

ନୀଳିମା କହିଲା—କହିବାର କାରଣ ଅଛି କମଳ, ମଣିମାଣିକ୍ୟ ସମସ୍ତଙ୍କ ପାଇଁ ନୁହେଁ; ସାଧାରଣଙ୍କ ପାଇଁ ମଧ୍ୟ ନୁହେଁ । ଆପାଦମସ୍ତକ ସୁନା ରୂପାର ଗହଣା ନ ପିନ୍ଧିଲେ ଯେଉଁମାନଙ୍କର ମନ ସନ୍ତୁଷ୍ଟ ହୁଏ ନାହିଁ, ସେମାନେ ତୁମର ଏହି ଏତେ ଟିକିଏ ସାତ-ମାଣିକର କଦର ବୁଝି ପାରିବେ ନାହିଁ । ପଶ୍ଚିମର ଦରଜା ଖୋଲି ସୂର୍ଯ୍ୟୋଦୟ ଦେଖିବାର ଚେଷ୍ଟା ବୃଥା ହେବ । ତେଣୁ ଏ ଆଲୋଚନା ବନ୍ଦ ଥାଉ ।

ଆଶୁବାବୁଙ୍କ ମୁହଁରୁ ଆଉ ଗୋଟାଏ ଦୀର୍ଘଶ୍ୱାସ ବାହାରି ଆସିଲା । ଆସ୍ତେ ଆସ୍ତେ କହିଲେ—ବୃଥା ହେବ କାହିଁକି ନୀଳିମା—ବୃଥା ହେବ ନାହିଁ । ବେଶ୍ ଚୁପ୍ ହୋଇ ନ ହେଲେ ରହିବ ।

ନୀଳିମା କହିଲା—ନା, ତାହା ଆପଣ କରିବେ ନାହିଁ । ସତ୍ୟ କ'ଣ କେବଳ କମଳର ତନ୍ତ୍ରରେ ହିଁ ରହିଛି ଆଉ ପିତାର ଶୁଭ-ବୁଦ୍ଧିରେ ନାହିଁ ? ଏପରି ହୋଇ ପାରିବ ନାହିଁ । ତା ପକ୍ଷରେ ଯାହା ସତ୍ୟ, ଅନ୍ୟ ମନିଷ ପକ୍ଷରେ ତାହା ସତ୍ୟ ନ ହୋଇପାରେ । ସ୍ତ୍ରୀର ଦୁଷ୍ଟରିତ୍ର ସ୍ୱାମୀ ପରିତ୍ୟାଗ କରିବା ପଛରେ ଯେତେ ସତ୍ୟ ହିଁ ଥାଉ ନା କାହିଁକି, ବେଲା ପକ୍ଷରେ ସ୍ୱାମୀ ତ୍ୟାଗ ସମ୍ବନ୍ଧରେ ଏକ ବିନ୍ଦୁ ସତ ନାହିଁ—ଏହା ମୁଁ ଜୋର କରି

କହିପାରେ । ସ୍ୱାମୀକୁ ତ୍ୟାଗ କରିବା ଭିତରେ ସତ୍ୟ ନାହିଁ, ସ୍ୱାମୀର ଦାସୀ ବୃତ୍ତି କରିବା ମଧ୍ୟରେ ମଧ୍ୟ ନାହିଁ—ଏ ଦୁଇଟା କେବଳ ତାହାଣ ଓ ବାଆଁ ର ବାଟ । ଗନ୍ତବ୍ୟ ସ୍ଥାନଟା କିନ୍ତୁ ଆପଣାକୁ ଖୋଜିନେବାକୁ ହୋଇଥାଏ । ଯୁକ୍ତି କରି ତାହାର ଠିକଣା ପାଇ ହୁଏ ନାହିଁ ।

କମଳ ନୀରବରେ ଶୁଣୁ ହିଁ ରହିଲା ।

ନୀଳିମା କହିବାକୁ ଲାଗିଲା—ସୂର୍ଯ୍ୟର ଉଦୟ ହିଁ ସବୁ କିଛି ନୁହେଁ । ତାର ଅସ୍ତ ମଧ୍ୟ ସେହିପରି ବଡ଼ । ଯୌବନର ଆକର୍ଷଣଟା ଯଦି ସବୁ କିଛି ଭଲ ପାଇବାର ଏକମାତ୍ର ଉପାଦାନ ହୋଇ ପାରନ୍ତା ତେବେ ଝିଅ ମାନଙ୍କ ସମ୍ପର୍କରେ ପିତା ମାତାଙ୍କର ଦୁଶ୍ଚିନ୍ତାର ସୀମା ରହନ୍ତା ନାହିଁ—କିନ୍ତୁ ତାହା ନୁହେଁ । ମୁଁ ବହି ପଢ଼ି ନାହିଁ । ଜ୍ଞାନ, ବୁଦ୍ଧି ମୋର ମଧ୍ୟ କମ୍ । ଯୁକ୍ତି କରି ତୁମକୁ ବୁଝାଇ ପାରିବି ନାହିଁ । କିନ୍ତୁ ମନେ ହୁଏ ଅସଲ ଜିନଷଟିର ସନ୍ଧାନ ତୁମେ ମଧ୍ୟ ଏପର୍ଯ୍ୟନ୍ତ ପାଇ ପାରି ନାହିଁ । ଶ୍ରଦ୍ଧା, ଭକ୍ତି, ସ୍ନେହ, ବିଶ୍ୱାସ—ଏସବୁ ଜୋର ଜବରଦସ୍ତି ପାଇ ହୁଏ ନାହିଁ । ଅନେକ ତ୍ୟାଗ ପରେ ବହୁ ବିଳମ୍ବରେ ଏସବୁ ପାଇହୁଏ । ଯେତେବେଳେ ଏହା ମିଳିଥାଏ ସେତେବେଳେ ରୂପ ଆଉ ଯୌବନ ଯେ କେଉଁଠାରେ ମୁହଁ ଲୁଚାଇ ରହନ୍ତି, କମଳ, ଖୋଜିଲେ କ'ଣ ମିଳି ପାରନ୍ତି ?

ତୀକ୍ଷ୍ଣଧୀ କମଳ ମୁହୂର୍ତ୍ତକ ଭିତରେ ବୁଝି ପାରିଲା ଯେ ବର୍ତ୍ତମାନ ଚାଲିଥିବା ଆଲୋଚନା ଦ୍ୱାରା ଏହା ଅଗ୍ରାହ୍ୟ ହୋଇଛି । ପ୍ରତିବାଦ ନୁହେଁ, କିମ୍ବା ସମର୍ଥନ ମଧ୍ୟ ନୁହେଁ ବରଂ ଏସବୁ ନୀଳିମାର ନିଜସ୍ୱ ବକ୍ତବ୍ୟ । ସେ ହିଁ ଦେଖିଲା ଉଜ୍ଜ୍ୱଳ ଦୀପ ଆଲୁଅରେ ନୀଳିମାର ମୁକୁଳା ଘନ କୃଷ୍ଣ ଚିକ୍କୁରର ଶ୍ୟାମଳ ଶ୍ରୀସ୍ତରରେ ତା ସୁନ୍ଦର ମୁହଁଟି ଅପୂର୍ବ ସୌନ୍ଦର୍ଯ୍ୟ ଧାରଣ କରିଛି ଏବଂ ପ୍ରଶାନ୍ତ ଚକ୍ଷୁଦ୍ୱୟର ସଜଳ ଦୃଷ୍ଟି ସକରୁଣ ସ୍ନିଗ୍ଧତାରେ ଭରି ଉଠିଛି । କମଳ ମନେ ମନେ କହିଲା—ଏହା ନବୀନ ସୂର୍ଯ୍ୟୋଦୟ ଅବା ଶାନ୍ତ ରବିର ଅସ୍ତାଗମନ । ଏହି ବୃଥା ଆରକ୍ତ ଆଭା ଦ୍ୱାରା ଆକାଶର ଯେଉଁ ଦିଗଟା ଆରକ୍ତ ହୋଇ ଉଠିଛି, ପୂର୍ବ, ପଶ୍ଚିମର ଦିଗ ନିର୍ଣ୍ଣୟ ନ କରି ସେ ତାହା ଉଦ୍ଦେଶ୍ୟରେ ସଶ୍ରଦ୍ଧ ପ୍ରଣାମ ଜଣାଇଲା ।

ଦୁଇ ତିନି ମିନିଟ ପରେ ଆଶ୍ୱବାବୁ ସହସା ଚକିତ ହୋଇ କହିଲେ—କମଳ ତୋ କଥା ଗୁଡ଼ିକ ମୁଁ ଆଉ ଥରେ ପୁଣି ଭାବି କରି ଦେଖିବି । କିନ୍ତୁ ମୋ କଥା ଗୁଡ଼ିକୁ ତୁ ଏପରି ଭାବରେ ଅବଜ୍ଞା କରି ବିସ୍ମର କରିବୁ ନାହିଁ । ବହୁ ବହୁ ମାନବ ଏହାକୁ ସତ୍ୟ ବୋଲି ସ୍ୱୀକାର କରିଛନ୍ତି । ମିଥ୍ୟା ଦ୍ୱାରା କଦାପି ଏତେ ଗୁଡ଼ାଏ ଲୋକଙ୍କୁ ଭୁଲାଇ ପାରି ହୋଇ ନ ଥାନ୍ତା ।

କମଳ ଅନ୍ୟମନସ୍କ ଭଳି ସାମାନ୍ୟ ହସିଦେଇ ମୁଣ୍ଡ ହଲାଇଲା କିନ୍ତୁ ଜବାବ ଦେଲା ନୀଳିମାକୁ । କହିଲା ଯାହା ଦ୍ୱାରା ଗୋଟିଏ ପିଲାକୁ ଭୁଲାଇ ପାରିଯାଏ ତାହାରି

ଦ୍ୱାରା ଲକ୍ଷଲକ୍ଷ ପିଲାଙ୍କୁ ମଧ୍ୟ ଭୁଲାଇ ହୁଏ । ସଂଖ୍ୟା ବଢ଼ାଇବାଟା କଦାପି ବୁଦ୍ଧିମାନର ମାପକାଠି ନୁହେଁ । ଅପା, ଦିନେ ଯେଉଁମାନେ କହିଥିଲେ ଯେ ନରନାରୀଙ୍କ ଭିତରେ ଭଲ ପାଇବାର ଇତିହାସଟା ହେଉଛି ହିଁ ମାନବ ସଭ୍ୟତାର ଚରମ ସତ୍ୟ ସେହିମାନେ ସବୁଠାରୁ ବେଶୀ ସତ୍ୟର ସନ୍ଧାନୀ ହୋଇ ପାରିଥିଲେ । କିନ୍ତୁ ଯେଉଁମାନେ ଘୋଷଣା କରିଥିଲେ ପୁତ୍ର ପାଇଁ ଭାର୍ଯ୍ୟାର ପ୍ରୟୋଜନ ସେମାନେ କେବଳ ସ୍ତ୍ରୀ ଜାତିକୁ ଅପମାନିତ କରି କ୍ଷାନ୍ତ ହୋଇ ନାହାଁନ୍ତି, ନିଜର ବଡ଼ ହେବାର ପଥଟାକୁ ରୁଦ୍ଧ କରି ଦେଇଛନ୍ତି ଏବଂ ସେହି ଅସତ୍ୟ ଉପରେ ଲଙ୍ଗର ବାନ୍ଧିଥିଲେ ବୋଲି ଆଜି ସୁଦ୍ଧା ଦୁଃଖ ପାଇଁ କିନାରା ଖୋଜି ପାଇ ପାରୁ ନାହାଁନ୍ତି ।

: କିନ୍ତୁ ଏକଥା ମୋତେ କାହିଁକି କହୁଛୁ, କମଳ ?

: କାରଣ ଆପଣଙ୍କୁ ଜଣାଇବାର ମୋର ସବୁଠାରୁ ଆଜି ପ୍ରୟୋଜନ ଯେ, ଶ୍ଳୋକବାକ୍ୟର ଅନେକ ଅଳଙ୍କାର ଆମମାନଙ୍କ ଦେହରେ ପିନ୍ଧାଇ ଦେଇ ଯେଉଁମାନେ ପ୍ରଚାର କରିଦେଇଥିଲେ ମାତୃତ୍ୱ ହିଁ ନାରୀର ଚରମ ସାର୍ଥକତା, ସେହିମାନେ ହିଁ ନାରୀ ଜାତିକୁ ବଞ୍ଚନା କରିଥିଲେ । ଜୀବନରେ ଯେ କୌଣସି ଅବସ୍ଥାକୁ ପଛକେ ସ୍ୱୀକାର କରିନେବେ ଅପା, କିନ୍ତୁ ଏହି ମିଥ୍ୟା ନୀତିବାକ୍ୟକୁ କଦାପି ମାନିନେବେ ନାହିଁ—ଏହାହିଁ ମୋର ଶେଷ ଅନୁରୋଧ । କିନ୍ତୁ ଆଉ ଯୁକ୍ତି କରିବି ନାହିଁ—ଯାଉଛି ।

ଆଶୁବାବୁ ଶ୍ରାନ୍ତ କଣ୍ଠରେ କହିଲେ—ଆ । ତଳେ ତୋ ପାଇଁ ଗାଡ଼ି ରଖା-ଯାଇଛି । ପହଞ୍ଚାଇ ଦେଇ ଆସିବ ।

କମଳ ବ୍ୟଥାର ସହିତ କହିଲା—ଆପଣ ମୋତେ ସ୍ନେହ କରନ୍ତି । କିନ୍ତୁ ଆପଣଙ୍କ ଓ ମୋ ଭିତରେ ସାମଞ୍ଜସ୍ୟ କେଉଁଠାରେ ଟିକିଏ ହେଲେ ବି ନାହିଁ ।

ନୀଲିମା କହିଲା—ଅଛି କମଳ । କିନ୍ତୁ ତାହା ତ ମୁନିବର ଫରମାସ ମୁତାବକ କାର୍ଯ୍ୟ କରିବାର ସାମଞ୍ଜସ୍ୟ ନୁହେଁ ବରଂ ବିଧାତାଙ୍କ ସୃଷ୍ଟିର ମେଳ । ଚେହେରା ଅଲଗା, କିନ୍ତୁ ରକ୍ତ ଏକ, ଯାହାକି ଆଖି ଆଢ଼ୁଆଳରେ ଶିରା ଭିତରେ ଭିତରେ ବହି ଚାଲେ । ସେଥିପାଇଁ ବାହାରର ଯେତେ ଅମେଳ ଥାଉନା କାହିଁକି ଅନ୍ତରର ପ୍ରଚଣ୍ଡ ଆକର୍ଷଣ କୌଣସି ମତେ ଦୂର ହୋଇ ପାରୁ ନାହିଁ ।

କମଳ ନିକଟକୁ ଆସି ଆଶୁବାବୁଙ୍କ କାନ୍ଧ ଉପରେ ହାତଟି ରଖି ଆସ୍ତେ ଆସ୍ତେ କହିଲା—ଝିଅ ବଦଳରେ କିନ୍ତୁ ମୋ ଉପରେ ରାଗ କରିବେ ନାହିଁ କହି ଦେଉଛି ।

ଆଶୁବାବୁ କିଛି କହିଲେ ନାହିଁ । କେବଳ ସ୍ତବ୍ଧ ହୋଇ ବସିରହିଲେ ।

କମଳ କହିଲା—ଇଂରାଜୀରେ emancipation ବୋଲି ଗୋଟାଏ ଶବ୍ଦ ଅଛି । (ଯାହାର ଅର୍ଥ ହେଲା—ମୁକ୍ତି କିମ୍ବା ଦାସତ୍ୱ ମୋଚନ) । ଆପଣ ତ ଜାଣନ୍ତି ପୂର୍ବକାଳରେ ପିତାର ଅଧୀନତାରୁ ସନ୍ତାନକୁ ମୁକ୍ତି ଦେବା ଭିତରେ ଗୋଟାଏ ବଡ଼

ଅର୍ଥ ଥିଲା । ସେଦିନ କିନ୍ତୁ ଝିଅ-ପୁଅମାନେ ମଣି ଏହି ଶବ୍ଦଟା ଉଆର କରି ନଥିଲେ । କରିଥିଲେ କିନ୍ତୁ ଯେଉଁମାନେ ଆପଣମାନଙ୍କ ଭଳି ବିଗ୍ରିଟ ପିତାମାନେ, ନିଜର ବନ୍ଧନ ଦଉଡ଼ିକୁ ଅଲଗା କରି ଯେଉଁମାନେ ଆପଣାର କନ୍ୟା, ପୁତ୍ରମାନଙ୍କୁ ମୁକ୍ତି ଦେଇଥିଲେ, ସେମାନେ । ଆଜି କାଲି ମଧ୍ୟ ଇମ୍ୟାନ୍‌ସିପେଶନେର ପାଇଁ ଯେତେ ଗଣ୍ଡଗୋଲ ଝିଅମାନେ କରନ୍ତୁ ନା କାହିଁକି, ଦେବାର ଅସଲ ମାଲିକ ଯେ ପୁରୁଷମାନେ —ଏବଂ ଆମେମାନେ ନୋହୁଁ । ସଂସାରର ବ୍ୟବସ୍ଥା ଦ୍ୱାରା ମୁଁ ଯେ ଏଇ ସତ୍ୟଟା ବାଦକ ପାଇଁ ପୁଞ୍ଜା ଭୁଲି ନାହିଁ ଆଶୁବାବୁ । ମୋ ବାବା ପ୍ରାୟ ହିଁ କହୁଥାନ୍ତି, ପୃଥିବୀରେ କ୍ରୀତଦାସ ମାନଙ୍କୁ ସେମାନଙ୍କର ମୁନିବ ମାନେ ହିଁ ସ୍ୱାଧୀନତା ଦେଇଥିଲେ । ସେମାନଙ୍କ ପାଇଁ ସେମାନଙ୍କର ମୁନିବ ଜାତି ହିଁ ସେଦିନ ଲଢ଼ାଇ କରିଥିଲେ । ନ ହେଲେ ଦାସ ମାନେ ଗଣ୍ଡଗୋଲ କରି ନିଜର ମୁକ୍ତି ଅର୍ଜନ କରି ପାରି ନ ଥାନ୍ତେ । ଏହିପରି ହିଁ ପ୍ରାୟ ହୋଇଥାଏ । ସୃଷ୍ଟିର ଏହା ହିଁ ନିୟମ । ଶକ୍ତର ବନ୍ଧନରୁ ଶକ୍ତିମାନ ମାନେ ହିଁ ଦୁର୍ବଳଙ୍କୁ ତ୍ରାଣ କରିଥାନ୍ତି । ସେହିପରି ନାରୀର ମୁକ୍ତି କେବଳ ପୁରୁଷମାନେ ହିଁ ଦେଇ ପାରିବେ । ଦାୟିତ୍ୱ ତ ସେମାନଙ୍କର । ମନୋରମାକୁ ମୁକ୍ତି ଦେବାର ଭାର ଆପଣଙ୍କ ଉପରେ । ମଣି ବିଦ୍ରୋହ କରିପାରେ କିନ୍ତୁ ପିତାର ଅଭିଶାପ ମଧ୍ୟରେ ତ ସନ୍ତାନର ମୁକ୍ତି ନଥାଏ । ଥାଏ ତାହାର ଅକୁଣ୍ଠ ଆଶୀର୍ବାଦ ଭିତରେ ।

ଆଶୁବାବୁ ବର୍ତ୍ତମାନ କଥା କହି ପାରିଲେ ନାହିଁ । ଏହି ଉଚ୍ଛୃଙ୍ଖଳ ପ୍ରକୃତିର ଝିଅଟି ସଂସାରରେ ଅସମ୍ମାନ, ଅମର୍ଯ୍ୟାଦା ଭିତରେ ଜନ୍ମଲାଭ କରିଛି । କିନ୍ତୁ ଜନ୍ମର ସେହି ଲଜ୍ଜାକର ଦୁର୍ଗତିକୁ ଅନ୍ତରରେ ସଂପୂର୍ଣ୍ଣ ବିଲୁପ୍ତ କରି ଲୋକାନ୍ତରିତ ପିତା ପ୍ରତି ତାହାର ଭକ୍ତି, ସ୍ନେହ ଓ ଶ୍ରଦ୍ଧାର ଅନ୍ତ ନାହିଁ ।

ଯେଉଁ ଲୋକଟି ଏହାର ପିତା ତାଙ୍କୁ ସେ ଦେଖି ନାହାନ୍ତି । ନିଜର ସଂସ୍କାର ଏବଂ ପ୍ରକୃତି ଅନୁସାରେ ସେହି ଲୋକଟିକୁ ଶ୍ରଦ୍ଧା କରିବା ମଧ୍ୟ କଠିନ । ତଥାପି ତାହାର ଉଦ୍ଦେଶ୍ୟରେ ତାଙ୍କ ଦୁଇ ଆଖିରେ ଲୁହ ଭରି ଉଠିଲା । ନିଜ ଝିଅର ବିଚ୍ଛେଦ ଏବଂ ବିରୁଦ୍ଧାଚରଣ ତାଙ୍କୁ ଶୂଳର ଆଘାତ ପରି ଆଘାତ କରିଛି ସତ କିନ୍ତୁ ସକଳ ବନ୍ଧନକୁ କାଟି ମଣିଷ ଯେ ସବୁଦିନ ପାଇଁ କିପରି ରହିପାରେ ତାହା ଏହି ପରି ଝିଅଟିର ମୁହଁକୁ ଚାହିଁ ଆଶ୍ୱାସ ପାଇ ପାରିଲେ ଏବଂ ତା କାନ୍ଧ ଉପରକୁ ତାଙ୍କ ହାତଟିକୁ ଟାଣିନେଇ କିଛି ସମୟ ପାଇଁ ନୀରବ ହୋଇ ରହିଲେ ।

କମଲ କହିଲା—ଏଥର ମୁଁ ଯାଉଛି ।

ଆଶୁବାବୁ କହିଲେ—ହଁ । ଏହାଠାରୁ ଅଧିକ କିଛି ସେଦିନ ତାଙ୍କ ତୁଣ୍ଡରୁ ବାହାରିଲା ନାହିଁ ।

ଶୀତ ଦିନର ସୂର୍ଯ୍ୟ ଅସ୍ତ ଗଲେ । ମଧ୍ୟାହ୍ନର ସ୍ତିର ଆଲୁଅରେ ଘର ଭିତରଟା ଝାପ୍‌ସା ହୋଇ ଉଠିଥାଏ । ଗୋଟାଏ ଜରୁରୀ ସିଲାଇ କାମର ବାକିଥିବା ଅଂଶକୁ କମଳ ଦୀପ ଲଗିବା ପୂର୍ବରୁ ସାରିଦେବା ପାଇଁ ଇଚ୍ଛା କରୁଥାଏ । ଅଳ୍ପ ଦୂରରେ ଚୌକିରେ ବସିଥାଏ ଅଜିତ । ବୋଧହୁଏ କ'ଣ କିଛି କହି ସାରି ସେ ଅଟକି ଯାଇ ଉତ୍ତର ଆଶାରେ ଉତ୍କଣ୍ଠିତ ଆଗ୍ରହ ସହକାରେ ଅପେକ୍ଷା କରିଛି ।

ମନୋରମା ଏବଂ ଶିବନାଥର ଘଟଣାଟା ବନ୍ଧୁ ମହଲରେ ବେଶ୍ ଜଣା ଶୁଣା ହୋଇ ଗଲାଣି । ସେଥିରୁ ହିଁ ଆଜିକାର ପ୍ରସଙ୍ଗଟା ଆରମ୍ଭ ହୋଇଛି । ଆରମ୍ଭରୁ ଅଜିତର ବକ୍ତବ୍ୟ ଥିଲା ଏଇ ଯେ ମନୋରମା ଏପରି କିଛି ଗୋଟାଏ ଶେଷକୁ କରି ବସିବ ଯାହା କି ଆଗ୍ରାକୁ ଆସିବା ଦିନଠାରୁ ହିଁ ସେ ସନ୍ଦେହ କରିଥିଲା ।

କିନ୍ତୁ ସନ୍ଦେହର କାରଣ ସମ୍ପର୍କରେ କମଳ କୌଣସି ପ୍ରକାରର ଔତ୍ସୁକ୍ୟ ପ୍ରକାଶ କରିଲା ନାହିଁ । ତା ପରଠାରୁ ଅଜିତ ଅନର୍ଗଳ ଗପିଗଲା ଅବଶେଷରେ ଏପରି ସ୍ଥାନରେ ଆସି ଅଟକି ଯାଇଛି ଯେ ଯେଉଁଠାରେ ଅପର ପକ୍ଷଠାରୁ ଉତ୍ତର ନ ପାଇଲେ ଆଉ ଅଗ୍ରସର କରିହେବ ନାହିଁ ।

କମଳ ଅତ୍ୟନ୍ତ ମନଯୋଗ ସହକାରେ ସିଲାଇ କରିବାରେ ଲାଗି ପଡ଼ିଥାଏ । ଦୁଇ ତିନି ମିନିଟ ନୀରବରେ କଟିଲା । ଆଉ ମଧ୍ୟ କେତେକ୍ଷଣ କଟିବ ତାହାର ସ୍ଥିରତା ନ ଥାଏ । ଅତଏବ ଅଜିତକୁ ପୁଣି ଥରେ ଚେଷ୍ଟା କରିବାକୁ ପଡ଼ିଲା । କହିଲା, ଶିବନାଥର ଆଚରଣ ତୁମ ଆଖିରେ ଧରା ନ ପଡ଼ିବାଟା କ'ଣ ବିସ୍ମୟକର ନୁହେଁ ।

କମଳ ମୁହଁ ଉଠାଇଲା ନାହିଁ । କେବଳ ମୁଣ୍ଡ ଟୁଙ୍ଗାରି କହିଲା—ନା ।

: ଅର୍ଥାତ୍ ତୁମେ ଏତେ ସରଳ ଯେ କୌଣସି ସନ୍ଦେହ କର ନାହିଁ । ଏହା କ'ଣ କେହି ବିଶ୍ୱାସ କରିପାରେ ?

: କିଏ କରିପାରେ କି ନ ପାରେ ଜାଣେ ନାହିଁ । କିନ୍ତୁ ଆପଣ ତ ପାରିବେ ନାହିଁ ?

: ତୁମ ମୁହଁକୁ ଚାହିଁ ଦେଖିଲେ ହୁଏତ କରିପାରେ । ନଚେତ୍ ନୁହେଁ ।

ଏଥର କମଳ ମୁହଁ ଉଠାଇ ହସିଲା । କହିଲା ତାହାହେଲେ ଚାହିଁ ଦେଖନ୍ତୁ । କହନ୍ତୁ କରି ପାରନ୍ତି କି ନାହିଁ ?

ଅଜିତର ଆଖିର ଦୃଷ୍ଟି ଜଳି ଉଠିଲା । କହିଲା—ତୁମ କଥା ହିଁ ସତ । ତାକୁ ଅବିଶ୍ୱାସ କରି ନ ଥିଲି ବୋଲି ଫଳ ଆସି ଏଇଆ ହେଲା !

: ହୋଇଛୁ ମାନୁଛୁ । କିନ୍ତୁ ଆପଣଙ୍କ ତରଫରୁ ସନ୍ଦେହ କରିବାର ସୁଫଳ କେତେ ଦୂର ପାଇ ପାରିଲେ କହନ୍ତୁ ? ଏହା କହି ସେ ପୁଣି ନୀରବ ହୋଇ କାମରେ ମନଦେଲା ।

ଏହା ପରେ ଅଜିତ ସଂଲଗ୍ନ ଓ ଅସଂଲଗ୍ନ ନାନା କଥା ଦଶ ପନ୍ଦର ମିନିଟ ଧରି କ୍ରମାଗତ ଗପି ଚାଲି ଶେଷରେ କ୍ଲାନ୍ତ ହୋଇ କହିଲା—କେତେବେଳେ ହଁ ତ କେତେ-ବେଳେ ନାହିଁ । ବଙ୍କେଇ କରି କହିବା ବ୍ୟତୀତ ତୁମେ କ'ଣ ସିଧା କଥା କହି ପାରି ନାହିଁ ?

କମଳ ହାତର ସିଲାଇଟାକୁ ଟିକିଏ ସରଳ କରି ଧରି କହିଲା—ଝିଅମାନେ ବଙ୍କେଇ କହିବାକୁ ଭଲ ପାଆନ୍ତି । ସେଇଟା ସେମାନଙ୍କର ସ୍ୱଭାବ ।

: ତାହାଲେ ସେହି ସ୍ୱଭାବର ମୁଁ ପ୍ରଶଂସା କରି ପାରିବି ନାହିଁ । ସିଧା କରି କହିବା ଟିକିଏ ଶିଖ । ନଚେତ୍ ସାଂସାରିକ କାର୍ଯ୍ୟ ଆଦୌ ଚଳି ପାରିବ ନାହିଁ ।

: ଆପଣ ମଧ୍ୟ ବଙ୍କା ବୁଝିବା ପାଇଁ ଟିକିଏ ଚେଷ୍ଟା କରନ୍ତୁ । ନଚେତ୍ ଏ ପକ୍ଷରେ ମଧ୍ୟ ଅସୁବିଧା ଏହିପରି ହୋଇଥାଏ । ଏହା କହି ସେ ସିଲାଇ କାମକୁ ଏକାଠି କରି ଟୋକେଇ ଭିତରେ ରଖି କହିଲା—ସ୍ପଷ୍ଟ କରି ଜାଣିବାର ଲୋଭ ଯେଉଁମାନଙ୍କର ବେଶୀ, ବକ୍ତା ହୋଇଥିଲେ ସେମାନେ ଖବର କାଗଜରେ ବକ୍ତୃତା ଛାପନ୍ତି । ଲେଖକ ହୋଇ-ଥିଲେ ନିଜ ଗ୍ରନ୍ଥର ଭୂମିକା ଲେଖି ବସନ୍ତି ବହୁତ, ଆଉ ନାଟ୍ୟକାର ହୋଇଥିଲେ ସେମାନେ ଆପଣା ନାଟକର ନାୟକ ହୁଅନ୍ତି । ଜୀବନ୍ତ ଅକ୍ଷରରେ ଯାହା ପ୍ରକାଶ କରି ପାରିଲେ ନାହିଁ ହୁଏତ ହାତ ଗୋଡ଼ ହଲାଇ ତାହାକୁ ବ୍ୟକ୍ତ କରି ବସିବେ । ସେମାନେ ଯେ କିପରି ଭଲ ପାଇ ବସନ୍ତି ତାହା ଜାଣିପାରନ୍ତି ନାହିଁ । ଟିକିଏ ବସନ୍ତୁ, ମୁଁ ଆଳୁଅଟା ଲଗାଇ କରି ଆଣୁଛି । ଏତିକି କହି ସେ ତରତର ହୋଇ ଉଠି ଅନ୍ୟ ଘରକୁ ଚାଲିଗଲା ।

ପାଞ୍ଚ ଛଅ ମିନିଟ ପରେ ଫେରି ଆସି ଆଳୁଅଟା ମେଜ ଉପରେ ରଖି ତଳେ ବସି ପଡ଼ିଲା ।

ଅଜିତ କହିଲା—ବକ୍ତା ଲେଖକ, ବା ନାଟ୍ୟକାର ମୁଁ କୌଣସିଟା ହିଁ ନୁହେଁ । ସୁତରାଂ ସେମାନଙ୍କ ପକ୍ଷରୁ କୌଣସି କୈଫିୟତ ଦେଇ ପାରିବି ନାହିଁ । କିନ୍ତୁ ସେମାନେ କିପରି ଭଲ ପାଇ ପାରନ୍ତି ତାହା ମୁଁ ଜାଣେ । ସେମାନେ ଶୈବ-ବିବାହର ଫାନ୍ଦ ପାତନ୍ତି ନାହିଁ । ସିଧା ସରଳ ରାସ୍ତାରେ ପାଦ ପକାଇ ଚାଲନ୍ତି । ସେମାନଙ୍କ ଅବର୍ତ୍ତମାନ ଫଳରେ ଅନ୍ୟର ଖାଇବା ପିନ୍ଧିବା ପାଇଁ ଯେପରି କଷ୍ଟ ନ ହୁଏ, ଆଶ୍ରୟ ପାଇଁ ଘରବାଲା ନିକଟରେ ଯେପରି ଶରଣାପନ୍ନ ହେବାକୁ ନ ପଡ଼େ, ସେମାନଙ୍କର ସମ୍ମାନରେ ଯେପରି ଆଘାତ······

କମଳ ମଝିରୁ କହି ଉଠିଲା—ହୋଇଛି, ହୋଇଛି, ହସି ଦେଇ ପୁଣି କହିଲା—ଅର୍ଥାତ୍ ସେମାନେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଇମାରତକୁ ଏପରି ନିର୍ଭୁଳ ଏବଂ ମଜଭୁତ କରି ତିଆରି କରନ୍ତି ଯେ ଶବମାନଙ୍କ କବର ସ୍ଥାନ ବ୍ୟତୀତ ତହିଁରେ ଜୀଅନ୍ତା ମନୁଷ୍ୟର ନିଃଶ୍ୱାସ

ଟିକକ ଚଳ ପ୍ରଚଳ ହେବା ପାଇଁ ଫାଙ୍କଟିଏ ପର୍ଯ୍ୟନ୍ତ ରଖନ୍ତି ନାହିଁ । ସେମାନେ ହେଉଛନ୍ତି ସାଧୁଲୋକ ।

ହଠାତ୍ ଦ୍ୱାର ବନ୍ଧ ନିକଟରୁ ଅନୁରୋଧ ଶୁଣାଗଲା—କ'ଣ ଆମେମାନେ ଭିତରକୁ ଯାଇପାରୁ ?

କଣ୍ଠସ୍ୱର ହରେନ୍ଦ୍ରର । କିନ୍ତୁ ଆମେମାନେ ତାହା ହେଲେ ଆଉ କିଏ ସବୁ ?

: ଆସନ୍ତୁ । ଆସନ୍ତୁ । କହି ଅଭ୍ୟର୍ଥନା ଜଣାଇବା ପାଇଁ କମଳା ଦ୍ୱାରବନ୍ଧ ନିକଟକୁ ଆଗେଇ ଗଲା । ଦେଖିଲା ହରେନ୍ଦ୍ର ଏବଂ ସଙ୍ଗରେ ଆଉ ଜଣେ ଯୁବକ ।

ହରେନ୍ଦ୍ର କହିଲା—ସନ୍ତୋଷକୁ ତୁମେ ଆମ ଆଶ୍ରମରେ ମାତ୍ର ଦିନକ ପାଇଁ ଦେଖିଥିଲ । ତଥାପି ଆଶାକରେ ତାକୁ ବୋଧହୁଏ ଭୁଲି ଯାଇ ନ ଥିବ ?

କମଳ ହସହସ ମୁହଁରେ କହିଲା—ନା । ସେଦିନ ଲୁଗାଟା କେବଳ ସଫା ଥିଲା ଆଉ ଆଜି ହୋଇଛି ହଳଦିଆ ।

ହରେନ୍ଦ୍ର କହିଲା—ଏହା କେବଳ ଉଚ୍ଚତର ଭୂମିରେ ଆରୋହଣର ବାହ୍ୟିକ ଘୋଷଣା ମାତ୍ର, ଆଉ କିଛି ନୁହେଁ । ତାର କାଶୀଧାମରୁ ସଦ୍ୟ ପ୍ରତ୍ୟାଗମନ ମାତ୍ର ଦୁଇ ଘଣ୍ଟାରୁ ଅଧିକ ହେବ ନାହିଁ । କ୍ଳାନ୍ତ, ତଥାପି ସେ କିନ୍ତୁ ତୁମ ଉପରେ ପ୍ରସନ୍ନ ନୁହଁନ୍ତି । ଏହା ସତ୍ତ୍ୱେ ସେ ଆବେଗ କୁ ସମ୍ବରଣ କରି ନ ପାରି ତୁମ ପାଖକୁ ଆସିଛି । ଏହା ଆମ ବ୍ରହ୍ମଚାରୀ ମାନଙ୍କର ମନର ଉଦାରତା ବ୍ୟତୀତ ଆଉ କିଛି ନୁହେଁ । ଏତିକ କହି ସେ ଘର ଭିତରକୁ ଉଙ୍କି ମାରି କହିଲା—ଏଇ ଯେ ! ଆଉ ଜଣେ ନୈଷ୍ଠିକ ବ୍ରହ୍ମଚାରୀ ତ ପୂର୍ବାହ୍ଣରୁ ଆସି ଉପସ୍ଥିତ । ଯାହା ହେଉ, ଆମ ଆଶ୍ରମଟିତ ସ୍ୱର୍ଗ ଯାଇଛି । ଆଉ ଗୋଟିଏ ଆଶ୍ରମ ଗଜୁରି ଉଠିଲାଣି । ତେଣୁ ଆଉ ଆତଙ୍କିତ ହେବାର କିଛି ନାହିଁ । ଏହା କହି ସେ ଭିତରକୁ ପ୍ରବେଶ କଲା ଏବଂ ଦ୍ୱିତୀୟ ଚୌକିଟିକୁ ସନ୍ତୋଷକୁ ଦେଖାଇ ଦେଇ କହିଲା—ବସ । ନିଜେ ଯାଇ ଖଟ ଉପରେ ବେଶ୍ ଭଲଭାବରେ ଜମିକରି ବସି ପଡ଼ିଲା । କମଳ ଠିଆ ହୋଇଥାଏ । ସନ୍ତୋଷ ଘର ଭିତରେ ଆଉ ତୃତୀୟ ଆସନ ନ ଥିବାର ଦେଖି ବସିବା ପାଇଁ ଦ୍ୱିଧା ବୋଧ କରୁଥାଏ । ହରେନ୍ଦ୍ର ଯେ ଏହା ବୁଝି ପାରି ନ ଥିଲା ତାହା ନୁହେଁ, ତଥାପି ହସି ହସି କହିଲା—ବସରେ ସନ୍ତୋଷ । ଜାତି ଯିବ ନାହିଁ । କାଶୀରୁ ଫେରି ଯେତେ ଉଚ୍ଚକୁ ଉଠି ଆଅନା କାହିଁକି ତାହାଠାରୁ ଯେ ଉଚ୍ଚ ଯାଗା ଏ ସଂସାରରେ ଅଛି ତାହା ଯେପରି ତୁ ଭୁଲି ନ ଯାଉ ।

: ନା, ସେଥିପାଇଁ ନୁହେଁ—କହି ସନ୍ତୋଷ ଅପ୍ରତିଭ ହୋଇ ବସିପଡ଼ିଲା ।

ତା ମୁହଁକୁ ଚାହିଁ କମଳ ହସି ପକାଇ କହିଲା—ଖୁଣ୍ଟା ଦେବାଟା ଆପଣଙ୍କ ମୁହଁକୁ ମାନେ ନାହିଁ ହରେନ୍ଦ୍ର ବାବୁ । ଆଶ୍ରମର ପ୍ରତିଷ୍ଠାତା ତ ଆପଣ । ମହନ୍ତ ମହାରାଜ ମଧ୍ୟ ଆପଣ । ସେ ନିସ୍ତରରେ ଶ୍ରେଷ୍ଠ । ପୂଜାସ୍ତ ବା ପଣ୍ଡାଗିରି କରିପାରନ୍ତି ।

ତାଙ୍କର କାମ ହେଲା କେବଳ ଆପଣଙ୍କର ଉପଦେଶ ଓ ଆଦେଶକୁ ମାନି ଚାଲିବା । ସୁତରାଂ...

ହରେନ୍ଦ୍ର କହିଲା—ସୁତରାଂଟା ସମ୍ପୂର୍ଣ୍ଣ ଅନାବଶ୍ୟକ । ଆଶ୍ରମର ପ୍ରତିଷ୍ଠାତା ହୁଏତ ମୁଁ ହୋଇ ପାରେ । କିନ୍ତୁ ମହନ୍ତ ମହାରାଜ ହେଉଛନ୍ତି ଦୁଇ ବନ୍ଧୁ ସନ୍ତୋଷ ଏବଂ ରାଜେନ୍ । ଜଣକର କାମ ମୋତେ ଉପଦେଶ ଦେବା ଆଉ ଅନ୍ୟ ଜଣକର କାମ ଥିଲା ସାଧ୍ୟମତେ ମୋତେ ନମାନି ଚାଲିବା । ଜଣକର ତ ପତ୍ତା ନାହିଁ । ଆଉ ଜଣେ ଫେରି ଆସିଲା ବହୁତ କିଛି ତତ୍ତ୍ୱ ସଞ୍ଚୟ କରି । ଭୟ ହେଉଛି ତା ସହିତ ତାଳ ପକାଇ ହୁଏତ ମୁଁ ଚାଲି ନ ପାରେ । ମୋର ଏଥର କେବଳ ଭାବନା ହେଉଛି ସେହି ଅର୍ଦ୍ଧଭୁକ୍ତ ପିଲାମାନଙ୍କ ପାଇଁ । ସେମାନଙ୍କୁ କାଶୀ, କାଞ୍ଚି ବୁଲାଇ ଫେରାଇ ଆଣିଛି । ଇତି ମଧ୍ୟରେ ଆଶ୍ରମ ନିଷ୍ଠାରେ ଯେ ଏତେ ଟିକିଏ ସୁଦ୍ଧା ହୋଇନାହିଁ ତାହା ସେମାନଙ୍କ ମୁହଁକୁ ଚାହିଁ ବୁଝି ପାରୁଛି । କେବଳ ଦୁଃଖ ଏଇଥିପାଇଁ ଯେ ଆଉ ଟିକିଏ ରହି ତପସ୍ୟା କରି ପାରିଥିଲେ ହୁଏତ ଗାଡ଼ି ଭଡ଼ାଟା ମୋତେ ଦେବା ପାଇଁ ପଡ଼ି ନଥାନ୍ତା ।

କମଳ ଦୁଃଖିତା ହୋଇ ପ୍ରଶ୍ନ କଲା—ପିଲାଗୁଡ଼ିକ ବୋଧହୁଏ ଖୁବ୍ ରୋଗା ହୋଇ ପଡ଼ିଛନ୍ତି ?

ହରେନ୍ଦ୍ର କହିଲା—ରୋଗା ! ଆଶ୍ରମ ପରୀକ୍ଷାରେ ହୁଏତ ତାହାର କ'ଣ ଗୋଟାଏ ନାଆଁ ରହିଛି । ସନ୍ତୋଷ ଜାଣିଥାଇ ପାରେ । କିନ୍ତୁ ଆଧୁନିକ କାଳର ଅଙ୍କିତ ଶୁନ୍ଦାଚାର୍ଯ୍ୟଙ୍କ ତପୋବନର କିଛି ଛବି ଦେଖିଛ ? ଦେଖି ନାହଁ ? ତାହା ହେଲେ ପ୍ରକୃତ କଥା ଉପଲବ୍ଧି କରି ପାରିବ ନାହିଁ । ଦୋତାଲା ବାରଣ୍ଡାରେ ଠିଆ ହୋଇ ମୋର ତ ହଠାତ୍ ମନେ ହୋଇଥିଲା ଗୋଟିଏ ଦଳ କିଚ ଧାଡ଼ି ବାନ୍ଧି ବୋଧହୁଏ ସ୍ୱର୍ଗରୁ ଆସି ଆଶ୍ରମରେ ପହଞ୍ଚିଲେ । ଯାହାହେଉ ଭରସା ପାଇଲି । ଆମ ଆଶ୍ରମଟା ଭାଙ୍ଗିଗଲେ ସୁଦ୍ଧା ସେମାନେ ଖାଇବାକୁ ନ ପାଇ ମରିଯିବେ ନାହିଁ । ଦେଶର କୌଣସି ଗୋଟାଏ କଳା-ଭବନକୁ ଯାଇ ମଡ଼େଲର କାମ କରିପାରିବେ ।

କମଳ କହିଲା—ଲୋକେ କହୁଛନ୍ତି ଆପଣ ଆଶ୍ରମ ଭାଙ୍ଗି ଦେଉଛନ୍ତି । ଏହା କ'ଣ ସତ୍ୟ ?

: ସତ । ତୁମର ବାକ୍ୟବାଣ ମୋ ପକ୍ଷରେ ଅସହ୍ୟ । ସନ୍ତୋଷ ମଧ୍ୟ ସେହି କାରଣରୁ ଏଠାକୁ ଆସିଛି । ତାର ଧାରଣା ତୁମେ ପ୍ରକୃତ ଭାରତୀୟ ରମଣୀ ନୁହଁ । ସେଥିପାଇଁ ଭାରତର ନିଗୂଢ଼ ମର୍ତ୍ତ୍ୟକୁ ତୁମେ ଚିହ୍ନି ପାରି ନାହଁ । ତୁମକୁ ତାହା ବୁଝାଇ ଦେବା ପାଇଁ ସେ ଚାହେଁ । ବୁଝି ପାରିବ କି ନାହିଁ ତାହା ତୁମେ ଜାଣ । କିନ୍ତୁ ତାକୁ ଆଶ୍ୱାସନା ଦେଇଛି ଯେ ମୁଁ ଯାହା କରେ ନା କାହିଁକି, ତାର କିନ୍ତୁ ଭୟ ନାହିଁ । କାରଣ ଚତୁର୍ବିଧ ଆଶ୍ରମରୁ କେଉଁ ଆଶ୍ରମଟିକୁ ନିଜେ ଅଜିତ କୁମାର ଗ୍ରହଣ କରିବେ ସଠିକ୍ ଖବର ନ ପାଇଲେ ମଧ୍ୟ ପରମ୍ପରାଠାରୁ ଏ ଖବର ପାଇ ପାରିଛି ଯେ ସେ ବହୁତ

ଅର୍ଥ ବ୍ୟୟ କରି ଏପରି ଦଶ-କୋଡ଼ିଏଟା ଆଶ୍ରମ ନାନା ସ୍ଥାନରେ ଖୋଲି ଦେବେ । ତାଙ୍କର ଅର୍ଥ ବଳ ଅଛି । ଦେବାର ସାମର୍ଥ୍ୟ ମଧ୍ୟ ରହିଛି । ତହିଁରୁ ଗୋଟାକରେ ନାୟକତ୍ୱ କରିବା ପାଇଁ ସନ୍ତୋଷ ଭାଗ୍ୟରେ ଜୁଟି ଯାଇପାରେ ।

କମଳ ଚୁପି ଚୁପି ହସି ହସି କହିଲି - ଦାନଶୀଳତା ଭଳି ଦୁଷ୍କୃତ ଘୁଷି ଦେବା ପରି ଆଚ୍ଛାଦନ ଆଉ ନାହିଁ । କିନ୍ତୁ ଭାରତର ସତ୍ୟ ବସ୍ତୁଟିକୁ ମୋତେ ବୁଝାଇ ସନ୍ତୋଷ ବାବୁ ଲାଭ କ'ଣ ହେବ ? ଆଶ୍ରମ ଭାଙ୍ଗିବା ପାଇଁ ମୁଁ ତ ହରେନ୍ ବାବୁଙ୍କୁ କହୁନାହିଁ । ଟଙ୍କା ଜୋରରେ ଭାରତବର୍ଷରେ ଆଶ୍ରମ ଖୋଲି ବସିଲେ ମଧ୍ୟ ମୁଁ ଅଜିତ ବାବୁଙ୍କୁ ବାଧା ଦେବି ନାହିଁ । ମୋର ଆପତ୍ତି, କେବଳ ଏଇଟିକୁ ସତ୍ୟ ବୋଲି ମାନି ନେବା ପାଇଁ । ସେଥିରେ କାହାର ଅବା କି କ୍ଷତି ?

ସନ୍ତୋଷ ବିନୀତ କଣ୍ଠରେ କହିଲା—କ୍ଷତିର ପରିମାଣ ବାହାରକୁ ଦେଖା ଯିବ ନାହିଁ । ଯୁକ୍ତି ପାଇଁ ନୁହେଁ; ଶିକ୍ଷାର୍ଥୀ ହିସାବରେ ଗୋଟାଏ ଦୁଇଟା ପ୍ରଶ୍ନ ଯଦି ପଗ୍ଭରିବସେ ତେବେ କ'ଣ ଉତ୍ତର ପାଇ ପାରିବି ନାହିଁ ?

: ମୁଁ କିନ୍ତୁ ଆଜି ବହୁତ କ୍ଳାନ୍ତ ସନ୍ତୋଷ ବାବୁ ।

ସନ୍ତୋଷ ଏ ଆପତ୍ତିକୁ କାନକୁ ନେଲା ନାହିଁ । କହିଲା— ହରେନ୍ ଭାଇ, ଏଇ ମାତ୍ର, ଅଚ୍ଛା କରି କହିଲେ ଯେ ମୁଁ କାଶୀରୁ ଫେରି ଆସିଛି । ଯେତେ ଉଚ୍ଚକୁ ଉଠିଥିଲେ ମଧ୍ୟ ତାହାଠାରୁ ଉଚ୍ଚ ସ୍ଥାନ ସଂସାରରେ ରହିଛି । ତାହା ହେଉଛି ଏଇ ଘର । ମୁଁ ଜାଣେ ଆପଣଙ୍କ ପ୍ରତି ତାଙ୍କର ଶ୍ରଦ୍ଧାର ସୀମା ନାହିଁ । ଆଶ୍ରମ ଭାଙ୍ଗିଗଲେ କ୍ଷତି ହେବ ନାହିଁ । କିନ୍ତୁ ଆପଣଙ୍କ କଥାରେ ତାର ମନ ଯଦି ଥରେ ଭାଙ୍ଗିଯାଏ ତେବେ ସେହି କ୍ଷତି ପୂରଣ ହେବା ବଡ଼ କଷ୍ଟକର ।

କମଳ ଚୁପ୍ ହୋଇ ରହିଲା । ସନ୍ତୋଷ କହିବାକୁ ଲାଗିଲା ରାଜେନ୍‌କୁ ଆପଣ ଭଲ ଭାବରେ ଜାଣନ୍ତି । ସେ ମୋର ବନ୍ଧୁ । ମୂଳ ବିଷୟରେ ମତର ମେଳ ନ ଥିଲେ, ଆମ ଦୁହିଁଙ୍କର ବନ୍ଧୁତ୍ୱ ଆଦୌ ହୋଇ ପାରି ନଥାନ୍ତା । ତା ମତରେ ମୁକ୍ତି ପଥ ଦେଇ ପ୍ରଜାତିର ପରମ କଲ୍ୟାଣ ସାଧନ କରିବା । ଆମର ମଧ୍ୟ ତାହା କାମ୍ୟ । ତେଣୁ ପିଲାଗୁଡ଼ିକୁ ଦଳବଦ୍ଧ କରି ଆମେ ଗଢ଼ିବା ପାଇଁ ଚାହୁଁ । ନଚେତ୍ ମୃତ୍ୟୁ ପରେ କଳ୍ପ-କାଳ ପାଇଁ ବୈକୁଣ୍ଠବାସର ଲୋଭ ଆମମାନଙ୍କର ନାହିଁ । କିନ୍ତୁ ନିୟମର କଠୋର ବନ୍ଧନ ବ୍ୟତୀତ ତ କେବେବେଳେ ସଂଘ ସୃଷ୍ଟି ହୋଇପାରେ ନାହିଁ । ଆଉ କେବଳ ତ ପିଲାମାନେ ନୁହଁନ୍ତି: ସେହି ବନ୍ଧନକୁ ଆମେମାନେ ମଧ୍ୟ ଗ୍ରହଣ କରି ନେଇଛୁ । କଷ୍ଟ ଏଥିରେ ଅଛି ଏବଂ ରହିବ ମଧ୍ୟ । ବହୁ କଷ୍ଟ କରି ବୃହତ୍ ବସ୍ତୁକୁ ଲାଭ କରିବାର ସ୍ଥାନକୁ ତ ଆଶ୍ରମ କୁହନ୍ତି । ତାକୁ ଉପହାସ କରିବା ଭଳି କିଛି ଉପାଦାନ ତ ନାହିଁ ।

ଉତ୍ତର ନପାଇ ସନ୍ତୋଷ ପୁଣି କହିବାକୁ ଲାଗିଲା—ହରେନ୍ ଭାଇର ଆଶ୍ରମ ଯାହା ହେଉ ନା କାହିଁକି ସେ ସମ୍ପର୍କରେ ମୁଁ ଆଲୋଚନା କରିବି ନାହିଁ । କାରଣ ତାହା

ବ୍ୟକ୍ତିଗତ ହୋଇପଡ଼ିବାର ଭୟ ରହିଛି । କିନ୍ତୁ ଭାରତୀୟ ଆଶ୍ରମ ମଧ୍ୟରେ ଅନ୍ତରର ନିଷ୍ଠା ଓ ପରମ ଶ୍ରଦ୍ଧା ଭରି ରହିଛି । ଏହାକୁ ତ ଆଉ ଅସ୍ୱୀକାର କରାଯାଇ ପାରିବ ନାହିଁ । ତ୍ୟାଗ, ବ୍ରହ୍ମଚର୍ଯ୍ୟ, ସଂଯମ, ଏହାସବୁ ଶକ୍ତିହୀନ ଅକ୍ଷମର ଧର୍ମ ନୁହେଁ । ଜାତି ଗଠନର ପ୍ରାଣ ଓ ଉପାଦାନ ସେଦିନ ଏହାରି ଭିତରେ ହିଁ ନିହିତ ରହିଥିଲା । ଆଜି ଏ ଯୁଗରେ ମଧ୍ୟ ସେହି ଉପାଦାନ ଅବହେଳାର ସାମଗ୍ରୀ ନୁହେଁ । ମରଣୋନ୍ମୁଖୀ ଭାରତକୁ କେବଳ ଏହି ପନ୍ଥାଦ୍ୱାରା ହିଁ ବଞ୍ଚାଇ ରଖାଯାଇ ପାରିବ । ଆଶ୍ରମର ଆଗ୍ରହ ଓ ନିଷ୍ଠା ଭିତର ଦେଇ ଆମେମାନେ ଏହି ଶ୍ରଦ୍ଧା ଓ ବିଶ୍ୱାସକୁ ଜାଗରୁକ କରି ରଖିବା ପାଇଁ ଚାହୁଁ । ଦିନେ ମନ୍ତ୍ରମୁଖରିତ ହୋମାଗ୍ନି ପ୍ରଜ୍ଜ୍ୱଳିତ ତପସ୍ୟାକଠୋର ଭାରତର ଏହି ଆଶ୍ରମରୁ ହିଁ ଜାତୀୟ ଜୀବନର ମୌଳିକ କଲ୍ୟାଣ ସଫଳ କରିବାର ଉଦ୍ଦେଶ୍ୟ ଉଦ୍ଭୂତ ହୋଇଥିଲା । ସେହି ପ୍ରୟୋଜନ ସବୁ ଆଜି ମଧ୍ୟ ଯେ ବିଲୁପ୍ତ ହୋଇ ଯାଇ ନାହିଁ, ଏହି ସତ୍ୟକୁ କେଉଁ ମୂର୍ଖ ଅବା ଅସ୍ୱୀକାର କରି ପାରିବ ?

ସତୀଶ ବକ୍ତୃତାରେ ଆନ୍ତରିକତାର ଜୋର ଥିଲା । କଥା ଗୁଡ଼ିକ ସ୍ପଷ୍ଟ ଏବଂ ଅନବରତ କହି କହି ଏକ ପ୍ରକାର ମୁଖସ୍ଥ ହୋଇ ଯାଇଥିଲା । ଶେଷ ଆଡ଼କୁ ତା ମୁହଁ କଣ୍ଠ ସତେଜ ଓ ଉଦ୍ଦୀପନା ଦ୍ୱାରା ଉତ୍ତେଜିତ ହୋଇ ଉଠିଲା । ସେହି ଦିଗକୁ ଅପଲକ ନେତ୍ରରେ ଚାହିଁ ପବିତ୍ର ଭାବାବେଗରେ ଅନ୍ତରର ଦେହ ରୋମାଞ୍ଚିତ ହୋଇ ଉଠିଲା ଏବଂ ହରେନ୍ଦ୍ର ତା ଆଶ୍ରମ ବିରୁଦ୍ଧରେ ଏହା ପୂର୍ବରୁ ଯେତେ ଆସ୍ଫାଳନ କରିଥାଉନା କାହିଁକି, ଆଶ୍ରମର ବିଗତ ଗୌରବର ବିବରଣୀ ଦ୍ୱାରା ବିଶ୍ୱାସ ଓ ଅବିଶ୍ୱାସର ମଧ୍ୟସ୍ଥଳରେ ସେ ଝଡ଼ ବେଗରେ ଦୋଳାୟିତ ହେବାକୁ ଲାଗିଲା । ତା ମୁହଁ ପ୍ରତି ସତୀଶ ତୀକ୍ଷ୍ଣ ଦୃଷ୍ଟି ରଖି କହିଲା—ହରେନ ଭାଇ, ଆମେମାନେ ମରି ସାରିଛୁ । କିନ୍ତୁ ଏହି ଆଶ୍ରମ ମଧ୍ୟ ଦେଇ ଯେ ଆମମାନଙ୍କର ନବଜନ୍ମ ଲାଭର ତଥ୍ୟ ରହି ପାରିଛି, ଏହି ସତ୍ୟକୁ ଆପଣ କେଉଁ ଯୁକ୍ତି ବଳରେ ଭୁଲି ଯାଇ ପାରିଛନ୍ତି ? ଆପଣ ଭାଙ୍ଗିବାକୁ ଇଚ୍ଛା କରିଛନ୍ତି, କିନ୍ତୁ ଭାଙ୍ଗିବାଟା କ'ଣ ବଡ଼ କାମ ? ଗଢ଼ି ତୋଳିବାଟା କ'ଣ ତାହାଠାରୁ ବେଶୀ ବଡ଼ ନୁହେଁ ? ଆପଣ ହିଁ କହନ୍ତୁ ?

କମଲ ମୁହଁକୁ ଚାହିଁ ପଚାରିଲା—ଜୀବନରେ କେତୋଟା ଆଶ୍ରମ ଦେଖିଛନ୍ତି ? କେତୋଟା ଆଶ୍ରମ ସହିତ ଆପଣଙ୍କର ପ୍ରକୃତରେ ନିଗୂଢ଼ ସମ୍ପର୍କ ରହି ପାରିଛି ?

କଠିନ ପ୍ରଶ୍ନ । କମଲ କହିଲା—ବାସ୍ତବିକ ଗୋଟିଏ ହେଲେ ଦେଖି ନାହିଁ, ଏବଂ ଆପଣଙ୍କ ଆଶ୍ରମ ବ୍ୟତୀତ କୌଣସିଟି ସହିତ କୌଣସି ପ୍ରକାର ପରିଚୟ ମଧ୍ୟ ନାହିଁ ।

: ତେବେ ?

କମଲ ହସ ହସ ମୁହଁରେ କହିଲା—ଆଖିରେ କ'ଣ ସବୁ ଦେଖିହୁଏ ? ଆପଣ-ମାନଙ୍କ ଆଶ୍ରମରେ ଶ୍ରମ କରିବାଟାକୁ ଆଖିରେ ଦେଖି ଆସିଲି । କିନ୍ତୁ ବୃହତ୍ ବସ୍ତୁ ଲାଭ କରିବା ଉପାୟଟା ମୋ ଆଖି ଆଡ଼ୁଆଳରେ ରହିଗଲା ।

ସନ୍ତୋଷ କହିଲା—ପୁଣି ଆପଣ ଉପହାସ କରୁଛନ୍ତି ।

ତାହାର ଫୁଲ୍ଲ ମୁହଁର ଚେହେରା ଦେଖି ହରେନ୍ଦ୍ର ସ୍ନିଗ୍ଧ ସ୍ୱରରେ କହିଲା—ନା ନା ସନ୍ତୋଷ, ଉପହାସ ନୁହେଁ, ସେ ଥଟ୍ଟା କରୁଛନ୍ତି ମାତ୍ର । ଯେଉଁଟା ତାଙ୍କର ସ୍ୱଭାବ ।

ସନ୍ତୋଷ କହିଲା—ସ୍ୱଭାବ ! ସ୍ୱଭାବ କହିଦେଲେ ତ କୈଫିୟତ ହୋଇଯାଏ ନାହିଁ ? ଭାରତର ଅତୀତ ଦିନମାନଙ୍କରେ ଯାହା ନିତ୍ୟ ପୂଜନୀୟ ଏବଂ ନିତ୍ୟ ଆଚରଣୀୟ ବ୍ୟାପାର, ତାହାକୁ ଅବମାନନା ଏବଂ ଅଶ୍ରଦ୍ଧା ଏହା ଦ୍ୱାରା କରାଯାଏ । ଏହିକୁ ତ ଉପେକ୍ଷା କରି ହେବ ନାହିଁ ।

ହରେନ୍ଦ୍ର କମଲକୁ ଦେଖାଇ ଦେଇ କହିଲା—ଏହିପରି ଯୁକ୍ତି ଅନେକ ବାର ତାଙ୍କ ସହିତ ହୋଇ ଯାଇଛି । ସେ କହନ୍ତି—ଅତୀତର କୌଣସି ମୂଲ୍ୟ ନାହିଁ । କାଳର ନିୟମ ଅନୁସାରେ ବସ୍ତୁ ଅତୀତ ହୋଇଥାଏ । ନିଜ ଗୁଣରେ କିନ୍ତୁ ତାକୁ ଭଲ ହେବାକୁ ପଡ଼େ । କେବଳ ପ୍ରାଚୀନ ବୋଲି ତାହା ପୂଜ୍ୟ ହୋଇପାରେ ନାହିଁ । ଯେଉଁ ବର୍ବର ଜାତି ଦିନେ ତା ବୁଢ଼ା ମାଆ ବାପଙ୍କୁ ଜିଅନ୍ତା ପୋଡି ପକାଉଥିଲା, ଆଜି ଯଦି ସେହି ପ୍ରାଚୀନ ଅନୁଷ୍ଠାନର ଦୋହାଇ ଦେଖାଇ ସେହି କର୍ତ୍ତବ୍ୟ କରିବା ପାଇଁ କେହି ନିର୍ଦ୍ଦେଶ ଦେଇ ବସେ ତେବେ ତାହାକୁ କ'ଣ ଭୁଲ କୁହାଯିବ ନାହିଁ ସନ୍ତୋଷ ?

ସନ୍ତୋଷ ଫୁଲ୍ଲ କଣ୍ଠରେ କହି ଉଠିଲା—ପ୍ରାଚୀନ ଭାରତୀୟମାନଙ୍କ ସହିତ ତ ବର୍ବର ମାନଙ୍କର ତୁଳନା ହୋଇ ପାରେ ନାହିଁ, ହରେନ୍ ଭାଇ ।

ହରେନ୍ଦ୍ର କହିଲା—ମୁଁ ତା ଜାଣେ । କିନ୍ତୁ ଏଇଟା ଯୁକ୍ତି ନୁହେଁ ସନ୍ତୋଷ । ଏଇଟା ହେଉଛି ଗଳାର ଜୋର ଥିବା କଥା ।

ସନ୍ତୋଷ ଅଧିକତର ଉତ୍ତେଜିତ ହୋଇ କହିଲା—ଆପଣ ଯେ ନାସ୍ତିକତାର ଫାନ୍ଦରେ ପଡ଼ିଯାଇ ପାରିବେ, ଏକଥା ମୁଁ ଆଦୌ ଭାବି ପାରି ନ ଥିଲି ।

ହରେନ୍ଦ୍ର କହିଲା—ତୁ ଜାଣୁ ମୁଁ ନାସ୍ତିକ ନୁହେଁ । କିନ୍ତୁ ଗାଳି ଦେଇ କେବଳ ଅପମାନ କରାଯାଇ ପାରେ ସିନା ସନ୍ତୋଷ କିନ୍ତୁ ମତ ପ୍ରତିଷ୍ଠିତ ହୋଇ ପାରେ ନାହିଁ । ଶକ୍ତ କଥା ହିଁ ସଂସାରରେ ସମସ୍ତଙ୍କ ଅପେକ୍ଷା ଦୁର୍ବଳ ।

ସନ୍ତୋଷ ଲଜ୍ଜ୍ୟା ପାଇଲା । ନଇଁ ପଡ଼ି ତାହାର ପାଦ ଛୁଇଁ ମୁଣ୍ଡରେ ହାତ ମାରି କହିଲା—ଅପମାନିତ କରି ନାହିଁ ହରେନ୍ ଭାଇ । ଆପଣ ତ ଜାଣନ୍ତି ଆମେମାନେ ଆପଣଙ୍କୁ କେତେ ଭକ୍ତି କରୁ । କିନ୍ତୁ କଷ୍ଟ ପାଏ, ଯେତେବେଳେ ଶୁଣେ ଭାରତର ଶାଶ୍ୱତ ତପସ୍ୟାକୁ ମଧ୍ୟ ଆପଣ ଅବିଶ୍ୱାସ କରନ୍ତି । ଦିନେ ଯେଉଁ ଉପାଦାନ ଦ୍ୱାରା, ଯେଉଁ ସାଧନା ଦ୍ୱାରା ସେମାନେ ଭାରତର ଏହି ବିରାଟ ଜାତି, ବିରାଟ ସଭ୍ୟତାକୁ ଗଢ଼ିଥିଲେ ସେହି ସତ୍ୟ କଦାପି ବିଲୁପ୍ତ ହୋଇ ପାରିବ ନାହିଁ । ମୁଁ ସୁନା ଅକ୍ଷରରେ ସ୍ପଷ୍ଟ ପଢ଼ି ପାରୁଛି ଯେ

ତାହା ହିଁ ଭାରତର ମଜ୍ଜାଗତ ଧର୍ମ । ତାହା ହିଁ ଆମମାନଙ୍କ ଆପଣାର ଜିନିଷ । ସେହି ଧ୍ୱଂସୋନ୍ମୁଖ ବିରାଟ ଜାତିଟାକୁ ସେହି ଉପାଦାନ ଦ୍ୱାରା ହିଁ ବଞ୍ଚାଇ ରଖି ହେବ ହରେନ୍ ଭାଇ, ଏହା ବ୍ୟତୀତ ଆଉ ଅନ୍ୟ କୌଣସି ପନ୍ଥା ନାହିଁ ।

ହରେନ୍ଦ୍ର କହିଲା—ରହି ନ ହୋଇ ପାରେ ସତୀଶ ! ଏହା ତୋର ବିଶ୍ୱାସ ଏବଂ ତାର ଦାମ କେବଳ ତୋ ନିଜ ନିକଟରେ । ଦିନେ ଠିକ୍ ଏଇ କଥାର ଉତ୍ତରରେ କମଳ କହିଥିଲା ଜଗତର ଆଦିମ ଯୁଗରେ ଦିନେ ବିରାଟ ଅସ୍ଥି, ବିରାଟ ଦେହ, ବିରାଟ କ୍ଷୁଧା ନେଇ ବିରାଟ ଜୀବ ସୃଷ୍ଟି ହୋଇଥିଲା । ତାହାକୁ ନେଇ ମନୁଷ୍ୟ ପୃଥିବୀ ଜୟ କରି ବାହାରି ଥିଲା । ସେହି ଦିନ ତାହା ହିଁ ଥିଲା ତାର ପ୍ରକୃତ ଉପାଦାନ । କିନ୍ତୁ ଆଉ ଦିନେ ସେହି ଦେହ, ସେହି କ୍ଷୁଧା ଆଣି ଦେଲା ତାକୁ ମୃତ୍ୟୁ । ଦିନକର ସତ୍ୟ ଉପାଦାନ ଦିନେ ମିଥ୍ୟାର ଉପାଦାନ ହୋଇ ତାକୁ ସଂସାରରୁ ନିର୍ଣ୍ଣିହ୍ନ କରି ପୋଛି ଦେଲା । ଏତେ ଟିକିଏ ଦ୍ୱିଧା କରିଲା ନାହିଁ । ସେହି ଅସ୍ଥି ଆଜି ପଥରରେ ରୂପାନ୍ତରିତ, ପତ୍ନତାତ୍ତ୍ୱିକମାନଙ୍କର ଗବେଷଣାର ବସ୍ତୁ ।

ସତୀଶ ହଠାତ୍ ଉତ୍ତର ଖୋଜି ନ ପାଇ କହିଲା—ତେବେ କ'ଣ ଆମର ପୂର୍ବ-ପୁରୁଷମାନଙ୍କର ଆଦର୍ଶ ଭ୍ରାନ୍ତ ? ସେମାନଙ୍କର ତତ୍ତ୍ୱ ନିରୂପଣରେ ସତ୍ୟ ନ ଥିଲା ?

ହରେନ୍ଦ୍ର କହିଲା—ସେଦିନ ହୁଏତ ଥିଲା, କିନ୍ତୁ ଆଜି ନ ରହିବାରେ ବାଧା ନାହିଁ । ସେଦିନର ସ୍ୱର୍ଗର ପଥ ଆଜି ଯଦି ଯମର ଦକ୍ଷିଣ ଦୁଆର ନିକଟରେ ପହଞ୍ଚି ଯାଏ, ମୁହଁ ଭାରି କରିବାର କାରଣ ଖୋଜି ପାଏ ନାହିଁ ସତୀଶ ।

ସତୀଶ ମନର କ୍ରୋଧକୁ ପ୍ରାଣପଣେ ଦମନ କରି କହିଲା—ହରେନ୍ ଭାଇ, ଏସବୁ କେବଳ ଆପଣଙ୍କର ଆଧୁନିକ ଶିକ୍ଷାର ଫଳ । ଆଉ କିଛି ନୁହେଁ ।

ହରେନ୍ଦ୍ର କହିଲା—ଅସମ୍ଭବ ନୁହେଁ । ଆଧୁନିକ ଶିକ୍ଷା ଯଦି କଲ୍ୟାଣର ପଥ ଦେଖାଇ ପାରିଲା ସେଥିପାଇଁ ଲଜ୍ଜିତ ହେବାର କାରଣ ମୁଁ ଦେଖି ପାରୁନାହିଁ ସତୀଶ ।

ସତୀଶ ବହୁକ୍ଷଣ ପର୍ଯ୍ୟନ୍ତ ସ୍ତବ୍ଧ ଭାବରେ ବସି ରହିବା ପରେ ଧୀରେ ଧୀରେ କହିଲା—ଲଜ୍ଜିତ ହେବା ପାଇଁ ସହସ୍ର କାରଣ ମୁଁ ଦେଖି ପାରୁଛି ହରେନ୍ ଭାଇ । ଭାରତର ଜ୍ଞାନ, ଭାରତର ପ୍ରାଚୀନ ତତ୍ତ୍ୱ, ଏହି ଭାରତର ହିଁ ବିଶେଷତ୍ୱ ଏବଂ ପ୍ରାଣ । ସେହି ତତ୍ତ୍ୱକୁ ବିସର୍ଜ୍ଜନ ଦେଇ ଦେଶର ସ୍ୱାଧୀନତା ଯଦି ଅର୍ଜ୍ଜନ କରିବାକୁ ପଡ଼େ ସେହି ସ୍ୱାଧୀନତା ଦ୍ୱାରା ଭାରତ ବିଜୟୀ ହେବ ନାହିଁ, ବରଂ ବିଜୟୀ ହେବ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର । ଯାହା ହେଉଛି କି ପରାଜୟର ନାମାନ୍ତର । ତା ଅପେକ୍ଷା ମୃତ୍ୟୁ ହେଉଛି ଶ୍ରେୟସ୍କର ।

ସତୀଶର ବେଦନା ଆନ୍ତରିକ । ସେହି ବ୍ୟଥାର ପରିମାଣ ଅନୁଭବ କରି ହରେନ୍ଦ୍ର ମୌନ ହୋଇ ରହିଲା । ଉତ୍ତର ଦେଲା ଏଥର କମଳ । ମୁହଁରେ ସୁପରିଚିତ ପରିହାସର ଚିହ୍ନ ମାତ୍ର ନାହିଁ । କଣ୍ଠସ୍ୱର ଶାନ୍ତ, ସଂଯତ ଓ ମୃଦୁ । କହିଲା—ସତୀଶ ବାବୁ

ନିଜ ଜୀବନରେ ଯେପରି ନିଜକୁ ବିସର୍ଜ୍ଜନ ଦେଇଛନ୍ତି, ଇଚ୍ଛାରର ବିଗରେ ଯଦି ତାଙ୍କୁ ଏପରି ଭାବରେ ପରିତ୍ୟାଗ କରି ପାରନ୍ତେ, ତେବେ ଏକଥା ଆଜି ଉପଲବ୍‌ଧି କରିବା ପାଇଁ କଠିନ ହୋଇ ପାରନ୍ତା ନାହିଁ ଯେ, ଭାବର ପାଇଁ, ବିଶେଷତ୍ୱ ପାଇଁ, ମନୁଷ୍ୟ ନୁହେଁ; ମନୁଷ୍ୟ ପାଇଁ ହିଁ ସେ ସବୁଙ୍କର ସମାଦର । ମନୁଷ୍ୟର ପାଇଁ ହିଁ ସେ ସବୁର ମହତ୍ତ୍ୱ । ମନୁଷ୍ୟ ଯଦି ତଳକୁ ଖସିଯାଏ, କ'ଣ ହେବ ତାର ତତ୍ତ୍ୱର ମହିମା ପ୍ରଚାର କରି ? ନ ହେଲା ଅବା ଭାରତ ମତର ଜୟ, ମନୁଷ୍ୟର ଜୟ ତ ହୋଇ ପାରିବ ? ସେତେବେଳେ ଏତେଗୁଡ଼ିଏ ନରନାରୀ ମୁକ୍ତ ପାଇ ଧନ୍ୟ ହୋଇଯିବେ । ଚାହିଁ ଦେଖନ୍ତୁ ତ ନବୀନ ତୁର୍କି ଦେଶ ଆଡ଼କୁ । ଯେତେଦିନ ସେ ତାର ପ୍ରାଚୀନ ରୀତି-ନୀତି, ଆଚାର ଅନୁଷ୍ଠାନ, ପୁରୁଷ ପୁରୁଷ ଧରି ପରମ୍ପରାଗତ ପୁରୁଣା ପଥଟାକୁ ସତ୍ୟ ବୋଲି ଜାବୁଡ଼ି ଧରିଥିଲା, ସେତେଦିନ ତାର ବାରମ୍ବାର ପରାଜୟ ହୋଇଛି । ଆଜି ବିପ୍ଳବ ମଧ୍ୟରେ ସେ ସତ୍ୟକୁ ପାଇ ପାରିଛି । ତାହାର ସମସ୍ତ ଆବର୍ଜ୍ଜନା ଦୂର ହୋଇଛି । ଆଜି ତାକୁ ଉପହାସ କରିବା ପାଇଁ ସାଧ କାହାର ଅଛି ? ଅଥଚ ସେହି ପ୍ରାଚୀନ ମତ ଏବଂ ପଥ ହିଁ ଦିନେ ଦେଇଥିଲା ତାକୁ ବିଜୟ । ଦେଇଥିଲା ଐଶ୍ୱର୍ଯ୍ୟ, କଲ୍ୟାଣ, ଏବଂ ମନୁଷ୍ୟତ୍ୱ । ଭାବିଥିଲା ତାହା ବୋଧହୁଏ ଚିରନ୍ତନ ସତ୍ୟ । ତାକୁ ପ୍ରାଣ ପଣେ ଜାବୁଡ଼ି ଧରି ବିଗତ ଗୌରବ ପୁଣି ଥରେ ତନକୁ ମଧ୍ୟ ଫେରାଇ ଆଣି ପାରିବ । କିନ୍ତୁ ମନେକରି ନ ଥିଲା ଯେ ତାହାର ମଧ୍ୟ ବିବର୍ତ୍ତନ ରହିଛି । ସେହି ମୋହର ମୃତ୍ୟୁ ହୋଇଛି । ଆଜି ସେଠିକାର ମନୁଷ୍ୟଗୁଡ଼ିକ ପୁଣି ବଞ୍ଚି ଉଠିଲେ । ଏପରି ଦୃଷ୍ଟାନ୍ତ ଆହୁରି ଅଛି । ଆହୁରି ମଧ୍ୟ ହେବ । ସତୀଶ ବାବୁ, ଆତ୍ମ ବିଶ୍ୱାସ ଏବଂ ଆତ୍ମ ଅହଙ୍କାର ଏକ ବସ୍ତୁ ନୁହନ୍ତି ।

ସତୀଶ କହିଲା—ଜାଣେ । କିନ୍ତୁ ପଶ୍ଚିମର ଲୋକମାନେ ହିଁ ଯେ ମନୁଷ୍ୟର ପ୍ରଶ୍ନର ଶେଷ ଜବାବ ଦେଇଛନ୍ତି, ଏହା ତ ମୁଁ ସ୍ୱୀକାର କରି ପାରିବ ନାହିଁ ? ସେମାନଙ୍କର ସଭ୍ୟତା ହୁଏତ ଦିନେ ଧ୍ୱଂସ ହୋଇଯିବ, ଏହା ମଧ୍ୟ ସମ୍ଭବପର ତ ?

କମଳ ମୁଣ୍ଡ ଟୁଙ୍ଗାରି କହିଲା—ହଁ ।

: ତେବେ ?

: ସେଥିପାଇଁ ଚିନ୍ତା କରିବାର କିଛି ନାହିଁ ସତୀଶ ବାବୁ, ମନ୍ଦ ତ ଭଲର ଶତ୍ରୁ ନୁହେଁ । ଭଲର ଶତ୍ରୁ ହେଉଛି ତାଠାରୁ—ଆହୁରି ଭଲ । ତାହାହିଁ ବର୍ତ୍ତମାନ ଭାରତର ଭୟ । ଏବଂ ସେହି ଆହୁରି ଭଲ ଯେଉଁଦିନ ଆସି ଉପସ୍ଥିତ ହୋଇ, ଉତ୍ତର ମାଗି ବସିବ ସେଦିନ ତାହାର ହାତକୁ ରାଜଦଣ୍ଡ ଟେକି ଦେଇ ଅପସରି ଯିବାକୁ ପଡ଼ିବ । ଦିନେ ଶକ, ହୁନ୍, ତାତାରର ଦଳ ଭାରତବର୍ଷକୁ ଜୋର କରି ଦଖଲ କରିଥିଲେ; କିନ୍ତୁ ଏହାର ସଭ୍ୟତାକୁ ବନ୍ଦୀ କରି ପାରି ନ ଥିଲେ । ବରଂ ସେମାନେ ଆପଣା ଛୁଏଁ ବନ୍ଦୀ ହୋଇ ପଡ଼ିଥିଲେ । ଏହାର କାରଣ କ'ଣ ଜାଣନ୍ତି ? ଅସଲ କାରଣ ସେମାନେ ନିଜେ ଥିଲେ ଶ୍ରେଷ୍ଠ । କିନ୍ତୁ ମୋଗଲ, ପଠାଣଙ୍କ ପରୀକ୍ଷା ବାକି ରହିଗଲା ଯେହେତୁ ଫରାସୀ ଓ ଇଂରାଜୀ ଆସି ପହଞ୍ଚି ଗଲେ । ସେହି ବିସ୍ୱାଦ ଆଜିସୁଦ୍ଧା ଶେଷ ହୋଇ ନାହିଁ । ଭାରତ ନିକଟରେ

ଏହାର ଜବାବ ଦିନେ ନା ଦିନେ ସେମାନଙ୍କୁ ଦେବାକୁ ପଡ଼ିବ । ସେହି ପ୍ରଶ୍ନ ଆଉ, କିନ୍ତୁ ପଶ୍ଚିମର ଜ୍ଞାନ-ବିଜ୍ଞାନ-ସଭ୍ୟତା ନିକଟରେ ଆଜି ଭାରତବର୍ଷ ଯଦି ଧରା ଦେଇ ଦେବ ତେବେ ତାହାର ଦମ୍ଭରେ ଆଘାତ ଲାଗିବ । ଏ କଥା ମୁଁ ନିଶ୍ଚିତ ଭାବରେ କହିପାରେ ।

ସତୀଶ ମୁଣ୍ଡ ହଲାଇ କହିଲା—ନା, ନା, ନା । ଯେଉଁମାନଙ୍କର ଶ୍ରଦ୍ଧା ନାହିଁ, ଆସ୍ଥା ନାହିଁ, ବିଶ୍ୱାସର ଭିତ୍ତି ଯେଉଁମାନଙ୍କର ବାଲି ଉପରେ, ସେମାନଙ୍କ ନିକଟରେ ମୁଁ ଏପରି କହି ବସିଲେ ସର୍ବନାଶ ହେବ । ଏହା କହି ହରେନ୍ଦ୍ରକୁ ଚାହିଁ କହିଲା ଠିକ୍ ଏହି ଭାବରେ ଦିନେ ବଙ୍ଗଳାରେ, ତାହା ବେଶୀ ଦିନ ତଳର କଥା ନୁହେଁ, ବିଦେଶର ବିଜ୍ଞାନ, ବିଦେଶର ଦର୍ଶନ, ବିଦେଶର ସଭ୍ୟତାକୁ ବିରାଟ ମନେକରି ସତ୍ୟଭ୍ରଷ୍ଟ, ଆଦର୍ଶ-ଭ୍ରଷ୍ଟ କେତେଜଣ ଯୁବକ ଅସଂପୂର୍ଣ୍ଣ ବିଜାତୀୟ ଶିକ୍ଷା ଦ୍ୱାରା ଗର୍ବରେ ସ୍ୱଦେଶରେ ଯାହା କିଛି ଆପଣା'ର ତାହାକୁ ତୁଚ୍ଛ କରି ଦେଶବାସୀଙ୍କ ମନକୁ ବିଷାକ୍ତ କରି ପକାଇଥିଲେ । କିନ୍ତୁ ଏତେ ବଡ ଅକଲ୍ୟାଣକୁ ବିଧାତା ସହି ପାରିଲେ ନାହିଁ । ପ୍ରତିକ୍ରିୟା ଦ୍ୱାରା ବିବେକ ଫେରି ପାଇଲେ । ଭୁଲ ଧରା ପଡ଼ିଲା । ସେହି ବିଷମ ଦୁର୍ଦ୍ଦିନରେ ଯେଉଁ ମନୀଷୀମାନେ ସ୍ୱଜାତି କେନ୍ଦ୍ରବିମୁଖ ଉଦ୍‌ଭ୍ରାନ୍ତ ଶକ୍ତିକୁ ସ୍ୱ-ଗୃହ ଅଭିମୁଖରେ ପୁଣି ଫେରାଇ ଆଣିଲେ, ସେମାନେ କେବଳ ବଙ୍ଗଳା ଦେଶର ନୁହେଁ, ସାରା ଭାରତବର୍ଷର ନମସ୍ୟ । ଏହା କହି ସେ ଦୁଇ ହାତ ଯୋଡ଼ି ମୁଣ୍ଡରେ ମାରିଲା ।

କଥାଟା ଯେ ସତ ତାହା ସମସ୍ତେ ଜାଣନ୍ତି । ସୁତରାଂ ଅଜିତ ଓ ହରେନ୍ଦ୍ର ଉଭୟେ ତାକୁ ଅନୁସରଣ କରି ନମସ୍ୟମାନଙ୍କ ଉଦ୍ଦେଶ୍ୟରେ ନମସ୍କାର ଜଣାଇଲେ । ଏଥିରେ ଅଶୁଦ୍ଧି ହେବାର କିଛି ନ ଥିଲା । ଅଜିତ ମୃଦୁ କଣ୍ଠରେ କହିଲା—ନଚେତ୍ ସବୁ ଲୋକମାନେ ସେତେବେଳେ ଖ୍ରୀଷ୍ଟାନ ହୋଇଯାଇ ଥାନ୍ତେ । କେବଳ ସେମାନଙ୍କ ପାଇଁ ତାହା ହୋଇ ପାରିଲା ନାହିଁ । କଥାଟା କହି ସାରି ସେ କମଳ ଆଡ଼କୁ ଚାହିଁ ଦେଖିଲା ତା ଆଖିରେ ଅନୁ-ମୋଦନର ଚିହ୍ନ ନାହିଁ । ମାତ୍ର ରହିଛି ତିରସ୍କାର । ଅଥଚ ସେ ଚୁପ୍ ହୋଇ ରହିଛି । ହୁଏତ ଉତ୍ତର ଦେବା ପାଇଁ ତାର ଇଚ୍ଛା ନ ଥିଲା । ଅଜିତକୁ ସେ ଚିହ୍ନେ । କିନ୍ତୁ ହରେନ୍ଦ୍ର ଯେତେବେଳେ ଏହାର ଅସ୍ପଷ୍ଟ ପ୍ରତିଧ୍ୱନି କରି ବସିଲା ସେତେବେଳେ ତାହାର ଅନତି-କାଳ ପୂର୍ବର କଥାଗୁଡ଼ିକ ସହିତ ଏହି ସଙ୍କୋଚ ଅଜ୍ଞାନତା ଏପରି ବିସଦୃଶ ଶୁଣା-ଗଲା ଯେ ସେ ନୀରବ ହୋଇ ରହିପାରିଲା ନାହିଁ । କହିଲା—ହରେନ ବାବୁ, ଗୋଟିଏ ଧରଣର ଲୋକ ଅଛନ୍ତି ସେମାନେ ଭୂତ ମାନନ୍ତି ନାହିଁ । କିନ୍ତୁ ଭୂତକୁ ଭୟ କରନ୍ତି । ଆପଣ ହେଉଛନ୍ତି ସେଇଥିରୁ ଜଣେ । ଏହାକୁ କହନ୍ତି ଭାବର ଘର ଚୋରି କରିବା । ଏହାଠାରୁ ବଳି ଅନ୍ୟାୟ ଆଉ କିଛି ହୋଇପାରେ ନାହିଁ । ଏ ଦେଶରେ ଆଶ୍ରମ ପାଇଁ କେତେବେଳେ ହେଲେ ଟଙ୍କାର ଅଭାବ ହେବ ନାହିଁ, ଏବଂ ପିଲାମାନଙ୍କ ପାଇଁ କଦାପି ଦୁର୍ଭିକ୍ଷ ସୃଷ୍ଟି ହୋଇ ପାରିବ ନାହିଁ । ଅତଏବ ଆପଣଙ୍କୁ ତ୍ୟାଗ କରି ସତୀଶ ବାବୁ ଚାଲି ଯାଇ ପାରନ୍ତି

ଟିକିଏ ଅଟକି ଯାଇ ପୁଣି କହିଲା—ମୋ ବାପା ଥିଲେ ଖ୍ରୀଷ୍ଟାନ । କିନ୍ତୁ ମୁଁ କ'ଣ ତାହାର ଖୋଜ ଖବର ସେ ରଖି ନାହାନ୍ତି । କିମ୍ବା ମୁଁ ରଖି ନାହିଁ । ତାଙ୍କର ପ୍ରୟୋଜନ ନ ଥିଲା । ମୋର ମଧ୍ୟ ଇଚ୍ଛା ନ ଥିଲା । କାମନା କରୁଛି ଆମରଣ ଯେପରି ଧର୍ମକୁ ମୁଁ ଏଇପରି ଭାବରେ ଭୁଲି ରହି ପାରେ । କିନ୍ତୁ ଉଚ୍ଛୃଙ୍ଖଳ ଅନାବୃଷ୍ଟି ବୋଲି ଏଇମାନେ ଯେଉଁମାନଙ୍କୁ ଗଞ୍ଜଣା ଦେଲେ ଏବଂ ନମସ୍ୟ ବୋଲି ଯେଉଁମାନଙ୍କୁ ନମସ୍କାର କରିଲେ, ସ୍ୱଦେଶର ସର୍ବନାଶ କରିବା ପାଇଁ କେଉଁମାନଙ୍କର ଦାନ ବେଶୀ, ଏ ପ୍ରଶ୍ନର ଜବାବ ଦିନେ ଲୋକମାନେ ମାଗିବା ପାଇଁ ଭୁଲିଯିବେ ନାହିଁ ।

ସତୀଶ ଦେହକୁ ସତେ ଯେପରି କିଏ ଚାବୁକରେ ପିଟିଦେଲା । ତୀବ୍ର ବେଦନାରେ ଅସ୍ଥିର ହୋଇ ସେ ଠିଆ ହୋଇପଡ଼ି ପ୍ରଶ୍ନ କଲା—ଆପଣ ଜାଣନ୍ତି ସେମାନଙ୍କର ନାମ ? କେବେ ଶୁଣିଛନ୍ତି କାହା ନିକଟରୁ ?

କମଳ ମୁଣ୍ଡ ହଲାଇ କହିଲା—ନା ।

: ତାହାହେଲେ ସେଇଟା ଆଉ ଜାଣି ନଥିଲୁ ।

କମଳ ହସି ଦେଇ କହିଲା—ଆଚ୍ଛା । କିନ୍ତୁ ନାମର ମୋହ ମୋର ନାହିଁ । ନାମ ଜାଣିବାଟା, ଜାଣିବାର ଶେଷ କଥା ବୋଲି ମୁଁ ଭାବି ପାରି ନାହିଁ ।

ପ୍ରତ୍ୟୁତ୍ତରରେ ସତୀଶ ଦୁଇ ଚକ୍ଷୁରୁ କେବଳ ଘୃଣା ଓ ଅବଜ୍ଞା ବର୍ଷଣ କରି ଦ୍ରୁତ ପଦକ୍ଷେପରେ ଘରୁ ବାହାରି ଚାଲିଗଲା ।

ସେ ଯେ ରାଗ କରି ଚାଲିଗଲା ଏହା ନିଃସନ୍ଦେହ । ଏହି ଅପ୍ରୀତିକର ବ୍ୟାପାରଟାକୁ ଲଘୁ କରିବା ଉଦ୍ଦେଶ୍ୟରେ ହରେନ୍ଦ୍ର ହସିବାର ବାହାନା କରି କିଛି କ୍ଷଣ ପରେ କହିଲା—କମଳର ଆକୃତିଟା ପ୍ରାଚ୍ୟର କିନ୍ତୁ ପ୍ରକୃତିଟା ପାଶ୍ଚାତ୍ୟର । ଗୋଟାଏ ବିଷୟ ଆଖିରେ ପଡ଼ିଲେ ଅନ୍ୟଟା ରହିଯାଏ ଆଢୁଆଳରେ । ଏହିଠାରେ ହିଁ ମନୁଷ୍ୟର ଭୁଲ ହୁଏ । ଏହାକୁ ପରିବେଷଣ କରି ଗିଳି ଖାଇ ହୁଏ କିନ୍ତୁ ହଜମ କରିବା ପାଇଁ କଷ୍ଟ ହୁଏ । ପେଟର ବଡଣ ନାଡ଼ିକୁ ତାହା ଯେପରି ଭିଡ଼ି ଧରେ । ଆମର କୌଣସି ପ୍ରାଚୀନ ବିଷୟରେ ନା ଅଛି ତାଙ୍କର ବିଶ୍ୱାସ, ନା ଅଛି ଦରଦ । ଅକାମୀ ବୋଲି ଅଗ୍ରାହ୍ୟ କରିଦେବା ପାଇଁ ତାଙ୍କର ଦୁଃଖ ହୁଏ ନାହିଁ । କିନ୍ତୁ ସୂକ୍ଷ୍ମ ନିକିତି ହାତରେ ପାଇଲେ ଯେ ସୂକ୍ଷ୍ମ ଜିନିଷ ଓଜନ କରାଯାଇ ହୁଏ ନାହିଁ—ଏହି କଥାଟା ସେ ବୁଝି ପାରନ୍ତି ନାହିଁ ।

କମଳ କହିଲା—ପାରେ । କେବଳ ମୂଲ୍ୟ ଦେବା ବେଳେ ଗୋଟାକର ବଦଳରେ ଅନ୍ୟଟାର ନେଇ ପାରେ ନାହିଁ । ମୋର ଆପତ୍ତି ହେଉଛି ଏଇଠି ।

ହରେନ୍ଦ୍ର କହିଲେ—ଆଶ୍ରମଟା ମୁଁ ଭାଙ୍ଗି ଦେବି ବୋଲି ସ୍ଥିର କରିଛି । ଏହି ଶିକ୍ଷାରେ ମନୁଷ୍ୟ ହୋଇ ପିଲାମାନେ ଦେଶର ମୁକ୍ତି—ଏପରିକି ପରମ କଲ୍ୟାଣକୁ ଫେରାଇ ଆଣି ପାରିବେ କି ନାହିଁ ମୋର ସନ୍ଦେହ ଉପୁଜୁଛି । କିନ୍ତୁ ଦୀନଦୁଃଖୀ ଯେଉଁ ସବୁ ପିଲା-ମାନଙ୍କୁ ସତୀଶ ଘରଛଡ଼ା କରାଇ ଆଣିଛି ସେମାନଙ୍କୁ ନେଇ ଯେ କ'ଣ କରିବି ତାହା ଭାବି ସ୍ଥିର କରିପାରୁ ନାହିଁ । ସତୀଶ ହାତରେ ତୋଳି ଦେଲେ ମଧ୍ୟ ସେ ତାହାକୁ ସମ୍ଭାଳି ପାରିବ ନାହିଁ ।

କମଳ କହିଲା—ସମ୍ଭାଳି ପାରିବାର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ଏମାନଙ୍କୁ କିଛି ଅସାଧାରଣ ଏବଂ ଅଲୌକିକ ବ୍ୟକ୍ତିତ୍ୱରେ ପରିଣତ କରିବାକୁ ଚାହିଁବେ ନାହିଁ । ଦୀନ-ଦୁଃଖୀ ପିଲା ପ୍ରତ୍ୟେକ ଦେଶରେ ଅଛନ୍ତି । ସେମାନେ ଯେପରି ଭାବରେ ସେମାନଙ୍କୁ ବଡ଼ କରି ଗଢ଼ନ୍ତି ସେହିପରି ଭାବରେ ସେମାନଙ୍କୁ ଶିକ୍ଷା ଦିଅନ୍ତୁ ।

ହରେନ୍ଦ୍ର କହିଲେ—ବର୍ତ୍ତମାନ ଏହିଠାରେ ହିଁ ମୁଁ ନିଃସନ୍ଦେହ ହୋଇ ପାରୁ ନାହିଁ କମଳ । ମାଷ୍ଟର ପ୍ରଭୃତିଙ୍କୁ ଲଗାଇ ସେମାନଙ୍କୁ ହୁଏତ ଲେଖା ପଢ଼ା ଶିଖାଇ ପାରିବି । କିନ୍ତୁ ସେମାନେ ଯେଉଁ ସଂଯମ ଓ ତ୍ୟାଗର ଶିକ୍ଷା ଆରମ୍ଭ କରିଥିଲେ ତହିଁରୁ ସେମାନଙ୍କୁ ବିଚ୍ଛିନ୍ନ କରାଯାଇ ମଣିଷ କରି ହେବ କି ନାହିଁ ତାହା ହିଁ ମୁଁ ଭାବୁଛି ।

: ହରେନ ବାବୁ, ଆପଣ ସବୁ ଜିନିଷକୁ ଏପରି ଏକାନ୍ତ ଭାବରେ ଆପଣାର ଭାବି ବସିଛନ୍ତି ବୋଲି କୌଣସି ପ୍ରଶ୍ନର ସରଳ ଉତ୍ତର ପାଇ ପାରୁ ନାହାଁନ୍ତି । ମନରେ ସନ୍ଦେହ ଆସୁଛି, ଏମାନେ ଦେବତା ହେବେ ନା ଉଚ୍ଛୃଙ୍ଖଳ ପଶୁରେ ପରିଣତ ହୋଇ ଯିବେ ? ଜଗତର ସହଜ, ସରଳ, ସ୍ୱାଭାବିକ ଶ୍ରୀ ଆଜି ବୋଧହୁଏ ଆଖି ଆଗରେ ରହିବ ନାହିଁ । ପରସ୍ପରର ମନ-ଗଢ଼ା ଅନ୍ୟାୟ ବୋଧ ଦ୍ୱାରା ଆପଣଙ୍କ ମନ କ୍ଷୁବ୍ଧ ଓ ଶଙ୍କାକୁଳ ହୋଇ ଉଠୁଛି । ସେଦିନ ଆଶ୍ରମରେ ଯାହା ଦେଖିକରି ଆସିଲି ତାହା କ'ଣ ସଂଯମ ଏବଂ ତ୍ୟାଗର ଶିକ୍ଷା ? ସେମାନେ ପାଇଛନ୍ତି କ'ଣ ? ସେମାନେ ପାଇଛନ୍ତି ଅପରର ଦଣ୍ଡ ଦୁଃଖର ବୋଝ । ପାଇଛନ୍ତି ଅନଧିକାର । ପାଇଛନ୍ତି ପ୍ରବଞ୍ଚିତର କ୍ଷୁଧା । ଚୀନ ଦେଶରେ ଜନ୍ମ ପରଠାରୁ ଝିଅମାନଙ୍କର ପାଦ ଛୋଟ କରାଯାଏ । ପୁରୁଷମାନେ ତାହାକୁ କୁହନ୍ତି ସୁନ୍ଦର । ତାହା ଆମମାନଙ୍କର ସହ୍ୟ ହୁଏ । କିନ୍ତୁ ଝିଅମାନଙ୍କର ସେହି ପଙ୍ଗୁ ବିକୃତ ପାଦର ସୌନ୍ଦର୍ଯ୍ୟରେ ଯେତେବେଳେ ସେହି ଝିଅମାନେ ମୋହିତ ହୋଇଛନ୍ତି, ସେତେବେଳେ ଆଶା କରିବାର କିଛି ରହେ ନାହିଁ । ଆପଣମାନେ ନିଜର କୃତିତ୍ୱରେ ମଗ୍ନ ହୋଇ ରହିଲେ । ମୁଁ ଯେତେବେଳେ ପଚାରିଲି—ପିଲାମାନେ କିପରି ଅଛ କହିଲ ? ପିଲାମାନେ ସମସ୍ୱରରେ କହି ଉଠିଲେ ଭଲ ଅଛୁ । ଥରକ ପାଇଁ ପୁଚ୍ଛା କହିଲ ? ଚେଷ୍ଟା କଲେ ନାହିଁ । ଭାବନା କରିବାର ଶକ୍ତି ସେମାନଙ୍କର ଶେଷ ହୋଇ ଯାଇଛି । ଏହା ହିଁ ଶାସନ ତ ! ନୀଲିମା ଅପା ମୋ ମୁହଁକୁ ଚାହିଁ ବୋଧହୁଏ ଏହାର ଉତ୍ତର ଆଶା କରିଥିଲେ; କିନ୍ତୁ ଛୁରିକୁ ବାହାଇ କାଟିବା ବ୍ୟତୀତ ଅନ୍ୟ କୌଣସି ଉତ୍ତର

ଏହାର ମୁଁ ଖୋଜ ପାଇ ପାରିଲି ନାହିଁ । ମନେ ମନେ ଭାବିଲି—ଭବିଷ୍ୟତରେ କ'ଣ ଏଇମାନେ ଦେଶର ସ୍ୱାଧୀନତା ଫେରାଇ ଆଣି ପାରିବେ ?

ହରେନ୍ଦ୍ର କହିଲି– ପିଲାମାନଙ୍କର କଥା ଥାଉ । କିନ୍ତୁ ରାଜେନ ଏବଂ ସନ୍ତୋଷ ଏମାନେ ତ ଯୁବକ ? ଏମାନେ ତ ସର୍ବସ୍ୱତ୍ୟାଗୀ ?

: ରାଜେନକୁ ଆପଣମାନେ ଚହ୍ନି ନାହାଁନ୍ତି ତେଣୁ ତା କଥା ଥାଉ । ବୈରାଗ୍ୟ ଯୌବନକୁ ବେଶୀ ଭଲ ପାଇ ବସେ । ସେହିଠାରେ ହିଁ ସେ ଶକ୍ତିମାନ । ସେତେବେଳେ ବିରୁଦ୍ଧ ଶକ୍ତି ଛଡ଼ା ତାକୁ ବଶ କରି ପାରିବ କିଏ ସେ ?

: ରାଗ କରନା କମଳ, କିନ୍ତୁ ତୁମ ରକ୍ତରେ ତ ବୈରାଗ୍ୟ ନାହିଁ । ତୁମର ବାପା ୟୁରୋପିୟାନ, ତାଙ୍କ ହାତରେ ତୁମର ଶୈଶବ ଗଢ଼ି ଉଠିଛି । ମାଆ ଏହି ଦେଶର ମହିଳା, ତାଙ୍କ କଥା ନ କହିବା ହିଁ ଭଲ । ଦେହରେ ରୂପ ବ୍ୟତୀତ ସେହି ଦିଗରୁ ତୁମେ କିଛି ପାଇ ପାରି ନାହିଁ । ସେଥିପାଇଁ ପାଶ୍ଚାତ୍ୟ ଶିକ୍ଷା ହେତୁ ଭୋଗଟାକୁ ଜୀବନର ସବୁଠାରୁ ଶ୍ରେଷ୍ଠ ବସ୍ତୁ ବୋଲି ଜାଣିପାରିଛ ।

: ରାଗ କରିନାହିଁ ହରେନ୍ଦ୍ର ବାବୁ । କିନ୍ତୁ ଏପରି କଥା ଆପଣ ଆଉ କହିବେ ନାହିଁ । କେବଳ ମାତ୍ର ଭୋଗଟାକୁ ବଡ଼ ବୋଲି ଗ୍ରହଣ କରିନେଇ କୌଣସି ଜାତି କେତେବେଳେ ବଡ଼ ହୋଇ ପାରେ ନାହିଁ । ମୁସଲମାନମାନେ ଯେତେବେଳେ ଏହି ଭୁଲ କରି ବସିଲେ ସେତେବେଳେ ସେମାନଙ୍କର ତ୍ୟାଗ ନାଶ ହେଲା ଏବଂ ଭୋଗ ମଧ୍ୟ ଗଲା । ଏହି ଭୁଲ କଲେ ଏମାନେ ମଧ୍ୟ ମରିବେ । ପାଶ୍ଚାତ୍ୟ ଦେଶ ଜଗତରୁ ବାହାର ନୁହଁ, ତେଣୁ ବିଧି ନିୟମକୁ ଉପେକ୍ଷା କରି ବଞ୍ଚିଯାଇ ପାରିବାର ଶକ୍ତି ତାର ନାହିଁ । ଏତିକ କହି ସେ ମୁହୂର୍ତ୍ତିକ ପାଇଁ ମୌନ ରହିବା ପରେ କହିଲା, ସେତେବେଳେ କିନ୍ତୁ ମୁଚୁକି ମୁଚୁକି ହସି ଆପଣମାନେ ମଧ୍ୟ କହିବା ପାଇଁ ସମସ୍ତ ପାଇବେ—କ'ଣ ? କହିଥିଲି ତ ? ଦିନ କେତେଟା ସେମାନଙ୍କୁ ନାଚ କୁଦ କରାଇବେ ତାହା ଆମେ ଜାଣୁ । କିନ୍ତୁ ରାହିଁ ଦେଖ ମୂଳରୁ ଶେଷ ଯାଏଁ ସବୁ ଠିକ୍ ଅଛି । କହୁ କହୁ ସୁବିମଳ ହସରେ ତା ମୁହଁ ବିକଶିତ ହୋଇ ଉଠିଲା ।

ହରେନ୍ଦ୍ର କହିଲା—ସେଦିନ ଯେପରି ଆସେ ।

: ଏପରି କଥା କହନ୍ତୁ ନାହିଁ ହରେନ୍ ବାବୁ । ଏତେ ବଡ଼ ଜାତି ଯଦି ମଥା ନତ କରି ବସେ, ତାର ଧୂଳିରେ ଜଗତର ଅନେକ ଆଲୋକ ମ୍ଳାନହୋଇ ପଡ଼ିବ । ମନୁଷ୍ୟ ପକ୍ଷରେ ସେହିଟା ହିଁ ହେଉଛି ସବୁଠାରୁ ଦୁର୍ଦ୍ଦିନ ।

ହରେନ୍ଦ୍ର ଉଠି ଠିଆ ହେଲା । କହିଲା—ସେପରି ଅବସ୍ଥା ଆସିବାକୁ ବର୍ତ୍ତମାନ ବିଳମ୍ବ ଅଛି; କିନ୍ତୁ ନିଜେ ଦୁର୍ଦ୍ଦିନର ଆଭାସ ପାଇ ପାରୁଛୁ । ଅନେକ ଆଲୋକ ବର୍ତ୍ତମାନ ଲିଭି ଲିଭି ଆସୁଛି । ପିତାଙ୍କ ନିକଟରୁ କେବଳ ଲଢ଼ାଇବାର କୌଶଳଟା ଜାଣି ପାରିଛ

କମଳ, କନ୍ତୁ ଜଳାଇବାର ବିଦ୍ୟା ଶିଖି ପାରିଲ ନାହିଁ—ଆଚ୍ଛା ଯାଉଛୁ । ଅଜିତ ବାବୁଙ୍କର କ'ଣ ବିଳମ୍ବ ହେବ ?

ଅଜିତ ଉଠୁ ଉଠୁ ହେଲା । କନ୍ତୁ ଉଠିଲା ନାହିଁ ।

କମଳ କହିଲା—ହରେନ ବାବୁ, ଆଲୁଅ ରାସ୍ତା ଉପରେ ନ ପଡ଼ି ଆଖି ଉପରେ ପଡ଼ିଲେ ଥାନାକୁ ଯିବାକୁ ପଡ଼େ । ସେହି ଆଲୋକକୁ ଯିଏ ଲଣ୍ଠନ ପକାଏ ତାକୁ ପ୍ରକୃତ ବନ୍ଧୁ ବୋଲି ଜାଣିବେ ।

ହରେନ୍ଦ୍ର ନିଃଶ୍ୱାସ ଛାଡ଼ି କହିଲା—ଅନେକ ସମୟରେ ମନେହୁଏ, ତୁମ ସଙ୍ଗରେ ପରିଚୟ ଭୂଷଣରେ ହୋଇଥିଲା । ସେହି ପ୍ରତ୍ୟୟର ଜୋର ମୋର ନାହିଁ, ତଥାପି କହି ପାରେ ଯେତେ ବିଦ୍ୟା, ବୁଦ୍ଧି, ଜ୍ଞାନ ଓ ପୁରୁଷକାରର ଔଜ୍ଜ୍ୱଲ୍ୟ ସେମାନେ ଦେଖାନ୍ତୁ ନା କାହିଁକି ଭାରତବର୍ଷ ନିକଟରେ ସେ ସବୁ ଅକିଞ୍ଚିତକର ।

: ଏହା ଯେପରି କ୍ଲାସ ପ୍ରମୋଶନ ନପାଇଥିବା ପିଲାର ଏମ୍. ଏ ପାସ୍ କରିଥିବା ବ୍ୟକ୍ତିକୁ ଧିକ୍କାର ଦେବା ଭଳି ହରେନ ବାବୁ । ଆତ୍ମମର୍ଯ୍ୟାଦାବୋଧ ବୋଲି ଯେପରି ଗୋଟାଏ କଥା ଅଛି, ଗର୍ବ କରି କହିବାଟା ସେହିପରି ମଧ୍ୟ ଗୋଟାଏ କଥା ।

ହରେନ୍ଦ୍ର କ୍ରୁଦ୍ଧ ହୋଇ କହିଲା—କଥା ଅନେକ ଅଛି । କିନ୍ତୁ ଏଇ ଭାରତ ହିଁ ଦିନେ ସକଳ ଦିଗରୁ ଜଗତର ଗୁରୁ ଥିଲା । ସେତେବେଳେ ଅନେକଙ୍କର ପୂର୍ବପୁରୁଷ ହୁଏତ ଗଛର ଡାଳେ ଡାଳେ ବୁଲୁଥିଲେ । ଆମ ଭାରତବର୍ଷ ଦିନେ ନା ଦିନେ ଜଗତର ପୁଣି ଶିକ୍ଷକର ଆସନକୁ ଅଧିକାର କରି ବସିବ—କରି ବସିବ – କରି ବସିବ ।

କମଳ ରାଗ କଲା ନାହିଁ । ହସିଲା । କହିଲା—ଆଜି ସେମାନେ ଡାଳରୁ ଓହ୍ଲାଇ ମାଟିକୁ ଡେଇଁ ପଡ଼ିଛନ୍ତି । କିନ୍ତୁ କେଉଁ ମହାନ୍ ଅତୀତ କାଳରେ ଜଣକର ପୂର୍ବପୁରୁଷ ପୃଥିବୀର ଗୁରୁ ଥିଲେ ଏବଂ କେଉଁ ମହାନ୍ ଭବିଷ୍ୟତ କାଳରେ ପୁଣି ତାର ବଂଶଧରମାନେ ପୈତୃକ ପେଶା ଫେରି ପାଇବେ ଏହି ଆଲୋଚନାର ସୁଖ ପାଇବାକୁ ହେଲେ ଅଜିତ୍ ବାବୁଙ୍କୁ ଧରନ୍ତୁ । ମୋର ଅନେକ କାମ ଅଛି ।

ହରେନ୍ଦ୍ର କହିଲା—ଆଚ୍ଛା, ନମସ୍କାର । ଆଜି ଯାଉଛୁ । କହି ବିପନ୍ନ ଗମ୍ଭୀର ମୁହଁରେ ଘରୁ ବାହାରି ଚାଲିଗଲା ।

ଆଠ ଦଶଦିନ ପରେ କମଳ ଆଶୁବାବୁଙ୍କ ଘରକୁ ଦେଖା କରିବାକୁ ଆସିଲା । ଯାହାଙ୍କୁ ନେଇ ଏହି ଆଖ୍ୟାୟିକା ତାଙ୍କ ଜୀବନରେ ଏହି କେତେଦିନ ଭିତରେ ଗୋଟାଏ ବିପର୍ଯ୍ୟୟ ଘଟି ଯାଇଛି । ଅଥଚ ତାହା ଆକସ୍ମିକ ନୁହେଁ କିମ୍ବା ଅପ୍ରତ୍ୟାଶିତ ନୁହେଁ । କିଛି ସମୟ ହେବ ଏଣେ ତେଣେ ଭାସି ବୁଲୁଥିବା ମେଘ ଖଣ୍ଡମାନ ବତାସରେ ଭାସି ଆସି ନିରନ୍ତର ଆକାଶରେ ଜମା ହେବାକୁ ଲାଗିଥିଲେ । ଏହାର ପରିଣତି ବିଷୟରେ ବିଶେଷ ସନ୍ଦେହ ନ ଥିଲା ଏବଂ ଘଟିଲା ମଧ୍ୟ ସେଇଆ ।

ଫାଟକରେ ଦରୁଆନ ଅନୁପସ୍ଥିତ ଥିଲା । ଘର ତଳ ବାରଣ୍ଡାରେ ସାଧାରଣତଃ କେହି ବସି ନ ଥାନ୍ତି; ତଥାପି କେତେକ ଖଣ୍ଡ ଚୌକି, ମେଜ ଏବଂ କାନ୍ଥ ଦେହରେ କେତେଟା ବଡ଼ ଲୋକଙ୍କର ଛବି ଟଙ୍ଗା ହୋଇଥିଲା । ଆଜି ସେଗୁଡ଼ିକ ଅନ୍ତର୍ହିତ । କେବଳ ଛାତରୁ ଝୁଲି ରହିଥିବା କଳା ଲଣ୍ଠନଟା ଏ ପର୍ଯ୍ୟନ୍ତ ଝୁଲୁଛି । ସ୍ଥାନେ ସ୍ଥାନେ ଆବର୍ଜ୍ଜନା ଜମିଥାଏ । ସେଗୁଡ଼ାକ ପରିଷ୍କାର କରିବାର ଆବଶ୍ୟକତା ବୋଧହୁଏ ଆଉ ନ ଥିଲା । କପର ଗୋଟାଏ ଶ୍ରୀହୀନ ଭାବ । ଗୃହସ୍ୱାମୀ ଯେ ପଳାୟନମୁଖୀ ତାହା ଦେଖିଲେ ହିଁ ଜଣା ପଡୁଥିଲା । କମଳ ଉପରକୁ ଆସି ଆଶୁବାବୁ ବସୁଥିବା ଘରେ ପ୍ରବେଶ କଲା । ବେଳ ଅପରାହ୍ଣ ପାଖାପାଖି । ଆଶୁବାବୁ ଆଗ ଭଳି ଚଉକିର ହାତ ଉପରେ ପାଦ ରଖି ଶୋଇ ରହିଥିଲେ । ଘରେ ଆଉ କେହି ନ ଥିଲେ । ପର୍ଦ୍ଦା ଆଡ଼େଇବାର ଶବ୍ଦରେ ସେ ଆଖି ମେଲି ଉଠି ବସିଲେ । କମଳକୁ ବୋଧହୁଏ ସେ ଦେଖିବା ପାଇଁ ଆଶା କରି ନ ଥିଲେ । ଟିକିଏ ଅଧିକ ମାତ୍ରାରେ ଖୁସି ହୋଇ ଅଭ୍ୟର୍ଥନା ଜଣାଇଲେ । କହିଲେ—ଆରେ କମଳ ଯେ ! ଆସ ମାଆ—ଆସ ।

ତାଙ୍କ ମୁହଁକୁ ଚାହିଁ ଦେଇ କମଳକୁ ବଡ଼ କଷ୍ଟ ଲାଗିଲା । ହଠାତ୍ ତା ପାଟିରୁ ବାହାରି ପଡ଼ିଲା—ଏ କ'ଣ ହେଲା ! ଆପଣ ଯେ ଖାଣ୍ଟମନ୍ତ ବୁଢ଼ା ଦେଖା ଯାଉଛନ୍ତି ?

ଆଶୁବାବୁ ହସିଲେ । କହିଲେ—ବୁଢ଼ା ? ତାହା ତ ଭଗବାନଙ୍କର ଆଶୀର୍ବାଦ କମଳ । ଭିତରେ ଭିତରେ ବୟସ ଯେତେବେଳେ ବଢ଼ୁଛି, ସେତେବେଳେ ବୁଢ଼ା ଦେଖା ନ ଯିବାଠାରୁ ଦୁର୍ଭାଗ୍ୟ ଆଉ କିଛି ନାହିଁ । ପିଲାବେଳେ ଚନ୍ଦା ହେବା ଭଳି ଏହା ଏକ କରୁଣାତ୍ମକ ଦୁଃଖ ।

: କିନ୍ତୁ ଶରୀରଟା ତ ଭଲ ଦେଖାଯାଉ ନାହିଁ ?

: ନା । ଏତକ କହି ପୁଣି ବିସ୍ତାରିତ ପ୍ରଶ୍ନ ପାଇଁ ଅବକାଶ ନ ଦେଇ ପଚାରିଲେ—ତୁ କପରି ଅଛୁ କମଳ ?

: ଭଲ ଅଛୁ । ମୋ ଦେହ ତ କେବେ ଖରାପ ହୁଏ ନାହିଁ ମଉସା ।

: ଜାଣେ । ନା ତୋ ଦେହ—ନା ତୋ ମନ । କାରଣ ତୋର ଲୋଭ ନାହିଁ । କଛି ଗୁଡ଼ାଏଁକୁ ବୋଲି ଭଗବାନ ଦୁଇ ହାତରେ ଢାଳି ଦେଉଛନ୍ତି ।

: ମୋତେ ! କ'ଣ ସବୁ ଦେଲେ ଦେଖି ପାରୁଛନ୍ତି, କହନ୍ତୁ ତ ?

: ଏହା ତ ଡେପୁଟି ମ୍ୟାଜିଷ୍ଟ୍ରେଟଙ୍କର ଅଦାଲତ ନୁହେଁ ଯେ ଧମକାଇ ଦେଇ ଜିତାପଟ ନେଇଯିବୁ । ତାହା ଯାହା ହେଉନା କାହିଁକି ତଥାପି ମାନୁଛୁ ଯେ ଦୁନିଆର ବିଗ୍ରହରେ ନିଜକୁ ଜିତାଇ ପାରି ନାହିଁ । ସେଥିପାଇଁ ତ ଆଜି ସକାଳେ ଥଳି ଝାଡ଼ି ଫର୍ଦ୍ଦ ମିଳାଇ କରି ଦେଖୁଥିଲି । ଦେଖିଲି, ଶୂନ ଅଙ୍କ ଗୁଡ଼ିକ ଏତେ ଦିନ ଧରି ତହବିଲକୁ ଫୁଲାଇ କରି ରଖିଥିଲି । ଅନ୍ତଃସାରଶୂନ୍ୟ ଥଳିଟାର ମୋଟା ଚେହେରା ମଣିଷର ଆଖିକୁ କେବଳ ଠକାଇଛୁ କିନ୍ତୁ ଭିତରେ କୌଣସି ବସ୍ତୁ ନାହିଁ । ଲୋକମାନେ କେବଳ ଭୁଲ କରି ଭାବନ୍ତି ମାଆ, ଗଣିତ ଶାସ୍ତ୍ରର ନିର୍ଦ୍ଦେଶରେ କୁଆଡ଼େ ଶୂନର ଦାମ୍ ରହିଛି । ମୁଁ କିନ୍ତୁ ଦେଖିଲି କିଛି ନାହିଁ । ଏକର ଡାହାଣ ପଟରେ ସେଗୁଡ଼ିକ ଧାଡ଼ି ବାନ୍ଧି ଠିଆ ହେଲେ ଏକଟି ଏକ କୋଟି ହୋଇଯାଏ । ଶୂନର ଧାଡ଼ି ବାନ୍ଧି ହୋଇଥିବା ସଂଖ୍ୟା ଗୁଡ଼ିକ କିନ୍ତୁ ଗୋଟିଏ ଶୂନ ପାଖରେ ରହିଲେ କୋଟି ହୋଇ ଯାଇ ପାରେ ନାହିଁ । ପଦାର୍ଥ ଯେଉଁଠାରେ ନାହିଁ, ଏ ଗୁଡ଼ାକ କେବଳ ସେଠାରେ ମାୟା । ମୋ ପାଇବାଟା ହିଁ ଠିକ୍ ସେହିପରି ।

କମଳ ଯୁକ୍ତି କଲା ନାହିଁ । ତାଙ୍କ ନିକଟରେ ଯାଇ ଚୌକିଟିଏ ଟାଣି ନେଇ ବସି ପଡ଼ିଲା । କମଳର ଡାହାଣ ହାତ ଉପରେ ଆପଣାର ହାତଟି ରଖି କହିଲେ—ମାଆ, ଏଥର ପ୍ରକୃତରେ ଯିବାର ସମୟ ହେଲାଣି । କାଲି କମ୍ବା ପଅର ଦିନ ଚାଲିଯିବି । ବୁଢ଼ା ହୋଇ ଗଲିଣି । ପୁଣି ଯେ କେବେ ଦେଖା ହୋଇ ପାରିବ ସେ ଭରସା ମୁଁ ପାଉ ନାହିଁ । କିନ୍ତୁ ଏତିକି ମାତ୍ର ଭରସା ପାଏ ଯେ ତୁ ମୋତେ ଭୁଲିଯିବୁ ନାହିଁ ।

କମଳ କହିଲା—ନା, ଭୁଲି ପାରିବି ନାହିଁ । ଦେଖା ମଧ୍ୟ ମୋର ହେବ । ଆପଣଙ୍କ ଥଳିଟା ଶୂନରେ ଭର୍ତ୍ତି କରି ରଖି ନାହିଁ । ଯେଗୁଡ଼ିକ ପ୍ରକୃତରେ ପଦାର୍ଥ—ମାୟା ନୁହେଁ ।

ଆଶୁବାବୁ ଏ କଥାର ଉତ୍ତର ଦେଲେ ନାହିଁ । କିନ୍ତୁ ମନେ ମନେ ବୁଝି ପାରିଲେ ଯେ ଏ ଝିଅଟି ପଛେ ହେଲେ ମିଛ କଥା କହି ନାହିଁ ।

କମଳ କହିଲା—ଆପଣ ବର୍ତ୍ତମାନ ଏଠାରେ ଅଛନ୍ତି ସତ, କିନ୍ତୁ ଆପଣଙ୍କ ମନଟା ଏ ଦେଶରୁ ବିଦାୟ ନେଇ ଗଲାଣି । ଘର ଭିତରକୁ ପ୍ରବେଶ କରିବା କ୍ଷଣି ଏହା ମୁଁ ଜାଣି ପାରିଲି । ଆଉ ଆପଣଙ୍କୁ ଏଠାରେ ଧରି ରଖି ହେବ ନାହିଁ । କୁଆଡ଼େ ଯିବେ ? କଲିକତାକୁ ?

ଆଶୁବାବୁ ଧୀରେ ଧୀରେ ମୁଣ୍ଡ ହଲାଇଲେ । ନା, ସେଠାକୁ ନୁହେଁ । ଏଥର ଆହୁରି ଟିକିଏ ଦୂରକୁ ଯିବା ପାଇଁ କଳ୍ପନା କରୁଛି । ପୁରୁଣା ବନ୍ଧୁମାନଙ୍କୁ କଥା ଦେଇ-ଥିଲି ଯଦି ବଞ୍ଚି ରହେ ତେବେ ଆଉ ଥରେ ଦେଖା କରି ଯିବି । ଏଠାରେ ତ ତୋର କୌଣସି କାମ ନାହିଁ କମଳ, ଯିବୁ ମାଆ ମୋ ସଙ୍ଗରେ ବିଲାତକୁ ? ଆଉ ଯଦି ଫେରି ନ ପାରେ ତେବେ ତୋ ମୁହଁରୁ ତ ହେଲେ କେହି ଖବରଟା ପାଇ ପାରିବେ ।

ଏହି ଅନିର୍ଦ୍ଦିଷ୍ଟ ସର୍ବନାମର ଉଦ୍ଦିଷ୍ଟ ଯେ କିଏ, କମଳର ତାହା ବୁଝିବା ପାଇଁ ଡେରି ହେଲା ନାହିଁ । କିନ୍ତୁ ଏହି ଅସ୍ପଷ୍ଟତାକୁ ସୁସ୍ପଷ୍ଟ କରି ବେଦନା ଦିଆଇବାଟା ମଧ୍ୟ ନିଷ୍ପ୍ରୟୋଜନ ।

ଆଶୁବାବୁ କହିଲେଉପସ୍ଥ କରିବାର କିଛି ନାହିଁ ମାଆ, ବୁଢ଼ାକୁ ସେବା କରିବା ପାଇଁ ପଡ଼ିବ ନାହିଁ । ଏହି ଅକର୍ମଣ୍ୟ ଦେହଟାର ମୂଲ୍ୟ ତ ବେଶୀ, ଏଇଟାକୁ ବହି ବୁଲିଯିବା ପାଇଁ ମୁଁ ଆଉ ମନୁଷ୍ୟ ନିକଟରେ ଋଣୀ ହେବି ନାହିଁ । କିନ୍ତୁ କିଏ ଜାଣେ କମଳ, ଏଇ ମାଂସ ପିଣ୍ଡଟାକୁ ଅବଲମ୍ବନ କରି ମଧ୍ୟ ପ୍ରଶ୍ନ ଜଟିଳ ହୋଇ ଉଠିପାରେ । ମନେ ହେଉଛି ଯେପରି ଜଳରେ ମାଟିରେ ମିଶିଯିବ । ଏତେବଡ଼ ବିସ୍ମୟକର ବ୍ୟାପାର ଯେ ଜଗତରେ ଘଟିପାରେ ଏହାକୁ କେବେ କିଏ କ'ଣ ଭାବି ପାରିଛି ?

କମଳ ସନ୍ଦେହରେ ଚମକି ଉଠି ପ୍ରଶ୍ନ କଲା—ନୀଳିମା ଅପାଙ୍କୁ ଦେଖିବାକୁ ପାଉ ନାହିଁ ମଉସା ? ସେ କେଉଁଠି ?

: ବୋଧହୁଏ ତା ଘରେ ଥିବ । କାଲି ସକାଳ ଠାରୁ ତାକୁ ଆଉ ଦେଖିବାକୁ ପାଇ ନାହିଁ । ଶୁଣିଲି ହରେନ୍ଦ୍ର ଆସି ତାକୁ ତା ବସାକୁ ନେଇଯିବ ।

: କ'ଣ ଆଶ୍ରମକୁ ?

: ଆଶ୍ରମ ଆଉ ନାହିଁ । ସତୀଶ ଚାଲି ଯାଇଛି । ଏବଂ କେତୋଟି ପିଲା ମଧ୍ୟ ସଙ୍ଗରେ ନେଇ କରି ଯାଇଛି । କେବଳ ଚାରି ପାଞ୍ଚଜଣ ପିଲାଙ୍କୁ ଛାଡ଼ି ଦେଇ ଯାଇଛି । ସେମାନେ ରହିଛନ୍ତି । ସେମାନଙ୍କର ମାଆ ବାପ, ଆତ୍ମୀୟ ସ୍ୱଜନ କେହି ନାହାଁନ୍ତି । ସେମାନଙ୍କୁ ସେ ନୂତନ ଆଇଡ଼ିଆ ଦେଇ ଗଢ଼ି ତୋଳିବ ଏହାହିଁ ତାର କଳ୍ପନା । ତୁ ଶୁଣିନୁ ବୋଧହୁଏ ? ଆଉ କାହା ଠାରୁ ଅବା ଶୁଣିଥାନ୍ତୁ ଯେ ?

ସାମାନ୍ୟ ଅଟକି ଯାଇ ପୁଣି କହିଲେ—ଗତ ଦୁଇଦିନ ତଳେ ଭଦ୍ର ଲୋକମାନେ ଚାଲିଯିବା ପରେ ଅସମାପ୍ତ ଚିଠି ଖଣ୍ଡିକ ଶେଷ କରି ନୀଳିମାକୁ ପଢ଼ି ଶୁଣାଇଲି । କେତେଦିନ ହେବ ସେ ଯେପରି ଅନ୍ୟମନସ୍କ । ତାର ମଧ୍ୟ ଦେଖା କମ୍ ପାଉଛି । ଚିଠିଟା ଥିଲା ମୋ କଲିକତାରେ ଥିବା କର୍ମଚାରୀ ପ୍ରତି । ମୋ ବିଲାତ ଯିବାର ସମସ୍ତ ଆୟୋଜନ ଶୀଘ୍ର ସମ୍ପୂର୍ଣ୍ଣ କରି ପକାଇବା ପାଇଁ ତାଗିଦ । ଗୋଟାଏ ନୂତନ ଉଇଲର ଖସଡ଼ା ପଠାଉଥିଲି । ହୁଏତ ଏହା ମୋର ଶେଷ ଉଇଲ । ଆଟର୍ଣ୍ଣିକୁ ଦେଖାଇ ନାମ ଦସ୍ତଖତ

କରିବା ପାଇଁ । ଫେରନ୍ତ ପଠାଇ ଦେବା ପାଇଁ ମଧ୍ୟ ଲେଖିଥିଲି । ନୀଳିମା କ'ଣ ଗୋଟାଏ ସିଲାଇ କରିବାରେ ବ୍ୟସ୍ତ ଥିଲା । ଭଲମନ୍ଦ କୌଣସି ଉତ୍ତର ତା ଠାରୁ ନ ପାଇ ଚାହିଁ ଦେଖେ ତା ହାତରେ ସିଲାଇଟା ମାଟିରେ ପଡ଼ି ଯାଇଛି ଏବଂ ମୁଣ୍ଡଟା ଚୌକିର ବାଡ଼ରେ ଲୁଚି ପଡ଼ିଛି । ଆଖି ଦୁଇଟା ବୁଜି ହୋଇ ପଡ଼ିଛି । ମୁହଁଟା ପାଉଁଶ ପରି ସାଦା ହୋଇ ଉଠିଛି । କଣ ଯେ ହେଲା ହଠାତ୍ ଭାବି ଠିକ୍ କରି ପାରିଲି ନାହିଁ । ତରତର ହୋଇ ଉଠି ତାକୁ ଧରି ନେଇ ମେଜ ଉପରେ ଶୁଆଇ ଦେଲି । ଗ୍ଲାସରେ ପାଣିଥିଲା । ଆଖି ଓ ମୁହଁରେ ପାଣି ଛିଟିଦେଲି । ପଙ୍ଖା ନ ଥିବାରୁ ଖବର କାଗଜଟା ଧରି ହାଙ୍କି ବସିଲି । ଚାକରଟାକୁ ଡାକିବାକୁ ଲାଗିଲି । ତା କଣ୍ଠରୁ ଆଓ୍ୱାଜ ମଧ୍ୟ ଶୁଣା ଗଲା ନାହିଁ । ବୋଧହୁଏ ଦୁଇତିନ ମିନିଟରୁ ବେଶୀ ହେବ ନାହିଁ ସେ ଆଖିମେଲି ବ୍ୟସ୍ତ ହୋଇ ଉଠି ବସିଲା । ଏକବାରେ ସାରା ଦେହଟା କମ୍ପି ଉଠିଲା । ତା'ପରେ ମୋ କୋଳରେ ଅଜାଣ୍ତି ହୋଇପଡ଼ି କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା । କି କାନ୍ଦ ସେ ! ମନେହେଲା ସତେ ଯେପରି ତା ବୁକୁ ଫାଟିଗଲା । ଅନେକ ସମୟ ପରେ ଟିକେ ବସାଇଲି । କେତେଦିନର କେତେ କଥା, କେତେ ଘଟଣା ମନେ ପଡ଼ିଲା । ମୋର ବୁଝିବାକୁ ଆଉ ବାକି କିଛି ରହିଲା ନାହିଁ ।

କମଳ ନୀରବରେ ତାଙ୍କ ମୁହଁକୁ ଚାହିଁ ରହିଲା ।

ଆଶୁବାବୁ ମୁହୂର୍ତ୍ତିକ ଭିତରେ ନିଜକୁ ସମ୍ବରଣ କରିନେଇ କହିଲେ—ଏପରି ଅବସ୍ଥାରେ ତାକୁ କ'ଣ କହିବି ଭାବି ସ୍ଥିର କରିବା ପୂର୍ବରୁ ନୀଳିମା ତୀର ବେଗରେ ଉଠି ଠିଆ ହୋଇ ପଡ଼ିଲା । ଥରକ ପାଇଁ ମୋତେ ଚାହିଁଲା ନାହିଁ । ଏକବାରେ ଘରୁ ବାହାରି ଚାଲିଗଲା । ନା ସେ କହିଲା ଗୋଟାଏ କଥା--ନା ମୁଁ କହିଲି ଗୋଟାଏ କଥା । ତା ପରଠାରୁ ଆଉ ଦେଖା ହୋଇ ନାହିଁ ।

କମଳ ପଚାରିଲା—ଏହା କ'ଣ ଆପଣ ଆଗରୁ ବୁଝି ପାରି ନ ଥିଲେ ?

: ନା, ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଆଉ କେହି ହୋଇଥିଲେ ହୁଏତ ସନ୍ଦେହ ହୋଇଥାନ୍ତା ଏହା କେବଳ ଛଳନା ଏବଂ ସ୍ୱାର୍ଥ ବୋଲି । କିନ୍ତୁ ତା ସମ୍ପର୍କରେ ଏପରି କଥା ଭାବିବା ମଧ୍ୟ ଅପରାଧ । କି ଆଶ୍ଚର୍ଯ୍ୟ ସ୍ତ୍ରୀମାନଙ୍କର ମନ ! ଏହି ରୋଗାତୁର ଜୀର୍ଣ୍ଣ ଦେହ, ଏହି ଅକ୍ଷମ ଅବସନ୍ନ ଚିତ୍ତ, ଜୀବନର ଅପରାହ୍ନ ବେଳରେ ଯାହାର ଦାମ କାଣି କଉଡ଼ିଟିଏ ନୁହେଁ, ତାହାର ପ୍ରତି ଯେ ଜଣେ ସୁନ୍ଦରୀ ତରୁଣୀର ମନ ଆକୃଷ୍ଟ ହୋଇ-ପାରେ ଏହାଠାରୁ ବଳି ଆଶ୍ଚର୍ଯ୍ୟକର ବିଷୟ ଜଗତରେ ଆଉ କ'ଣ ଥାଇପାରେ ? ଅଥଚ ଏହା ସତ୍ୟ ଏବଂ ଏଥିରେ ଏତେଟିକିଏ ମିଛ ନାହିଁ । ଏହା କହି ସଦାଶିବ ପ୍ରୌଢ଼ ମନୁଷ୍ୟଟି କ୍ଷୋଭରେ, ବେଦନାରେ ଏବଂ ଅକପଟ ଲଜ୍ୟାରେ ନିଃଶ୍ୱାସ ଛାଡ଼ି ନୀରବ ରହିଲେ ।

କିଛି ସମୟ ସେ ଏହିପରି ରହିବା ପରେ ପୁଣି କହିଲେ—ମୁଁ ଭଲ କରି ଜାଣେ ଏହି ବୁଦ୍ଧିମତୀ ରମଣୀଟି ମୋ ଠାରୁ କିଛି ପ୍ରତ୍ୟାଶା କରେ ନାହିଁ । ସେ କେବଳ ଚାହେଁ ମୋର ଯତ୍ନ ନେବା ପାଇଁ । କେବଳ ଚାହେଁ ସେବା ଅଭାବରୁ ମୁଁ ଯେପରି ମୋର ଅବଶିଷ୍ଟ ଜୀବନ ନିଃସଙ୍ଗ ହୋଇ ଦୁଃଖରେ ନ ବିତାଏ । କେବଳ ଦୟା ଏବଂ ଅକୃତ୍ରିମ କରୁଣା ।

କମଳ ଚୁପ୍ ରହିଥିବାର ଦେଖି ସେ କହିବାକୁ ଲାଗିଲେ—ବେଲା ଯେତେବେଳେ ବିବାହ-ବିଚ୍ଛେଦ ପାଇଁ ମକଦ୍ଦମା କରିବା ପାଇଁ ଇଚ୍ଛା କରିଥିଲା ସେତେବେଳେ ତାକୁ ମୁଁ ଅନୁମତି ଦେଇଥିଲି । କଥା ପ୍ରସଙ୍ଗରେ ଦିନେ ଏଇ କଥା ଉଠିପଡ଼ିବାରୁ ସେଦିନ ନୀଳିମା ଭୀଷଣ ରାଗି ଉଠିଥିଲା । ତା ପରଠାରୁ ସେ ବେଲାକୁ କୌଣସି ମତେ ସହ୍ୟ କରିପାରୁ ନ ଥିଲା । ନିଜ ସ୍ୱାମୀଙ୍କୁ ଏପରି ଭାବରେ ସର୍ବସାଧାରଣଙ୍କ ନିକଟରେ ଲଜ୍ଜିତ ଓ ଅପଦସ୍ଥ କରିବାର ପ୍ରତିହିଂସା ଘଟଣାଟାକୁ ନୀଳିମା କୌଣସି ମତେ ଗ୍ରହଣ କରି ପାରୁ ନ ଥିଲା । ତାକୁ କହୁଥିଲା ତାଙ୍କୁ ତ୍ୟାଗ କରିବାଟା ବଡ଼ କଥା ନୁହେଁ, ତାଙ୍କୁ ଫେରି ପାଇବାର ସାଧନା ହିଁ ସ୍ତ୍ରୀର ପରମ ସାର୍ଥକତା । ଅପମାନର ପ୍ରତିଶୋଧ ନେବା ଦ୍ୱାରା ସ୍ତ୍ରୀର ପ୍ରକୃତ ମର୍ଯ୍ୟାଦା ନଷ୍ଟ ହୋଇଥାଏ । ନଚେତ୍ ଏହାତ ହେଉଛି କଷଟି ପଥର । ସେବା ଦ୍ୱାରା ପ୍ରକୃତ ଭଲ ପାଇବାର ମୂଲ୍ୟ ନିରୂପିତ ହୋଇ ପାରିଥାଏ । ଆଉ ଏ କେଉଁଭଳି ଅବା ଆତ୍ମ-ସମ୍ମାନ ଜ୍ଞାନ ? ଯାହାକୁ ଅସମ୍ମାନ କରି ଦୂର କରି ହୋଇଛି, ତାହା ନିକଟରୁ ହାତ ପାତି ମାଗି ବସିବ ଆପଣାର ଖାଇବା-ପିନ୍ଧିବାର ଦାମ ? କାହିଁକି ଏହା ଅପେକ୍ଷା ତାକୁ ଗଳାରେ କ'ଣ ଦଉଡ଼ି ଖଣ୍ଡିଏ ଦେବା ପାଇଁ ଜୁଟିଲା ନାହିଁ ? ଶୁଣିକରି ମୁଁ ଭାବୁଥାଏ, ଏହା ହେଉଛି ନୀଳିମାର ଅନ୍ୟାୟ ଏବଂ ଅନଧିକାର ଚର୍ଚ୍ଚା । ଆଜି ଭାବୁଛି ଭଲ ପାଇବା କ'ଣ କରି ନ ପାରେ ? ରୂପ, ଯୌବନ, ସମ୍ମାନ, ସମ୍ପଦ, କିଛି ନୁହେଁ ମାଆ, କ୍ଷମାଟା ହିଁ ହେଉଛି ଏହାର ପ୍ରକୃତ ପ୍ରାଣ ! ଏହା ଯେଉଁଠାରେ ନାହିଁ ସେଠାରେ ଭଲ ପାଇବା କେବଳ ବିଡ଼ମ୍ବନା ମାତ୍ର । ସେହିଠାରେ ହିଁ ଉଠିଥାଏ ରୂପ-ଯୌବନର ବିଚାର—ବିତର୍କ, ଏବଂ ଆତ୍ମ ମର୍ଯ୍ୟାଦାର ଟଗ୍-ଅଫ୍-ଓ୍ୱାର ।

କମଳ ତାଙ୍କ ମୁହଁକୁ ଚାହିଁ ଚୁପ୍ ହୋଇ ରହିଲା ।

ଆଶୁବାବୁ କହିଲେ—କମଳ ତୁ ହିଁ ତାର ଆଦର୍ଶ । କିନ୍ତୁ ଚନ୍ଦ୍ରର ଆଲୁଅ ଯେପରି ସୂର୍ଯ୍ୟ କିରଣକୁ ଲୁଚାଇ ଦେଲା । ତୋ ନିକଟରୁ ସେ ଯାହା ପାଇଛି, ଅନ୍ତରର ରସରେ ତାକୁ ଭିଜାଇ ସ୍ନିଗ୍ଧ ମାଧୁର୍ଯ୍ୟରେ କେତେ ଦିଗକୁ ସେ ତାହାକୁ ବିଚ୍ଛୁରିତ କରି ନ ଦେଲା ! ଏଇ ଦୁଇଟା ଦିନରେ ମୁଁ ଦୁଇ ଶହ ବର୍ଷର ଭାବନା ପାଇ ପାରିଛି କମଳ । ସ୍ତ୍ରୀର ଭଲ ପାଇବା ମୁଁ ପାଇଥିଲି, ତାହାର ସ୍ୱାଦ ଚାଖିଛି, ସ୍ୱରୂପକୁ ଚିହ୍ନି ପାରିଛି କିନ୍ତୁ ନାରୀର ଭଲ ପାଇବାର ଯେ ଗୋଟିଏ ବୋଲି ଦିଗ, ଏହି ନୂତନ ତଥ୍ୟଟି ମୋତେ ଯେପରି ଆଚ୍ଛନ୍ନ କରି ରଖିଛି । ତାହାର କେତେ କଷ୍ଟ, କେତେ ବ୍ୟଥା, ଆପଣାକୁ ବିସର୍ଜ୍ଜନ

ଦେବା ପାଇଁ କେତେ ନା କେତେ ଅଜଣା ଆୟୋଜନ । ହାତ ପାତି ନେଇ ପାରିଲି ନାହିଁ ସତ, କିନ୍ତୁ କ'ଣ କହି ଯେ ତାହାକୁ ନମସ୍କାର ଜଣାଇବ ତାହା ଖୋଜି ପାରୁ ନାହିଁ ମାଆ ।

କମଲ ବୁଝି ପାରିଲା—ପତ୍ନୀ-ପ୍ରେମର ସୁଦୀର୍ଘ ଗୁମ୍ଫା ଏତେଦିନ ଧରି ଯେଉଁ ସମସ୍ତ ଦିଗକୁ ଅନ୍ଧାର କରି ରଖିଥିଲା ତାହା ହିଁ ଆଜି ଧୀରେ ଧୀରେ ସଫା ହୋଇ ଆସୁଛି ।

ଆଶୁବାବୁ କହିଲେ—ଭଲ କଥା । ମଣିକୁ ମୁଁ କ୍ଷମା କରୁଛି । ବାପର ଅଭିମାନ ନେଇ ଆଉ ତା ପ୍ରତି ନାଲି ଆଖି ଦେଖାଇବ ନାହିଁ । ମୁଁ ଜାଣେ ସେ ଦୁଃଖ ପାଇବ । ଜଗତର ବାଧ୍ୟବାଧକ ଶାସନ ତାକୁ ଅବ୍ୟାହତି ଦେବ ନାହିଁ । ଅନୁମତି ତ ଦେଇ ପାରିବ ନାହିଁ । କିନ୍ତୁ ଯିବାବେଳେ ଏଇ ଆଶୀର୍ବାଦ ଟିକକ ରଖିଦେଇ ଯିବ ଯେ ତାର ଦୁଃଖ ଦିନ ଗୁଡ଼ିକରେ ସେ ପୁଣି ଯେପରି ଆଉ ଥରେ ଆପଣାକୁ ଖୋଜି ପାଇପାରେ । ତାର ଭୁଲ, ଭ୍ରାନ୍ତି, ଭଲ ପାଇବାର ସୁବିଚାର ଯେପରି ଭଗବାନ କରନ୍ତି···କହୁ କହୁ ତାଙ୍କ କଣ୍ଠସ୍ୱର ଓଜନ ହୋଇ ଆସିଲା ।

ଏପରି ଭାବରେ ଅନେକ ସମୟ ନୀରବରେ କଟିଲା । ତାଙ୍କ ମୋଟା ହାତଟି ଉପରେ କମଲ ଧୀରେ ଧୀରେ ହାତ ବୁଲାଇ ଦେଉଥିଲା । ଅନେକ ସମୟ ପରେ ମୃଦୁ କଣ୍ଠରେ ପ୍ରଶ୍ନ କଲା—ମଉସା, ନୀଳିମା ଅପାଙ୍କ ସମ୍ପର୍କରେ କ'ଣ ସ୍ଥିର କରିଲେ ?

ଆଶୁବାବୁ ହଠାତ୍ ସିଧା ହୋଇ ବସି ପଡ଼ିଲେ ସତେ ଯେପରି କିଏ ତାଙ୍କୁ ଠେଲି ଉଠାଇ ଦେଲା । କହିଲେ, ମାଆ, ତୋତେ ଆଗରୁ ବୁଝାଇ ପାରିନାହିଁ, ବର୍ତ୍ତମାନ ମଧ୍ୟ ବୁଝାଇ ପାରିବ ନାହିଁ । ହୁଏତ ଆଜି ମୋର ସେହି ସାମର୍ଥ୍ୟ ମଧ୍ୟ ନାହିଁ । କିନ୍ତୁ ଏପରି ସନ୍ଦେହ କଦାପି ଆସିନାହିଁ ଯେ—ଏକନିଷ୍ଠ ପ୍ରେମର ଆଦର୍ଶ ମନୁଷ୍ୟର ପ୍ରକୃତ ଆଦର୍ଶ ନୁହେଁ । ନୀଳିମାର ଭଲ ପାଇବାକୁ ସନ୍ଦେହ କରିନାହିଁ ଓ ତାହା ଯେପରି ସତ୍ୟ, ତାକୁ ପ୍ରତ୍ୟାଖ୍ୟାନ କରିବା ମଧ୍ୟ ମୋ ପକ୍ଷରେ ସେହିପରି ସତ୍ୟ । କୌଣସିମତେ ଏହାକୁ ଏକ ନିଷ୍ଫଳ ଆତ୍ମପ୍ରବଞ୍ଚନା ବୋଲି କହି ପାରିବ ନାହିଁ । ତାହା ତର୍କ ଦ୍ୱାରା ପାଇ ହୁଏ ନାହିଁ । କିନ୍ତୁ ଏହି ନିଷ୍ଫଳତା ମଧ୍ୟ ମଝିରେ ଅନ୍ତର୍ଗାମୀ ହୋଇ ପାରିବ । କିନ୍ତୁ ଲକ୍ଷ୍ୟ ତାର କେତେଦୂର ସେତିକି ଜାଣେନା ତଥାପି ସେ ଆଗେଇ ଯିବ । ତାହା ମୋର କଳ୍ପନାର ଅତୀତ । କିନ୍ତୁ ଏତେ ବଡ଼ ବ୍ୟଥାର ଦାନ ମଣିଷ ଦିନେ ନା ଦିନେ ପାଇ ପାରିବ । ନଚେତ୍ ଜଗତ୍ ମିଥ୍ୟା । ସୃଷ୍ଟି ମିଥ୍ୟା ।

ସେ କହିବାକୁ ଲାଗିଲେ—ଏଇ ଯେ ନୀଳିମା, ଯେ କୌଣସି ବ୍ୟକ୍ତି ପାଇଁ ସେ ଏକ ଅମୂଲ୍ୟ ସମ୍ପଦ । କିନ୍ତୁ ଆଜି ତା ପକ୍ଷରେ କେଉଁଠାରେ ଠିଆ ହେବା ପାଇଁ ସ୍ଥାନ ନାହିଁ । ତାହାର ବ୍ୟର୍ଥତା ମୋର ଅବଶିଷ୍ଟ ଦିନଗୁଡ଼ିକୁ ଶୂଳ ପରି ବିଦ୍ଧ କରିବାକୁ ଲାଗିବ ।

ଷ୍ଵିବେ, ସେ ଆଉ ଯଦି କାହାକୁ ହୁଏତ ଭଲ ପାଇ ପାରିଥାନ୍ତା ! କିନ୍ତୁ ଏହା ତାର କେତେ ବଡ଼ ଭୁଲ !

କମଳ କହିଲା—ଭୁଲ ସଂଶୋଧନର ଦିନ ତ ଆଜି ସୁଦ୍ଧା ଶେଷ ହୋଇ ଯାଇ ନାହିଁ ମଉସା !

: କିପରି ? ସେ ପୁଣି ଆଉ କାହାକୁ ଭଲ ପାଇ ପାରିବ ବୋଲି ତୁ ମନେ କରିପାରୁଛୁ ?

: ଅସମ୍ଭବ ତ ନୁହେଁ । ଆପଣଙ୍କ ଜୀବନରେ ଯେ ଏପରି ଘଟିପାରେ ତାହା କ'ଣ କେବେ ସମ୍ଭବ ହୋଇପାରେ ବୋଲି ମନେ କରି ପାରିଥିଲେ ?

: କିନ୍ତୁ ନୀଳିମା ? ତା ଭଲ କିଏ ?

: ସେ କଥା ଜାଣିନାହିଁ । କିନ୍ତୁ ଯାହାକୁ ପାଇ ପାରିଲା ନାହିଁ; ପାଇ ପାରିବା ମଧ୍ୟ ସମ୍ଭବ ନୁହେଁ, ତାହାର ସ୍ମୃତିକୁ ରୋମନ୍ଥନ କରିବାପାଇଁ କ'ଣ ତାର ଜନ୍ମ ବୋଲି ଆପଣ ପ୍ରାର୍ଥନା କରୁଛନ୍ତି !

ଆଶୁବାବୁଙ୍କର ମୁହଁର ଦୀପ୍ତି ଅନେକ ଭାବରେ ମଳୀନ ହୋଇଗଲା । କହିଲେ—ନା, ସେପରି ପ୍ରାର୍ଥନା ମୁଁ କରେ ନାହିଁ । ମୁହୂର୍ତ୍ତିକ ପାଇଁ ସ୍ତବ୍ଧ ହୋଇ ରହିବା ପରେ କହିଲେ—କିନ୍ତୁ ମୋ କଥା ତୁ ବୁଝି ପାରିବୁ ନାହିଁ କମଳ । ମୁଁ ଯାହା ପାରେ ତା ତୁ କରିପାରୁ ନା । ସତ୍ୟର ମୂଲ୍ୟଗତ ସଂସ୍କାର, ତୋର ଓ ମୋ ଭିତରେ ଏକ ନୁହେଁ । ଏକାନ୍ତ ଭାବରେ ବିଭିନ୍ନ । ଏଇ ଜୀବନଟାକୁ ଯେଉଁମାନେ ମାନବ ଆତ୍ମାର ଚରମ ପ୍ରାପ୍ତି ବୋଲି ଜାଣିଛନ୍ତି ସେମାନଙ୍କୁ ତ ଉପେକ୍ଷା କରି ବସିଲେ ଚଳିବ ନାହିଁ । Balance of yarning—ତୃଷ୍ଣାର ଶେଷ ବିନ୍ଦୁ ଜଳ ଏ ଜୀବନରେ ହିଁ ସେମାନେ ନିଃଶେଷ କରି ପାନ ନ କରିଲେ ନାହିଁ କିନ୍ତୁ ଆମେମାନେ ତ ଜନ୍ମାନ୍ତରକୁ ବିଶ୍ୱାସ କରୁ । ସେଥିପାଇଁ ପ୍ରତୀକ୍ଷା କରିବା ଆମମାନଙ୍କ ପକ୍ଷରେ ଉଚିତ ହେବ ।

କମଳ ଶାନ୍ତ କଣ୍ଠରେ କହିଲା—ଏକଥା ମୁଁ ମାନୁଛି ମଉସା । ତାହା ବୋଲି ତ ଆପଣଙ୍କ ସଂସ୍କାରକୁ ଯୁକ୍ତ ବୋଲି ମାନିନେଇ ପାରିବି ନାହିଁ । ଆକାଶ କୁସୁମ ଆଶାରେ ବିଧାତାଙ୍କ ଦୁଆରେ ହାତ ପାତି ଜନ୍ମ ଜନ୍ମାନ୍ତର ପ୍ରତୀକ୍ଷା କରିବା ନିମିତ୍ତ ମୋର ଧୈର୍ଯ୍ୟ ରହିବ ନାହିଁ । ଯେଉଁ ଜୀବନକୁ ସମସ୍ତଙ୍କ ମଝିରେ ସରଳ ବୁଦ୍ଧିରେ ପାଇ ହୁଏ, ତାହାହିଁ ମୋ ନିକଟରେ ସତ୍ୟ ଏବଂ ତାହାହିଁ ମୋ ପାଇଁ ମହତ୍ତ୍ୱ-ପୂର୍ଣ୍ଣ । ଫୁଲ ଫଳରେ, ଆଉ ସମ୍ପଦରେ ଏହି ଜୀବନଟା ଯେପରି ମୋର ଭରି ଉଠେ । ପରକାଳର ବୃହତ୍ତର ଲାଭ ଆଶାରେ ଇହଲୋକକୁ ଯେପରି ମୁଁ ଅପମାନିତ କରି ନ ବସେ । ମଉସା ଏପରି ଭାବରେ ଆପଣ ଆନନ୍ଦରୁ ଓ ସୌଭାଗ୍ୟରୁ ସ୍ୱେଚ୍ଛାରେ ବଞ୍ଚିତ

ହୋଇଛନ୍ତି । ଇନ୍ଦ୍ରଲୋକକୁ ତୁଚ୍ଛ ମନେ କରିଛନ୍ତି ବୋଲି ଆଜି ଇନ୍ଦ୍ରଲୋକ ଆପଣଙ୍କୁ ସମସ୍ତଙ୍କ ନିକଟରେ ତୁଚ୍ଛ କରି ପକାଇଛି । ନୀଳିମା ଅପାର ଦେଖା ପାଇପାରିବି କି ନାହିଁ ଜାଣେ ନା । ଯଦି ପାଏ ତେବେ ତାକୁ ଏଇ କଥା ହିଁ କହି ଦେଇ ଯିବି ।

କମଳ ଉଠି ଠିଆ ହେଲା । ଆଶୁବାବୁ ହଠାତ୍ ତା ହାତଟା ଜୋର କରି ଧରି ପକାଇ କହିଲେ—କ'ଣ ଚାଲିଯିବୁ ମାଆ ? କିନ୍ତୁ ତୁ ଚାଲିଯିବୁ ଭାବିବା କ୍ଷଣି ମୋ ବୁକୁ ଭିତରଟା ହା-ହା-କାର କରି ଉଠୁଛି ।

କମଳ ବସି ପଡ଼ି କହିଲା—କିନ୍ତୁ ମୁଁ ତ ଆପଣଙ୍କୁ କୌଣସି ଦିଗରୁ ଭରସା ଦେଇ ପାରିନାହିଁ । ଦେହ ଓ ମନରେ ଯେତେବେଳେ ଆପଣ ଅତ୍ୟନ୍ତ ପୀଡ଼ିତ । ସାନ୍ତ୍ୱନା ଦେବାଟା ଯେତେବେଳେ ନିହାତି ପ୍ରୟୋଜନ ସେତେବେଳେ ସବୁ ଦିଗରୁ ମୁଁ କେବଳ ଆପଣଙ୍କୁ ଆଘାତ ଦେଇ ଆସିଛି । ତଥାପି ମଧ୍ୟ ମୁଁ ସମସ୍ତଙ୍କ ଠାରୁ ଆପଣଙ୍କୁ ବେଶୀ ଭଲ ପାଏ ମଉସା ।

ଆଶୁବାବୁ ନୀରବରେ ସ୍ୱୀକାର କରି କହିଲେ—ତୋ ବ୍ୟତୀତ ଭଲ ପାଇଛି ନୀଳିମା । ଏହା କ'ଣ କମ ଆଶ୍ଚର୍ଯ୍ୟର କଥା ! କିନ୍ତୁ ତାର କାରଣ କ'ଣ ଜାଣୁ କମଳ ?

କମଳ ସ୍ମିତ ମୁଖରେ କହିଲା—ବୋଧହୁଏ ଆପଣଙ୍କ ଭିତରେ ବ୍ୟେଗ ବାଲି ନାହିଁ ସେଥିପାଇଁ । ବ୍ୟେଗବାଲି ନିଜ ଦେହର ଭାର ସହ୍ୟ କରି ପାରେ ନାହିଁ । ପାଦ ତଳରୁ ଆପଣାକୁ ଘୁଞ୍ଚାଇ ନେଇ ଆଶ୍ରିତ ଲୋକକୁ ବିପଦରେ ପକାଏ । କିନ୍ତୁ ପ୍ରକୃତ ନିଦା ମାଟି ଲୁହା, ପଥରର ମଧ୍ୟ ବୋଝ ସମ୍ଭାଳି ପାରେ । କୋଠା ପ୍ରକୃତ ତାରି ଉପରେ ହିଁ ଗଢ଼ା ହୋଇଥାଏ । ନୀଳିମା ଅପାକୁ ସବୁ ଝିଅମାନେ ବୁଝି ପାରିବେ ନାହିଁ । କିନ୍ତୁ ନିଜକୁ ନେଇ ଖେଳିବାରେ ଯେଉଁମାନଙ୍କର ଦିନ ବିତି ଯାଇଛି । ମଥାରୁ ଭାର ଓହ୍ଲାଇ ଦେଇ ଯେଉଁମାନେ ଅତିକ ପାଇଁ ଶାନ୍ତିରେ ନିଃଶ୍ୱାସ ମାରିବା ପାଇଁ ଇଚ୍ଛା କରନ୍ତି—ସେଇମାନେ ହିଁ ତାକୁ ବୁଝି ପାରିବେ ।

: ହୁଁ । କହି ଆଶୁବାବୁ ଆପେ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲେ । କହିଲେ—ଶିବନାଥ ?

: ଯେଉଁଦିନଠାରୁ ତାଙ୍କୁ ପ୍ରକୃତରେ ବୁଝି ପାରିଛି । ସେହିଦିନଠାରୁ ମୋ ମନରୁ କ୍ଷୋଭ, ଅଭିମାନ ସବୁ ପୋଛି ହୋଇ ଯାଇଛି । ଜ୍ୱାଳା ଲିଭି ଯାଇଛି । ଗୁଣୀ, ଶିଳ୍ପୀ, ଶିବନାଥ—କବି ମଧ୍ୟ । ଚିରସ୍ଥାୟୀ ପ୍ରେମ ତାଙ୍କ ଯାତ୍ରା ପଥରେ ବାଧା, ସୃଷ୍ଟିର ଅନ୍ତରାୟ, ଏବଂ ସ୍ୱଭାବର ଚରମ ପରିପନ୍ଥୀ । ଏହି କଥା ତ ସେଦିନ ତାଙ୍କ ଆଗରେ ଠିଆ ହୋଇ କହିବା ପାଇଁ ଇଚ୍ଛା କରିଥିଲି । ଝିଅମାନେ କେବଳ ଉପଲକ୍ଷ୍ୟ, ନଚେତ୍ ସେ ଭଲ ପାଆନ୍ତି ଆପଣାକୁ । ନିଜ ମନଟାକୁ ଦୁଇଭାଗ କରି ଏମାନେ ଦୁନିଆଁରେ ଲୀଳା କରନ୍ତି । ତା ପରେ ସେଇଟା ଶେଷ ହୋଇଯାଏ ବୋଲି ତାଙ୍କ କଣ୍ଠରୁ ସ୍ୱର ଏପରି ବିଚିତ୍ର ଭାବରେ ବାଜି ଉଠେ । ଶୁଣି ଜମାଟ ବାନ୍ଧି ଯାଏ । ମୁଁ ତ ଜାଣେ ଶିବନାଥ ତାକୁ ଠକି ନାହାଁନ୍ତି,

ବରଂ ମଣି ଅପେ ଭୁଲ କରି ବସିଛୁ । ସୂର୍ଯ୍ୟାସ୍ତ କାଳରେ ମେଘ ଉପରେ ଯେଉଁ ଆଲୁଅ ଝଲୁଛି ଉଠେ ମଉସା, ତାହା ସ୍ଥାୟୀ ନୁହେ ଏବଂ ମେଘର ଆପଣା ବର୍ଣ୍ଣ ନୁହେଁ । କିନ୍ତୁ ତାହା ବୋଲି ତାକୁ ମିଥ୍ୟା ବୋଲି କହି ପାରିବ କିଏ ?

: ତାହା ଜାଣେ । ରଙ୍ଗ ନେଇ ତ ମଣିଷର ଦିନ ସରେ ନାହିଁ ମାଆ, ଉପମା ଦେଲେ ତାର ଦ୍ୟଆ ପୁରିବ ନାହିଁ । କ'ଣ ହେବ ତାପରେ କହିଲୁ ମାଆ ?

କମଳର ମୁହଁ କ୍ଲାନ୍ତିରେ ମଳିନ ହୋଇ ଆସିଲା । କହିଲା—ସେଥିପାଇଁ ତ ଗୋଟାଏ ପ୍ରଶ୍ନ ବାରମ୍ବାର ମନକୁ ଆସୁଛି, ମଉସା । ବିଦାୟ ଯିବା ସମୟରେ ଏଇ ଆଶୀର୍ବାଦ ଟିକକ ଦେଇଯାଆନ୍ତୁ ମଣି ଯେପରି ଦୁଃଖ ଭିତରେ ପୁଣି ନିଜକୁ ଖୋଜି ପାଏ । ଯାହା ଝରିବାର କଥା ତାହା ଝରିଯାଇ ସେଦିନ ସେ ଯେପରି ନିଃସଂଶୟ ଭାବରେ ଆପଣାକୁ ଚିହ୍ନି ପାରେ । ଆଉ ଆପଣଙ୍କୁ ମଧ୍ୟ କହୁଛି ସଂସାରରେ ଅନେକ ଘଟଣା ଭିତରେ ବିବାହଟା ହେଉଛି ଗୋଟାଏ ଘଟଣା—ତାହାଠାରୁ ଅଧିକା କିଛି ନୁହେଁ । ଏଇଟାକୁ ନାରୀ ଜୀବନର ସର୍ବସ୍ୱ ବୋଲି ଯେଉଁଦିନଠାରୁ ମାନି ନେଇଛନ୍ତି ସେଇଦିନଠାରୁ ହିଁ ନାରୀ ଜୀବନରେ ଟ୍ରାଜେଡ଼ି ଆରମ୍ଭ ହୋଇଛି । ଦେଶାନ୍ତର ଯିବା ପୂର୍ବରୁ ନିଜ ମନର ଏହି ମିଥ୍ୟା ବନ୍ଧନରୁ ନିଜ ଝିଅକୁ ମୁକ୍ତି ଦେଇ ଯାଆନ୍ତୁ ମଉସା । ଏହାହିଁ ହେଉଛି ଆପଣଙ୍କ ନିକଟରେ ଶେଷ ମିନତି ।

ହଠାତ୍ ଦ୍ୱାରବନ୍ଧ ପାଖରେ ପଦ ଶବ୍ଦ ଶୁଣାଗଲାକ୍ଷଣି ଉଭୟେ ଗୁହିଁ ଦେଖିଲେ । ହରେନ୍ଦ୍ର ପ୍ରବେଶ କରି କହିଲା—ମୁଁ ନୂଆ'ଉଙ୍କୁ ନେଇ ଯିବା ପାଇଁ ଆସିଛି ଆଶୁବାବୁ । ସେ ପ୍ରସ୍ତୁତ ହୋଇ ରହିଛନ୍ତି—ମୁଁ ଗାଡ଼ି ଆଣିବା ପାଇଁ ଲୋକ ପଠାଇଛି ।

ଆଶୁବାବୁଙ୍କ ମୁହଁ ପାଂଶୁ ବର୍ଣ୍ଣ ହୋଇଗଲା । କହିଲେ—କ'ଣ ଏକ୍ଷଣି ? କିନ୍ତୁ ଆଉ ତ ବେଳ ନାହିଁ ।

ହରେନ୍ଦ୍ର କହିଲା—ଦଶ କୋଡ଼ିଏ କୋଶ ଦୂର ନୁହଁ । ପାଞ୍ଚ ମିନିଟ ଭିତରେ ପହଞ୍ଚିଯିବୁ ।

ତା କଥା ଯେପରି ଗମ୍ଭୀର କଥା ମଧ୍ୟ ସେହିଭଳି ନୀରସ ।

ଆଶୁବାବୁ ଆସ୍ତେ ଆସ୍ତେ କହିଲେ । ତା ଅବଶ୍ୟ ସତ । କିନ୍ତୁ ସନ୍ଧ୍ୟା ହେଲାଣି । ଆଜି କ'ଣ ନଗଲେ ଚଳନ୍ତା ନାହିଁ ?

ହରେନ୍ଦ୍ର ପକେଟରୁ କାଗଜ ଖଣ୍ଡିଏ ବାହାର କରି କହିଲା ଆପଣ ହିଁ ବିଚାର କରନ୍ତୁ । ସେ ଲେଖିଛନ୍ତି—ସୁନା ଭାଇଟା ମୋର, ଏଠାରୁ ମୋତେ ଯଦି ନେଇ ଯିବାର ଉପାୟ ନ କରି ପାରିବ ତେବେ ମୋତେ ଜଣାଇବ ।

—ନୀଳିମା

ଆଶୁବାବୁ ସ୍ତବ୍ଧ ହୋଇ ରହିଲେ ।

ସୁରେନ୍ଦ୍ର କହିଲା—ନିକଟ ଆତ୍ମୀୟ ସମ୍ପର୍କ ବୋଲି ମୁଁ ଦାବୀ କରି ପାରୁ ନାହିଁ । କିନ୍ତୁ ଆପଣ ତ ତାଙ୍କୁ ଜାଣନ୍ତି । ଏ ଚିଠି ପରେ ଆଉ ବିଳମ୍ବ କରିବା ପାଇଁ ଭରସା ପାଇଲି ନାହିଁ ।

: ତୁମ ବସାରେ ତ ରହିବେ ?

: ହଁ, ଅନ୍ତତଃ ଏହାଠାରୁ ସୁବ୍ୟବସ୍ଥା ଯେତେ ଦିନ ପର୍ଯ୍ୟନ୍ତ ନ ହୋଇ ପାରୁଛି । ଭାବିଲି ଏ ଘରେ ତାଙ୍କର ଯତ୍ନ ଏତେ ଦିନ ବଢ଼ିଯାଇ ପାରିଲା, ତେବେ ସେ ମୋ ବସାରେ ରହିଲେ ଦୋଷ ହେବ ନାହିଁ ।

ଆଶୁବାବୁ ନୀରବ ରହିଲେ । ଏ କଥା କହି ପାରିଲେ ନାହିଁ ଯେ ଏତେ ଦିନ ଧରି ଏ ପ୍ରକାରର ଯୁକ୍ତି ଥିଲା କେଉଁଠି ? ବେହେରା ଆସି ଘରେ ପହଞ୍ଚି ଜଣାଇଲା, ମେମ ସାହେବଙ୍କର ଜିନିଷପତ୍ର ନେବା ପାଇଁ ମାଜିଷ୍ଟ୍ରେଟ ସାହେବଙ୍କ କୋଠିରୁ ଲୋକ ଆସିଛି ।

ଆଶୁବାବୁ କହିଲେ—ତାର ଯାହା କିଛି ଜିନିଷପତ୍ର ଅଛି ଦେଖି ଦେଇ ଦେ ।

କମଳର ଅଖିରେ ଆଖି ପଡ଼ିବାକ୍ଷଣି କହିଲେ—କାଲି ସକାଳେ ଏ ଘରୁ ବେଲା ଚାଲି ଯାଇଛି । ମାଜିଷ୍ଟ୍ରେଟଙ୍କ ସ୍ତ୍ରୀ ତାର ବାନ୍ଧବୀ । ଗୋଟାଏ ସୁଖବର ତୋତେ ଜଣାଇବାକୁ ଭୁଲି ଯାଇଛି କମଳ । ବେଲାର ସ୍ୱାମୀ ତାକୁ ନେବା ପାଇଁ ଆସିଛନ୍ତି—ବୋଧହୁଏ ସେମାନଙ୍କ ଭିତରେ ଗୋଟାଏ reconciliation ହେଲା ।

କମଳ ଆଦୌ ବିସ୍ମିତ ନ ହେଲା ପରି କହିଲା—ଏଠାକୁ କିନ୍ତୁ ଆସିଲେ ନାହିଁ କାହିଁକି ?

: ବୋଧହୁଏ ଆମ୍ଭ ଗାରିମା ବାଧା ଦେଲା । ଯେତେବେଳେ ବିବାହ-ବନ୍ଧନ ଛିନ୍ନ କରିବା ପାଇଁ ମାମଲା ରୁଜୁ ହେଲା ସେତେବେଳେ ବେଲାର ବାପାଙ୍କ ଚିଠିର ଉତ୍ତର ଦେବାକୁ ଯାଇ ମୁଁ ମୋର ସମ୍ମତି ଜଣାଇଥିଲି । ତା. ସ୍ୱାମୀ ସେହିଟାକୁ ବୋଧହୁଏ କ୍ଷମା ଦେଇ ପାରି ନାହିଁ ।

: ଆପଣ ସମ୍ମତି ଦେଇଥିଲେ ?

: ଏଥିରେ ବିସ୍ମିତ ହେବାର କ'ଣ ଅଛି କମଳ ? ଚରିତ୍ର ଦୋଷରେ ଯେଉଁ ସ୍ୱାମୀ ଅପରାଧୀ ତାକୁ ଛାଡ଼ପତ୍ର ଦେବାରେ ମୁଁ ତ ଅନ୍ୟାୟ କିଛି ଦେଖି ପାରୁ ନାହିଁ । ଏହି ଅଧିକାର କ'ଣ କେବଳ ସ୍ୱାମୀର ରହିଛି ଆଉ ସ୍ତ୍ରୀର ନାହିଁ, ଏକଥା ତ ମୁଁ କୌଣସି ମତେ ସ୍ୱୀକାର କରିପାରିବି ନାହିଁ ।

କମଳ ନିର୍ବାକ ହୋଇ ରହିଲା । ତାଙ୍କ ଚିନ୍ତା ଭିତରେ ଯେ କପଟତା ନାହିଁ, ଅନ୍ତର ଓ ବାହାର ଯେ ଗୋଟିଏ ସୁରରେ ବନ୍ଧା ଏହି କଥାଟା ହିଁ ତାର ଆହୁରି ଥରକ ପାଇଁ ସ୍ମରଣ ହେଲା ।

ଜାଳମା ଦ୍ୱାର ବନ୍ଦ ନିକଟରେ ନମସ୍କାର କରି ଚାଲିଗଲା । ଘର ଭିତରକୁ ଆସିଲା ନାହିଁ କିମ୍ବା କାହାକୁ ମଧ୍ୟ ଚାହିଁଲା ନାହିଁ ।

ଅନେକ ସମୟ ପର୍ଯ୍ୟନ୍ତ କମଳ ସେହିପରି ଭାବରେ ତାଙ୍କ ହାତ ଉପରେ ହାତ ବୁଲାଇବାରେ ଲାଗିଥାଏ; କିନ୍ତୁ ଦୁହିଁଙ୍କ ଭିତରେ କିଛି କଥାବାର୍ତ୍ତା ହେଲା ନାହିଁ । ଯିବା ପୂର୍ବରୁ ଆସ୍ତେ ଆସ୍ତେ କହିଲା—କେବଳ ଯଦୁ ବ୍ୟତୀତ ଏ ଘରେ ପୁରୁଣା ଲୋକ ବୋଲି ଆଉ କେହି ରହିଲେ ନାହିଁ ।

: ଯଦୁ ?

: ହଁ, ଆପଣଙ୍କ ପୁରୁଣା ଚାକର ।

: କିନ୍ତୁ ସେ ତ ନାହିଁ ମାଆ । ତା ପିଲା ଦେହ ଖରାପ । ପାଞ୍ଚ ଦିନ ହେବ ଛୁଟି ନେଇ ତା ଗାଆଁକୁ ଚାଲି ଗଲାଣି ।

ପୁଣି ଅନେକ ସମୟ ପର୍ଯ୍ୟନ୍ତ କୌଣସି କଥାବାର୍ତ୍ତା ହେଲା ନାହିଁ । ଆଶୁବାବୁ ହଠାତ୍ ପଚାରିଲେ—ସେହି ରାଜେନ୍ ପିଲାଟିର କିଛି ଖବର କ'ଣ ଜାଣୁ କମଳ ?

: ନା, ମଉସା ।

: ଯିବା ପୂର୍ବରୁ ତାକୁ ଥରେ ଦେଖିବା ପାଇଁ ଇଚ୍ଛା ହୁଏ । ତୁମେ ଦୁହେଁ ଯେପରି ଭାଇ-ଭଉଣୀ । ଗୋଟିଏ ଗଛର ଦୁଇଟି ଫଳ । ଏହା କହି ସେ ଚୁପ୍ ହେବାକୁ ଯାଇ ଯାଇ ହଠାତ୍ ଯେପରି କଥାଟା ତାଙ୍କର ମନେ ପଡ଼ିଗଲା—କହିଲେ—ତୁମ ଦୁହିଁଙ୍କର ଯେପରି ମହାଦେବଙ୍କ ଭଳି ଦାରିଦ୍ର୍ୟ । ଟଙ୍କା, କଉଡ଼ି, ଐଶ୍ୱର୍ଯ୍ୟ ଓ ସମ୍ପଦ ଅପରିମିତ । କେଉଁଠାରେ ଯେପରି ସେ ସବୁ ଅନ୍ୟମନସ୍କ ଭାବରେ ଫିଙ୍ଗି ଦେଇ ଆସିଛ । ଆଉ ଦେଖିବାର ଗରଜ ମଧ୍ୟ ନାହିଁ—ଏଇ ପରି ତାଚ୍ଛଲ୍ୟ ।

କମଳ ହସି ହସି କହିଲା—ସେପରି କ'ଣ କହୁଛନ୍ତି ମଉସା ? ରାଜେନ୍ କଥା ଜାଣି ନାହିଁ । କିନ୍ତୁ ଦି' ପଇସା ପାଇବା ପାଇଁ ମୁଁ ଦିନରାତି କେତେ ଯେ ପରିଶ୍ରମ କରେ !

: ଶୁଣିଛି । ସେଥି ପାଇଁ ତ ବସି ବସି ଭାବେ ।

ସେଦିନ ବସାକୁ ଫେରିବା ପାଇଁ କମଳର ବିଳମ୍ବ ହେଲା । ଯିବା ବେଳେ ଆଶୁବାବୁ କହିଲେ— ଭୟ ନାହିଁ ମାଆ, ଯିଏ ମୋତେ କଦାପି ଛାଡ଼ି ରହି ପାରି ନାହିଁ ସେ ଆଜି ମଧ୍ୟ ଛାଡ଼ି ରହିପାରିବ ନାହିଁ । ନିରୁପାୟର ଉପାୟ ସେହି ହିଁ କରିବେ । ଏହା କହି ସେ ଆଗରେ ଟଙ୍ଗା ହୋଇଥିବା ତାଙ୍କର ପରଲୋକଗତା ପତ୍ନୀର ଛବି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଲେ ।

କମଳ ବସାରେ ପହଞ୍ଚି ଦେଖିଲା—ସହଜରେ ଉପରକୁ ଯିବାର ଶକ୍ତି ନାହିଁ । ରାଶିକୃତ ବାକ୍ସ, ପେଟରା ଜମା ହୋଇ ସିଡ଼ିକୁ ଯିବା ବାଟ ବନ୍ଦ । କ୍ରୋଧ ଭିତରଟା ତାର କମ୍ପି ଉଠିଲା । କୌଣସିମତେ ଗୁମ୍ଫା କରି ସିଡ଼ି ଦେଇ ଉପରକୁ ଉଠି ସେ ଶୁଣିଲା—ପାଖ ଘେଷାଇ ଘରେ ଖାଟ ଶୁଭୁଛି । ଉର୍ଦ୍ଧ୍ଵମାନ ଦେଖିଲା—ଅଜନ୍ତ ହିନ୍ଦୁସ୍ଥାନ ଚାକରାଣୀଟି ସାହାଯ୍ୟରେ ଷ୍ଟୋଭରେ ଡେକ୍‌ଚିରେ ପାଣି ଗରମ କରୁଛି ଏବଂ ଚାହା, ଚିନି ପ୍ରଭୃତିର ସନ୍ଧାନରେ ଘରର ଚାରି ଦିଗକୁ ତନ୍ନ ତନ୍ନ କରି ଖୋଜି ଚାଲିଛି ।

: ଏ କି କାଣ୍ଡ ?

ଅଜନ୍ତ ଚମକି ପଡ଼ି ଫେରି ଚାହିଁଲା । କହିଲା—ଚାହା, ଚିନି କ'ଣ ତୁମେ ଲୁହା ସିନ୍ଧୁକରେ ବନ୍ଦ କରି ରଖ କି ? ପାଣି ଫୁଟି ଫୁଟି ଯେ ମରି ଯିବାକୁ ବସିଲାଣି···

: କିନ୍ତୁ ମୋ ଘର ଭିତରେ ଆପଣ ଖୋଜି ପାଇବେ କିପରି ? ଚାଲ ଆସନ୍ତୁ । ମୁଁ ତିଆରି କରି ଦେଉଛି ।

: ଅଜନ୍ତ ପାଖକୁ ଆସି ଠିଆ ହେଲା ।

କମଳ କହିଲା—କିନ୍ତୁ ଏ କି ବ୍ୟାପାର ? ବାକ୍ସ, ଟ୍ରଙ୍କ, ପୁଟୁଳା, ପୁଟୁଳି—ଏ ସବୁ କାହାର ?

: ମୋର । ହରେନ ବାବୁ ନୋଟିସ ଦେଇଛନ୍ତି ।

: ଦେଇଥିଲେ ଯିବା ପାଇଁ ନୋଟିସ୍ ଦେଇଥିବେ । କିନ୍ତୁ ଏଠାକୁ ଆସିବା ପାଇଁ ତୁମକୁ ବୁଦ୍ଧି କିଏ ଦେଲା ?

: ଏଇଟା ନିଜର । ଏତେ ଦିନ ଧରି ପର ବୁଦ୍ଧିରେ ଦିନ କଟିଛି । ଏଥର ନିଜର ବୁଦ୍ଧି ଖୋଜି ବାହାର କରିଛି ।

: ବେଶ କରିଛନ୍ତି । କିନ୍ତୁ ଏଗୁଡ଼ାକ କ'ଣ ଏଇମିତି ତଳେ ପଡ଼ି ରହିଥିବ ? ଚୋରି ହୋଇଯିବ ଯେ ?

ଏହା ଶୁଣି ଅଜନ୍ତ ବ୍ୟସ୍ତ ହୋଇ କହି ଉଠିଲା ଯାଇ ନାହିଁ ତ ! ଚମଡ଼ା ବାକ୍ସ ଭିତରେ ଅନେକ ଗୁଡ଼ାଏ ଟଙ୍କା ଅଛି ଯେ ··

କମଳ ମୁଣ୍ଡ ହଲାଇ କହିଲା—ଖୁବ୍ ଭଲ । ଗୋଟିଏ ଜାତିର ମଣିଷ ଅଛନ୍ତି ସେମାନେ ଅଶୀ ବର୍ଷରେ ମଧ୍ୟ ସାବାଳକ ହୁଅନ୍ତି ନାହିଁ । ସେମାନଙ୍କ ଉପରେ ଜଣେ ଅଭିଭାବକ ସଦାବେଳେ ଦରକାର । ଏହି ବ୍ୟବସ୍ଥାକୁ ଭଗବାନ କୃପା କରି ଦିଅନ୍ତୁ । ଚାହା ଜଳଖିଆ ବର୍ତ୍ତମାନ ପାଇଁ ବନ୍ଦ ଥାଉ । ତଳକୁ ଆସନ୍ତୁ । ଆଗ ଧରାଧରି କରି ସାଇତି ରଖିବାର ଚେଷ୍ଟା କରିବା ।

ଘର ମାଲିକ ଏଇ ମାଝ ପୂର୍ବ ମାସର ଘରଭଡ଼ା ଲୁଟାଇ କରି ନେଇଗଲା । ଇତସ୍ତତଃ ବିକ୍ଷିପ୍ତ ଜିନିଷ ପତ୍ର ମଝିରେ ବିଶୃଙ୍ଖଳ କକ୍ଷ ଭିତରେ କ୍ୟାନ୍‌ଭାସ ଇଜି ଚେୟାରରେ ଅଜିତ ଆଖି ବୁଜି ଶୋଇଥାଏ । ମୁହଁ ତାର ଶୁଖିଲା । ଦେଖିଲେ ହିଁ ମନେହୁଏ ବୋଧହୁଏ ଚିନ୍ତାଗ୍ରସ୍ତ ମନ ଭିତରେ ସୁଖ ଲେଶ ମାତ୍ର ନାହିଁ । କମଳ ବନ୍ଧା-ବନ୍ଧି ହୋଇ ରହିଥିବା ଜିନିଷଗୁଡ଼ିକର ତାଲିକା ମିଳାଇ କାଗଜରେ ଟିପି ରଖୁଥିଲା । ଆସନ୍ନ ସ୍ଥାନ ତ୍ୟାଗ କାର୍ଯ୍ୟ ମଧ୍ୟରେ ତାର ଚଞ୍ଚଳତା ନାହିଁ, ଯେପରି ଏହା ପ୍ରାତ୍ୟହିକ ନିତ୍ୟମିତ ବ୍ୟାପାର । କେବଳ ନିଜେ ଯାହା ବେଶୀ ନୀରବତା ।

ସାନ୍ଧ୍ୟ ଭୋଜନ ପାଇଁ ସୁରେନ୍ଦ୍ର ନିକଟରୁ ନିମନ୍ତ୍ରଣ ଆସିଲା । ଲୋକ ହାତରେ ନୁହେଁ, ଡାକରେ । ଅଜିତ ଚିଠି ଖଣ୍ଡିକ ପଢ଼ିଲା । ଆଶୁବାବୁଙ୍କ ବିଦାୟ ଉପଲକ୍ଷ୍ୟରେ ଏହି ଭୋଜିର ଆୟୋଜନ । ପରିଚିତ ଅନେକ ଲୋକଙ୍କୁ ନିମନ୍ତ୍ରଣ କରି ଯାଇଛି । ତଳେ ଗୋଟିଏ କଣରେ ଲେଖା ଅଛି । ଭଉଣୀ କମଳ, ତୁ ଯେପରି ନିଶ୍ଚୟ ଆସିବୁ—ନୀଲିମା ।

ଅଜିତ ସେତକ ପଢ଼ି ପ୍ରଶ୍ନ କଲା—ଯିବ କି ?

: ଯିବ ତ ନିଶ୍ଚୟ । ନିମନ୍ତ୍ରଣ ଜିନିଷଟାକୁ ତୁଚ୍ଛ କରି ଏଡ଼ାଇ ଦେଇ ପାରିବି ଏତେ ବଡ଼ ଆସ୍ପର୍ଦ୍ଧା ମୋର ନାହିଁ । କିନ୍ତୁ ତୁମେ ?

ଅଜିତ ଦ୍ୱିଧାବିଜଡ଼ିତ ସ୍ୱରରେ କହିଲା—ସେଇ କଥା ହିଁ ଭାବୁଛି । ଆଜି ଦେହଟା ସେପରି···

: ତେବେ ଯିବାର ଆବଶ୍ୟକତା ନାହିଁ ।

ଅଜିତର ଆଖି ସେତେବେଳେ ଚିଠି ଉପରେ ରହିଥିଲା । ନଚେତ୍ କମଳ ଓଠ କଣରେ ପରିହାସର ଯେଉଁ ହସ ଟିକକ ଲାଗି ରହିଥିଲା ତାକୁ ନିଶ୍ଚୟ ଦେଖି ପାରିଥାନ୍ତା ।

ଯେପରି ପ୍ରକାରରେ ହେଉନା କାହିଁକି ବଙ୍ଗାଳୀଙ୍କ ମହଲରେ ପ୍ରଚାରିତ ହୋଇ ଯାଇଛି ଯେ ଉଭୟେ ଆଗ୍ରା ଛାଡ଼ି ଚାଲି ଯାଉଛନ୍ତି । କିନ୍ତୁ କି ଭାବରେ ଏବଂ କେଉଁଠାକୁ ଏ ସମ୍ପର୍କରେ ଲୋକମାନଙ୍କର କୌତୁହଳ ବର୍ତ୍ତମାନ ପର୍ଯ୍ୟନ୍ତ ସୁନିଶ୍ଚିତ ମୀମାଂସାରେ ପହଞ୍ଚି ପାରି ନାହିଁ । ଅକାଳ ମେଘ ଭଳି କେବଳ ଅନ୍ଦାଜ ଓ ଅନୁମାନରେ ସମସ୍ତେ ଭାସି ବୁଲୁଛନ୍ତି । ଅଥଚ ଜାଣିବା କଠିନ ନ ଥିଲା । କମଲକୁ ପଚାରିଲେ ଜଣା ଯାଇ ପାରନ୍ତା ସେମାନଙ୍କର ଗନ୍ତବ୍ୟ ସ୍ଥଳଟା ଅମୃତସର ସହରକୁ । କିନ୍ତୁ ଏହା ପଚାରିବା ପାଇଁ କେହି ଭରସା କରିପାରି ନାହାଁନ୍ତି ।

ଅଜିତର ବାପା ଥିଲେ ଗୁରୁ ଗୋବିନ୍ଦଙ୍କର ପରମ ଭକ୍ତ । ସେଥିପାଇଁ ଶିଖମାନଙ୍କର ମହାତୀର୍ଥ ଅମୃତସରରେ ସେ ଖାଲସା କଲେଜର ପାଖାପାଖି ପଡ଼ିଆରେ ଗୋଟିଏ ବଙ୍ଗଳା ଭଳି କୋଠି ତିଆରି କରିଥିଲେ । ସମସ୍ତ ଓ ସୁବିଧା ପାଇଲେ ଆସି ରହି କରି ଯାଆନ୍ତି । ତାଙ୍କ ମୃତ୍ୟୁ ପରେ ଘରଟା ଭଡ଼ା ଲାଗିଥିଲା । ସମ୍ପ୍ରତି ଖାଲି ହୋଇଛି । ଏହି ଘରଟିରେ ଦୁଇଜଣ କିଛି ଦିନ ବାସ କରିବେ । ମାଲ ପତ୍ର ଯିବ ଲରୀରେ ଏବଂ ପରେ ଶେଷ ସ୍ତରରେ ମଟର କାରରେ ଉଭୟେ ଯିବେ । ତାହାହିଁ ହେବ ପ୍ରଥମ ଦିନର ସ୍ମୃତି ଏଇଟା ଥିଲା କମଳର ଅଭିଳାଷ ।

ଅଜିତ ପଚାରିଲା—ହରେନ୍ଦ୍ର, ବସାକୁ ତୁମେ କ'ଣ ଏକା ଯିବ ?

: ଯିବି ନାହିଁ ? ଆଶ୍ରମର ଦୁଆର ତ ତୁମ ପାଇଁ ଖୋଲା ରହିଲା । ଯେତେବେଳେ ଖୁସି ଯାଇ ଦେଖା କରି ପାରିବ । କିନ୍ତୁ ମୋର ତ ଆଉ ଆଶା ନାହିଁ । ଶେଷଥର ପାଇଁ ଦେଖି ଆସିବି, କ'ଣ କହୁଛ ?

ଅଜିତ୍ ଚୁପ୍ ହୋଇ ରହିଲା । ସ୍ପଷ୍ଟ ଦେଖି ପାରିଲା ସେଠାରେ ନାନା ଛଳରେ, ତୀକ୍ଷ୍ଣ ଓ ବକ୍ର ଇଙ୍ଗିତ ଦ୍ୱାରା ବ୍ୟକ୍ତ ଓ ଅବ୍ୟକ୍ତ ଇସାରା ହିଁ ଆଜି ସମ୍ମୁଖରେ ଗୋଟିଏ ଏକାକିନୀ ରମଣୀକୁ ତ୍ୟାଗ କରିବା ଭଳି କାପୁରୁଷତା ବ୍ୟତୀତ ଆଉ କିଛି ହୋଇପାରେ ନାହିଁ । କିନ୍ତୁ କମଳ ସହିତ ସଙ୍ଗୀ ହେବାର ସାହସ ଯେପରି ନାହିଁ, ଆଜି ସେହିପରି ତାକୁ ନିଷେଧ କରିବାର ସାହସ ନାହିଁ ।

ନୂଆ ଗାଡ଼ି କିଣା ହୋଇ ଆସିଛି । ସନ୍ଧ୍ୟା ପରେ ଡ୍ରାଇଭର କମଳକୁ ନେଇ ଚାଲିଗଲା ।

ହରେନ୍ଦ୍ରର ବିମହଲା କୋଠାର ସେହି ହଲ ଘରଟାରେ ନୂତନ ଦାମୀ କାର୍ପେଟ ବିଛା ଯାଇ ଅତିଥିମାନଙ୍କ ପାଇଁ ସ୍ଥାନ କରିଯାଇଥାଏ—ଅନେକ ଗୁଡ଼ିଏ ଆଲୋକ ଜଳୁଥାଏ । କୋଳାହଳ ମଧ୍ୟ କମ୍ ଶୁଭୁ ନ ଥାଏ । ମଝିରେ ଆଶୁବାବୁ ଓ ତାଙ୍କୁ ଘେରି ଅନେକ ଭଦ୍ରଲୋକ । ବେଲା ଅସିଛି ଏବଂ ଆଉ ଜଣେ ଭଦ୍ର ମହିଳା ଆସିଥାନ୍ତି । ସେ ହେଉଛନ୍ତି ମ୍ୟାଜିଷ୍ଟ୍ରେଟଙ୍କ ଧର୍ମପତ୍ନୀ—ମାଲିନୀ । କିଏ ଜଣେ ଭଦ୍ରବ୍ୟକ୍ତି ଏ ଆଡ଼କୁ ପଛ କରି ସେମାନଙ୍କ ସହିତ ଗଳ୍ପ କରୁଥାନ୍ତି । ନୀଲିମା ନାହିଁ । ସମ୍ଭବତଃ ଅନ୍ୟତ୍ର କାର୍ଯ୍ୟରେ ନିଯୁକ୍ତା ।

ହରେନ୍ଦ୍ର ଘର ଭିତରେ ପ୍ରବେଶ କରି ଦେଖିଲା କମଳ ଏଣେ ଝରକା ପାଖରେ ଠିଆ ହୋଇଛି । ସବିସ୍ମୟରେ ସମ୍ବର୍ଦ୍ଧନା ଜଣାଇ କହିଲା—କମଳ ଯେ ! କେତେବେଳେ ଆସିଲ ? ଅଜିତ କାହିଁ ?

ସମସ୍ତଙ୍କ ଦୃଷ୍ଟି ଏକାଗ୍ରଭାବରେ ତା ଉପରେ ଝୁଙ୍କି ପଡ଼ିଲା । କମଳ ଦେଖିଲା ଯେଉଁ ଭଦ୍ରବ୍ୟକ୍ତି ଦୁଇଜଣ ମହିଳାଙ୍କ ସହିତ ଆଳାପରେ ରତ ଥିଲେ ସେ ଆଉ କେହି ନୁହଁନ୍ତି—ଅକ୍ଷୟ । ସାମାନ୍ୟ ଝଡ଼ି ଯାଇଛନ୍ତି । ଇନ୍‌ଫ୍ଲୁଏଞ୍ଜାକୁ ସିନା ଏଡ଼ାଇ ଚାଲିଯାଇଥିଲେ କିନ୍ତୁ ମେଲେରିଆ କବଳରୁ ବୋଧହୁଏ ରକ୍ଷା ପାଇ ପାରିନାହାନ୍ତି । ଭଲ ହେଲା ସେ ଫେରି ଆସିଛନ୍ତି । ନଚେତ୍ ଶେଷ ଥର ପାଇଁ ଦେଖା କରିବାର ସୁଯୋଗ ହୁଏତ ଘଟି ପାରି ନ ଥାନ୍ତା । ମନରେ ଦୁଃଖ ରହି ଯାଇଥାନ୍ତା ।

କମଳ କହିଲା—ଅଜିତ ବାବୁ ଆସି ପାରିଲେ ନାହିଁ । ତାଙ୍କ ଦେହ ଭଲ ନାହିଁ, ମୁଁ ଆସିଲିଣି ଅନେକ ବେଳୁ ।

: ଅନେକ ବେଳୁ ? ଥିଲେ କେଉଁଠାରେ ?

: ତଳେ । ପିଲାମାନଙ୍କ ସହି ଘରଗୁଡ଼ାକ ବୁଲିବୁଲି ଦେଖୁଥିଲି । ଦେଖୁଥିଲି ଧର୍ମକୁ ଫାଙ୍କି ଦେବା ସଙ୍ଗେ ସଙ୍ଗେ କର୍ମକୁ ଫାଙ୍କି ଦେଇଛନ୍ତି କି ନାହିଁ ? ଏହା କହି ସେ ହସିଦେଇ ଘର ଭିତରକୁ ଆସି ବସି ପଡ଼ିଲା ।

ସେ ଯେପରି ବର୍ଷାର ବନ୍ୟ ଲତା । ପଥର ପ୍ରୟୋଜନ ନାହିଁ । ଆପଣା ପ୍ରୟୋଜନ ହିଁ ସକଳ ସମସ୍ୟା ନେଇ ମାଟି ଫୁଟାଇ ଊର୍ଦ୍ଧ୍ୱକୁ ମଥା ଟେକିଛି । ପାରିପାର୍ଶ୍ୱିକ ବିରୁଦ୍ଧତା ପ୍ରତି ଭୟ ମଧ୍ୟ ନାହିଁ । ସେହିପରି କଣ୍ଟାବାଡ଼ ଘେରାଇ ବଞ୍ଚି ରହିବାର ପ୍ରଶ୍ନ ମଧ୍ୟ ବାହୁଳ୍ୟ । ଘରେ ଆସି ବସିଲା । କେତେ ସମୟ ଅବା ? ତଥାପି ମନେ ହେଲା, ରୂପରେ, ରସରେ, ଗୌରବର ସ୍ୱକୀୟ ମହିମାରେ ଗୋଟିଏ ଉଜ୍ଜ୍ୱଳ ଆଲୋକ ଯେପରି ସମସ୍ତ ଜନପ ଉପରେ ବିଚ୍ଛୁରିତ ହୋଇପଡ଼ିଲା ।

ଠିକ୍ ଏହି କଥାଟା ହିଁ ପ୍ରକାଶିତ ହୋଇପାରିଲା ହରେନ୍ଦ୍ର କଥାରେ । ଆଉ ଦୁଇଟି ନାରୀଙ୍କ ସମ୍ମୁଖରେ ଶାଳୀନତାରେ ହୁଏତ ତ୍ରୁଟି ଘଟିଲା; କିନ୍ତୁ ଆବେଗଭରେ କହି ଉଠିଲା—ଏତେ ସମୟ ପରେ ମିଳନ । ସଭାଟି ଆମର ପୂର୍ଣ୍ଣାଙ୍ଗ ହୋଇ ପାରିଲା । କମଳ ନ ଆସିଥିଲେ ହୁଏତ ଏହି କଥାଟି କହି ହୋଇପାରି ନ ଥାନ୍ତା ।

ଅକ୍ଷୟ କହିଲା—କାହିଁକି ? ଦର୍ଶନ ଶାସ୍ତ୍ରର କୌଣସି ସୂକ୍ଷ୍ମ ତତ୍ତ୍ୱଟି ଏଥିରେ କ'ଣ ପରିସ୍ଫୁଟ ହେଲା କି ? ଶୁଣେ ?

କମଳ ହସି ଦେଇ ହରେନ୍ଦ୍ରଙ୍କୁ ପ୍ରଶ୍ନ କଲା—ଏଥରକ କହନ୍ତୁ ? ଉତ୍ତରକୁ ଏହାର ଉତ୍ତର ?

ହରେନ୍ଦ୍ର ଏବଂ ଅନେକ ମୁହଁ ବୁଲାଇ ହସ ଲୁଚାଇବା ପାଇଁ ଚେଷ୍ଟା କଲେ ।

ଅକ୍ଷୟ ଧୀର କଣ୍ଠରେ ପ୍ରଶ୍ନ କଲା—କ'ଣ କମଳ ଚିହ୍ନି ପାରୁଛ ତ ?

ଆଶୁବାବୁ ମନେ ମନେ ବିରକ୍ତ ହୋଇ କହିଲେ—ତୁମେ ଚିହ୍ନି ପାରିଲେ ହିଁ ହେଲା । ତୁମେ ତ ଚିହ୍ନି ପାରିଛ ଅକ୍ଷୟ ?

କମଳ କହିଲା—ପ୍ରଶ୍ନଟି ଅନ୍ୟାୟ ଆଶୁବାବୁ । ମନୁଷ୍ୟକୁ ଚିହ୍ନିବା ତାଙ୍କର ନିଜସ୍ୱ ବୃତ୍ତି । ଏଠାରେ ସନ୍ଦେହ କରିବା ଅର୍ଥ ତାଙ୍କ ପେଷାକୁ ଆଘାତ ଦେବା ।

କଥାଟି ଏମିତି ଭାବରେ କହିଲା ଯେ ଏଥର ଆଉ କେହି ହସ ଚାପି ପାରିଲେ ନାହିଁ । କିନ୍ତୁ କାଳେ ପ୍ରତ୍ୟୁତ୍ତରରେ ଏହି ଦୁଃଶାସନ ଲୋକଟି କିଛି କୁତ୍ସିତ କଥା କହି ପକାଇବ ଏହି ଭୟରେ ସମସ୍ତେ ଶଙ୍କିତ ହୋଇ ଉଠିଲେ । ଆଜି ଭଳି ଦିନରେ ଅକ୍ଷୟକୁ ଡାକିବା ପାଇଁ ହରେନ୍ଦ୍ରର ଆଦୌ ଇଚ୍ଛା ନ ଥିଲା । କିନ୍ତୁ ସେ ବହୁଦିନ ପରେ ଫେରିଛି । ନ ଡାକିଲେ ଅସୁନ୍ଦର ହେବ ଭାବି ସେ ନିମନ୍ତ୍ରଣ କରିବସିଛି । ଭୟରେ ଜଡ଼ ସଡ଼ ହୋଇ ବିନୟର ସହିତ କହିଲା—ଆମ ଏଇ ସହରରୁ କ'ଣ ଏଇ; ଦେଶରୁ ଆଶୁବାବୁ ଚାଲି ଯାଉଛନ୍ତି । ତାଙ୍କ ସହିତ ପରିଚିତ ହେବା ଯେ କୌଣସି ଲୋକ ପକ୍ଷରେ ସୌଭାଗ୍ୟର କଥା । ସେହି ସୌଭାଗ୍ୟ ଆମେମାନେ ପାଇ ପାରିଛେ । ଆଜି ତାଙ୍କର ଦେହ ଅସୁସ୍ଥ । ମନ ଅବସନ୍ନ । ଆଜି ଆମେମାନେ ଯେପରି ସୌଜନ୍ୟର ସହିତ ତାଙ୍କୁ ବିଦାୟ ଦେଇ ପାରିବା ।

କଥା କେଇପଦ ସାମାନ୍ୟ, କିନ୍ତୁ ଏହି ପ୍ରୌଢ଼, ସହୃଦୟ ବ୍ୟକ୍ତିଟିର ମୁହଁରୁ ବାହାରିବା ହେତୁ ସମସ୍ତଙ୍କ ହୃଦୟକୁ ତାହା ସ୍ପର୍ଶ କରି ପାରିଲା ।

ଆଶୁବାବୁ ସଙ୍କୋଚ ବୋଧ କଲେ । କଥାବାର୍ତ୍ତା ତାଙ୍କୁ କେନ୍ଦ୍ର କରି ଆହୁରି ନ ବଢ଼ୁ ଏହି ଆଶଙ୍କା କରି ସେ ଶୀଘ୍ର ଅନ୍ୟକଥା ପକାଇ କହି ଉଠିଲେ—ଅକ୍ଷୟ ଖବର ପାଇଛ ହରେନ୍ଦ୍ରର ବ୍ରହ୍ମଚର୍ଯ୍ୟ ଆଶ୍ରମଟା ଆଉ ନାହିଁ । ରାଜେନ ଆଗରୁ ବିଦାୟ ନେଇ ଚାଲି ଯାଇଥିଲା । ସେଦିନ ସତୀଶ ମଧ୍ୟ ଚାଲିଗଲା । ସେଇଁ କେତୋଟି ପିଲା ବର୍ତ୍ତମାନ ଅଛନ୍ତି, ହରେନ୍ଦ୍ରର ଅଭିଳାଷ ଜଗତର ସରଳ ପଥରେ ସେମାନଙ୍କୁ ମଣିଷ କରି ତିଆରି କରିବା । ତୁମେମାନେ ସମସ୍ତେ ଅନେକ ଦିନ ଅନେକ କଥା କହିଛ କିନ୍ତୁ ଫଳ କିଛି ହୋଇ ନାହିଁ । ତୁମମାନଙ୍କର କର୍ତ୍ତବ୍ୟ ହେଉଛି କମଳକୁ ଧନ୍ୟବାଦ ଦେବା ।

ଅକ୍ଷୟ ଅନ୍ତରେ ଅନ୍ତରେ ଜଳି ଉଠି ଶୁଖିଲା ହସଟିଏ ହସି ଦେଇ କହିଲା—ଶେଷ କାଳରେ ଫଳ ଫଳିଲା ତାଙ୍କ କଥାରେ ? କିନ୍ତୁ ଯାହା କହନ୍ତୁ ଆଶୁବାବୁ । ମୁଁ କିନ୍ତୁ ଆଶ୍ଚର୍ଯ୍ୟ ହୋଇ ପାରିନାହିଁ । ଅନେକ ପୂର୍ବରୁ ମୁଁ ଏହିଆ ଅନୁମାନ କରି ପାରିଥିଲି ।

ହରେନ୍ଦ୍ର କହିଲା—କରିବେ ତ । ମନୁଷ୍ୟ ଚିହ୍ନିବା ଯେ ଆପଣଙ୍କର ପେଶା ।

ଆଶୁବାବୁ କହିଲେ—ତଥାପି ମୋର ମନେ ହୁଏ ସ୍ୱର୍ଗ ଦେବାର ଆବଶ୍ୟକତା ନ ଥିଲା । ସକଳ ଧର୍ମର ମୂଳ ମତ ହିଁ ଏକ । ସିଦ୍ଧିଲାଭ କରିବା ପାଇଁ କେବଳ କେତେକ ପ୍ରାଚୀନ ଆଚାର ବିଚାରକୁ ମାନି କରି ଚାଲିବା । ଯେଉଁମାନେ ମାନନ୍ତି ନାହିଁ କିମ୍ବା ପାଳନ କରି ପାରନ୍ତି ନାହିଁ ସେମାନେ ଅବା ନ ପାରିଲେ । କିନ୍ତୁ ପାରିବାର ଅଧିବସାୟ ଯେଉଁମାନଙ୍କର ରହିଛି ସେମାନଙ୍କୁ ନିରୁତ୍ସାହିତ କରି ଲାଭ କ'ଣ ? କ'ଣ କହୁଛ ଅକ୍ଷୟ ?

ଅକ୍ଷୟ କହିଲା—ନିଶ୍ଚୟ ।

କମଳ ଆଡ଼କୁ ଚାହିଁବା କ୍ଷଣି ସେ ଜୋରରେ ମୁଣ୍ଡ ହଲାଇ କହିଲା—ଆପଣଙ୍କର କଥାରୁ ଦୃଢ଼ ବିଶ୍ୱାସ ଥିଲା ପରି ଜଣା ପଡ଼ିଲା ନାହିଁ ଆଶୁବାବୁ. ବରଂ ଜଣାଗଲା ଅବିଶ୍ୱାସ ଓ ଅବହେଳା ଥିଲାପରି । ଏପରି ଭାବି ପାରିଥିଲେ ମୁଁ କଦାପି ଆଶ୍ରମ ବିରୁଦ୍ଧରେ ପଦେ କଥା ମଧ୍ୟ କହି ନ ଥାନ୍ତି । କିନ୍ତୁ ତାହା ତ ନୁହେଁ । ନୀତି, ନିୟମ, ଆଚାର, ବିଚାର ଯେ ମଣିଷ ପକ୍ଷରେ ଧର୍ମଠାରୁ ବଡ଼, ଯେପରି ବଡ଼ ହେଉଛନ୍ତି ରଜାଙ୍କ ଠାରୁ ରାଜ କର୍ମଚାରୀ ଦଳ ।

ଆଶୁବାବୁ ହସି ହସି କହିଲେ—ଯଦିଓ ହୋଇଥାଏ ତାହା ବୋଲି କ'ଣ ତୋ ଉପମାକୁ ଯୁକ୍ତି ବୋଲି ମାନି ନେବି ?

କମଳ ଯେ ପରିହାସ କରୁ ନାହିଁ ଏକଥା ତା ମୁହଁ ଦେଖି ଜଣା ପଡ଼ିଲା । କେବଳ କ'ଣ ଏହା ଉପମା ଆଶୁବାବୁ ? ତାହାଠାରୁ ଅଧିକା ବେଶୀ କିଛି ନୁହେଁ ? ସମସ୍ତ ଧର୍ମ ଯେ ପ୍ରକୃତରେ ଏକ, ଏକଥା ମୁଁ ମାନେ । ସବୁ କାଳରେ, ସବୁ ଦେଶରେ ସେହି ଏକ ଅଜ୍ଞେୟ ବସ୍ତୁଙ୍କ ପାଇଁ ଅସାଧ୍ୟ ସାଧନା ଚାଲିଛି । ମୁଠା ଭିତରେ ତ ତାଙ୍କୁ ପାଇ ହୁଏ ନାହିଁ । ଆଲୁଅ ଆଉ ପବନ ପାଇଁ ମଣିଷଙ୍କ ଭିତରେ କଳହ ନାହିଁ । ବିବାଦ ସୃଷ୍ଟି ହୋଇ ଥାଏ ଖାଦ୍ୟର ବଣ୍ଟନ ପାଇଁ । ଯାହା ଆୟତ୍ତ କରି ହୁଏ ତାକୁ ଦଖଲ କରି ଭବିଷ୍ୟତ ବଂଶଧରଙ୍କ ପାଇଁ ରଖି ଯିବାକୁ ହୁଏ । ଜୀବନର ପ୍ରୟୋଜନ ପାଇଁ ଏହା ହିଁ ହେଉଛି ଢେର ବଡ଼ ସତ୍ୟ । ବିବାହର ମୂଳ ଉଦ୍ଦେଶ୍ୟ ଯେ ସକଳ କ୍ଷେତ୍ରରେ ଏକ, ଏହାତ ସମସ୍ତେ ଜାଣନ୍ତି । କିନ୍ତୁ ତାକୁ କ'ଣ ସମସ୍ତେ ମାନି ଚଳି ପାରନ୍ତି ? ଆପଣ କହନ୍ତୁ ଅକ୍ଷୟ ବାବୁ, ଏହା ଠିକ୍ କି ନୁହେଁ ? ଏତିକି କହି ସେ ହସି ଦେଇ ମୁହଁ ଫେରାଇ ନେଲା ।

ଏଥର ନିହିତ ଅର୍ଥ ସମସ୍ତେ ବୁଝି ପାରିଲେ । କ୍ରୁଦ୍ଧ ଅକ୍ଷୟ କିଛି ଗୋଟାଏ କଡ଼ା କଥା କହିବା ପାଇଁ ଇଚ୍ଛା କରୁଥିଲା, କିନ୍ତୁ ତା ତୁଣ୍ଡରୁ ଭାଷା ବାହାରି ପାରିଲା ନାହିଁ ।

ଆଶୁବାବୁ କହିଲେ—ଅଥଚ ତୋର କମଳ ସମସ୍ତ ଆଚାର, ବିଚାର, ନୀତି, ନିୟମ ପ୍ରତି ଘୋର ଅବଜ୍ଞା । କିଛି ବି ମାନିବାକୁ ପ୍ରସ୍ତୁତ ନୁହଁ ? ସେଥିପାଇଁ ତ ତୋତେ ବୁଝିବା ଏତେ ଶକ୍ତ ହୋଇ ଉଠିଛି ।

କମଳ କହିଲା—କିଛି ଶକ୍ତ ନୁହଁ । ଥରକ ପାଇଁ ସାମ୍ନାର ପର୍ଦାଟା ଘୁଞ୍ଚାଇ ଦିଅନ୍ତୁ । ଆଉ କେହି ନରୁହନ୍ତୁ; ଆପଣଙ୍କୁ କିନ୍ତୁ ବୁଝିବା ପାଇଁ ବିଳମ୍ବ ହେବ ନାହିଁ । ନଚେତ୍ ଆପଣଙ୍କର ସ୍ନେହ ଅବା ମୁଁ ପାଇ ପାରିଥାନ୍ତି କପରି ? ମଝିରେ ଯେ କୁହୁଡ଼ିର ଅନ୍ଧକାର ନ ଥିଲା ତାହା ନୁହେଁ, ତଥାପି ତ ପାଇ ପାରିଲି । ମୁଁ ଜାଣେ ଆପଣଙ୍କୁ କଷ୍ଟ ଲାଗୁଛି କିନ୍ତୁ ନୀତି, ନିୟମ, ଆଚାର ବିଚାରକୁ ମିଥ୍ୟା ବୋଲି କହି ମୁଁ ଉଡ଼ାଇ ଦେବା ପାଇଁ ଚାହେଁ ନାହିଁ । ଚାହେଁ କେବଳ ଏହାର ପରିବର୍ତ୍ତନ । ଏହି ଯେ ଅବଜ୍ଞା କରୁଛି କାରଣ ମୂଲ୍ୟ ଏହାର ଜାଣେ ବୋଲି ତ । ମିଥ୍ୟା ବୋଲି ଜାଣିଲେ ମିଥ୍ୟା ସହିତ ସୁର ମିଳାଇ ମିଥ୍ୟା ଶ୍ରଦ୍ଧାଦ୍ୱାରା ସମସ୍ତଙ୍କ ସଙ୍ଗେ ମାନ ଚଳନ୍ତି—ଏତେ ଟିକିଏ ହେଲେ ବିଦ୍ରୋହ କରନ୍ତି ନାହିଁ ।

ଟିକିଏ ଅଟକି ଯାଇ କହିଲା—ୟୁରୋପରେ ରେନେସାଁର ଦିନ ଗୁଡ଼ିକ ଥରକ ପାଇଁ ମନେ ପକାନ୍ତୁ ଦେଖି । ସେମାନେ ସବୁ କିଛି ନୂତନ ସୃଷ୍ଟି କରିଗଲେ । କେବଳ ହାତ ଦେଲେ ନାହିଁ ନୀତି, ନିୟମ, ଆଚାର ବିଚାର ଉପରେ । ପୁରୁଣା ଦେହରେ ଟଟକା ରଙ୍ଗ ମାଖି ତଳେ ତଳେ ସେମାନେ ପୂଜା ଦେବାକୁ ଲାଗିଲେ । ଭିତରକୁ ଚେର ଗଲା ନାହିଁ । ସୌଖୀନର ଫେସନ ଦୁଇ ଦିନରେ ମିଳାଇ ଗଲା । ମୋର ଭୟ ଥିଲା ହରେନ୍ ବାବୁଙ୍କର ଉଚ୍ଚ ଅଭିଳାଷ ହୁଏତ ଏଇପରି ଫାଙ୍କା ହୋଇଯିବ । କିନ୍ତୁ ଆଉ ସେ ଭୟ ନାହିଁ । ସେ ସମ୍ଭାଳି ନେଇ ପାରିଛନ୍ତି—କହି ସେ ହସିବାକୁ ଲାଗିଲା ।

ଏ ହସରେ କିନ୍ତୁ ହରେନ୍ ଯୋଗ ଦେଇ ପାରିଲେ ନାହିଁ । ଗମ୍ଭୀର ହୋଇ ରହିଲେ । କାମଟା ସେ କରିଛି ସତ, କିନ୍ତୁ ଅନ୍ତର ଭିତରୁ ଠିକ୍ ମତ ଉତ୍ତର ପାଇ ପାରି ନାହିଁ । ମନ ଭିତରଟା ରହି ରହି ମଝିରେ ଭାରି ହୋଇ ଉଠୁଥିଲା । କହିଲେ—ମୁସ୍କିଲ କଥା ଏଇ ଯେ ତୁମେ ଭଗବାନଙ୍କୁ ମାନ ନାହିଁ । ମୁକ୍ତିରେ ମଧ୍ୟ ତୁମର ବିଶ୍ୱାସ ନାହିଁ । କିନ୍ତୁ ଯେଉଁମାନେ ଏହି ଅଜ୍ଞେୟ ବସ୍ତୁକୁ ଜାଣିବା ପାଇଁ ସାଧନାରେ ରତ ଅଛନ୍ତି, ତାଙ୍କ ତତ୍ତ୍ୱ ନିରୂପଣ କରିବା ପାଇଁ ବ୍ୟଗ୍ର ହୋଇ ଉଠିଛନ୍ତି, ସେମାନଙ୍କ ପକ୍ଷରେ କଠୋର ନିୟମ ଏବଂ ଆଚାର ପାଳନ ନ କରିଲେ ନ ଚଳେ । ଆଶ୍ରମ ଗଢ଼ି ଦେଇ ମୁଁ ଅହଂକାର ବୋଧ କରିନାହିଁ ବରଂ ସେଦିନ ଯେତେବେଳେ ପିଲାମାନଙ୍କୁ ସଙ୍ଗରେ ଧରି ସତୀଶ ଚାଲିଗଲା ସେତେବେଳେ ମୁଁ ଆପଣାର ଦୁର୍ବଳତାକୁ ହିଁ ଅନୁଭବ କରିପାରିଛି ।

: ତାହା ହେଲେ ଭଲ କରି ନାହାଁନ୍ତି ହରେନ୍ ବାବୁ । ମୋ ବାବା କହନ୍ତି—ଯେଉଁମାନଙ୍କର ଭଗବାନ ଯେତକ ସୂକ୍ଷ୍ମ, ସେତକ ଜଟିଳ । ସେମାନେ ଅଧିକ ଜଡ଼ିତ ହୋଇ ମରନ୍ତି । ଯେଉଁମାନଙ୍କର ଭଗବାନ ଯେତକ ସ୍ଥୂଳ, ସେତକ ସରଳ, ସେମାନେ ରହନ୍ତି କିନାରର ନିକଟରେ । ଏହା ଯେପରି ଲାଭ ଓ ଲୋକସାନର କାରବାର ।

ବ୍ୟବସାୟ ହୁଏ ଯେତକ ବ୍ୟାପକ ଓ ବିସ୍ତୃତ, କ୍ଷତର ପରିମାଣ ସେହି ଅନୁସାରେ ବଢ଼ି ଚାଲେ । ତାହାକୁ ବନ୍ଦ କରି ବସିଲେ ଲାଭ ହୁଏ ନାହିଁ ସତ କିନ୍ତୁ ଲୋକସାନର ମାତ୍ରା କମିଥାଏ । ହରେନ ବାବୁ, ଆପଣଙ୍କ ସହିତ ସହିତ ମୁଁ କଥା ହୋଇଛୁ । ଆଶ୍ରମରେ ସେ ନାନାବିଧ ପ୍ରାଚୀନ ନିୟମର ପ୍ରବର୍ତ୍ତନ କରିଥିଲେ । ତାଙ୍କର ଇଚ୍ଛା ଥିଲା ସେହି ପୁରୁଣା ଯୁଗକୁ ଫେରିଯିବା ପାଇଁ । ଭାବନ୍ତି, ଦୁନିଆଁର ବୟସରୁ ଦୁଇ ହଜାର କି ତିନି ହଜାର କମାଇ ଦେଇ ପାରିଲେ ତାଙ୍କୁ ଲାଭ ମିଳିପାରିବ । ଏହି ଭଳି ଫନ୍ଦି ଫାନ୍ଦି ବସିଥିଲେ ଦିନେ ବିଲାତରେ ପିଉରିଟାନ୍ ବୋଲି ଗୋଟିଏ ଦଳ । ଭାବିଥିଲେ, ଆମେରିକାକୁ ପଳାଇ ଯାଇ ସତର ଶତାବ୍ଦୀକୁ ଘୁଞ୍ଚାଇ ଦେଇ ବିନା ବାଧାରେ ଗଢ଼ି ବସିବେ ବାଇବେଲର ସତ୍ୟ ଯୁଗକୁ । ସେମାନଙ୍କର ଲାଭର ସଂଖ୍ୟା ଆଜି ସମସ୍ତଙ୍କୁ ଜଣା । କେବଳ ଜାଣନ୍ତି ନାହିଁ ସେହି ମଠ-ଧାରୀ ଲୋକମାନେ । ଯେଉଁମାନେ ବିଗତ ଦିନର ଦର୍ଶନ ଦ୍ୱାରା ବିଧି ବିଧାନକୁ ସମର୍ଥନ ଜଣାନ୍ତି ପ୍ରକୃତରେ ସେମାନଙ୍କର ପତନ ଆସିଯାଏ । ହରେନ ବାବୁ ଆଶ୍ରମର କ୍ଷତି ହୁଏତ କରିଛୁ କିନ୍ତୁ ଭଙ୍ଗା ଆଶ୍ରମରେ ବାକି ଯେଉଁମାନେ ରହିଗଲେ ସେମାନଙ୍କର କ୍ଷତି କରିନାହିଁ ।

ପିଉରିଟାନ୍‌ମାନଙ୍କ କାହାଣୀ ଅକ୍ଷୟ ଜାଣେ—କାରଣ ସେ ହେଉଛି ଇତିହାସର ଅଧ୍ୟାପକ । ସମସ୍ତେ ଚୁପ୍ ହୋଇ ରହିଲେ । ଏଥର କିନ୍ତୁ ସେ ଧୀରେ ଧୀରେ ମୁଣ୍ଡ ହଲାଇ ଉତ୍ତର ଦେଲା ।

ଆଶୁବାବୁ କହିଲେ—ସେ ଯୁଗର ତାହା ହେଉଛି ଏକ ଉଜ୍ଜ୍ୱଳ ଚିତ୍ର ।

କମଳ ବାଧା ଦେଇ କହିଲା—ଯେତେ ଉଜ୍ଜ୍ୱଳ ବୋଲି ଭାବୁଛନ୍ତି, ସେହି ଚିତ୍ର କିନ୍ତୁ ସେତେ ବଡ଼ ନୁହେଁ । ଏପରି ବହି ଏ ସଂସାରରେ ଆଜି ପର୍ଯ୍ୟନ୍ତ ଲେଖା ହୋଇ ନାହିଁ ଆଶୁବାବୁ, ଯହିଁରୁ ସମାଜର ପ୍ରକୃତ ପ୍ରାଣର ସନ୍ଧାନ ମିଳିପାରିବ । ଶ୍ରୀରାମଚନ୍ଦ୍ରଙ୍କ ଯୁଗରେ ନୁହେଁ କିମ୍ବା ଯୁଧିଷ୍ଠିରଙ୍କ ଯୁଗରେ ମଧ୍ୟ ନୁହେଁ । ରାମାୟଣ ମହାଭାରତରେ ଯେତେ କଥା ଲେଖା ହୋଇ ଥାଉନା କାହିଁକି, ସେହି ଶ୍ଳୋକ ଭିତରେ ସାଧାରଣ ମନୁଷ୍ୟର ଚିତ୍ର ଦେଖିବାକୁ ମିଳି ପାରିବ ନାହିଁ ଏବଂ ମାତ୍ର ଜଠର ଯେତକ ନିରାପଦ ହେଉ ନା କାହିଁକି ତହିଁକୁ ପୁଣି ଫେରି ଯାଇ ହେବ ନାହିଁ । ପୃଥିବୀର ସମସ୍ତ ମାନବ ଜାତିକୁ ନେଇ ତ ମନୁଷ୍ୟ ? ସେମାନେ ଯେ ଆପଣାର ଘରଆଡ଼େ ରହିଛନ୍ତି । କମ୍ବଳକୁ ମୋଡ଼ି ଦେଇ କ'ଣ ବାୟୁର ଗୃପକୁ ଅଟକାଇ ରଖା ଯାଇପାରେ ?

ବେଲା ଓ ମାଳିନୀ ଦୁହେଁ ନୀରବରେ ଶୁଣୁଥିଲେ । କମଳ ସମ୍ବନ୍ଧରେ ବହୁତ ଜନ-ଶ୍ରୁତି ମଧ୍ୟ ସେମାନଙ୍କ କାନରେ ବାଜିଛି । କିନ୍ତୁ ଆଜି ମୁହଁା ମୁହିଁ ବସି ଏହି ପରିତ୍ୟକ୍ତା ନାରୀର ସ୍ୱିଅଟିର ନିଃସଂଶୟ ନିର୍ଭିକତା ଦେଖି ଦୁହେଁ ଆଶ୍ଚର୍ଯ୍ୟ ହୋଇ ଉଠିଲେ ।

ପରକ୍ଷଣରେ ଠିକ୍ ଏହି ଖବରଟି ଆଶୁବାବୁ ପ୍ରକାଶ କଲେ । ଆସ୍ତେ ଆସ୍ତେ କହିଲେ—ଯୁକ୍ତ ହୋଇଥାଉ ପଛକେ କିନ୍ତୁ ତୋର ଅନେକ କଥାକୁ ମୁଁ ସ୍ୱୀକାର କରେ । ଯାହାକୁ ପାରେ ନାହିଁ ତାହାକୁ ଅନ୍ତରରେ ମଧ୍ୟ ଅବଜ୍ଞା କରିପାରେ ନାହିଁ । ଏହି ଘରର ଦ୍ୱାର ଦିନେ ତ ଆମମାନଙ୍କ ପାଇଁ ବନ୍ଦ ଥିଲା । ଦିନେ ତୋତେ ଡାକିଥିବାରୁ ସତୀଶ ଏହି ସ୍ଥାନଟାକୁ କଳୁଷିତ ବୋଲି ମନେ କରିଥିଲା । କିନ୍ତୁ ଆଜି ଆମେ ସମସ୍ତେ ନିମନ୍ତ୍ରିତ । ଆଉ କାହାର ଆସିବା ପାଇଁ ବାଧା ନାହିଁ ।

ପିଲାଟିଏ କବାଟ ପାଖରେ ଆସି ଠିଆ ହେଲା । ପିନ୍ଧିଥାଏ ପରିଷ୍କାର ପରିଚ୍ଛନ୍ନ ଭଦ୍ର ପୋଷାକ । ମୁହଁରେ ପରିତୃପ୍ତ ଏବଂ ଆନନ୍ଦର ଆଭାସ । କହିଲା—ଅପା କହି ପଠାଇଛନ୍ତି—ଖେଷାଇ ସରି ଗଲାଣି । ଖାଇବା ପାଇଁ ବଢ଼ା ହେବ କି ?

ଅକ୍ଷୟ କହି ଉଠିଲା—ହବ କ'ଣ କି ହୋ ? ଯାଇ କରି କହ ରାତି ବହୁତ ହେଲାଣି ।

ପିଲାଟି ଚାଲିଯିବା ପରେ ହରେନ୍ଦ୍ର କହିଲା—ନୂଆ'ଉ ଆସିବା ଦିନଠାରୁ ଖାଇବା ଚିନ୍ତାଟା କାହାକୁ କରିବା ପାଇଁ ପଡ଼ୁ ନ ଥିଲା । ତାଙ୍କର ତ ଆଉ କେଉଁଠାରେ ରହିବା ପାଇଁ ଯାଗା ନ ଥିଲା । କିନ୍ତୁ ସତୀଶ ରାଗି କରି ଚାଲିଗଲା ।

ଆଶୁବାବୁଙ୍କର ମୁହଁ ମୁହୂର୍ତ୍ତିକ ପାଇଁ ନାଲି ହୋଇ ଉଠିଲା ।

ହରେନ୍ଦ୍ର କହିବାକୁ ଲାଗିଲା—ଅଥଚ ସତୀଶର ଅନ୍ୟ ଉପାୟ ନ ଥିଲା । ସେ ହେଉଛି ତ୍ୟାଗୀ ଏବଂ ବ୍ରହ୍ମଚାରୀ । ଏପରି କ୍ଷେତ୍ରରେ ତା ସାଧନାରେ ବିଘ୍ନ ଘଟିଥାନ୍ତା । କିନ୍ତୁ ମୁଁ ସଦାବେଳେ ଗୋଟାଏ କଥାକୁ ଭଲ ବୋଲି ଗ୍ରହଣ କରିପାରେ ନାହିଁ ।

କମଳ ଅକୁଣ୍ଠିତ ଚିତ୍ତରେ କହିଲା—ଠିକ୍ କଥା ହରେନ୍ ବାବୁ, ଠିକ୍ କଥା । ସଂଯମ ଯେତେବେଳେ ସରଳ ନ ହୋଇ ଅପରକୁ ଆଘାତ କରି ବସେ ସେତେବେଳେ ତାହା ଦୁର୍ବହ ହୋଇ ଉଠେ । ଏହା କହି କ୍ଷଣ ପାଇଁ ସେ ଆଶୁବାବୁଙ୍କ ମୁହଁକୁ ଚାହିଁଲା—ହୁଏତ କ'ଣ ଗୋଟାଏ ଗୋପନ ଇଙ୍ଗିତ ଥିଲା, କିନ୍ତୁ ହରେନ୍ଦ୍ରକୁ ହିଁ ଚାହିଁ ପୁଣି କହି ଉଠିଲା—ସେମାନେ ଟାଣିଟୁଣି ସେମାନଙ୍କର ଭଗବାନ ସୃଷ୍ଟି କରି ବସନ୍ତି । ସେଥିପାଇଁ ସେମାନଙ୍କ ଭଗବାନଙ୍କର ପୂଜା ବାରମ୍ବାର ଆତ୍ମ ପୂଜାରେ ପରିଣତ ହୋଇଯାଏ । ଏହା ବ୍ୟତୀତ ସେମାନଙ୍କର ଅନ୍ୟ ପନ୍ଥା ନାହିଁ । ମନୁଷ୍ୟ କେବଳ ନର ନୁହେଁ, ନାରୀ ମଧ୍ୟ ନୁହେଁ । ଏ ଦୁହିଁଙ୍କ ମିଳନ ଘଟି ପାରିଲେ ଯାଇ ପୂର୍ଣ୍ଣତା ଆସିଥାଏ । ଏଥିରୁ ଅର୍ଦ୍ଧକୁ ବାଦ୍ ଦେଇ ସେ ଯେତେବେଳେ ନିଜକୁ ବୃହତ୍ତ୍ କରି ଦେଖିବା ପାଇଁ ଚାହେଁ, ସେତେବେଳେ ସେ ଆପଣାକୁ ତ ପାଇ ପାରେ ନାହିଁ ବରଂ ଭଗବାନଙ୍କୁ କ୍ଷୁଣ୍ଣ କରାଇଥାଏ । ସତୀଶ ବାବୁଙ୍କ ପାଇଁ ମନରେ ଦୁଃଶ୍ଚିନ୍ତା ରଖିବେ ନାହିଁ ହରେନ୍ ବାବୁ । ତାଙ୍କର ସିଦ୍ଧି ସ୍ୱୟଂ ଭଗବାନଙ୍କ ଦାୟିତ୍ୱରେ ।

ସତୀଶଙ୍କୁ କେହ ପ୍ରାୟ ଭଲ ପାଅନ୍ତି ନାହିଁ, ତେଣୁ ଶେଷ କଥାଟାରେ ସମସ୍ତେ ହସି ଉଠିଲେ । ଆଶୁବାବୁ ମଧ୍ୟ ହସି ଉଠିଲେ । କହିଲେ—ଆମ ହିନ୍ଦୁ ଶାସ୍ତ୍ରରେ ଗୋଟାଏ ବଡ଼ କଥା ଅଛି ସେଇଟା ହେଲା— ଆତ୍ମ ଦର୍ଶନ । ଅର୍ଥାତ୍ ଆପଣାକୁ ଜଗତ୍ ଭାବରେ ଜାଣିବା । ଋଷିମାନେ କହିଛନ୍ତି—ଏହି ଖୋଜିବା ଭିତରେ ଅଛି ସକଳ ଜ୍ଞାନ । ଭଗବାନଙ୍କୁ ପାଇବା ପାଇଁ ହିଁ ଏହା ହିଁ ଏକମାତ୍ର ପଥ । ଏଥିପାଇଁ ଧ୍ୟାନର ବ୍ୟବସ୍ଥା କରି ଯାଇଛି । ତୁ ମାନୁନା କିନ୍ତୁ ଯେଉଁମାନେ ମାନନ୍ତି, ବିଶ୍ୱାସ କରନ୍ତି, ତାଙ୍କୁ ପାଇବା ପାଇଁ ଇଚ୍ଛା କରନ୍ତି । ସେମାନେ ଜଗତର ବିହ୍ନ ବିଷୟରୁ ଆପଣାକୁ ଦୂରେଇ ନ ରଖିଲେ ସେମାନଙ୍କର ଏକାଗ୍ର ଚିତ୍ତ ଯୋଜନା ସଫଳ ହୋଇ ପାରେ ନାହିଁ । ସତୀଶ କଥା ମୁଁ କହୁ ନାହିଁ କିନ୍ତୁ ଏହା ଯେ ହିନ୍ଦୁ ଧର୍ମର ଅବିଚ୍ଛିନ୍ନ ପାରମ୍ପରିକ ପ୍ରାପ୍ତ ସଂସ୍କାର, କମଳ । ଏହାହିଁ ତ ଯୋଗ । ଆସମୁଦ୍ର ହିମାଚଳ ଭାରତ ଅବିଚଳିତ ଶ୍ରଦ୍ଧାରେ ଏହି ତତ୍ତ୍ୱକୁ ବିଶ୍ୱାସ କରେ ।

ଭକ୍ତି, ବିଶ୍ୱାସ ଓ ଭାବର ଆବେଗରେ ତାଙ୍କ ଦୁଇ ଆଖି ଛଳଛଳ ହୋଇ ଉଠିଲା । ବାହାରର ସବ୍ଦବିଧ ସାହେବ ପଣିଆର ନିଭୃତ ତଳ ଦେଶରେ ଯେଉଁ ଦୃଷ୍ଟି ନିଷ୍ଠା ଏବଂ ବିଶ୍ୱାସ ପରିପୂର୍ଣ୍ଣ ହିନ୍ଦୁ-ଚିତ୍ତ ନିର୍ବାତ ଦୀପ ଶିଖା ଭଳି ନୀରବରେ ଜଳିବାରେ ଲାଗି ଥିଲା କମଳ ଚକ୍ଷୁର ପଲକ ମାତ୍ରେ ତାହାକୁ ଉପଲବ୍ଧି କରି ପାରିଲା । କ'ଣ ଗୋଟାଏ କହିବା ପାଇଁ ଯାଉଥିଲା କିନ୍ତୁ ସଙ୍କୋଚ ଅନୁଭବ କଲା । ସଙ୍କୋଚ ଆଉ କେଉଁଥିପାଇଁ ନୁହେଁ, କେବଳ ଏହି ସତ୍ୟବ୍ରତ ସଂଯତ ଇନ୍ଦ୍ରିୟ ବ୍ୟଥା ଦେଉଥିବା ବେଦନା ପାଇଁ । କିନ୍ତୁ ଉତ୍ତର ପାଇଁ ସେ ଯେତେବେଳେ ପ୍ରଶ୍ନ କରି ବସିଲେ—କ'ଣ କମଳ, ସତ ନୁହେଁ ? ସେତେବେଳେ ସେ ମୁଣ୍ଡ ହଲାଇ କହିଲା—ନା ଆଶୁବାବୁ ଏହା ସତ ନୁହେଁ । କେବଳ ହିନ୍ଦୁମାନଙ୍କର ନୁହେଁ ଏହି ବିଶ୍ୱାସ ସମସ୍ତ ଧର୍ମରେ ରହିଛି । କିନ୍ତୁ କେବଳ ବିଶ୍ୱାସ ଜୋରରେ କିଛି କୌଣସି କାଳରେ ସତ୍ୟ ହୋଇପାରେ ନାହିଁ । ତ୍ୟାଗ କରିବାର ଜୋରରେ ନୁହେଁ କିମ୍ବା ମୃତ୍ୟୁ ବରଣ କରିବାର ଜୋରରେ ନୁହେଁ । ଅତି ତୁଚ୍ଛ ମତର ଅମେଳ ହେତୁ ବହୁପ୍ରାଣ ବହୁବାର ସଂସାରରେ ଦିଆ-ନିଆ ହୋଇଯାଇଛି । ତାହାଦ୍ୱାରା ଜିଦ୍ କେବଳ ହିଁ ପ୍ରମାଣିତ ହୋଇ ପାରିଛି ସିନା, ଚିନ୍ତାର ସତ୍ୟ ପ୍ରମାଣିତ ହୋଇ ପାରିନାହିଁ । ଯୋଗ କାହାକୁ କୁହାଯାଏ ମୁଁ ଜାଣି ନାହିଁ । ଏହା ଯଦି ନିର୍ଜ୍ଜନରେ ବସି ଆତ୍ମ ବିଶ୍ଳେଷଣ ଏବଂ ଆତ୍ମ-ଚିନ୍ତା ହିଁ ହୁଏ ତେବେ ଏହି କଥାରେ ଜୋର ଦେଇ ମୁଁ କହିବି ଯେ ଏହି ଦୁଇଟା ସିଂହ ଦ୍ୱାର ଦେଇ, ସଂସାରର ଯେତେଟା ଭ୍ରମ, ଯେତେ ମୋହ ଭିତରେ ପ୍ରବେଶ କରିଛି ଏପରି ଆଉ କେଉଁଠାରେ ପ୍ରବେଶ କରିପାରି ନାହିଁ । ଏସବୁ ଅଜ୍ଞାନର ସହଚର ।

ଏହାଶୁଣି କେବଳ ଆଶୁବାବୁ ନୁହଁନ୍ତି, ହରେନ୍ଦ୍ର ମଧ୍ୟ ବିସ୍ମୟ ଓ ବେଦନାରେ ନୀରବ ହୋଇ ରହିଲା ।

ସେହି ପିଲାଟି ପୁଣି ଆସି କହିଲା—ଖାଇବା ବଢ଼ା ହୋଇ ସାରିଲାଣି ।

ସମସ୍ତେ ତାଙ୍କୁ ଓହ୍ଲାଇବାକୁ ଲାଗିଲେ ।

ଖାଇ ସାରିବା ପରେ ଅକ୍ଷୟ କମଳକୁ ମୁହୂର୍ତ୍ତିକ ପାଇଁ ନିରୋଳାରେ ପାଇ ପାରି ଚୁପ୍ ଚୁପ୍ କରି କହିଲା—ଶୁଣିବାକୁ ପାଉଛୁ ଆପଣ ମଧ୍ୟ ଚାଲି ଯାଉଛନ୍ତି । ପରିଚିତ ସମସ୍ତଙ୍କ ଘରକୁ ଆପଣ ଥରେ ଅଧେ ଯାଇଛନ୍ତି କେବଳ ମୋ ସେଠାକୁ......

: ଆପଣ ! କମଳ ଅତ୍ୟନ୍ତ ବିସ୍ମିତା ହୋଇ ଉଠିଲା । କେବଳ କଣ୍ଠ ସ୍ୱରର ପରିବର୍ତ୍ତନ ପାଇଁ ନୁହେଁ । ତାକୁ 'ତୁମେ' ବୋଲି ସମସ୍ତେ ଡାକନ୍ତି । ସେ କିନ୍ତୁ ଅଭିଯୋଗ କେବେ କରି ନାହିଁ, କିମ୍ବା ଅଭିମାନ ମଧ୍ୟ କରି ନାହିଁ । କିନ୍ତୁ ଅକ୍ଷୟ ପାଇଁ ଅନ୍ୟ କାରଣ ଥିଲା । ଏହି ସ୍ତ୍ରୀ ଲୋକଟାକୁ "ଆପଣ" ବୋଲି କହିବା ଯେ ଅସମ୍ମାନକର, ଏପରିକି ଭଦ୍ର ଆଚରଣର ବ୍ୟବହାର ବୋଲି ସେ ମନେ କରିଥାଏ । କମଳ ମଧ୍ୟ ଏହା ଜାଣେ । କିନ୍ତୁ ଏହି ସଙ୍କୀର୍ଣ୍ଣତା ଏବଂ ଇତରତା ପ୍ରତି ଦୃଷ୍ଟିପାତ କରିବା ପାଇଁ ସେ ଲଜ୍ଜା ଅନୁଭବ କରି ଆସୁଥିଲା । କାଳେ ଯୁକ୍ତି ତର୍କ ହୋଇ କୌଣସି କଳହ ସୃଷ୍ଟି ହୋଇପାରେ—ଏହା ହିଁ ଥିଲା ତାର ଆଶଙ୍କା । ହସି ଦେଇ କହିଲା—ଆପଣତ କେବେ ମୋତେ ଯିବା ପାଇଁ ଅନୁରୋଧ କରି ନାହାଁନ୍ତି ।

: ନା, ସେଇଟା ମୋର ଅନ୍ୟାୟ ହୋଇଛି । ଚାଲିଯିବା ଆଗରୁ କ'ଣ ଆଉ ସମୟ ହେବ ନାହିଁ ?

: କିପରି ହେବ ଅକ୍ଷୟ ବାବୁ ? ଆମେ କାଲି ଭୋରରୁ ଯେ ଚାଲିଯିବୁ ।

: ଭୋରରୁ ? ଟିକିଏ ଅଟକି ଯାଇ ପୁଣି କହିଲା—ଏ ଅଞ୍ଚଳକୁ କେବେ ଯଦି ଆସନ୍ତି ସେତେବେଳେ ମୋ ଘରକୁ ଆସିବା ପାଇଁ ନିମନ୍ତ୍ରଣ ରହିଲା ।

କମଳ ହସି ଦେଇ କହିଲା ଗୋଟାଏ ପ୍ରଶ୍ନ ପଚାରି ପାରେ କି ଅକ୍ଷୟ ବାବୁ ? ହଠାତ୍ ମୋ ସମ୍ବନ୍ଧରେ ଆପଣଙ୍କର ମତ ବଦଳି ଗଲା କିପରି ? ବରଞ୍ଚ ଆହୁରି କଠୋର ହେବା କଥା ।

ଅକ୍ଷୟ କହିଲା—ସାଧାରଣତଃ ତାହାହିଁ ହେବା କଥା । ଏଥର କିନ୍ତୁ ଦେଶରୁ କିଛି ଅଭିଜ୍ଞତା ସଞ୍ଚୟ କରି ଆସିଛୁ । ଆପଣଙ୍କର ଏହି ପିଉରିଟାନ୍‌ମାନଙ୍କ ଉଦାହରଣ ମୋ ମନକୁ ଛୁଇଁଛି । ଆଉ କେହି ବୁଝି ପାରିଛନ୍ତି କି ନାହିଁ ଜାଣେ ନାହିଁ, ବୁଝି ନ ପାରିବା ମଧ୍ୟ ଆଶ୍ଚର୍ଯ୍ୟକର ନୁହେଁ । କିନ୍ତୁ ମୁଁ ଅନେକ କଥା ଜାଣିଛି । ଆଉ ଗୋଟାଏ କଥା ।

ଆମ ଗାଆଁର ପ୍ରାୟ ଚଉଦ ଅଣା ମୁସଲମାନ । ସେମାନେ ତ ସେହି ଦେଢ଼ ହଜାର ବର୍ଷର ସତ୍ୟ ଉପରେ ଅଟଳ ହୋଇ ରହି ପାରିଛନ୍ତି । ସେହି ବିଧି-ନିଷେଧ, ଆଇନ-କାନୁନ୍, ଆଚାର-ଅନୁଷ୍ଠାନ, କୌଣସିଥିରେ ତ ବ୍ୟତିକ୍ରମ ହୋଇ ପାରିନାହିଁ ।

କମଳ କହିଲା—ସେମାନଙ୍କ ସମ୍ପର୍କରେ ପ୍ରାୟ ମୁଁ କିଛି ଜାଣି ନାହିଁ । ଜାଣିବା ପାଇଁ ମଧ୍ୟ କେବେ ସୁଯୋଗ ପାଇ ନାହିଁ । ଯଦି ଆପଣଙ୍କ କଥା ସତ ହୋଇଥାଏ ତେବେ ଏତିକ ମାତ୍ର କହି ପାରିବି ଯେ ସେମାନଙ୍କର ମଧ୍ୟ ଚିନ୍ତା କରିବାର ଦିନ ଆସିଛି । ସତ୍ୟର ସୀମା ଯେକୌଣସି ଅତୀତ ଦିନରୁ ସୁନିର୍ଦ୍ଦିଷ୍ଟ ହୋଇ ପାରିନାହିଁ । ଏହି ସତ୍ୟ ସେମାନଙ୍କୁ ଦିନେ ମାନି ନେବାକୁ ପଡ଼ିବ । କିନ୍ତୁ ଉପରକୁ ଚାଲନ୍ତୁ……

: ନା, ମୁଁ ଏଇଠାରୁ ବିଦାୟ ନେବି । ମୋ ସ୍ତ୍ରୀ ଘରେ ପୀଡ଼ିତା ଅଛନ୍ତି । ଏତେ ଲୋକଙ୍କୁ ଦେଖିଛନ୍ତି । ତାଙ୍କୁ ଟିକିଏ ଦେଖିବେ ନାହିଁ ?

କମଳ କୌତୂହଳ ବଶତଃ ପ୍ରଶ୍ନ କଲା—ସେ ଦେଖିବା ପାଇଁ କିପରି ?

: ଠିକ୍ କରି କହି ପାରିବି ନାହିଁ । ଆମ ପରିବାର ଭିତରେ କେହି ଏପରି ପ୍ରଶ୍ନ କେବେ କରି ନାହାଁନ୍ତି । ବିବାହ ଦେଇ ନଅ ବର୍ଷର ଝିଅଟିକୁ ବାପା ଘରକୁ ଆଣିଥିଲେ । ଲେଖା ପଢ଼ା କରିବା ପାଇଁ ସମୟ ପାଇ ପାରିନାହିଁ—ଦରକାର ମଧ୍ୟ ପଡ଼ି ନାହିଁ । ରନ୍ଧା-ବଢ଼ା, ଓପାବ୍ରତ, ପୂଜା-ଆହ୍ନିକ ନେଇ ସେ ବ୍ୟସ୍ତ ଥାଏ । ମୋତେ ମଧ୍ୟ ଇହକାଳ ଓ ପରକାଳର ଦେବତା ବୋଲି ମନେ କରିଥାଏ । ଦେହ ଖରାପ ହେଲେ ଔଷଧ ଖାଇବା ପାଇଁ ଇଚ୍ଛା କରେ ନାହିଁ । କହେ ସ୍ୱାମୀର ପାଦୋଦକରେ ସମସ୍ତ ବେମାରି ଦୂର ହେବ । ଯଦି ନ ହୋଇପାରେ ତେବେ ଜାଣିବ ସ୍ତ୍ରୀର ଆୟୁଷ ସରି ଆସିଲାଣି ।

ଏହାର ସାମାନ୍ୟ ଆଭାସ କମଳ ହରେନ୍ଦ୍ର ନିକଟରୁ ଶୁଣିଥିଲା । କହିଲା—ଆପଣ ତ ଭାଗ୍ୟବାନ । ଅନ୍ତତଃ ସ୍ତ୍ରୀଙ୍କ ଦୃଷ୍ଟିରୁ । ଏତେ ଗୁଡ଼ାଏ ବିଶ୍ୱାସ ତ ଏ ଯୁଗରେ ଦୁର୍ଲ୍ଲଭ ।

: ବୋଧହୁଏ ସେଇଆ; ଯଦିଓ ଠିକ୍ କରି ଜାଣି ନାହିଁ । ହୁଏତ ଏହାକୁ ହିଁ ସ୍ତ୍ରୀର ଭାଗ୍ୟ ବୋଲି ମଧ୍ୟ କୁହାଯାଇ ପାରିବ । କିନ୍ତୁ ମଝିରେ ମଝିରେ କିମିତି ମନେହୁଏ ମୋର କେହି ନାହାଁନ୍ତି । ସଂସାରରେ ମୁଁ ଏକବାରେ ନିଃସଙ୍ଗ—ଏକାକୀ । ଆଚ୍ଛା, ନମସ୍କାର ।

କମଳ ହାତଯୋଡ଼ି ପ୍ରତିନମସ୍କାର ଜଣାଇଲା ।

ଅକ୍ଷୟ ପାଦଟିଏ ଆଗେଇ ଯାଇ ପୁଣି ଫେରିପଡ଼ି କହିଲା—ଗୋଟାଏ ଅନୁରୋଧ ।

: କହନ୍ତୁ ।

: ଯଦି କେବେ ସମସ୍ତ ପାଆନ୍ତି ଆଉ ମୁଁ ମନେଥାଏ, ଖଣ୍ଡିଏ ଚିଠି ଦେବେ। ଆପଣ ନିଜେ କିପରି ଅଛନ୍ତି, ଅଜିତ ବାବୁ କିପରି ଅଛନ୍ତି ? ଏଇ ସବୁ···ଆପଣଙ୍କ କଥା ମୁଁ ପ୍ରାୟ ସଦାବେଳେ ଭାବୁଥିବି। ଆଚ୍ଛା ଯାଉଛି, ନମସ୍କାର। ଏହା କହି ଅକ୍ଷୟ ଚଞ୍ଚଳ ହୋଇ ଚାଲିଗଲା। କମଳ ସେହିଠାରେ ସ୍ତବ୍ଧ ହୋଇ ଠିଆ ହୋଇ ରହିଲା। ଭଲ ମନ୍ଦର ବିଚାର କରିବା ପାଇଁ ନୁହେଁ। କିନ୍ତୁ କେବଳ ଏତିକି ସେ ମନେ ମନେ ଭାବିବାକୁ ଲାଗିଲା ଯେ—ଏଇ ସେ ଅକ୍ଷୟ ! ମନୁଷ୍ୟର ଜାଣିବା ବାହାରରେ କେବେ ଏହି ଭାଗ୍ୟବାନର ଦାମ୍ପତ୍ୟ ଜୀବନ ଏପରି ଭାବରେ ନିର୍ବିଘ୍ନ ଶାନ୍ତିରେ ବଢିବାକୁ ଲାଗିଛି ! ଖଣ୍ଡିଏ ଚିଠି ପାଇଁ ତାର କି କୌତୂହଳ ! କି ସକାତର ପ୍ରାର୍ଥନା !

ଉପରକୁ ଆସି ଦେଖିଲା କେବଳ ନୀଳିମା ବ୍ୟତୀତ ଅନ୍ୟ ସମସ୍ତେ ଆପଣା ଆପଣା ଆସନରେ ଉପବିଷ୍ଟ। ଏହାହିଁ ନୀଳିମାର ସ୍ୱଭାବ। ବିଶେଷ କେହି କିଛି ମନେ କରନ୍ତି ନାହିଁ। ଆଶୁବାବୁ କହିଲେ—ହରେନ୍ଦ୍ର ଚମତ୍କାର କଥାଟିଏ କହୁଥିଲା କମଳ। ଶୁଣିଲେ ହଠାତ୍ ମିଛ ବୋଲି ମନେ ହୁଏ କିନ୍ତୁ ପ୍ରକୃତରେ ତାହା ସତ୍ୟ। ଲୋକେ ଏଇଟାକୁ ବୁଝି ପାରନ୍ତି ନାହିଁ ଯେ ପ୍ରଚଳିତ ସମାଜ ବିଧି ଲଙ୍ଘନ କରିବାର ଦୁଃଖ କେବଳ ଚରିତ୍ର ଏବଂ ବିବେକ ବୁଦ୍ଧିର ଜୋରରେ ହିଁ ସହ୍ୟ କରି ହୁଏ। ମନୁଷ୍ୟ ବାହାରର ଅନ୍ୟାୟଟାକୁ ଦେଖିପାରେ; କିନ୍ତୁ ଅନ୍ତରର ପ୍ରେରଣାର ଖବର ରଖିପାରେ ନାହିଁ। ଏହିଠାରେ ହିଁ ଯେତିକି ଦ୍ୱନ୍ଦ୍ୱ ଏବଂ ବିରୋଧତାର ସୃଷ୍ଟି ହୋଇଥାଏ।

କମଳ ବୁଝି ପାରିଲା ଏହାର ଲକ୍ଷ୍ୟ ସେ ଏବଂ ଅଜିତ। ସୁତରାଂ ସେ ଚୁପ୍ ହୋଇ ରହିଲା। ଏକଥା କହିଲା ନାହିଁ ଯେ—ଉଚ୍ଛୃଙ୍ଖଳତାର ଜୋରରେ ସମାନ ବିଧି ମଧ୍ୟ ଲଙ୍ଘନ କରାଯାଇ ପାରେ। ଦୁର୍ବୁଦ୍ଧି ଏବଂ ବିବେକୀ ବୁଦ୍ଧି ଦୁଇଟା ଏକ ଜିନିଷ ନୁହନ୍ତି।

ବେଲା ଓ ମାଳିନୀ ଉଠି ଠିଆ ହେଲେ। ସେମାନଙ୍କର ଯିବାର ସମୟ ହେଲାଣି। କମଳକୁ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କରି ସେମାନେ ଆଶୁବାବୁ ଓ ହରେନ୍ଦ୍ରକୁ ନମସ୍କାର କଲେ। ଏହି ସ୍ତ୍ରୀଟି ଆଗରେ ସର୍ବଦା ସେମାନେ ଆପଣାକୁ ଶ୍ରେଷ୍ଠ ମନେ କରି ଆସିଛନ୍ତି। ଶେଷ ବେଳକୁ ଉପହାସ କରି ଦୁହେଁ ପ୍ରତିଶୋଧ ନେଲେ। ସେ ଦୁହେଁ ଚାଲିଗଲା ପରେ ଆଶୁବାବୁ କୋମଳ କଣ୍ଠରେ କହିଲେ—କିଛି ମନେ କରିବୁ ନାହିଁ ମାଆ, ଏହା ବ୍ୟତୀତ ସେ ଦୁହିଁଙ୍କ ହାତରେ ଅନ୍ୟ ଅସ୍ତ୍ର କିଛି ନାହିଁ। ମୁଁ ତ ସେମାନଙ୍କ ଦଳର ଲୋକ। ସମସ୍ତେ ଜାଣନ୍ତି।

ଆଶୁବାବୁ ହରେନ୍ଦ୍ର ଆଗରେ ଏହି ପ୍ରଥମ ଥର କରି ତାକୁ ମାଆ ବୋଲି ଡାକିଲେ। କହିଲେ—ଦେବୀତ୍ୱ ଏମାନେ ପଦସ୍ଥ ବ୍ୟକ୍ତିଙ୍କର ଭାର୍ଯ୍ୟା। ହାଇ-ସର୍କଲର ମଣିଷ। ଇଂରାଜୀ ଚଳଣି, ବେଶଭୂଷା ହେତୁ ଅପ୍-ଟୁ-ଡେଟ୍। ଏତିକି ଭୁଲିଗଲେ ସେମାନଙ୍କ ପୁଞ୍ଜିରେ ଆଘାତ ହେବ। ରାଗ କରିଲେ ମଧ୍ୟ ସେମାନଙ୍କ ପ୍ରତି ଅବିଚାର ହେବ।

କମଳ ହସି ଦେଇ କହିଲା—ରାଗ ତ କରିନାହିଁ ।

: ରାଗିବୁ ନାହିଁ ମୁଁ ଜାଣେ । ଆମମାନଙ୍କର ମଧ୍ୟ ରାଗ ଆସିଲା ନାହିଁ—କେବଳ ହସ ଲାଗିଲା । କଲୁ ରୁ ବସାକୁ ଯିବୁ କମିତ ମାଆ, ମୁଁ କ'ଣ ତୋତେ ପହଞ୍ଚାଇ ଦେଇ ସାରି ଘରକୁ ଯିବି ?

: ବାଃ, ନହେଲେ ଯିବି କମିତ ?

କାଲେ ଲୋକଙ୍କ ଆଖିରେ ପଡ଼ିବ ସେଥିପାଇଁ ସେ ନଜର ଗାଡ଼ିଟାକୁ ଫେରାଇ ଦେଇଥିଲା ।

: ବେଶ୍, ତାହା ହିଁ ହେବ । ଆଉ ଡେରି କରିବାଟା ହୁଏତ ଉଚିତ ହେବ ନାହିଁ । କ'ଣ କହୁଛୁ ?

ସମସ୍ତଙ୍କର ମନେ ପଡ଼ିଗଲା ଯେ ସେ ଆଜି ମଧ୍ୟ ସୁସ୍ଥ ହୋଇ ଉଠିପାରି ନାହାନ୍ତି ।

ପିଡ଼ରେ ଘୋଡ଼ା ଶବ୍ଦ ଶୁଣାଗଲା । ଏବଂ ପରକ୍ଷଣରେ ଦେଖାଗଲା ଯେ ଅଜିତ ଆସି ସମସ୍ତଙ୍କ ଆଗରେ ଠିଆ ହୋଇଛି ।

ହରେନ୍ଦ୍ର ଉଚ୍ଚ କଣ୍ଠରେ ଅଭ୍ୟର୍ଥନା କରି କହି ଉଠିଲା—ହ୍ୟାଲୋ ! ବେଟାର ଲେଟ୍ ଦ୍ୟାନ ନେଭର । ବ୍ରହ୍ମାଚର୍ଯ୍ୟାଶ୍ରମର ଏ'କ ସୌଭାଗ୍ୟ !

ଅଜିତ ଅପ୍ରତିଭ ହୋଇ କହିଲା—ନେବା ପାଇଁ ଆସିଲି ଏବଂ ଆଖି ପଲକମାନେ ସମସ୍ତଙ୍କ ଆଗରେ ଗୋଟାଏ ଅସ୍ୱାଭାବିକ ଦୁଃସାହସିକତାରେ ତା ଭିତରର କଥା ଗୁଡ଼ାକ ଜୋର କରି ଠେଲି ଗଳାରୁ ବାହାରି ଆସିଲା । କହିଲା—ନ ହେଲେ ଆଉ ତୋ ସହିତ ଦେଖା ହୋଇ ପାରି ନ ଥାନ୍ତା । ଆମେ ଦୁଇଜଣ ଆଜି ଭୋରରୁ ଚାଲି ଯାଉଛୁ ।

: ଆଜି କି ? ଏଇ ଭୋରରୁ ?

: ହଁ । ଆମେ ଦୁହେଁ ପ୍ରସ୍ତୁତ । ଏଇଠାରୁ ଆମର ଯାତ୍ରା ଜାଣ ଆରମ୍ଭ ହେବ ।

ଘଟଣାଟା ଅଜଣା ନୁହେଁ । ତଥାପି ସମସ୍ତେ ଯେପରି ଲାଜରେ ମଳିନ ହୋଇ ପଡ଼ିଲେ ।

କିଛି ସମୟ ପରେ ମାଳମା ଆସି ନୀରବରେ ଘରର ଗୋଟିଏ କଣରେ ବସି ପଡ଼ିଲା । ସଙ୍କୋଚ ତୁଟାଇ ଆଶୁବାବୁ ମୁହଁ ଟେକି ଚାହିଁଲେ । କଥାଟା କହିବା ପାଇଁ ତାଙ୍କୁ ଯେପରି କଷ୍ଟ ହେଲା । ତାହା ପରେ ଧୀରେ ଧୀରେ କହିଲେ—ହୁଏତ ଆଉ କେବେ ଆମମାନଙ୍କର ଦେଖାହୋଇ ପାରିବ ନାହିଁ । ତୁମେମାନେ ମୋର ସ୍ନେହର ବସ୍ତୁ । ଯଦି ତୁମ ଦୁହିଁଙ୍କର ବିବାହ ହୋଇ ପାରନ୍ତା ଦେଖିକରି ଯାଇ ପାରନ୍ତି ।

ଅଜିତ ଯେପରି ହଠାତ୍ କୂଳ ଦେଖି ପାରିଲା । ବ୍ୟଗ୍ର କଣ୍ଠରେ କହି ଉଠିଲା— ଏ ଜୀବନରେ ମୁଁ ଶାନ୍ତି ପାଇ ନ ଥିଲି ଜାଜାବାବୁ—ଏହା ମୋର ଯନ୍ତ୍ରଣାର ଅତୀତ ଥିଲା । ବିବାହ କଥା ବାର ବାର କହିଛି, ବାରମ୍ବାର ମୁଣ୍ଡ ହଲାଇ କମଳ ଅସ୍ୱୀକାର କରି ବସିଛି । ନିଜର ଯାବତୀୟ ସମ୍ପଦ, ଯାହା କିଛି ମୋର ଅଛି, ସବୁ କିଛି ଲେଖି ଦେଇ ନିଜକୁ ଦମ୍ଭ କରି ଧରି ଦେବାକୁ ଯାଇଛି, କିନ୍ତୁ କମଳ କୌଣସି ମତେ ରାଜି ହୋଇ ନାହିଁ । ଆଜି ଏମାନଙ୍କ ଆଗରେ ଆଉ ଥରେ ମିନତି କରୁଛି, କମଳ ତୁମେ ରାଜି ହୋଇ ଯାଅ । ମୋର ସର୍ବସ୍ୱ ତୁମକୁ ଦେଇ ସାରିଛି । ଫାଙ୍କିର କଳଙ୍କରୁ ମୋତେ ମୁକ୍ତ ଦିଅ ।

ନୀଳିମା ଅବାକ୍ ହୋଇ ଚାହିଁ ରହିଲା । ଅଜିତ୍ ସ୍ୱାଭାବିକ ଲାଜ ଲୁକାଅ ପ୍ରକୃତିର । ସମସ୍ତଙ୍କ ଆଗରେ ତାର ଏହିପରି ଅପରିମେୟ ବ୍ୟାକୁଳତା ହେତୁ ସମସ୍ତଙ୍କର ବିସ୍ମୟର ସୀମା ରହିଲା ନାହିଁ । ଆଜି ସେ ଆପଣାକୁ ନିଃସ୍ୱ କରିଦେବା ପାଇଁ ଚାହେଁ । ନିଜର ବୋଲି ହାତରେ ରଖିବା ପାଇଁ ଆଜି ତାହାର କିଛିଂପ୍ରୟୋଜନ ନାହିଁ ।

କମଳ ତା ମୁହଁକୁ ଚାହିଁ କହିଲା—ତୁମର ଭୟ କେଉଁଥିପାଇଁ ?

: ଭୟ ହୁଏତ ଆଜି ନ ଥାଇ ପାରେ କିନ୍ତୁ···

: କିନ୍ତୁର ଦିନ ଆସୁ ···

: ଆସିଲେ ତୁମେ କିନ୍ତୁ ତାକୁ ଗ୍ରହଣ କରି ନେବ ନାହିଁ; ଏ କଥା ମୁଁ ଭଲ ଭାବରେ ଜାଣେ ।

କମଳ ହସି ଦେଇ କହିଲା—ଜାଣ ! ତେବେ ସେହିଟା ହିଁ ହେବ ତୁମର ସବୁଠାରୁ ଶକ୍ତ ବନ୍ଧନ ।

ଟିକିଏ ଅଟକି ଯାଇ କହିଲା—ତୁମର ମନେ ନାହିଁ ଦିନେ କହିଥିଲି—ଅତ୍ୟନ୍ତ ମଜଭୁତ କରିବା ଲୋଭରେ ଏପରି ନିଚ୍ଛିଦ୍ର କରି ଘର ଗଢ଼ିବା ପାଇଁ ଚେଷ୍ଟା କରନାହିଁ । ତାହା ସିନା ଶବ ପାଇଁ କବର ହୋଇ ପାରିବ କିନ୍ତୁ ଜୀଅନ୍ତା ଲୋକ ପାଇଁ ଶୋଇବା ଘର ହୋଇ ପାରିବ ନାହିଁ ।

: କହିଥିଲ ଜାଣେ । ଜାଣେ ମୋତେ ବନ୍ଧନରେ ପକାଇବାକୁ ତୁମେ ଚାହଁ ନାହିଁ । କିନ୍ତୁ ମୁଁ ଯେ ଚାହେଁ । ତୁମକୁ ମୁଁ କିପରି ବାନ୍ଧି ରଖି ପାରିବି କମଳ ? କାହିଁ ସେ ଶକ୍ତି ?

: ଶକ୍ତିର ଆବଶ୍ୟକତା ନାହିଁ । ବରଞ୍ଚ ତୁମର ଦୁର୍ବଳତା ଦ୍ୱାରା ମୋତେ ବାନ୍ଧି ରଖ । ତୁମ ପରି ମଣିଷଟିକୁ ସଂସାରରେ ଭସାଇ ଦେଇ ଚାଲି ଯିବାଭଳି ନିଷ୍ଠୁର ମୁଁ ହୋଇ ପାରିବି ନାହିଁ । ପଲକମାତ୍ରେ ଆଶୁବାବୁଙ୍କ ଆଡ଼େ ଚାହିଁ କହିଲା— ଭଗବାନଙ୍କୁ ତ ମାନେ ନାହିଁ ନଚେତ୍ ପ୍ରାର୍ଥନା କରିଥାନ୍ତି ସମସ୍ତ ପ୍ରକାର ଆଘାତ ଆଢ଼ୁଆଳରେ ତୁମକୁ ରଖି ମୁଁ ଯେପରି ଏ ସଂସାରରୁ ବିଦାୟ ନେଇ ପାରିବି ।

ନୀଳିମାର ଦୁଇ ଆଖିରେ ଲୁହ ଟଳମଳ ହେବାକୁ ଲାଗିଲା । ଆଶୁବାବୁ ନିଜେ ବାଷ୍ପାକୁଳ କଣ୍ଠରେ ଆପଣାର ଆଖି ପୋଛି ପକାଇଲେ । ଗମ୍ଭୀର ସ୍ୱରରେ କହି

ଉଠିଲେ—ଭଗବାନଙ୍କୁ ମାନିବା ତୋର ଆବଶ୍ୟକତା ନାହିଁ କମଳ । ସେଇ ହିଁ ଏକ କଥା ମାଆ, ଆତ୍ମସମର୍ପଣ ଦ୍ୱାରେ ହିଁ ତୋତେ ତାଙ୍କ ନିକଟରେ ପହଞ୍ଚାଇ ଦେଇ ପାରିବ ।

କମଳ ହସି ଦେଇ କହିଲା—ତାହା ହେଲେ ସେ ହେବ ମୋର ଉପୁରି ରୋଜଗାର । ଯୋଗ୍ୟ ପ୍ରାପ୍ୟଠାରୁ ତାହାର ମୂଲ୍ୟ ହେବ ଯଥେଷ୍ଟ ଅଧିକ ।

: ତାହା ଠିକ୍ କଥା ମାଆ । କିନ୍ତୁ ଜାଣିରଖ, ମୋ ଆଶୀର୍ବାଦ କଦାପି ନିଷ୍ଫଳ ହେବ ନାହିଁ ।

ହରେନ୍ଦ୍ର କହିଲା—ଖାଇକରି ଆସିନାହୁଁ ତ ଅଜିତ୍ । ଚାଲ ତଳକୁ ଯିବା ।

ଆଶୁବାବୁ ହସି ଦେଇ କହିଲେ—ତୋର ଏଇସ୍ତା ବୁଦ୍ଧି ? ସେ ଖାଇ କରି ଆସି ନାହିଁ ଆଉ କମଳ ଏଠାରେ ଖାଇ ସାରି ନିଶ୍ଚିନ୍ତ ହୋଇ ବସିଛି । ମାଆ, ଏପରି କେବେ ଭୁଲ୍ କରିବୁ ନାହିଁ ।

ଅଜିତ ଲଜ୍ଜାରେ ଝାଉଁଳି ପଡ଼ି କହିଲା—କଥାଟା ନିରାଟ ସତ୍ୟ । ସେ ତ ଅଖିଆ ଆସିନାହିଁ ।

ଏହା ହିଁ ଶେଷ ରାତି ସାବୁ ସବାଟା ସ୍ୱର୍ଗି ଦେବାପାଇଁ କାହାର ଇଚ୍ଛା ନ ଥିଲା । କିନ୍ତୁ ଆଶୁବାବୁଙ୍କ ସ୍ୱାସ୍ଥ୍ୟପ୍ରତି ଦୃଷ୍ଟିରଖି ଆୟୋଜନ କରିବାକୁ ଲାଗି ପଡ଼ିଲେ । ହରେନ୍ଦ୍ର କମଳ ନିକଟକୁ ଆସି ଥଟ୍ଟା କରି କହିଲା—ଏତେ ଦିନ ପରେ ଅସଲ ଜିନିଷଟି କମଳ ପାଇ ପାରିଲା । ତୁମକୁ ଅଭିନନ୍ଦନ ଜଣାଉଛି ।

କମଳ ସେହିପରି ଚୁପି ଚୁପି କରି କହିଲା—ପାଇଛି ? ଅନ୍ତତଃ ସେତିକି ହେଲେ ଆଶୀର୍ବାଦ କରନ୍ତୁ ।

ହରେନ୍ଦ୍ର ଆଉ କିଛି କହିଲା ନାହିଁ । କିନ୍ତୁ କମଳର କଣ୍ଠରେ ଦ୍ୱିଧାହୀନ ପରମ ନିଃସଂଶୟ ସୁରଟି ଯେ ବାଜି ଉଠିଲା ନାହିଁ ତାହା ଯେପରି ତା କାନକୁ ଶୁଣାଗଲା । ତଥାପି ଏପରି ବି ହୋଇଥାଏ । ବିଶ୍ୱର ଏପରି ହିଁ ବିଧାନ ।

ଦ୍ୱାର ନିକଟକୁ ଡାକି ନୀଳିମା ଆପଣା ଆଖି ପୋଛି କହିଲା—କମଳ, ମୋତେ ଯେପରି ଭୁଲି ନ ଯାଉ । ଏହାଠାରୁ ଅଧିକ ସେ କିଛି କହି ପାରିଲା ନାହିଁ ।

କମଳ ନଇଁ ପଡ଼ି ନମସ୍କାର କଲା । କହିଲା—ଅପା, ମୁଁ ପୁଣି ଆସିବ । କିନ୍ତୁ ଯିବା ଆଗରୁ ଆପଣଙ୍କ ଆଗରେ ମୋର ଗୋଟିଏ ପ୍ରାର୍ଥନା ରଖିଯିବ—ଜୀବନର କଲ୍ୟାଣକୁ କଦାପି ଅସ୍ୱୀକାର କରିବ ନାହିଁ । ତାହାର ପ୍ରକୃତ ରୂପ ହେଉଛି ଆନନ୍ଦର ରୂପ । ଏହି ରୂପରେ ସେ ଦେଖାଦିଏ, ତାହାକୁ ଆଉ କୌଣସି ପ୍ରକାରରେ ଚିହ୍ନି ହୋଇ ପାରେ ନାହିଁ । ଆଉ ଯାହା କରନା ଅପା, ଅବିନାଶ ବାବୁଙ୍କ ଘରେ ଆଉ ବେଠି ଖଟିବା ପାଇଁ ରାଜି ହେବ ନାହିଁ ।

: ତାହା ହିଁ ହେବ କମଳ ।

ଆଶୁବାବୁ ଗାଡ଼ିରେ ଉଠିବା କ୍ଷଣି କମଲ ହାତ ବଢ଼ାଇ ତାଙ୍କ ପାଦ ଧୂଳି ଆଣି ପ୍ରଣାମ ଜଣାଇଲା । ସେ ତା ମୁଣ୍ଡରେ ହାତ ରଖି ଆଉ ଥରେ ଆଶୀର୍ବାଦ କରିଲେ । କହିଲେ—ତୋ ଠାରୁ ଗୋଟିଏ ଖାଣ୍ଟି ତତ୍ତ୍ୱର ସନ୍ଧାନ ପାଇ ପାରିଛି ମାଆ, ଅନୁକରଣରେ ମୁକ୍ତି ମିଳେ ନାହିଁ । ମୁକ୍ତି ଆସେ ଜ୍ଞାନରେ । ସେଥିପାଇଁ ଭୟ ହୁଏ, ତୋତେ ଯାହା ମୁକ୍ତି ଆଣିଦେଲା, ଅଜିତକୁ ହୁଏତ ତାହା ଅସମ୍ମାନରେ ବୁଡ଼ାଇ ଦେଇପାରେ । ତହିଁରୁ ତାକୁ ରକ୍ଷା କରିବୁ । ଆଜିଠାରୁ ସେହି ଭାର ତୋର । ଇଙ୍ଗିତଟାକୁ କମଲ ବୁଝି ପାରିଲା ।

ପୁନଶ୍ଚ କହିବାକୁ ଲାଗିଲେ—ତୋ କଥା ତୋତେ ମନେ କରାଇ ଦେଉଛି । ସେଦିନଠାରୁ ଏଇ କଥା ମୁଁ ବହୁତ ଥର ଭାବିଛି ଯେ ଭଲ ପାଇବାର ଶୁଚିତାର ଇତିହାସ ହିଁ ମନୁଷ୍ୟ ସଭ୍ୟତାର ପ୍ରଥମ ଇତିହାସ । ତାର ଜୀବନ, ତାର ବଡ ହେବାର ଧାରାବାହିକ ବିବରଣ । ତଥାପି ଶୁଚିତାର ଫର୍ଦ୍ଦ ନେଇ ଯିବାବେଳେ ମୁଁ ଯୁକ୍ତି କରିବା ପାଇଁ ଚାହୁଁ ନାହିଁ । ମୁଁ କ୍ଷୋଭର ନିଃଶ୍ୱାସରେ ତୁମ ଦୁହିଁଙ୍କର ବିଦାୟ-କ୍ଷଣଟିକୁ ମଳିନ କରିଦେବା ପାଇଁ ଇଚ୍ଛା କରୁ ନାହିଁ । କିନ୍ତୁ ବୁଢ଼ାର ଏଇ କଥାଟି ମନେ ରଖିବୁ, କମଲ । ଆଦର୍ଶ, ଆଇଡ଼ିଆଲ ଏସବୁ କେବଳ ଦୁଇ ଚାରିଜଣଙ୍କ ପାଇଁ । ସେତିକ ହିଁ ତାର ମୂଲ୍ୟ । ତାହାକୁ ସାଧାରଣ ସ୍ତରକୁ ଟାଣି ଆଣିଲେ ତାହା ହୁଏ ପାଗଳାମି । ମଙ୍ଗଳ ଅପସରି ଯାଏ, ତାର ଭାର ହୋଇ ଉଠେ ଦୁଃସହ । ବୌଦ୍ଧ ଯୁଗ ଠାରୁ ଆରମ୍ଭ କରି ବୈଷ୍ଣବମାନଙ୍କ ପର୍ଯ୍ୟନ୍ତ ଏହାର ଅନେକ ପ୍ରମାଣ ପୃଥିବୀରେ ରହି ଆସିଛି । ସେହି ବିପ୍ଲବକୁ କ'ଣ ତୁ ସଂସାରକୁ ଆଣି ଦେଇ ପାରିବୁ ମାଆ ?

କମଲ ମୃଦୁ କଣ୍ଠରେ କହିଲା—ତାହା ଯେ ମୋର ଧର୍ମ, ମଉସା ।

: ଧର୍ମ ? ତୋର ମଧ୍ୟ ଧର୍ମ ?

: ଯେଉଁ ଦୁଃଖକୁ ଭୟ କରୁଛନ୍ତି ମଉସା, ତାହାରି ଭିତର ଦେଇ ପୁଣି ତାହା ଠାରୁ ବଡ଼ ଆଦର୍ଶ ଜନ୍ମଲାଭ କରିବ । ଆଉ ତାର ଯେଉଁଦିନ କାର୍ଯ୍ୟ ଶେଷ ହେବ, ସେହି ମୃତ ଦେହରି ଅସ୍ଥିରୁ ତାହାଠାରୁ ଅଧିକ ମହତ୍ତର ଆଦର୍ଶ ସୃଷ୍ଟି ହେବ । ଏପରି ଭାବରେ ସଂସାରରେ ଶୁଭରୁ ଶୁଭତରର ପାଦ ତଳେ ଆତ୍ମ ବିସର୍ଜ୍ଜନ କରି ଆପଣା ଋଣ ପରିଶୋଧ କରେ । ଏହାହିଁ ହେଉଛି ମୁକ୍ତିର ପଥ । ଦେଖିବାକୁ ପାଉନ ମଉସା, ସତୀଦାହ ପ୍ରଥା ବାହାରର ରୂପଟା ଇଂରେଜ ରାଜଶାସନ ଅମଳରେ ବଦଳିଗଲା; କିନ୍ତୁ ତାହାର ଭିତରର ଦାହଟା ଆଜି ମଧ୍ୟ ସେହିପରି ଜଳୁଛି । ସେହିପରି ପାଉଁଶ ତଳେ ଲୁହୁଳୁଛି । ଏହା ଲିଭିବ କିପରି ?

ଆଶୁବାବୁ କଥା କହି ପାରିଲେ ନାହିଁ । କେବଳ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । କିନ୍ତୁ ପରକ୍ଷଣରେ କହି ଉଠିଲେ, କମଲ, ମଣିର ମାଆ ବନ୍ଧନରୁ ଏପର୍ଯ୍ୟନ୍ତ ନିଜକୁ ମୁକ୍ତ କରି ପାରିଲି ନାହିଁ । ତାକୁ ତୁ କହିପାରୁ ମୋହ, କିମ୍ବା ଦୁର୍ବଳତା । ତାହା ଯେଉଁଦିନ ତୁଟିବ, ମନୁଷ୍ୟର ଅନେକ କିଛି ସେଦିନ ଅପସରି ଯାଇ ପାରିବ । ମନୁଷ୍ୟର ଏହା ହେଉଛି ବହୁ ଦିନର ତପସ୍ୟାର ଧନ । ଅଚ୍ଛା ମୁଁ ଆସୁଛି । ବାସୁଦେବ—ଗାଡ଼ି ଚଳାଅ ।

ଟେଲିଗ୍ରାଫ୍ ପିଅନ ସାଇକେଲ ରଖି ସିଡ଼ିରେ ଓହ୍ଲାଇ ପଡ଼ିଲା । ଜରୁରି ତାର । ହରେନ୍ଦ୍ର ଗାଡ଼ି ଆଲୋକରେ ଲଫାପା ଖୋଲି ପଢ଼ିଲା । ଦୀର୍ଘ ଟେଲିଗ୍ରାମ ଆସିଛି ମଥୁରା ଜିଲ୍ଲାର ଗୋଟିଏ ଗ୍ରେଟ ସରକାରୀ ହାସ୍ପାତାଲର ଡାକ୍ତରଙ୍କ ନିକଟରୁ । ଖବରଟା ଏଇପରି—ଗ୍ରାମରେ ଗୋଟିଏ ଠାକୁର ଘରେ ନିଆଁ ଲାଗିଲା । ବହୁଦିନ ଧରି ବହୁ ଲୋକଙ୍କ ଦ୍ୱାରା ପୂଜିତ ବିଗ୍ରହ ମୂର୍ତ୍ତି ପୋଡ଼ି ଧ୍ୱଂସ ହେବାର ଉପକ୍ରମ କଲା । ଗୃହଟିକୁ ରକ୍ଷା କରିବାର ଉପାୟ ନ ଥିବାରୁ ସେହି ପ୍ରଜ୍ୱଳିତ ଗୃହରୁ ରାଜେନ୍ ମୂର୍ତ୍ତିଟିକୁ ଉଦ୍ଧାର କରିବାକୁ ଗଲା । ଦେବତା ରକ୍ଷା ପାଇଲେ କିନ୍ତୁ ରକ୍ଷା ପାଇ ପାରିଲେ ନାହିଁ ଦେବତାଙ୍କ ରକ୍ଷାକର୍ତ୍ତା । ଦୁଇ ଦିନ ଧରି ଅବ୍ୟକ୍ତ ଯାତନା ସହ୍ୟ କରି ସେ ଆଜି ସକାଳେ ଗୋବିନ୍ଦଜୀଉଙ୍କର ବୈକୁଣ୍ଠ ଧାମକୁ ଗମନ କଲେ । ଦଶ ହଜାର ଲୋକ କୀର୍ତ୍ତନ ଆଦି କରି ଶୋଭାଯାତ୍ରାରେ ନେଇ ତାଙ୍କ ନଶ୍ୱର ଦେହକୁ ଯମୁନା ତଟରେ ଭସ୍ମ କରିଦେଲେ । ମୃତ୍ୟୁ କାଳରେ ଏଇ ସମ୍ବାଦଟା ଆପଣଙ୍କୁ ଦେବାପାଇଁ ସେ କହି ଯାଇଥିଲେ ।

ନୀଳ ଆକାଶରୁ ଯେପରି ବଜ୍ରପାତ ହେଲା ।

କ୍ଷଣକରେ ହରେନ୍ଦ୍ରର କଣ୍ଠ ରୁଦ୍ଧ ହୋଇ ଉଠିଲା । ଅନାବିଳ ଜ୍ୟୋତ୍ସ୍ନା ରାତ୍ରିଟା ସମସ୍ତଙ୍କ ଆଖିରେ ମୁହୂର୍ତ୍ତିକ ଭିତରେ ଅନ୍ଧକାର ଭଳି ଦେଖାଗଲା ।

ଆଶୁବାବୁ କାନ୍ଦି ଉଠି କହିଲେ—ଦୁଇ ଦିନ ! ଅଠଚାଳିଶ ଘଣ୍ଟା ! ଏତେ ନିକଟରେ ? ଅଥଚ ଗୋଟାଏ ଖବର ସେ ଦେଇ ପାରିଲା ନାହିଁ ?

ହରେନ୍ଦ୍ର ଆଖି ପୋଛି କହିଲା—ପ୍ରୟୋଜନ ମନେ କରିନାହିଁ । କିନ୍ତୁ କରି ପାରିଥିଲେ ତ ଯାଇ ପାରି ନ ଥାନ୍ତେ । ସେଥିପାଇଁ ବୋଧହୁଏ ସେ କାହାକୁ ଖବର ଦେବା ପାଇଁ ଇଚ୍ଛା କରି ନାହିଁ ।

ଆଶୁବାବୁ ଯୋଡ଼ ହାତ ମୁଣ୍ଡକୁ ଉଠାଇ କହିଲେ—ତା ଅର୍ଥ ଦେଶ ବ୍ୟତୀତ ଆଉ କୌଣସି ମନୁଷ୍ୟକୁ ସେ ବୋଧହୁଏ ଆତ୍ମୀୟ ବୋଲି ମନେ କରି ନାହାଁନ୍ତି । କେବଳ ଦେଶ—ଏଇ ଭାରତବର୍ଷ । ତଥାପି କହୁଛି—ଭଗବାନ ! ତୁମ ପାଦରେ ତାଙ୍କୁ ସ୍ଥାନ ଦିଅ । ତୁମେ ଆଉ ଯାହା କର; କିନ୍ତୁ ଏଇ ରାଜେନ୍ ଜାତିଟାକୁ ଯେପରି ସଂସାରରୁ ବିଲୋପ କରି ନ ଦିଅ । ବାସୁଦେବ—ଗାଡ଼ି ଚଲାଅ ।

ଏହି ଶୋକର ଆଘାତ କମଳଠାରୁ ବେଶୀ ବୋଧହୁଏ ଆଉ କାହାକୁ ହୋଇ ନାହିଁ । କିନ୍ତୁ ସେ ବେଦନାର ବାଷ୍ପରେ ଆପଣାର କଣ୍ଠକୁ ଆଚ୍ଛନ୍ନ କଲା ନାହିଁ । ଆଖିରୁ ତାର ଯେପରି ଅଗ୍ନି ବର୍ଷିବାକୁ ଲାଗିଲା । କହିଲା—ଦୁଃଖ କେଉଁଥିପାଇଁ ? ସେ ବୈକୁଣ୍ଠକୁ ଯାଇଛି । ହରେନ୍ଦ୍ରକୁ କହିଲା—କାନ୍ଦିବେ ନାହିଁ ହରେନ୍ଦ୍ର ବାବୁ । ଅଜ୍ଞାନର ବଳି ଚିରଦିନ ଏହିପରି ହିଁ ଦେବାକୁ ହୋଇଥାଏ ।

ତା ସ୍ୱଚ୍ଛ କଠିନ ସ୍ୱର ତୀକ୍ଷ୍ଣ ଛୁରୀର ଧାରପରି ଯାଇ ସମସ୍ତଙ୍କ ବୁକୁରେ ବାଜିଲା ।

ଆଶୁବାବୁ ଚାଲିଗଲେ । ସେହି ଶୋକାଚ୍ଛନ୍ନ ସ୍ତବ୍ଧ ନୀରବତା ମଧ୍ୟରେ କମଳ ଅଜିତକୁ ନେଇ ଗାଡ଼ିରେ ବସିପଡ଼ିଲା । କହିଲା—ରାମଦୀନ୍—ଚାଲ...

●